ଶରତ୍‌ଚନ୍ଦ୍ର ମହାରଣା

# ଅନୁଭବମାଳା (୩)

## (ଡ଼ାଏରି)

ସମ୍ପାଦନା : ଅନୀଲ ପ୍ରଧାନ, ପ୍ରଫୁଲ୍ଲ ବେହେରା




ଭୁବନେଶ୍ୱର

# ଅନୁଭବମାଳା (୩)

(ଡାଏରି)

## ଶରତ୍‌ଚନ୍ଦ୍ର ମହାରଣା

ସମ୍ପାଦନା

ଅନୀଲ ପ୍ରଧାନ

ପ୍ରଫୁଲ୍ଲ ବେହେରା




ଭୁବନେଶ୍ୱର

# ଅନୁଭବମାଳା (୩)

(ଡାଏରି)

ଶରତ୍‌ଚନ୍ଦ୍ର ମହାରଣା


ସମ୍ପାଦନା ଅନୀଲ୍ ପ୍ରଧାନ, ପ୍ରଫୁଲ୍ଲ ବେହେରା

ପ୍ରଥମ ସଂସ୍କରଣ ୨୦୦୯

ପ୍ରକାଶକ ଶିକ୍ଷାସନ୍ଧାନ

ଏ-୧୨, ହାଉସିଂ ବୋର୍ଡ଼ କଲୋନୀ

ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩

ଦୂରଭାଷ : ୦୬୭୪ - ୨୫୫୬୧୦୯

ମୁଦ୍ରଣ ଶିକ୍ଷା ପ୍ରକାଶନୀ

ଭୁବନେଶ୍ୱର - ୩

ଦୂରଭାଷ ୦୬୭୪ - ୨୫୫୬୧୦୯

ଆଇ.ଏସ୍.ବିନ୍ 13:978-81-87982-47-0

ମୂଲ୍ୟ ଟ. ୧୪୦/-


## Anubhabamala (3)

**(Diary)**


Author Sarat Ch. Moharana

Edited by Anil Pradhan, Prafulla Behera

Ist Editon 2009

Pulished by Sikshasandhan

A/12, Housing Board Colony

Baramunda, Bhubaneswar - 751 003

Ph : 0674 - 2556109

Printd at Siksha Prakashani, Bhubaneswar-3

**I.S.B.N** 13:978-81-87982-47-0

Price : Rs. 140

# ସୂଚନା

ଓଡ଼ିଶାରେ ମୌଳିକ ଶିକ୍ଷା ଓ ସର୍ବୋଦୟ ଆନ୍ଦୋଳନର ସଙ୍ଗଠକ ତଥା ଗୁରୁଜୀ ରୂପେ ପରିଚିତ ଶ୍ରୀଯୁକ୍ତ ଶରତଚନ୍ଦ୍ର ମହାରଣାଙ୍କ "ଅନୁଭବମାଳା ଏବଂ ଅନୁଭବ ମାଳା-୨" ଏହାପୂର୍ବରୁ ପ୍ରକାଶିତ ହୋଇସାରିଛି । ପ୍ରଥମ ଖଣ୍ଡ ସେ ନିଜେ ପାଣ୍ଡୁଲିପି ପ୍ରସ୍ତୁତ କରି ଶିକ୍ଷାସନ୍ଧାନକୁ ପ୍ରକାଶନ ନିମନ୍ତେ ପଠାଇଥିଲେ । ଦ୍ୱିତୀୟ ଖଣ୍ଡର ସଂପାଦନା ଦାୟିତ୍ୱ ଆମକୁ ଅର୍ପଣ କରିଥିଲେ । ସେ ଜୀବିତ ଥିବା ସମୟରେ ଦ୍ୱିତୀୟ ଖଣ୍ଡ ପ୍ରକାଶ ପାଇଥିଲା ଓ ତାର ଅଳ୍ପଦିନ ପରେ ତାଙ୍କର ଦେହାନ୍ତ ହୋଇଥିଲା ।

ପ୍ରଥମ ଖଣ୍ଡରେ ମୁଖ୍ୟତଃ ତାଙ୍କର ବାଲ୍ୟଜୀବନ, ପାଠପଢ଼ା ଓ କର୍ମମୟ ଜୀବନ ତଥା ତାଙ୍କ ପିତା ପ୍ରଖ୍ୟାତ ଶିକ୍ଷାବିତ୍ ଓ ସାହିତ୍ୟିକ ଚନ୍ଦ୍ରମୋହନ ମହାରଣାଙ୍କ ବିଷୟରେ ବିସ୍ତୃତ ଭାବରେ ବର୍ଣ୍ଣନା ରହିଛି ।

ଶ୍ରୀଯୁକ୍ତ ଶରତଚନ୍ଦ୍ର ମହାରଣା ପ୍ରତିଦିନ ଡ଼ାଏରି ଲେଖୁଥିଲେ ଯାହା ସଂଖ୍ୟା ଆକାରରେ ଏକ ଶହରୁ ଉର୍ଦ୍ଧ୍ୱ ହେବ । ଡ଼ାଏରିରେ ନାନାଦି ବିଷୟ ରହିଛି, ବିଶେଷ କରି ସେ ସମୟର ବ୍ୟକ୍ତିବିଶେଷଙ୍କ ସମ୍ବନ୍ଧରେ ସୂଚନା, ମୌଳିକ ଶିକ୍ଷାର ଦର୍ଶନ ଓ ପ୍ରୟୋଗ, ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଝଲକ, ମହାତ୍ମାଗାନ୍ଧୀ, ସନ୍ଥ ବିନୋବାଙ୍କ ଜୀବନ ଦର୍ଶନ ତଥା ଓଡ଼ିଶାରେ ସର୍ବୋଦୟ ଆନ୍ଦୋଳନର ଭୂମିକାର ବିସ୍ତୃତ ବିବରଣୀ । ସେହି ଡ଼ାଏରିରୁ କିଛି ସଂକଳିତ କରି "ଶିକ୍ଷାସନ୍ଧାନ" ସମୟ କ୍ରମେ ପ୍ରକାଶନ କରିବାକୁ ମନରେ ଦମ୍ଭ ବାନ୍ଧିଛନ୍ତି ।

ପ୍ରକାଶିତ ଦ୍ୱିତୀୟ ଖଣ୍ଡର ସମୟ କାଳ ୧.୧.୧୯୫୪ ରୁ ୨୫.୩.୧୯୫୬ ମସିହା ଅଟେ । ଏଇ ଖଣ୍ଡରେ ପଢ଼ିବାକୁ ମିଳିଥାଏ ଓଡ଼ିଶାର ପ୍ରଳୟଙ୍କରୀ ୧୯୫୫ ମସିହାର ବନ୍ୟା, ଦଳେଇଘାଇ ଭାଙ୍ଗିବାର ଘଟଣା ଏବଂ ୧୯୫୬ ମସିହାର ସୀମା ଆନ୍ଦୋଳନର କଥା । ପୁଣି ଏଇ ସମୟ ଭିତରେ ବିନୋବା ଭାବେଙ୍କ ଓଡ଼ିଶାରେ ଭୂମିକ୍ରାନ୍ତି ପଦଯାତ୍ରା ।

ଶ୍ରୀଯୁକ୍ତ ମହାରଣା ସେହି ସମୟରେ ଓଡ଼ିଶା ପ୍ରାଦେଶିକ ଭୂଦାନ ସମିତିର ସଂପାଦକ ଥିଲେ । ଏଣୁ ଭୂଦାନ ଆନ୍ଦୋଳନ ସଂପର୍କରେ ଏଇ ତୃତୀୟ ଖଣ୍ଡ ନିର୍ଭରଯୋଗ୍ୟ ଦଲିଲ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅନୁଭବମାଳା ତୃତୀୟ ଖଣ୍ଡ ତା. ୨୬-୩-୧୯୫୬ ରୁ ତା. ୨୬.୨.୧୯୫୯ ପର୍ଯ୍ୟନ୍ତ ସମୟ ସୀମାକୁ ସୂଚିତ କରୁଛି । ଏଇ ଖଣ୍ଡରେ ସର୍ବୋଦୟ ଆନ୍ଦୋଳନକୁ ଲୋକାଭିମୁଖୀ କରିବା ପାଇଁ ସେ ଓଡ଼ିଶାରେ ବିଭିନ୍ନ ଅଞ୍ଚଳ, କର୍ମୀ, ସଂଗଠକ ଇତ୍ୟାଦିଙ୍କ ନିକଟକୁ ଯାଇ ବିପୁଳ ଅନୁଭୂତି ଓ ଅଭିଜ୍ଞତା ହାସଲ କରିବା ସହିତ ସେସବୁ ବିଷୟରେ ଡ଼ାଏରିରେ ଉଲ୍ଲେଖ କରିଛନ୍ତି ।

ଆଶାକରୁ ଶ୍ରୀଯୁକ୍ତ ଶରତଚନ୍ଦ୍ର ମହାରଣାଙ୍କ "ଡ଼ାଏରି" ପାଠକରି ସର୍ବୋଦୟ ଆନ୍ଦୋଳନର ଇତିହାସ ପାଠକ ଜାଣିପାରିବେ, କେବଳ ସର୍ବୋଦୟ ଆନ୍ଦୋଳନ ନୁହେଁ, ଭାରତବର୍ଷରେ ଚାଲୁଥିବା ବିଭିନ୍ନ ଆନ୍ଦୋଳନ ପାଇଁ ଏହା ଏକ ମାର୍ଗଦର୍ଶକ ହିସାବରେ କାର୍ଯ୍ୟ କରିବ । ଏଇ ପୁସ୍ତକ ପ୍ରକାଶନରେ ବିଶେଷ ଭାବରେ ଶିକ୍ଷାସନ୍ଧାନର ସହକର୍ମୀ ଲୋକନାଥ ପଣ୍ଡା ସହାୟତା କରିଥିବାରୁ ସେ ଧନ୍ୟବାଦର ପାତ୍ର । ଶିକ୍ଷାପ୍ରକାଶନୀ ପ୍ରେସ୍‌ର ଶ୍ରଦ୍ଧେୟ ଦେବେନ୍ଦ୍ର (ବାବୁଲି), ଆଶିଷ, ପ୍ରମୋଦ, ପ୍ରଭାତ, ଧରଣୀ, ଶୈଳ୍ୟ ଓ ଶିକ୍ଷାସନ୍ଧାନର ଅନ୍ୟାନ୍ୟ ସତୀର୍ଥମାନେ ଏହି ପ୍ରକାଶନରେ ସହାୟତା କରିଛନ୍ତି । ଏତଦ୍ ବ୍ୟତୀତ ଶ୍ରୀଯୁକ୍ତ ବସନ୍ତ କୁମାର ପାଳ ପାଣ୍ଡୁଲିପି ସଂଶୋଧନ କାର୍ଯ୍ୟରେ ସାହାଯ୍ୟ କରିଥିବାରୁ ତାଙ୍କୁ କୃତଜ୍ଞତା ଜଣାଉଛୁ । ଅନୁଭବମାଳା ପ୍ରକାଶନରେ ଶ୍ରୀଯୁକ୍ତା ଅନ୍ନପୂର୍ଣ୍ଣା ମହାରଣା ଏବଂ ତାଙ୍କର ପୁତ୍ର ଓ ପୁତ୍ରବଧୂ ସହଯୋଗ କରିଥିବାରୁ ତାଙ୍କ ନିକଟରେ ଋଣୀ ।

ସଂକଳକ

*ଅନୀଲ ପ୍ରଧାନ, ପ୍ରଫୁଲ୍ଲ ବେହେରା*

**୨୬.୩.୧୯୫୬**

ସକାଳ ସିଲେଟ ପାଣିରୁ ଭାଲୁକଣା ଆସିଲୁ – ୩ ମାଇଲ । ଭୁରୁଲି ମାଝିଙ୍କ ଘରେ ରହିଲୁ ଓ ଖାଇଲୁ । ନାରାୟଣ ସିଂହ ମାଝୀ, ଗ୍ରାମପଞ୍ଚାୟତ ସେକ୍ରେଟାରୀ, ଆଜି ଥିଲେ । ଉପରଓଲି ଦିଆମୁଣ୍ଡାରେ ଦିଆମୁଣ୍ଡା, ଝପାବାହାଲ, ବାଘମୁଣ୍ଡାରେ ବଣ୍ଟନ ହେଲା । ୧୯୭ ପରିବାରର ୭୬୦ ଲୋକଙ୍କୁ ୫୭୭ ଏକର ୮୯ ଡେସିମିଲ ଜମି ଆଜି ରାତି ସୁଦ୍ଧା ବିତରିତ ହୋଇଛି । ତା ୧୮.୩. ପୂର୍ବରୁ ଏଥିମଧ୍ୟରୁ ଏ ୧୬୪-ଡ଼େ୭୭ ଜମି ୪୮ ପରିବାରର ୨୧୨ ଲୋକଙ୍କୁ ଦିଆଯାଇଥିଲା ।

ରାତିରେ ମୁଣ୍ଡାପଲାରେ ଜମି ବଣ୍ଟନ ହେଲା । ମୁଣ୍ଡାପଲାରେ ରାତ୍ରିଭୋଜନ ଓ ଶୟନ କଲୁ ।

**୨୭.୩.୧୯୫୬**

ଭେଲାରେ ଅବସ୍ଥାନ । ଭୋର ମୁଣ୍ଡାତାଲା ଗ୍ରାମରୁ ଚାଲିକରି ନୂଆପଡ଼ା-ଖଡ଼ିଆଳ ସଡ଼କକୁ ଆସିଲୁ । ସଡ଼କରେ ନୂଆପଡ଼ାର ଏସ୍.ଡ଼ି.ଓ. ଶ୍ରୀ ନୀଳମଣି ମହାନ୍ତି ଓ କଳାହାଣ୍ଡି ଜିଲ୍ଲାର କଲେକ୍ଟର ଶ୍ରୀ ସବାଟୋର୍ ଜୀପ୍‌କାରରେ ଯିବାବେଳେ, ନୀଳମଣି ବାବୁ ଜୀପ୍‌କାର ବନ୍ଦ କରି, ଆମ୍ଭମାନଙ୍କ ସହ କଥାବାର୍ତ୍ତା କଲେ । ଆମର ପଦଯାତ୍ରାର ଫଟୋ ନେବାକୁ ହସିକରି ସେ କହିଲେ । ମୋଟର ସର୍ଭିସ୍‌ବସ୍‌ରେ ଆମ୍ଭେମାନେ କିସ୍‌ନା ଗ୍ରାମ ସିଧା ଆସିଲୁ । ସେଠାରୁ ଭେଲାକୁ ଆସିଲୁ ।

ଖରାବେଳେ କଳାହାଣ୍ଡିର ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓଙ୍କୁ ଜମିବଣ୍ଟନ ଉତ୍ସବରେ ଯୋଗ ଦେବା ନିମିତ୍ତ ସମୟ ସ୍ଥିର କରିବାକୁ ଏକ ଚିଠି ଲେଖିଲି । କଟକ ସହରର ପେନ୍‌ସନ୍‌ର୍ସ ଲେନ୍‌ରେ ଘର ପୋଷ୍ଟାଲ୍ ଇନ୍ସପେକ୍ଟର ଶ୍ରୀ ସୁବ୍ବା ରାଓ ଭେଲାକୁ ନିଜର କର୍ତ୍ତବ୍ୟ କର୍ମରେ ଆସି, ମୋ ସହ ଦେଖା କଲେ । ରାମଚନ୍ଦ୍ରପୁରରେ (ବରୀ ଅଞ୍ଚଳରେ) ପ୍ରଥମେ ୧୯୪୮ରେ ପୋଷ୍ଟ ଅଫିସ ହେବାପୂର୍ବରୁ ସେ ସେଠାକୁ ଯାଇଥିଲେ ଏବଂ ପରିଚୟ ହୋଇଥିଲା । ସାଧାରଣଙ୍କର ସୁବିଧା କରିଦେବାର ମନୋବୃତ୍ତି ତାଙ୍କର ଜଣାଗଲା । ଅନନ୍ତ ବାବୁଙ୍କର ଶ୍ୱଶୁର ବେଙ୍କଟାରବାସୀ

ଶ୍ରୀ ନବୀନ କିଶୋର ମହାନ୍ତି (ବୟସ ୮୨ ବର୍ଷ, ଆଖିରେ ମୋତିଆ ବିନ୍ଦୁ ଯୋଗୁଁ ଆଦୌ ଦେଖିପାରୁନାହାନ୍ତି) ମୋଠାକୁ ଆସି କଥାବାର୍ତ୍ତା କଲେ ।

ରାତିରେ ଶ୍ରୀ ଉଗ୍ରମାଧବ ବାବୁଙ୍କ ସହ ଭୂମିବଣ୍ଟନ କଥା ଚର୍ଚ୍ଚା ହେଲା । ସେ ଏପ୍ରିଲ ମାସଟି ଏ କାର୍ଯ୍ୟରେ ଦିଅନ୍ତୁ, ମୁଁ ଅନୁରୋଧ କଲି ।

**୨୮.୩.୧୯୫୬**

ଶିମେଲପାଲିରେ । ତା ୧୮.୩.୫୬ ରବିବାର ସଂଖ୍ୟା 'ସମାଜ' ଖବରକାଗଜରୁ 'ବିଜ୍ଞାନ ଓ ଶିକ୍ଷା' ଶୀର୍ଷକ ଶ୍ରୀ ରାଇଚରଣ ଦାସ, ଏମ୍.ଏସ୍.ସି.ଙ୍କ ଦ୍ୱାରା ଲେଖାଟି ପଢ଼ିଲି । Scientific Humanismକୁ ସେ ସ୍ୱାଗତ କରିଛନ୍ତି । ଭଲ ଲେଖାଟି ।

ସକାଳେ ୮ଟା ବେଳେ ଶକ୍ତିଶେଖର ଦାସ, ଜଗଦୀଶ ପ୍ରସାଦ ଯୋଷୀ ଓ ମୁଁ ସାଇକେଲରେ ଭେଲରୁ ୧୦ ମାଇଲ ଦୂର ଶିମେଇପାଲି ଗ୍ରାମକୁ ବାହାରିଲୁ । ଘ ୯.୩୦ରେ ପହଞ୍ଚିଲୁ । ସେଠାରେ ମୁଲକୀ ଅମାନ ଖାଁଙ୍କର ଆତିଥ୍ୟରେ ରହିଲୁ । ଉପରଓଳି ଶିମେଲପାଲି ଗ୍ରାମର ଜମି ବିତରିତ ହେଲା ।

୧୨ଟି ପରିବାରର ୫୫ ଜଣଙ୍କୁ ଏ ୨୫.୯୦ ଡ଼େ. ଜମି ବଣ୍ଟନ କରାଗଲା । ମୁଲକୀ ଅମାନ ଖାଁ, ଶିମେଲପାଲି, ପୋ: କଣ୍ଡେତରା ଜିଲ୍ଲା କଳାହାଣ୍ଡି ସଭାପତି ହୋଇଥିଲେ । ନୂର ମହମ୍ମଦ, କୈବଲ ଶବର, ଗୋବର୍ଦ୍ଧନ ପୁରୋହିତ ଆଦି ଉପସ୍ଥିତ ଥିଲେ ।

ଉପରଓଳି ଠିକାପାଲି ଯାଇ, ତ୍ରିନାଥ ପାଢ଼ୀଙ୍କର ସହ ଗଲୁ । ବଣ୍ଟନ ହୋଇପାରିଲା ନାହିଁ । କାରଣ ତ୍ରିନାଥ ପାଢ଼ୀ, ରତନ ପାଢ଼ୀ ସେମାନଙ୍କର ଦତ୍ତ ଜମିର ପ୍ଲଟ ନମ୍ବର ବା ଚୌହଦୀ ଦାନପତ୍ରରେ ଲେଖିନାହାନ୍ତି କିମ୍ବା ବର୍ତ୍ତମାନ ଲେଖିଦେବାକୁ ରାଜୀ ନୁହନ୍ତି । ଭଲ ବାହଲ ଜମି ଅଧିକାଂଶ ହୋଇଥିବାରୁ, ସେମାନେ ଜମି ଛାଡ଼ିବାକୁ କୁଣ୍ଠିତ ଏବଂ ଭୂମିହୀନ ଲୋକେ ଜମି ପାଇଗଲେ ଏମାନଙ୍କର ଜମି ଚାଷ କରିବାକୁ ମୂଲିଆ ପାଇବେ ନାହିଁ ବୋଲି ତ୍ରିନାଥ ବାବୁ ସଫା କହିଲେ । ମୁଁ ଉଚ୍ଚ ସ୍ତରରୁ ପରିସ୍ଥିତିକୁ ବିଚାର କରିବାକୁ ଓ ଆୟର ବଡ଼ adventure କରିବାକୁ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲି ।

ବାଟରେ ଆସିଲାବେଳେ ଜଗଦୀଶ ବାବୁ (ତ୍ରିନାଥବାବୁଙ୍କର ଅତି ନିକଟ ବନ୍ଧୁ) ଆମ୍ଭମାନଙ୍କୁ କହିଲେ ଯେ ଏହି ପାଢ଼ୀ ବଂଶ ଓ ଅନ୍ୟ ୨/୩ ଗ୍ରାମର ବଡ଼ ଜମିମାଲିକ ବ୍ରାହ୍ମଣମାନେ ଜମିର ଲୋଭ ଛାଡ଼ିବେ ନାହିଁ, ପରେ ଭୂମିହୀନ ଲୋକଙ୍କର ଏମାନଙ୍କ ସହ ସଂଘର୍ଷ ହେବ ଓ ଜମିମାଲିକମାନେ ହାଣ ଖାଇବେ । ସେ ଅବଶ୍ୟ ବିରକ୍ତିରେ ଏ କଥା କହିଲେ ।

ରାତିରେ ଆମେ ଶିମଲୀପାଲିରେ ମୁଲକୀ ଅମାନ ଖାଁଙ୍କ ଘରେ ରୋଟି, ହାଲୁଆ ଓ ଆଚାର ଖାଇଲୁ । ସେ ନିଜେ ପରଶିଲେ । ତାଙ୍କର ବାହାର ଅଗଣାରେ ଶୋଇଲୁ । ସେ

କୋରାନ ସରୀଫ୍‌ରୁ ଓ ଅନ୍ୟ ଇସଲାମ ଧର୍ମଶାସ୍ତ୍ରରୁ ଅନେକ ସୁନ୍ଦର କଥା ଆବୃତ୍ତି କରି, ଓଡ଼ିଆରେ ଅର୍ଥ ବୁଝାଇ ବଡ଼ ଖୁସି ହୋଇ କହିଲେ । ତନ୍ମଧ୍ୟରେ (୧) ଇସଲାମ ଧର୍ମରେ ନିଜର ଖାଦ୍ୟପାଇଁ ସୁଦ୍ଧା ଜୀବବଧ ବାରଣ ଅଛି । ଯେଉଁମାନେ ଫକୀର, ଉଚ୍ଚ ନୀତିବାଦୀ ସେମାନେ ଆଦୌ ଜୀବବଧ କରିବାକୁ ମନା ଅଛି । ସେମାନଙ୍କର ତଳ ଶ୍ରେଣୀର ଲୋକେ କେବେ କେମିତି ମାସେ ଦୁଇ ମାସରେ ଥରେ ''ହଲାଲ'' କରି ଖାଦ୍ୟପାଇଁ ଜୀବବଧ କରି ପାରନ୍ତି ମାତ୍ର କଂସେଇଙ୍କ ପରି ପ୍ରତିଦିନ ମାଂସ ପାଇଁ ଜୀବହଣା କରିବା ମନା ଅଛି । କଂସେଇମାନେ କେବେ ସୁଖରେ ରହି ପାରନ୍ତି ନାହିଁ କିମ୍ବା ବେଶୀ ଉପାର୍ଜ୍ଜନ କରିପାରନ୍ତି ନାହିଁ ।

(୨) ପ୍ରତିଦିନ ଅନ୍ତତଃ ୫ ଥର ଈଶ୍ୱରଙ୍କୁ ପ୍ରାର୍ଥନା କରିବାର କଥା ।

(୩) ଅନ୍ୟଙ୍କୁ ସୁଖୀ କରାଇବା ଅପେକ୍ଷା ତୀର୍ଥ ଦର୍ଶନ କରିବା, ମକ୍କା ମଦିନା ଯିବାରେ ଅଧିକ ପୁଣ୍ୟ ହୁଏ ନାହିଁ ।

(୪) ଲୋକଙ୍କର ସେବା କରିବା ସବୁଠାରୁ ବଡ଼ ଧର୍ମକାର୍ଯ୍ୟ ।

ସେ ରୀତିମତ ସବୁ ରାଜନୈତିକ ମତବାଦର ପତ୍ରପତ୍ରିକା ମଗାଇ ପଢ଼ନ୍ତି ଓ ଆମକୁ ସେହି ସବୁ ଉର୍ଦ୍ଦୁ ପତ୍ରିକାର ଭଲ ଭଲ ଲେଖା ପଢ଼ି, ଭାରୀ ଖୁସି ହୋଇ କହିଲେ । ଡାକ୍ତର ରାମମନୋହର ଲୋହିଆଙ୍କର ନିକଟରେ ଶୋଭାଯାତ୍ରା ଓ ସ୍ଲୋଗାନକୁ ସେ ପସନ୍ଦ କଲେ । ମାତ୍ର ପରେ କହିଲେ - ଏ ସବୁ ହେବ କିପରି ? ଜବାହାରଲାଲ ନେହୁରୁଙ୍କ ପ୍ରତି ତାଙ୍କର ଭାରୀ ଖାତିର ଓ ବିଶ୍ୱାସ ଏବଂ ସେ ଦେଶକୁ ଠିକ୍ ବାଟରେ ଚଳାଉଛନ୍ତି, ..କହିଲେ । ଉର୍ଦ୍ଦୁ ପତ୍ରିକାରୁ ସେ ରାଶିଫଳ ମଧ୍ୟ ପଢ଼ି, ଜଗଦୀଶ ବାବୁଙ୍କୁ ଶୁଣାଇଲେ । ମୁଲକୀ ଅମାନ ଖାଁଙ୍କର ଜନ୍ମସ୍ଥାନ କାବୁଲ -ଆଫଗାନୀସ୍ଥାନରେ । ସେ ପାକ୍‌ଖତୁନ । ପିତୃମାତୃ ଶୂନ୍ୟ ଅବସ୍ଥାରେ ସେ ପିଲାଦିନେ ତାଙ୍କ ଜନ୍ମସ୍ଥାନରୁ ଏଠାକୁ ଆସିଥିଲେ । ସେମିତି କିଛି ଲେଖାପଢ଼ା ଜାଣି ନଥିଲେ । ଅଧ୍ୟବସାୟ ବଳରେ ବିଷୟସଂପତ୍ତି ଅର୍ଜନ କରିଛନ୍ତି । ଚାଷଜମି ପ୍ରାୟ ୫୦ ଏକରରୁ ୧/୬ ଅଂଶ ସେ ଭୂଦାନ ଯଜ୍ଞକୁ ଦେଇଥିଲେ । ଚମଡ଼ା ରପ୍ତାନି ବ୍ୟବସାୟ ଓ ଟଙ୍କା ଋଣ ଦେବାର ବ୍ୟବସାୟ ମଧ୍ୟ ଅଛି, ଶୁଣିଲି । ସେ ବଡ଼ ଅତିଥିପରାୟଣ । ୫ ଥର ''ନମାଜ'' ପଢ଼ିଲେ । ରାତିରେ ନମାଜ ପଢ଼ିବାବେଳେ ଏକ ସରୁ ମାଳା ଗଡାଇ, କଣ ଆବୃତ୍ତି କଲେ । ଧନସଂପଦ ଲୋଭ ଯୋଗୁଁ ସେ ଘର ଛାଡ଼ି ରାତିକ ପାଇଁ ସୁଦ୍ଧା କୁଆଡ଼େ ଯାଆନ୍ତି ନାହିଁ – ଏହା ମୁଁ ଶୁଣିଲି । ଯାହାହେଉ, ବଡ଼ ସରସ, ଅତିଥିପରାୟଣ ଓ ମାର୍ଜିତ ରୁଚିର ଲୋକ ବୋଲି ମୋତେ ବୋଧହେଲା । ତାଙ୍କର ବୟସ ପ୍ରାୟ ୬୪ ବର୍ଷ ହେବ ।

୨୯.୩.୧୯୫୬

ସକାଳେ ଶିମଲିପାଲିରେ ମୁଲକୀ ଅମାନ ଖାଁଙ୍କ ଘରେ ଜଳଖିଆ ଖାଇ ଚାଲି କରି

ଗଣିଆପଡ଼ା ଓ ଛୁଟିବର ଗ୍ରାମଗୁଡ଼ିକର ଡାହାଣପାଟ ଦେଇ, ହରିଶଙ୍କର ରୋଡ୍ ରେଲଷ୍ଟେସନ୍‌କୁ ପ୍ରାୟ ଘଣ୍ଟାକରେ ପହଞ୍ଚିଲି । ସକାଳ ୯ଟା ବେଳେ ଟ୍ରେନ୍‌ରେ ଆସି, ଅମ୍ବାଦଳାରେ ଦିନ ୨ଟା ବେଳେ ପହଞ୍ଚିଲି । ଅମ୍ବାଦଳାର ଭୂଦାନ ଅଫିସରେ ଶ୍ରୀ ବଂଶୀଧର ନାୟକ, (ଘର ଆଳୀ ଅଞ୍ଚଳରେ, ବର୍ତ୍ତମାନ ଚମଡ଼ା କାର୍ଯ୍ୟ ପାଇଁ କୋରାପୁଟ ଜିଲ୍ଲାର "ନବନିର୍ମାଣ'' କାର୍ଯ୍ୟରେ ଅଛନ୍ତି), ଭୂମିବଣ୍ଟନ କର୍ମୀ ସନାତନ ମଲିକ ଓ ନନ୍ଦକିଶୋର ଥିଲେ । ବ୍ୟାସଜୀ ୫ଟା ବେଳକୁ ଭୂମିବିତରଣ କାର୍ଯ୍ୟକୁ ଫେରିଲେ । ତାଙ୍କ ସହ କଥାବାର୍ତ୍ତା ହେଲି । ଖେଚିଡ଼ି ଖାଇ ସନ୍ଧ୍ୟାରେ ବଂଶୀଧର ବାବୁ, ନନ୍ଦ, ପ୍ରଭୃତି ଅମ୍ବାଦଳା ଗଣ୍ଡାସାହି ବାଟେ 'କନ୍ଦରାଣୀ ପିଣ୍ଡା' ନାମକ ଆଦିବାସୀ ଗ୍ରାମକୁ ଗଲୁ । ଭୂଦାନକର୍ମୀ ମହମ୍ମଦ ମୋସୀନ୍‌ଙ୍କ ପାଇଁ ଖୁସିରେ ଖେଚିଡ଼ି, ପିଆଜ ଓ ବିଲାତୀ ବାଇଗଣ ନେଇଥିଲୁ । ସେହି ଗ୍ରାମକୁ ୪ ହଳ ଦାମୁଡ଼ି ସାହାଯ୍ୟ ଦିଆଯାଇଛି । ସେଗୁଡ଼ିକୁ ଦେଖିଲୁ । ସଡ଼କ ବାଟରେ ରାତି ୯ଟାରେ ଅମ୍ବାଦଳାକୁ ଫେରିଲୁ ।

ରାତିରେ ଟ୍ରେନ୍ ପାଖକୁ ଯାଇ ବଂଶୀବାବୁ ଓ ମୁଁ ଶକ୍ତିଶେଖର ଦାସ(ଭେଲକୁ) ଓ ରାଧାରତନକୁ(ରାୟଗଡ଼ାକୁ) ଚିଠି ପକାଇଲୁ । ରାତି ୧ଟାରେ ଷ୍ଟେସନ୍ ଆସିଲୁ ।

୩୦.୩.୫୬

ଗୁଡ୍ ଫ୍ରାଇଡ଼େ । ଅମ୍ବାଦଳାରେ । ସକାଳେ ପାଖର ଏକ ନାଳକୁ ଯାଇ ଲୁଗାପଟା ସଫା କଲୁ । ବଂଶୀବାବୁ ମୋର ଲୁଗା, ମୋଠାରୁ ନେଇ, ନିଜେ ସଫା କରିଦେଲେ । ଉପରଓଳି ଅମ୍ବାଦଳାଠାରୁ ପାର୍ବତୀପୁର ସଡ଼କରେ ପ୍ରାୟ ୨ ମାଇଲ ଦୂର ପାଞ୍ଚଟି ମାତ୍ର ପରିବାର ବିଶିଷ୍ଟ ଡମ୍ବ-ଝିଗିଡ଼ି ଗ୍ରାମକୁ ସୀମାଞ୍ଚଳ ମାଝି ସାମନ୍ତ, ବ୍ୟାସଜୀ, ବଂଶୀଧର ବାବୁଙ୍କ ସହ ଯାଇ, ସନ୍ଧ୍ୟାକୁ ଅମ୍ବାଦଳାକୁ ଫେରିଆସିଲି । ବନ୍ଦୋବସ୍ତର ପଟ୍ଟା ପାର୍ଚା ଏପର୍ଯ୍ୟନ୍ତ ମିଳି ନଥିବାରୁ, ସେହି ଗ୍ରାମବାସୀ ସମଗ୍ରଦାନ କରିଦେବାକୁ ସମୟ ନେଲେ ।

୧) ଗତ ୨ ମାସର ଭାଉଚରଗୁଡ଼ିକ ଯାଞ୍ଚ କରିବା । ୨) ସର୍ବସେବା ସଂଘରୁ ଟଙ୍କା ପାଇବାକୁ ଟେଲିଗ୍ରାଫ୍ କରିବା ୩) ଏପ୍ରିଲ ମାସରେ ଭୂଦାନ ସମିତିର ବୈଠକର ତାରିଖ ସ୍ଥିର କରିବା (୪) ବେସରକାରୀ କମିଟି ସମ୍ବନ୍ଧରେ ସିଦ୍ଧାନ୍ତ ଲେଖି ଜଣାଇବା (୫) ଏ ବିଷୟରେ ସର୍ବସେବା ସଂଘର କଣ ନିର୍ଣ୍ଣୟ ଅଛି, ତାହା ଜାଣିବା; ଗ୍ରାଣ୍ଟ ସରକାରୀ ସମିତିର ସଂପାଦକଙ୍କ ପାଖକୁ ଆସୁଛିନା, ବେସରକାରୀ ସମିତିର ସଂଯୋଜକଙ୍କ ପାଖକୁ ଆସୁଛି ? ସରକାରୀ ଗ୍ରାଣ୍ଟ କିଏ ଗ୍ରହଣ କରିବେ ? ୬) ବେସରକାରୀ ସମିତିର ସଂଯୋଜକ କିଏ ହେବେ ? ୭) ବଂଶୀଧର ଉପାଧ୍ୟାୟଙ୍କର ପତ୍ରର ଉତ୍ତର ୮) ମୋର ଗସ୍ତପ୍ରୋଗ୍ରାମ୍ କରିବା ୯) ନିମାଇଁବାବୁଙ୍କର ପତ୍ରର ଉତ୍ତର - ସଚ୍ଚିବାବୁଙ୍କ ସହ ୧୦) ରେମୁଣା-ଜମିର ବଣ୍ଟନ ୧୧) ଜୀପ୍‌ବିକ୍ରିର କାଗଜପତ୍ର କରିଦେବା ୧୨) ସୁନାମଣି ମାଉସୀଙ୍କୁ ଚଷମାପାଇଁ ଟଙ୍କା ଦେବା ୧୩) ଶରତ୍‌ବାବୁ

ଡାକ୍ତରଙ୍କୁ ମୁଁ ନିଜେ ଦେଖାକରିବା ୧୪) ମୋର ଦାନ୍ତ ଉପାଡ଼ିବା ଓ ବନ୍ଧାଇବା ୧୫) ମୋର ଫାଉଣ୍ଟେନ୍ ପେନ୍ ମରାମତ କରାଇବା ୧୬) ମୋର ଜଳଖିଆ ବୋର ବ୍ୟାଗ ତିଆରି କରାଇବା ୧୭) ସମ୍ମିଳନୀ ଯିବା ଲୋକଙ୍କର ତାଲିକା କରାଇବା ୧୮) ବଣ୍ଟନ ରିପୋର୍ଟ ଜିଲ୍ଲାବାସୀ ଦେଖିବା ୧୯) ସନାତନ ମଲିକଙ୍କର ଟ. ୧୦ ବୃଦ୍ଧି କାହିଁକି ହେଲା ? ସନାତନ ମଲ୍ଲିକଙ୍କ ଆଚରଣ ? ୨୦) ବିଚିତ୍ରାନନ୍ଦ ବାରମ୍ୱାର ଅନୁପସ୍ଥିତ ରହିବା ଅନୁଚିତ । ୨୧) ଶ୍ରୀଯୁକ୍ତ ଗୋପବାବୁଙ୍କ ଠାରୁ ପରିପତ୍ର ଲେଖାଇ ନେବା - ନିର୍ବାଚନ କଥା, ବଣ୍ଟନ ପୋଷ୍ଟର । ୨୨) ସେଗୁଡ଼ିକର କାର୍ଯ୍ୟାନୁଷ୍ଠାନ କରିବା ୨୩) ରାଷ୍ଟ୍ରଭାଷା ପ୍ରେସରୁ ବୁଝିବା ୨୪) ବିଭୂତି କାନୁନ୍‌ଗୋଙ୍କଠାରୁ ବାବାଙ୍କର ଛବି ଆଣିବା ୨୫) ନିମଚଉଡ଼ିରୁ timepiece ଆଣିବା । ୨୬) ସାଇକେଲର ରେଞ୍ଜ୍ କିଣିବା ୨୭) ସେପ୍ଟେମ୍ବର ମାସରେ କୁଜେନ୍ଦ୍ରୀକୁ ଅତିଥିମାନଙ୍କୁ ଜଗନ୍ନାଥପୁରରେ ଛାଡ଼ିବାର ଖର୍ଚ୍ଚ ଭାସ୍କର ପଣ୍ଡା ଓ ମଧୁସୂଦନ ଶବରଙ୍କର ଟ. ୫/- କଟିଯାଇଛି । ମଧୁସୂଦନ ତାହା ପାଇବେ ।

୩୧.୩.୧୯୫୬

ଅମ୍ବାଦଳାରୁ ବୁଲଗାଁ-ଗୌଡ଼ଗାଁକୁ ଯାତ୍ରା । ସକାଳ ଓଳି ୫/୬ ଖଣ୍ଡ ଚିଠି ଲେଖିଲି । ମଧ୍ୟାହ୍ନ ସମୟର ଟେନ୍‌ରେ ଅମ୍ବାଦଳାରୁ ଲାଞ୍ଜିଗଡ଼ ରୋଡ୍‌କୁ ୯ ମାଇଲ ବ୍ୟାସଜୀ, ମହମ୍ମଦ ମୋସୀନ, ବଂଶୀଧର ନାୟକଙ୍କ ସହିତ ମୁଁ ଗଲି । ସେଠାରେ ଆମ୍ଭେମାନେ ଖରାରେ ଚାଲି କରି ୫ ମାଇଲ ଦୂର କ୍ଷୀରସାଉଟା (ମଗଧୀ ଗୌଡ଼ଙ୍କର ଗାଁ, ହରିଜନ ମଧ୍ୟ ଅଛନ୍ତି), ଧାନ ବାହେଲ, ଜାମପଦର, ଉମେରୁ (କନ୍ଧ ଗାଁ), ଉମେରୁ ଗଉଡ଼ଗାଁ, କାତାମେଣା, କୁତୁବାରୁ, ବୁଲଗାଁ-ଗୋଡ଼ଗାଁ ଗଲୁ । ଲାଞ୍ଜିଗଡ଼ ଷ୍ଟେସନରୁ ମୋଟରେ ପ୍ରାୟ ୯ ମାଇଲ ହେବ । ପ୍ରଥମୋକ୍ତ ୨ଟି ଗାଁ କଳାହାଣ୍ଡି ଜିଲ୍ଲାର ଅନ୍ତର୍ଗତ ଓ ତତ୍‌ପରେ କୋରାପୁଟ ଜିଲ୍ଲାର ଘାଟିମୁଠା ଅଞ୍ଚଳ ପଡ଼ିଲା । ରାତିରେ ବୁଲଗାଁ ଗୌଡ଼ଗାଁରେ ଲୋକେ ରାନ୍ଧିବାକୁ ଘରେ ବା ପିଣ୍ଡାରେ ଜାଗା ନ ଦେବାରୁ ଓ ରନ୍ଧନପାତ୍ରର ଅଭାବରୁ, ଆମ୍ଭେମାନେ ସଙ୍ଗରେ ଡାଲିଚାଉଳ ନେଇଥିଲେ ହେଁ, ଉପବାସ ରହିଲୁ । ଏ ଗାଁରେ ବ୍ୟକ୍ତିଗତ ଭାବରେ କେତେ ଜଣ ଭୂମିଦାନ କରିଛନ୍ତି ମାତ୍ର ଭୂଦାନକର୍ମୀଙ୍କ ସାଙ୍ଗରେ ସଦ୍‌ଭାବର ଅଭାବରୁ ଆଗରୁ ମୁଖ୍ୟ ଲୋକେ ବିରକ୍ତ ଅଛନ୍ତି, ପରେ ମୁଁ ଜାଣିଲି ।

ଆଜି ସନ୍ଧ୍ୟାବେଳେ ବଜାରରେ ଆଙ୍ଗୁଳିରେ ଦାନ୍ତ ଘଷୁ ଘଷୁ ମୋର ତଳପାଟିର ସାମନାଦାନ୍ତ ଗୋଟିଏ ପଡ଼ିଗଲା । ଗତ ବର୍ଷେ ହେଲା ତାହା ହଲୁଥିଲା । ଏ ପର୍ଯ୍ୟନ୍ତ ମୋର ମୋଟରେ ୧୧ଟା ଦାନ୍ତ ପଡ଼ିଗଲାଣି । ପ୍ରଥମେ ୧୯୩୯ ମସିହାରେ ମୋର ଉପରପାଟିର ସାମନାଦାନ୍ତଟାଏ ପାଇରିଆ ଦୋଷରୁ କେନ୍ଦ୍ରାପଡ଼ା ଡାକ୍ତରଖାନାରେ ଉପାଡ଼ି ଦେଇଥିଲି । ପରେ,

୧୯୪୭ - ୫୦ ମସିହାରେ କ୍ରମେ କ୍ରମେ ଅନ୍ୟ ୧୦ଟା ଦାନ୍ତ ଡାକ୍ତର ଓ ଦାନ୍ତ ଚିକିତ୍ସକମାନଙ୍କ ଦ୍ୱାରା ଉପାଡ଼ି ଦେଇଥିଲି ।

୧ ଏପ୍ରିଲ, ୧୯୫୬

ସକାଳେ ବୁଲଗାଁ-ଗୌଡ଼ଗାଁରୁ ଚାଲିକରି ସାନ ସାନ ପାହାଡ଼ ଘାଟି ଚଢ଼ି ଓହ୍ଲାଇ, ଆମ୍ଭେମାନେ ଉତ୍‌କୁପାରୁ, ପାଟଣା, ରାୟକଟା ଦେଇ ଜାଡ଼ିଗାଁ (ଏବର ବନ୍ଦୋବସ୍ତରେ ନାମ ଝାଡ଼ପଦର) ରେ ସକାଳ ଟ. ୭.୨୦ରେ ପହଞ୍ଚିଲୁ । ୪ ମାଇଲ ବାଟ । ଏଗୁଡ଼ିକ କନ୍ଧମାନଙ୍କର ବସତି । ଗାଁଟାରେ ୫/୬ ଟି ମାତ୍ର ପରିବାର । ପୂର୍ବେ ଜଣେ ମାତ୍ର କନ୍ଧ ଆସି ଗାଁଟିରେ ରହିଥିଲେ । କ୍ରମେ ତାଙ୍କର ପିଲା, ପୁଅପୁତୁରା ଆଦି ୫ ବା ୬ ଘର ଅଲଗା ହୋଇ ଯାଇଛନ୍ତି । ପ୍ରତି ଗାଁରେ ୨ ଜଣ ଲେଖାଁଏ କନ୍ଧ ଲୋକ ଆମ ସହିତ ଆସି, ବାଟ ଦେଖାଇ, ପରବର୍ତ୍ତୀ ଗାଁରେ ଖୁସିରେ ଛାଡ଼ି ଦେଇଗଲେ । ପାହାଡ଼କୁ ପାହାଡ଼ ଲାଗିଛି । ବେଶ୍ ପତରା ସାଳ ଜଙ୍ଗଲ ଓ ବାଉଁଶ ବୁଦା ଅଛି । ଏବେ ସେଗୁଡ଼ିକ ଖଣ୍ଡେ ଖଣ୍ଡେ କନ୍ଧମାନେ କାଟି 'ପଡୁ-ଚାଷ' କରିବାକୁ ସଫା କରୁଛନ୍ତି । ଏଣେ ମଧ୍ୟେ ମଧ୍ୟେ ବେଶ୍ ଝରଣା ଅଛି, ସାନ ସାନ କିଆରୀରେ ଧାନ ତଳି ପଡ଼ିଛି । ଏହାକୁ ''ଆମ୍ବ-ଧାନ'' କହୁଛନ୍ତି । ଜାଡ଼ିଗାଁରେ ୬ଟି ପରିବାରରେ ଜମି ବିତରିତ ହେଲା ।

ଦିନ ଗୋଟାକ ବେଳେ ବଂଶୀବାବୁ ଓ ମୁଁ ପିପଡ଼ା ଓ ମୂଷା ଜାନୀ (ଦୁଇ ଜଣ କନ୍ଧ)ଙ୍କର ମାର୍ଗଦର୍ଶନରେ ବାଙ୍ଗା ଘାଟି (ପାହାଡ଼) ପାରି ହୋଇ, ସାପଙ୍ଗାରୁ (ଗୋଟିଏ ଗଉଡ଼ ଲୋକ ଥିଲା, ସେ ଏ ଗାଁ ଛାଡ଼ି ଅନ୍ୟତ୍ର ଚାଲିଯାଇଛି), କୁଟିଙ୍ଗପଦର, ସାଙ୍ଗପଲଣା, କୁକୁଡ଼ାବାଲି ଗାଁ ଦେଇ, ଆମ୍ଭେମାନେ ୨ ଘଣ୍ଟାରେ ଅମ୍ବାଦଳାରେ ପହଞ୍ଚିଲୁ । ବାଟ ୬ ମାଇଲ ହେବ ।

ଆଜି ଖରାବେଳେ ଜାଡ଼ିଗାଁରୁ ବାଙ୍ଗାଘାଟି ପାହାଡ଼ (ପ୍ରାୟ ୩୦୦ ଫୁଟ ଉଚ୍ଚ ହେବ) ଚଢିବା ବେଳକୁ ଏକପ୍ରକାରେ ସିଧା ଚଢ଼ିବାକୁ ହେଲା । ଆମ୍ଭମାନଙ୍କର ନିଶ୍ୱାସ ଜୋରରେ ଚାଲିଲା । ଏହା ଅତି ସ୍ୱାଭାବିକ ଅଟେ । ସେହିପରି ସିଧା ଓହ୍ଲାଇବାକୁ ପଡ଼ିଲା । ମୋର ଓ ବଂଶୀଧର ନାୟକଙ୍କର ପାହାଡ଼ ଚଢ଼ିବା ଓ ଓହ୍ଲାଇବାର ଅଭ୍ୟାସ ନଥିବାରୁ, ଓହ୍ଲାଇବା ବେଳେ ଗୋଡ଼ ଖୁବ୍ ଚିପି ଚିପି ସତର୍କଭାବରେ ପକାଇଲୁ । ପ୍ରାୟ ୨/୩ ଅଂଶ ଓହ୍ଲାଇବା ବେଳକୁ ଆମ୍ଭମାନଙ୍କର ଗୋଡ଼ ଥରିବାକୁ ଲାଗିଲା । ହିଂସ୍ର ଜୀବଜନ୍ତୁର ଭୟ ବା ଅନ୍ୟ ଭୟ କିଛି ନଥାଏ, ମନରେ ତ କୌଣସି ଉଦ୍‌ବେଗ, ଭୟ ତିଳେ ମାତ୍ର ନ ଥାଏ । ମାତ୍ର ଏହି ଗୋଡ଼ ଥରିବା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଏହା ପୁରା physical nervousness । ଆମକୁ ଲାଗିଲା ଯେ ଆମେ ବିଶ୍ରାମ ନ ନେଲେ, ଆଉ ଚାଲିପାରିବୁ ନାହିଁ । ୫/୧୦ ମିନିଟ ତଳେ ସମତଳ ଅଂଶରେ ବସିଲୁ । ସମତଳ ଅଂଶରେ ଚାଲିବାରେ କ୍ରମେ ଏହି ଥରିବା ଛାଡ଼ିଗଲା ।

ଓଡ଼ିଶାରେ ଯଥେଷ୍ଟ ରଚନାତ୍ମକ, ଆଗରୁ ଟ୍ରେନିଂପ୍ରାପ୍ତ କର୍ମୀ ନଥିବାରୁ, ସେମାନେ ଭୂଦାନ କାର୍ଯ୍ୟରେ ଲାଗିପାରିଲେ ନାହିଁ । ଆଗରୁ କାର୍ଯ୍ୟରେ ଅଭିନିବେଶ ନ ଥିବାରୁ, ଲଗାତାର କାର୍ଯ୍ୟ କରିବାର ଅଭ୍ୟାସ ନଥିବାରୁ ଭୂଦାନ କାର୍ଯ୍ୟରେ ଆମେ ଅନେକ କର୍ମୀ ଆଶାନୁରୂପ ଦକ୍ଷତା ଦେଖାଇ ପାରୁନାହାନ୍ତି । ବାହାରର ପରିସ୍ଥିତି, ବାୟୁମଣ୍ଡଳ ମଧ୍ୟ ଏପରି ଅଭିନିବେଶ – ଯେ ଯେଉଁ କ୍ଷେତ୍ରରେ କାର୍ଯ୍ୟ କରୁଥାନ୍ତୁ – କରାଇ ଦେଉନାହିଁ । ଅନ୍ୟକୁ ଦୋଷ ନ ଦେଇ, ନିଜେ ଧୈର୍ଯ୍ୟ ଓ ବୁଦ୍ଧିମତ୍ତା ସହକାରେ କାର୍ଯ୍ୟ କରିଯିବା ଆମ୍ଭମାନଙ୍କର ପ୍ରତ୍ୟେକଙ୍କର ଉଚିତ ଅଟେ । ଏହା ମୁଁ ଶ୍ରୀ ବଂଶୀଧର ନାୟକ (ଚମଡ଼ାକାର୍ଯ୍ୟରେ ବିଶେଷଜ୍ଞ, ପୂର୍ବେ ଯେ ରାମଚନ୍ଦ୍ରପୁର ଅଞ୍ଚଳରେ ମୌଳିକ ଶିକ୍ଷାର ଶିକ୍ଷକ ଥିଲେ)ଙ୍କୁ କଥାପ୍ରସଙ୍ଗରେ କହିଲି ।

ଅମ୍ବାଦଳାରେ ଥିବା ସେଟ୍‌ଲମେଣ୍ଟ ଅଫିସର୍ (ଘର ନୀଳଗିରିର ପାଟପୁର ଗ୍ରାମରେ) ମୋତେ ଅମ୍ବାଦଳା ଭୂଦାନ ଅଫିସରେ ସନ୍ଧ୍ୟାରେ ଦେଖା କଲେ । କଥାବାର୍ତ୍ତାରେ ଏହି ଭୂଦାନ ବିଚାରକୁ ସେ ଭଲ ପାଆନ୍ତି ବୋଲି ଦେଖିଲି । ଟ୍ରେନ୍‌ରେ ରାୟଗଡ଼ାକୁ ଏକା ଡ଼ବାରେ ୩ୟ ଶ୍ରେଣୀରେ ଆସିଲୁ । ତାଙ୍କର ଅଭିଜ୍ଞତା, ଆଦିବାସୀମାନଙ୍କୁ ସମବାୟ ସୂତ୍ରରେ ଜିନିଷପତ୍ର ଯୋଗାଇଦେବା ଓ ସେମାନଙ୍କର ଉତ୍ପନ୍ନ ବଳକା ପଦାର୍ଥକୁ କିଣି ନେବା, ଆଦିର ପ୍ରସ୍ତାବ ଦେଲେ । ଭୂଦାନର ନବନିର୍ମାଣ କର୍ମୀଙ୍କ ଉପରେ ପୂରା ଆସ୍ଥା ରଖି, ଗୋଟିଏ ଗୋଟିଏ ଅଞ୍ଚଳର ବିକାଶମୂଳକ ସମସ୍ତ କାର୍ଯ୍ୟ ସରକାର କର୍ମୀମାନଙ୍କ ଉପରେ ନ୍ୟସ୍ତ କରୁ ଓ ଦକ୍ଷ, ବୁଝିବାସୁଝିବା ଲୋକଙ୍କୁ ସେଥିରେ ନିଯୁକ୍ତ କରାଯାଉ, ଜବାହାରଲାଲଙ୍କ ପରେ ଦେଶରେ ବିପ୍ଳବ ହୋଇଯିବ, ଭାଗଚାଷ ଆଇନ ଦ୍ୱାରା ମଧ୍ୟବିତ୍ତ ଚାକିରିଆ ଲୋକଙ୍କର ଆର୍ଥିକ ଅବସ୍ଥା ଦିନକୁ ଦିନ ମନ୍ଦ ହେଉଛି, ଆଦି ସେ ବେଶ୍ ବୁଝାଇ କହିଲେ ।

୨.୪.୧୯୫୬

ରାୟଗଡ଼ାରେ ଭୂଦାନ ଅଫିସରେ । ଏଠାରେ ଅଖିଳ ଭାରତ ସର୍ବସେବା ସଂଘର ଶାଖା ଅଫିସ ମଧ୍ୟ ଏବେ ଅଛି ଓ ସଂଘର ସଂପାଦକ ଶ୍ରୀ ଅଣ୍ଣାସାହେବ ସହସ୍ରବୁଦ୍ଧେ କୋରାପୁଟ ଜିଲ୍ଲାର ''ନବନିର୍ମାଣ'' କାର୍ଯ୍ୟର ଭାର ନେଇ ଏଠାରେ ୫ ମାସ ହେଲା ରହୁଛନ୍ତି । ଶ୍ରୀ ଅଲେଖ ପାତ୍ର, ବ୍ରଜସୁନ୍ଦର ଦାସ, ରାଧାରତନ ଦାସ, ପ୍ରଭୃତିଙ୍କ ସହ କଥାବାର୍ତ୍ତା କଲି । ଢ଼େଙ୍କାନାଳ ଜିଲ୍ଲାର ଭୂଦାନ କର୍ମୀଙ୍କୁ ଅନ୍ୟ ଜିଲ୍ଲାରୁ କେହି ଦକ୍ଷ ଲୋକ ଯାଇ କାର୍ଯ୍ୟରେ ଲଗାଇବା ଉଚିତ ବୋଲି ଶ୍ରୀ ବ୍ରଜବାବୁ କହିଲେ ।

ମାର୍ଚ୍ଚ ମାସର କାର୍ଯ୍ୟ ବିବରଣୀ ଲେଖିଲି –

୧) ଅଫିସ କାର୍ଯ୍ୟ ୬ ଦିନ + ପୂର୍ବେ ୫୧୪ ଦିନ = ୫୨୦ ଦିନ

୨) ପ୍ରାପ୍ତି, ବିତରଣ ୧୪ ଦିନ + ପୂର୍ବେ ୩୪୬ ଦିନ = ୩୬୦ ଦିନ

୩) ଯାତ୍ରା ୮ ଦିନ + ୧୮୭ ଦିନ = ୧୯୫ ଦିନ

୪) ସମିତି ବୈଠକ, ଅନ୍ୟାନ୍ୟ ୩ ଦିନ +୨୬୬ ଦିନ = ୨୬୯ ଦିନ

୫) ଅସୁସ୍ଥତା, ଛୁଟି - + ୬୨ ଦିନ = ୬୨ ଦିନ

ମୋଟ : ୩୧ ଦିନ + ୧୩୭୫ ଦିନ = ୧୪୦୬ ଦିନ

(କ) ପାଦରେ ୧୪୨ + ସାଇକେଲରେ ୧୦୬ + ୪୦୧୭ =୪୨୬୫ ମାଇଲ

(ଖ) ରିକ୍ସା, ମୋଟରରେ ୨୪୩ ମାଇଲ + ୭୬୪୩ ମାଇଲ = ୭୮୮୬ ମାଇଲ

(ଗ) ଟ୍ରେନ୍‌ରେ ୧୬୩ ମାଇଲ + ୨୦୪୧୯ ମାଇଲ = ୨୦,୫୮୨ ମାଇଲ

(ଘ) ନୌକାରେ - + ୧୭୭ = ୧୭୭ ମାଇଲ

(ଙ) ମୋଟରେ ୬୫୪ ମାଇଲ + ୩୨୨୫୬ ମାଇଲ = ୩୨,୯୧୦ ମାଇଲ

ମୁଁ ତା ୨୬.୫.୫୨ ଠାରୁ ତା ୩୧.୩.୫୬ ସୁଦ୍ଧା ବୁଲିଅଛି ।

ଉପରଓଳି (୨.୪.୫୬) ରାୟଗଡ଼ାରେ ସର୍ବସେବା ସଂଘର ସଂପାଦକ ଶ୍ରୀଯୁକ୍ତ ଅର୍ଣ୍ଣାସାହେବଙ୍କ ସହିତ ଦେଖାକଲି । ସେହି କହିଲେ : - (୧) ନୂଆ ଜୀପ୍‌କାର ଓ ନୂଆ ସାଇକେଲଗୁଡ଼ିକ ଶୀଘ୍ର ପଠାଇବାକୁ (୨) କୋରାପୁଟରେ ଗ୍ରାମଦାନ ବିଷୟରେ ପୁସ୍ତିକା ଶ୍ରୀ ବୁଲୁବାବୁ ଶୀଘ୍ର ଲେଖନ୍ତୁ । ଏପରି ପୁସ୍ତିକା ସର୍ବୋଦୟ ସମ୍ମିଳନୀ ପୂର୍ବରୁ ପ୍ରକାଶିତ ହେବାକୁ ବିନୋବାଜୀ ଚାହାଁନ୍ତି । (୩) ପ୍ରଦେଶର ସବୁ ହାଲଚାଲ ଜାଣିଥିବା ଜଣେ ଦକ୍ଷ ଲୋକ ରାୟଗଡ଼ାରେ ରହିବା ଦରକାର । (୪) ଗ୍ରାମଦାନ ଓ ନବନିର୍ମାଣ କାର୍ଯ୍ୟର କେତେକ ଫଟୋ ଦରକାର । ମାନଚିତ୍ର, ତଥ୍ୟ, ଆଦି ମଧ୍ୟ ଦରକାର । (୫) ବିନୋବାଜୀ ଆଜିକାଲି ଘଣ୍ଟାରେ ୨ ମାଇଲ ମାତ୍ର ଚାଲିପାରୁଛନ୍ତି, ଆଗେ ୪ ମାଇଲ ଚାଲୁଥିଲେ । ଦେହର ଶକ୍ତି କମୁଛି । (୬) ଶରତ୍ ମହାରଣା ପ୍ରତି ମାସରେ ୪/୫ ଦିନ କୋରାପୁଟ ଜିଲ୍ଲାକୁ ଯିବା ଓ ଅର୍ଣ୍ଣାସାହେବଙ୍କ ସହ ବିଚାର-ବିନିମୟ କରିବା ଦରକାର ।

ସକାଳେ ସର୍ବ ସେବା ସଂଘର ଅଫିସ-ସଂଲଗ୍ନ ଭୋଜନାଳୟରେ ମୁଁ ଜଳଖିଆ ଓ ମଧ୍ୟାହ୍ନଭୋଜନ କଲି । ସନ୍ଧ୍ୟାରେ ନବଜୀବନ ମଣ୍ଡଳ ଅଫିସରେ ଶ୍ରୀ ବ୍ରଜସୁନ୍ଦର ଦାସଙ୍କର ଆତିଥ୍ୟରେ ଖାଇଲି ଓ ସେଠାରେ ଶୋଇଲି । ରାତି ୩ଟା ବେଳର ଟ୍ରେନ୍‌ରେ ରାୟଗଡ଼ାରୁ କଟକ ଅଭିମୁଖେ ବାହାରିଲି ।

୬.୪.୧୯୫୬

ଜାତୀୟ ସପ୍ତାହ ଆରମ୍ଭ । ଭାରତବର୍ଷ ଇଂରେଜ ଶାସନରୁ ତା ୧୫.୮.୧୯୪୭

ଠାରୁ ମୁକ୍ତ ହେବାରୁ, ଏହି ଜାତୀୟ ସପ୍ତାହ ପାଳନରେ ଆଉ କେହି ମନୋଯୋଗୀ ନୁହନ୍ତି । ଆମ୍ଭେମାନେ ମଧ୍ୟ ପୂର୍ବପରି ମନେ ପକାଉନାହୁଁ ।

ଆଜି ଦିନଯାକ ମୁଁ ଫେବ୍ରୁଆରୀ ମାସର ଭାଉଚରଗୁଡ଼ିକ ଯାଞ୍ଚ କଲି ଓ ସ୍ୱାକ୍ଷର କଲି । ପନ୍ଦ ତାରିଖ (ଜାନୁଆରୀ ୧୨ ରୁ ଫେବ୍ରୁଆରୀ ୧୭ ପର୍ଯ୍ୟନ୍ତ ମୁଁ ଗସ୍ତରେ ଥିବାରୁ ଏହି ଯାଞ୍ଚକାର୍ଯ୍ୟ ହୋଇ ପାରି ନଥିଲା) ପକାଇ ସ୍ୱାକ୍ଷର କଲି ।

ଗ୍ରାମସେବକ ପ୍ରେସ୍‌ରେ ସାବଧାନତା ସହକାରେ ଓ ସୁନ୍ଦର ରୂପେ ଛାପାକାର୍ଯ୍ୟ କର୍ମୀମାନେ କରୁ ନଥିବାରୁ, ଶ୍ରୀ ବୁଲୁବାବୁ ତ୍ରୁଟି ଦେଖି ବଡ଼ ଦୁଃଖିତ ହେଲେ । ଦେଶରେ, ଆମ୍ଭମାନଙ୍କ ଭିତରେ ସୁଦ୍ଧା, ଏତେ ଶ୍ରମକାତରତା, ଅସାବଧାନତାରେ କଣ ଯେ ଭଲ କାର୍ଯ୍ୟ ହୋଇପାରିବ, ଭାବି ହୁଏ ନାହିଁ ।

ଶ୍ରୀ ହରେକୃଷ୍ଣ ବିଶ୍ୱାଳ (କଟକ ଜିଲ୍ଲାର ଭୂଦାନ ସଂଯୋଜକ)ଙ୍କ ସହ ଶ୍ରୀ ଚନ୍ଦ୍ରମଣି ନାଥ କଟକ ଜିଲ୍ଲାରେ ବର୍ତ୍ତମାନ ପରି ଥାଇ ଭୂମିବିତରଣ କାର୍ଯ୍ୟ କରନ୍ତୁ ଏବଂ ଶ୍ରୀ ଗୟାଧର ପରିଡ଼ା କୋରାପୁଟ ଜିଲ୍ଲାରୁ କଟକ ଜିଲ୍ଲାକୁ ଶୀଘ୍ର ଆସନ୍ତୁ ବୋଲି ମୁଁ ଆଲୋଚନା କଲି, ସିଦ୍ଧାନ୍ତ ରତନଙ୍କୁ ଲେଖିଦେଲି । ଶ୍ରୀଯୁକ୍ତ ଗୋପବାବୁଙ୍କର ପୂର୍ବ ସୂଚନା କ୍ରମେ ମୁଁ ଏହି ସିଦ୍ଧାନ୍ତ ଗ୍ରହଣ କଲି । କଟକ ଆର୍.ଏମ୍.ଏସ୍.ରେ ନିଜେ ମୁଁ ଏ ବିଷୟରେ ଚିଠି ରାତି ୧୦ଟାରେ ପକାଇ ଦେଇଆସିଲି ।

ଆଜି ସକାଳେ ରାମଚନ୍ଦ୍ରପୁର ମୌଳିକ ଶିକ୍ଷାନୁଷ୍ଠାନରେ ପ୍ରଧାନ ଗୁରୁଜୀ ଶ୍ରୀ ଭୁବନାନନ୍ଦ ସ୍ୱାଇଁ ଓ ଅନୁଗୋଳ ଖଲରି ମୌଳିକ କେନ୍ଦ୍ରର ପ୍ରଧାନ ଗୁରୁଜୀ ଶ୍ରୀ ସର୍ବେଶ୍ୱର ନାୟକ (ଘର ସିଂହପୁର, ବିଞ୍ଝାରପୁର ଥାନା, କଟକ ଜିଲ୍ଲା)ଙ୍କ ସହ ମୌଳିକ ସ୍କୁଲରେ ସରକାରଙ୍କର ପରୀକ୍ଷା ଉପରେ ଅତ୍ୟଧିକ ଜୋରରେ ଅପକାରିତା ସମ୍ବନ୍ଧରେ ଶ୍ରୀ ବୁଲୁବାବୁ ଓ ମୁଁ ମତ ଦେଲୁ । ଦୁଇ ଘଣ୍ଟା ଖଣ୍ଡେ ଆମେ ୪ ଜଣ ଚର୍ଚ୍ଚା କଲୁ ।

କାଲି ବାଲେଶ୍ୱର ଫକୀରମୋହନ କଲେଜର ଗଣିତ ଅଧ୍ୟାପକ ଶ୍ରୀ ଭୁବନାନନ୍ଦ ରାୟ ଏଠାକୁ ଆସିଥିଲେ । ଭୂଦାନ ବିଚାରର ସେ ଜଣେ ବଡ଼ ସମର୍ଥକ । ସେହି କାର୍ଯ୍ୟରେ ସେ ସାକ୍ଷାତ ଅଭିଜ୍ଞତା ଅର୍ଜନ କରି ନଥିଲେ ହେଁ, ବିଚାର ବଳରେ ସେ ଅନେକ ସୁନ୍ଦର ଆଲୋଚନା କଲେ । ସମଗ୍ର ଗ୍ରାମଦାନ ଗାଁ ଗୁଡ଼ିକରେ ମୌଳିକ ଶିକ୍ଷା ଚାଲୁ, ରଚନାତ୍ମକ କର୍ମୀ ସମସ୍ତେ ଭୂଦାନରେ ଲାଗିଯାନ୍ତୁ, ଭୂଦାନ, ଗ୍ରାମୋଦ୍ୟୋଗ, ମୌଳିକ ଶିକ୍ଷା ଏକତ୍ର ନ ଚାଲିଲେ କୌଣସି ଗୋଟିଏ ତିଷ୍ଠିବ ନାହିଁ କିମ୍ବା ଦେଶ ପ୍ରକୃତରେ ଆଗେଇବ ନାହିଁ, ଆଦି ସେ ବଡ଼ ଆଗ୍ରହରେ ପ୍ରକାଶ କଲେ । ଏ ସବୁ ନୂଆ କଥା ନୁହେଁ । ମାତ୍ର ଠିକ୍ ବିପରୀତ ପରିସ୍ଥିତିରେ ସେ ରହି, ଏହାକୁ ଉପଲବ୍ଧି କରୁଛନ୍ତି – ଏହାହିଁ ଆଶାର କଥା । ସେ ସଂପତ୍ତିଦାନ ଯଜ୍ଞକୁ ଦାନ କରୁଛନ୍ତି ।

୭.୪.୧୯୫୬

ଫେବୃଆରୀ ମାସର କେତେକ ବାକୀ ଥିବା ଭାଉଚର ଯାଞ୍ଚ କଲି । ଉତ୍ତର ବାଲେଶ୍ୱରର ବାସିନ୍ଦା ଶ୍ରୀ ରାମକୃଷ୍ଣ ଜେନାଙ୍କର ପୁଅ ମୃତ୍ୟୁଞ୍ଜୟ ଜେନା, ବି.ଏ. ଆଜିକାଲି ବାଲେଶ୍ୱର ଜିଲ୍ଲାର ସମଗ୍ର-ଗ୍ରାମଦାନ ଅଞ୍ଚଳରେ ନବନିର୍ମାଣ କାର୍ଯ୍ୟ କରୁଛନ୍ତି । ସେ କଟକରେ ମୋତେ ଦେଖା କଲେ । ନିମାଇଁଚରଣ ସାହୁ ଓ ସୁଧାଂଶୁ ଶେଖର ଦାସଙ୍କ ମଧ୍ୟରେ ନିଜ ନିଜର ଅହମିକା ଗୁଣ ଯୋଗୁଁ ମନୋମାଳିନ୍ୟ କଥା କହିଲେ । ସେ ଏଥିରେ ସୁଧାଂଶୁ ବାବୁଙ୍କର ବେଶୀ ଦୋଷ ଦେଖୁଛନ୍ତି ଏବଂ ତାଙ୍କର ସମର୍ଥନ ନ ନେଇ ଯେ କୌଣସି ଲୋକ ସେ ଅଞ୍ଚଳରେ କିଛି କାର୍ଯ୍ୟ କରିବା କଠିନ ଏବଂ ସୁଧାଂଶୁବାବୁ ପ୍ରତିହିଂସାପରାୟଣ ଅଟନ୍ତି ଓ ସରଳମନା ନୁହନ୍ତି ବୋଲି ମୃତ୍ୟୁଞ୍ଜୟ ବାବୁ କହିଲେ । ଏପରି ମନୋବୃତ୍ତି ଆମ୍ଭେମାନେ ରଖିଲେ, ଭୂଦାନ ଓ ନବନିର୍ମାଣ କାର୍ଯ୍ୟ ହେବା ଅସମ୍ଭବ ଏବଂ ନିଜ ନିଜର ଦୋଷତ୍ରୁଟି ନିଜେ ଆମେ ଦେଖିବା ଓ ଅନ୍ୟର ସେଗୁଡ଼ିକ କ୍ଷମା କରି, ମିଳିମିଶି କାର୍ଯ୍ୟ କରିଯିବାର ଔଚିତ୍ୟକୁ ଆମେ ଦୁହେଁ ଉପଲବ୍ଧି କଲୁ । ମାତ୍ର ଲୋକ ବୁଝୁଛନ୍ତି କି ?

୮.୪.୧୯୫୬

୧.୩.୫୫ ଠାରୁ ତା ୮.୪. ୫୬ ରିଖ ପର୍ଯ୍ୟନ୍ତ ମୋର ନିଜର ହିସାବ ଖାତା ଦେଖି ଭୂଦାନ ସମିତି ସହ ଏବଂ ଅନ୍ୟ ମାନଙ୍କ ସହ ମୋର ଦେଣନେଣର ବାରିଜା କଲି । ରାତିରେ ମାମୁଲି ଅଫିସ-ଚିଠିପତ୍ର ଲେଖିଲି । ଶ୍ରୀଯୁକ୍ତ ନବବାବୁ ଥୋଡ଼ିଆସାହିକୁ ଆସିଥିଲେ । ଆଜିକାଲି ମଝେ ମଝେ ତାଙ୍କର ମୁହଁ ଫୁଲୁଅଛି ।

୯.୪.୧୯୫୬

ପୂର୍ବ ଦିନ ପରି ଆଜି ମଧ୍ୟ ମୋର ହିସାବ କଲି । ଏ ଦୁଇ ଦିନ ହେଲା ମୋର ଆଗ ଉପର ଦାନ୍ତ ଓ ଡାହାଣ ପାଟିର ଉପର କଳଦାନ୍ତ ୨ଟା ଟିକିଏ ଧରିଛି । ମିଶ୍ରିପାଣି ଦୈନିକ ଖାଲିପପେଟ ଥିବା ବେଳେ ୩ ଥର ଲେଖାଁଏ ପିଉଛି । କାଗଜୀ ଲେମ୍ବୁ ଗୋଟିକୁ ୧ ଅଣା; ବେଶୀ ଦାମ୍ ଯୋଗୁଁ ମୁଁ ପଇସାକୁ ଡରି ତାହା କିଣୁନାହିଁ ।

କଟକରେ ଅଫିସରେ ଦିନ ରାତି ବସି ରହିଥିବାରୁ, ସ୍ୱାଭାବିକ ଭାବରେ ଭୋକ କମ୍ ହେଉଛି । ମୁଁ ସେହି ହେତୁ, ରାତିରେ ଖାଉନାହିଁ । ପେଟ ଗରମ ହୋଇଯାଉଛି, ତେଣୁ ଦାନ୍ତମୂଳ ଧରିଲା ବୋଲି ମୋର ଧାରଣା ହେଉଛି ।

୧୦.୪.୧୯୫୬

ଆଜି ମଧ୍ୟ ମୋର ପୁରୁଣା ହିସାବପତ୍ର କାଗଜ ଦେଖି, ଅନ୍ୟମାନଙ୍କ ସହ ଦେଣନେଣ, ଭୂଦାନ ସମିତି ସହ ଦେଣନେଣ ସ୍ଥିର କରିବାକୁ ଚେଷ୍ଟା କଲି ।

ସନ୍ଧ୍ୟାଠାରୁ ଅଫିସ ଚିଠି ଲେଖିଲି - ଶ୍ରୀଯୁକ୍ତ ଗୋପବାବୁଙ୍କୁ, ବଲ୍ଲଭସ୍ୱାମୀଙ୍କୁ, ସମିତିର ସଦସ୍ୟମାନଙ୍କୁ ତା ୭.୫.୫୫ରେ କୁନ୍ତରାରେ ବୈଠକ ହେବାର ନୋଟିସ ଦେଲୁ, ବିନୋବାଜୀଙ୍କର ପଦଯାତ୍ରାରେ ପ୍ରୋଗ୍ରାମର ନକଲ ଗୋପବାବୁ ଓ ନବବାବୁଙ୍କୁ ପଠାଇଲୁ, ଭୂମି-ବିତରଣର ମାସିକ ଷ୍ଟେଟ୍‌ମେଣ୍ଟ ବିନୋବାଜୀଙ୍କର ସେକ୍ରେଟାରୀଙ୍କୁ ପଠାଇଲୁ ।

୧୨.୪.୧୯୫୬

ଢ଼େଙ୍କାନାଳର ବାସିନ୍ଦା ଶ୍ରୀ ହରମୋହନ ପଟ୍ଟନାୟକ ସନ୍ଧ୍ୟାବେଳେ ଆସିଥିଲେ । ''ଗ୍ରାମସେବକ'' ପତ୍ରିକାର ଗ୍ରାହକଚାନ୍ଦା ଟ. ୫/- ମୋତେ ଦେଇଗଲେ । ଢ଼େଙ୍କାନାଳ ଜିଲ୍ଲାରେ ଭୂଦାନ କାର୍ଯ୍ୟର କଥା, ଏପ୍ରିଲ ୧୩ରୁ ତା ୧୮ ପର୍ଯ୍ୟନ୍ତ କଟକ ସହରରେ ଭୂମିକ୍ରାନ୍ତି-ସପ୍ତାହ ପାଳନର କଥା ପଡ଼ିଲା । ଗାନ୍ଧୀବାଦ କିପରି ପ୍ରକୃଷ୍ଟ ପନ୍ଥା ଓ ବିନୋବାଜୀଙ୍କର ଭୂଦାନ ଯଜ୍ଞ ଆନ୍ଦୋଳନ କିପରି ସମାଜରେ ଓ ଅର୍ଥନୈତିକ କ୍ଷେତ୍ରରେ ସମତା ଆଣୁଅଛି, ସେ ତାହାର ସମର୍ଥନ କରିଥିଲେ ।

ରାତି ୨ଟାରେ ମୁଁ କଟକ ଷ୍ଟେସନ ଗଲି, ରାୟଗଡ଼ା ଯିବା ପାଇଁ । ଶ୍ରୀ ବୃନ୍ଦାବନ ଚନ୍ଦ୍ର ଜେନା ମୋ ସହ ଷ୍ଟେସନକୁ ଯାଇ, ୫ଟା ନୂଆ ସାଇକେଲ ରାୟଗଡ଼ାକୁ ବୁକ୍ କରି ଦେଇ ଆସିଲେ ।

୧୩.୪.୧୯୫୬

୧୮୭୮ ବିକ୍ରମାବ୍ଦଃ, ଓଡ଼ିଶା ଗଜପତି ରାମଚନ୍ଦ୍ର ଦେବଙ୍କର ୧୩୬୩ ସାଲ । ରାୟଗଡ଼ାକୁ ଯାତ୍ରା । ବିଷୁବ ସଂକ୍ରାନ୍ତି । ଶୁକ୍ରବାର । ଗତକାଲି ରାତି ପାସେଞ୍ଜର ଟ୍ରେନ୍‌ରେ ମୁଁ କଟକରୁ ରାୟଗଡ଼ା ଆସିଲି । ରାତି ୧୧ ଟାରେ ରାୟଗଡ଼ାରେ ପହଞ୍ଚି, "ଠକ୍କର ଆଶ୍ରମ''ରେ ଶୋଇଲି । ଟ୍ରେନ୍‌ରେ କୌଣସି ପଢ଼ାପଢ଼ି କରିନାହିଁ । ମୁଁ ସର୍ବଦା ୩ୟ ଶ୍ରେଣୀରେ ଯାଏ, ଅନେକ ସମୟରେ ଭିଡ଼ ଥାଏ, ଲୋକେ ଅଯଥା ବଡ଼ ପାଟିରେ ନିଜ ଭିତରେ କଥାବାର୍ତ୍ତା ହେଉଥାନ୍ତି, ବିଡ଼ି, ସିଗାରେଟ ଟାଣି ଧୂଆଁ ଛାଡୁଥାନ୍ତି, ଛେପଖଙ୍କାର ଡ଼ବା ଭିତରେ ପକାଉଥାନ୍ତି । ଆଜି ବ୍ରହ୍ମପୁର, ଇଚ୍ଛାପୁର, ଆଦିରେ ବିଷୁବ ସଂକ୍ରାନ୍ତି ମେଳା ହୋଇଥିବାରୁ, ସ୍ଥାନୀୟ ଯାତ୍ରୀ (ବେଶୀ ସ୍ତ୍ରୀଲୋକ ଓ ପିଲା) ଟ୍ରେନ୍‌ରେ ଯାଉଥାନ୍ତି । ଏପରି ଅବସ୍ଥାରେ ପଢ଼ିବାକୁ ମନ ଟେକିଲା ନାହିଁ ।

୧୪.୪.୧୯୫୬

ନବଜୀବନ ମଣ୍ଡଳର କାର୍ଯ୍ୟାଳୟରେ ମୁଁ ଜଳଖିଆ କଲି । ଶ୍ରୀଯୁକ୍ତ ଅର୍ଣ୍ଣାସାହେବଙ୍କୁ ସର୍ବସେବା ସଂଘର ରାୟଗଡ଼ା ଅଫିସରେ ଦେଖା କଲି । କୋରାପୁଟ ଜିଲ୍ଲାରେ ପୁରୁଷ ଏବଂ ମହିଳା କର୍ମୀ ନବନିର୍ମାଣ କାର୍ଯ୍ୟରେ ଓ ଭୂମିଦାନ କାର୍ଯ୍ୟରେ କିଏ କିଏ ରହିବେ, ତାହାର ଏକ

ତାଲିକା କରି ସେଥିରେ କର୍ମୀଙ୍କର ପରିଚୟ ଲେଖିଦେବାକୁ ସେ ମୋତେ କହିଲେ । ଏହା ଶ୍ରୀ ରାଧାରତନ ଦାସ ଓ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ଦ୍ୱାରା ମୁଁ କରିବି ବୋଲି ତାଙ୍କୁ କହିଲି । ସମସ୍ତ କର୍ମୀ ଗୋଟିଏ ମାତ୍ର ସଂସ୍ଥା (ସର୍ବ ସେବା ସଂଘ)ରୁ ପାରିଶ୍ରମିକ ନେବେ କିମ୍ବା ବିଭିନ୍ନ ସଂସ୍ଥାରୁ ବର୍ତ୍ତମାନ ପରି ପାରିଶ୍ରମିକ ନେବେ, ସେଥିରେ ଶ୍ରୀଯୁକ୍ତା ରମାଦେବୀଙ୍କର ମତାମତ ଜାଣିବାକୁ ଅର୍ଣ୍ଣାସାହେବ ମୋତେ କହିଲେ ।

ଅର୍ଣ୍ଣାସାହେବଙ୍କର ଅନୁରୋଧରେ ମୁଁ ସଂଘର ଭୋଜନାଳୟରେ ମଧ୍ୟାହ୍ନଭୋଜନ କଲି ଏବଂ କଟକର ମକରାବାଗ ସାହି ନିବାସୀ ଇଞ୍ଜିନିୟର-କଣ୍ଟ୍ରାକ୍ଟର ଶ୍ରୀ ସାମୁଏଲ ପଣ୍ଡାଙ୍କର ବ୍ୟବସ୍ଥାରେ ଟ୍ରକ୍‌ରେ ଖରାବେଳେ ଟାଉନକୁ ଆସିଲି । ସାମୁଏଲ ବାବୁଙ୍କ ସହ ୧୯୨୮ ରେ ମୁଁ ପାଟଣା ଇଞ୍ଜିନିୟରିଂ କଲେଜରେ ପରିଚିତ ହୋଇଥିଲି । ଏହି ପ୍ରାୟ ମାସେ ହେଲା ସେ ଭୂଦାନରେ ମିଳିଥିବା ଗାଁଗୁଡ଼ିକରେ ଜଳସେଚନ ଯୋଜନା କରାଇବାକୁ ଏଠାକୁ ଆସି ଇଞ୍ଜିନିୟର ଭାବରେ ସର୍ବସେବା ସଂଘର ପରିଚାଳନାରେ କାର୍ଯ୍ୟ କରୁଅଛନ୍ତି ।

ରାତିରେ ମୁଁ ଠକ୍କର ଆଶ୍ରମରେ ରହିଲି । ନବଜୀବନ ମଣ୍ଡଳ ମେସ୍‌ରେ ରାତିରେ ଖାଇଲି ।

୧୫.ଏପ୍ରିଲ, ୧୯୫୬

କୋରାପୁଟ ଟାଉନ୍‌ରୁ ଶ୍ରୀଯୁକ୍ତ ଗୋପବାବୁ, ରମାଦେବୀ ଓ ରାଧାରତନ ଦାସ ରାୟଗଡ଼ାକୁ ଆସିଲେ । ସେମାନେ ଶ୍ରୀଯୁକ୍ତ ଅର୍ଣ୍ଣାସାହେବଙ୍କ ସହ କଥାବାର୍ତ୍ତା ହେଲେ । ବିତରଣ ପରେ ନବନିର୍ମାଣ କାର୍ଯ୍ୟରେ ଗାଁମାନଙ୍କରେ ସମବାୟ ଭଣ୍ଡାର, କୂଅ ଖୋଳାଇବା, କେଉଁ କର୍ମୀ କିପରି କାର୍ଯ୍ୟ କରୁଛନ୍ତି, ବଣ୍ଟନରେ କେତେ ସ୍ଥାନରେ କର୍ମୀଙ୍କର ଶିଥିଳତା, ଅର୍ଣ୍ଣାସହେବଙ୍କୁ ଜଣେ ଦକ୍ଷ ସାହାଯ୍ୟକାରୀ ଆମ୍ଭମାନଙ୍କ ମଧ୍ୟରୁ ଦେବା ( ଯେ ତାଙ୍କର ଏଠାରେ ଅନୁପସ୍ଥିତିବେଳେ, ଆଗରୁ ସ୍ଥିରୀକୃତ ସୂଚନାଗୁଡ଼ିକୁ କାର୍ଯ୍ୟରେ ପରିଣତ କରାଇବେ), ଆଦି କଥା ପଡ଼ିଲା । ବାଲେଶ୍ୱର ଜିଲ୍ଲାରେ ନବନିର୍ମାଣ କାର୍ଯ୍ୟରେ ଶ୍ରୀ ନିମାଇଁଚରଣ ସାହୁ ଅଛନ୍ତି । ମାତ୍ର ଶ୍ରୀ ସୁଧାଂଶୁଶେଖର ଦାସ ଓ ତାଙ୍କ ମଧ୍ୟରେ ମନୋମାଳିନ୍ୟ ଯୋଗୁଁ ସେ କାର୍ଯ୍ୟରେ ବାଧା ଘଟିଲାଣି । ନିମାଇଁବାବୁ ସେଥିରୁ ଅବ୍ୟାହତ ପାଇବାକୁ ଇସ୍ତଫା ଦେଇଥିଲେ । ଅର୍ଣ୍ଣାସାହେବ ତାଙ୍କୁ ଓ ଶ୍ରୀ ନରେନ୍ଦ୍ରନାଥ ଜେନାଙ୍କୁ ଏଠାକୁ ସେ ବିଷୟରେ ଡକାଇ ଥିଲେ । ଶ୍ରୀଯୁକ୍ତ ନନ୍ଦକିଶୋର ଦାସ (ବାଚସ୍ପତି) ତା ୨୨.୪.୫୬ରେ କୋରାପୁଟକୁ ଆସିଲେ ଏ ବିଷୟରେ ନିଷ୍ପତ୍ତି ହେବ ବୋଲି ଅର୍ଣ୍ଣାସାହେବ ସେମାନଙ୍କୁ କହିଲେ ।

ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ମୁଁ କହିଲି ଯେ ଓଡ଼ିଶାରେ ଆମର କର୍ମୀଙ୍କର ଅଭାବ ସବୁଠାରୁ ବଡ଼ ସମସ୍ୟା । ଗତ ୭ ବର୍ଷ ମଧ୍ୟରେ ଆମେ ଆଦୌ କର୍ମୀ ତିଆରି କରିନାହୁଁ ।

ଶ୍ରୀଯୁକ୍ତ ଗୋପବାବୁ ଆଜି ଆମ୍ଭମାନଙ୍କ ସହ କଥାବାର୍ତ୍ତା କରୁ କରୁ ୨ ଥର କହିଲେ, "କୋରାପୁଟ ଜିଲ୍ଲାର ଅଧିବାସୀମାନଙ୍କ ସହ ମୋର ୨୦ ବର୍ଷର ସମ୍ପର୍କର ସୁଫଳ ମୁଁ ପାଇଗଲିଣି: (୧) ଅଧିବାସୀମାନେ ବିନୋବାଙ୍କୁ ଗ୍ରାମଦାନ କରିବା ଓ ଜମିର ପୁନର୍ବଣ୍ଟନ ଦ୍ୱାରା ଆଦିବାସୀମାନଙ୍କ ମଧ୍ୟରେ ଭୂମିହୀନ ରହିବେ ନାହିଁ, ଜମିର ସମବଣ୍ଟନ ହୋଇଗଲା (୨) ସମଗ୍ର ଜିଲ୍ଲାରେ ନିଶା ନିବାରଣ ହୋଇଗଲା (ଏଣିକ ନବନିର୍ମାଣ କାର୍ଯ୍ୟ ଯାହା ହେବାର ହେବ ।) ମୁଁ ଜୁନ୍‌ଠାରୁ କୋରାପୁଟ ଜିଲ୍ଲା ଛାଡ଼ି ଯାଇପାରେ ।'' ବର୍ଷାଦିନେ କେତେ ମାସ ଶ୍ରୀଯୁକ୍ତ ଗୋପବାବୁ ବରୀରେ କଟାଇବାକୁ ଇଚ୍ଛା କରନ୍ତି ।

ଟି -୨୧୫ ରୁ ଟି-୨୨୩ ନମ୍ବର ପର୍ଯ୍ୟନ୍ତ ମୁଁ ଚିଠି ଲେଖିଲି ।

୧୬.୪.୧୯୫୬

ସକାଳ ଓଳି ଠକ୍କର ଆଶ୍ରମରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ ଶ୍ରୀ ରାଧାରତନ ଦାସ କୋରାପୁଟ ଜିଲ୍ଲାରେ ରହି ସର୍ବସେବା ସଂଘର ଅଧୀନତାରେ କାର୍ଯ୍ୟ କରିବା କର୍ମୀଙ୍କର ତାଲିକା କଲେ । ମୁଁ ପାଖରେ ବସିଥିଲି । ରାତି ୩ଟା ବେଳେ ବିଶ୍ୱନାଥ ବାବୁ ଟ୍ରେନ୍‌ରେ ପାର୍ବତୀପୁରମ୍ ଗଲେ - ଆଲମଣ୍ଡା ଆଡ଼େ ଯିବାପାଇଁ । ମଧ୍ୟପ୍ରଦେଶର ଚାନ୍ଦା ଜିଲ୍ଲାର ମୂଲଠାରେ ଭୂଦାନ କର୍ମୀମାନଙ୍କର ଏକ ସମ୍ମିଳନୀ ଉଦ୍‌ଘାଟନ କରିବାକୁ ଶ୍ରୀ ବୁଲୁବାବୁ କଟକରୁ ରାୟଗଡ଼ା ବାଟେ ଯାଉଛନ୍ତି ।

୧୭.୪.୫୬

ରାୟଗଡ଼ାରୁ ଫୁଲକଣା ଦେଇ କୁମ୍ଭୀକଟା ଯାତ୍ରା । ସକାଳ ୭ଟା ବେଳେ କଟକ ଜିଲ୍ଲାର ପଟାମୁଣ୍ଡାଇ ବାସୀ ଶ୍ରୀ କରୁଣାକର ନାୟକ, ଅନୁଗୋଳ ବାସୀ ଶ୍ରୀ ବ୍ରଜସୁନ୍ଦର ଦାସଙ୍କ ସହ ମୁଁ ସରକାରୀ ସର୍ଭିସବସ୍‌ରେ ରାୟଗଡ଼ାରୁ ଫୁଲକଣା ପର୍ଯ୍ୟନ୍ତ ୧୨ ମାଇଲ ଆସିଲି । ଆମ୍ଭେମାନେ ସେଠାରୁ ୧ ମାଇଲ ଦୂର କଷାକଣା ଗ୍ରାମକୁ ଯାଇ, ସେଠାର ଜମିବଣ୍ଟନ ଠିକ୍ ହୋଇଛି କି ଓ ଲୋକେ ଜମି ଚିହ୍ନଟ ପାଇଛନ୍ତି କି, ଗ୍ରାମବାସୀଙ୍କଠାରୁ ବୁଝିଲୁ । ଆଜିକାଲି ଆଦିବାସୀ ଲୋକଙ୍କର ଚୈତ-ପର୍ବ ଚାଲିଛି; ସେମାନେ କୌଣସି କାର୍ଯ୍ୟଧନ୍ଦା କରୁ ନାହାନ୍ତି, ଭୋଜୀଭାତ କରି ଖାଉଛନ୍ତି ଏବଂ ବାଜା ବଜାଇ, ଗୀତ ଗାଇ ନାଚୁଛନ୍ତି । ଫୁଲକଣା ଗାଁର ଝରଣାପାଖରେ ଆମ ପାଇଁ ଲୋକେ ରୋଷାଇ କରିଦେଲେ, ଭାତ ଓ ଡାଲମା । ବଣଭୋଜୀ ପରି ଆମେ ଖାଇଲୁ । ଉପରଓଳି ଗ୍ରାମବାସୀମାନଙ୍କର ଜମିବଣ୍ଟନ ଯାଞ୍ଚ ହେଲା । ସେଠାରୁ ୧ ମାଇଲ ଦୂର ପିଚୁଡ଼ି ଗ୍ରାମକୁ ଆସି ଜମିବଣ୍ଟନ ଯାଞ୍ଚ କଲୁ । ନାଳ ବନ୍ଧା ହୋଇ ଜଳସେଚନ ହୋଇ ପାରେ କି ଦେଖିଲୁ । ପିଚୁଡ଼ି-ଗ୍ରାମବାସୀମାନଙ୍କୁ ନି-ଚର(ଭୟଶୂନ୍ୟ) ହେବାକୁ ମୁଁ ୨/୪ ପଦ କହିଲି । ଡୁଡୁମାରୁ ଇଲେକ୍‌ଟ୍ରିକ୍ ତାର ଏହି ଗ୍ରାମ ମଧ୍ୟରେ ଉଚ୍ଚ ଲୁହା ଖୁଣ୍ଟ ଉପରେ ଯାଉଅଛି । ଲୋକେ ତାକୁ ଭୟ କରି, ଘର ଛାଡ଼ି ନୂଆ ଜାଗାକୁ ଉଠିଆସିଲେଣି ।

୧୮.୦୪.୧୯୫୬

ଆଚାର୍ଯ୍ୟ ମହାଶୟ ଏ କେତେଦିନ ହେଲା ବୁର୍ଜାରେ ଅଛନ୍ତି । ଭୂମିକ୍ରାନ୍ତି ସପ୍ତାହର ଆଜି ଶେଷ ଦିନ । ଗତ ବର୍ଷଠାରୁ ଏହି ସପ୍ତାହ ପାଳିତ ହେଉଅଛି । ଏପ୍ରିଲ ୧୩ ରୁ ଏପ୍ରିଲ ୧୮ ପର୍ଯ୍ୟନ୍ତ ଏହା ପାଳିତ ହେଉଛି । ମୁଁ ଏ ସପ୍ତାହରେ କିଛି କରିପାରିଲି ନାହିଁ । କୁମ୍ଭୀକଟା ରେଭିନ୍ୟୁ ରେଷ୍ଟ୍ ସେଡ୍‌ରେ ଆମ୍ଭେମାନେ ରହିଥିଲୁ । ଏଠାରେ ଭୂଦାନ କର୍ମୀ ଶ୍ରୀ କରୁଣାକର ନାୟକ ରହନ୍ତି । କୁମ୍ଭୀକଟା ଗ୍ରାମ ସର୍ବସ୍ୱ-ଦାନ ହୋଇଛି ବୋଲି ତାଙ୍କର ଆଗରୁ ଧାରଣା ଥିଲା, ମାତ୍ର ଆମ୍ଭେମାନେ ଜଣ ଜଣ କରି ଗ୍ରାମବାସୀଙ୍କର ଦାନପତ୍ର ମିଳାଇ ଦେଖିଲୁ ଯେ ୨ ଜଣ ବଡ଼ ଜମିମାଲିକ (ହରି ପ୍ରଧାନ ଓ.......) ଆଂଶିକ ଦାନ କରିଛନ୍ତି । କାଲି ରାତିରେ ଆମ୍ଭେମାନେ ଜଣେ କନ୍ଧଙ୍କର ଘରେ ଭାତ ଓ ଡାଲମା ( ଡାଲଣା) ଖାଇଥିଲୁ । ସାଧାରଣତଃ କନ୍ଧ ଲୋକେ ବାହାରର ଲୋକଙ୍କୁ ସେମାନଙ୍କର ରୋଷାଇରେ ସେମାନଙ୍କ ଘରେ ଖାଇବାକୁ ଦିଅନ୍ତି ନାହିଁ; ସେମାନେ ବୋଧହୁଏ ଭାବନ୍ତି ଯେ ଆମ୍ଭେମାନେ ଉଚ୍ଚ ଜାତିର ଲୋକେ ଏବଂ ସେମାନେ ସେମାନଙ୍କର ଘର-ରନ୍ଧା ଜିନିଷ ଖାଇବାକୁ ଦେଲେ, ସେମାନଙ୍କର ପାପ ହେବ ।

ସକାଳେ ଭାତ ଖାଇ, ୨ୟ (ସରକାରୀ) ମୋଟର ବସ୍‌ରେ ଆମ୍ଭେମାନେ ୧୪ ମାଇଲ ଦୂର ବୁର୍ଜାକୁ ଆସିଲୁ । କୋରାପୁଟ ଟାଉନରୁ ବୁର୍ଜା ୩୭ ମାଇଲ ୪ ଫର୍ଲଙ୍ଗ । ଏଠାରେ "ନବଜୀବନ ମଣ୍ଡଳ''ର ଏକ ଟ୍ରେନିଂ କେନ୍ଦ୍ର ୫/୬ ମାସ ପୂର୍ବେ ଚାଲିଥିଲା । ବର୍ତ୍ତମାନ ଟ୍ରେନିଂ ବନ୍ଦ ଅଛି । ଏଠାରେ ଶ୍ରୀ ଅଲେଖ ପାତ୍ର, ତାଙ୍କର ସ୍ତ୍ରୀ ଶ୍ରୀମତୀ ଭଗବତୀ ଦେବୀ, ତାଙ୍କର ଭାଉଜ ଶ୍ରୀମତୀ ସୁଷମା ଦେବୀ, ଅଲେଖ ବାବୁଙ୍କର ଏକମାତ୍ର ସନ୍ତାନ (ଝିଅ ଅଗ୍ନି) ଅଛନ୍ତି, ଏବଂ ଏ ଅଞ୍ଚଳର ସମଗ୍ର-ଗ୍ରାମଦାନ ଗ୍ରାମଗୁଡ଼ିକର କେନ୍ଦ୍ର ହୋଇଅଛି । ଗ୍ରାମବାସୀମାନଙ୍କୁ (ବର୍ତ୍ତମାନପାଇଁ ମିଲ୍ ତିଆରି) ଲୁଗା, ଲୁଣ, ଆଦି ଅଳ୍ପ କେତୋଟି ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ବିକ୍ରି ତ ହେଉଛି, ଗରୀବ ଭୂମିଗ୍ରହୀତାମାନଙ୍କୁ ବଳଦ ବିନା ମୂଲ୍ୟରେ "ନବନିର୍ମାଣ'' ବିଭାଗ ତରଫରୁ ଯୋଗାଇ ଦିଆଯାଉଛି ।

ଆଜିକାଲି ରାତିରେ ମୋର ସୁଷୁପ୍ତି ହେଉନାହିଁ, ଏକାଧିକ ସ୍ୱପ୍ନ ଦେଖୁଛି । ଆଜି ମଧ୍ୟ ସ୍ୱପ୍ନ ଦେଖିଲି - "ଚୁନ୍ନୀକୁ ଡାକ୍ତରଙ୍କ ପାଖକୁ ନେଇ ଦେଖାଇବାକୁ ମୁଁ ବ୍ୟଗ୍ର ହେଉଛି, ସେ ଗୋଟିଏ ସାଇକେଲରେ ଯିବ, ମୁଁ ଆଉ ଗୋଟିଏ ସାଇକେଲରେ ଯିବି । ବିଚିତ୍ରାନନ୍ଦକୁ ମୁଁ କହୁଛି ଯେ ଚଞ୍ଚଳ ଥାଳୀ ଆଦି ମାଜି ଦିଅ, ଶୁଖିଲା ସପେଟା ଫଳ ୨ଟା ମୋ ସହିତ ଦିଅ, ସେ ତାହା ସଜାଡ଼ି ଦେଉଛି । ଶ୍ରୀଯୁକ୍ତ ଶ୍ୟାମଚରଣ ତ୍ରିପାଠୀ ( ଯେ ଶିକ୍ଷା ବିଭାଗର ଡିରେକ୍ଟର ଥିଲେ, ଏବଂ ଏବେ ମୃତ) ଚାକିରି ଛାଡ଼ିଦେବେ ବୋଲି ଏକ ଚିଠିରେ ମୁଁ ଦି ଧାଡ଼ି ଲେଖି, ବୃନ୍ଦାବନ ଚନ୍ଦ୍ର ଜେନାଙ୍କୁ ତାହା ଟାଇପ୍ କରିବାକୁ ଦେଲି । ମୋର ନିଜର ମଳକୁ ମୁଁ କାଗଜରେ ଓ ପତ୍ରରେ ଟେକି ମଇଳା ଖତଗଦାରେ ପକାଇବାକୁ ନେଉଛି । ଘସିସାରି ଲୋକେ ପକାଇ

ଦେଉଥିବା ଶୁଖିଲା ଦାନ୍ତକାଠିଗୁଡ଼ାକ ମୁଁ ଗୋଟାଇ ବିଡ଼ା କରି ନେଇଯାଉଛି - ଖତଗଦାରେ ପକାଇ ଦେବାକୁ ।'' ଭୋର ୪ଟାରେ ଏ ସ୍ୱପ୍ନ ଦେଖୁଁ ଦେଖୁଁ ନିଦ ଭାଙ୍ଗିଗଲା । ମୋର ମନେ ହେଉଛି ଯେ ପେଟରେ ବାୟୁର ପ୍ରକୋପ ବେଶୀ ହେଲେ ମୁଁ ସ୍ୱପ୍ନ ଦେଖୁଛି ।

୧୯.୪.୧୯୫୬

ସକାଳେ ମୁଁ ଅଗଣାର କିଛି ଅଂଶ ଓ ସାମନାର ସଡ଼କରୁ କିଛି ଅଂଶ ଓଳାଇଲି । ସ୍ନାନ ଓ ଜଳଖିଆ ପରେ, ବ୍ରଜବାବୁ ଓ ଆଚାର୍ଯ୍ୟ ମହାଶୟଙ୍କ ସହ ୧ ମାଇଲ ଚାଲି 'ବନ୍ଦିକାର' ଗାଁକୁ ଗଲି । ଅର୍ଣ୍ଣାସାହେବ ଓ କୃଷିବିଭାଗର କର୍ମଚାରୀମାନଙ୍କ ସହ ସେଠାରେ ଏକ ଜଳସେଚନ କ୍ଷୁଦ୍ର ଯୋଜନା ସମ୍ଭବ କି, ସେମାନେ ବୁଲି ଦେଖିଲେ । ଶ୍ରୀଯୁକ୍ତ ଅର୍ଣ୍ଣା ବାସୁଦେବ ସହସ୍ରବୁଦ୍ଧେ ଉପରଓଳି ଘ ୩.୧୫ ମିନିଟ୍‌ରେ ବୁରଜା କେନ୍ଦ୍ରରୁ ପଟାଙ୍ଗୀ ଅଭିମୁଖେ ମୋଟରକାରରେ ଗଲେ । ସେତିକିବେଳେ ଏହି ଗ୍ରାମର ଇଲିଆ ଆଜର୍ ନାମକ ଖ୍ରୀଷ୍ଟିୟାନ୍ ଡ଼ୋମ(ସାହୁକାର) ସଡ଼କରେ ଠିଆ ହୋଇଥିଲେ । ବସ୍‌ନା ନାମକ କନ୍ଧ ଲୋକ, କେହି କିଛି ନ ପଚାରଣୁଁ, କହିଲେ "ଏଇଟା (ଅର୍ଣ୍ଣାସାହେବ) ଆମର ରଜା ଆସିଥିଲା ।'' ଏତେ ଟାଣ କରି, ଗର୍ବିତ ଅନୁଭବ କରି 'ରଜା' ଶବ୍ଦ ଉଚ୍ଚାରଣ କଲେ ଯେ, ମୁଁ ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲି । ଏଥିରୁ ଜଣାଯାଉଛି, ଏହି କନ୍ଧ ଲୋକମାନେ ସାହୁକାରମାନଙ୍କ ଦ୍ୱାରା କେତେ ଶୋଷିତ ଓ ଅତ୍ୟାଚାରିତ ହେଉଥିଲେ ଏବଂ ବର୍ତ୍ତମାନ ଭୂଦାନ ପରେ "ନବନିର୍ମାଣ'' କାର୍ଯ୍ୟର ଆରମ୍ଭ ଫଳରେ ସାହୁକାରମାନଙ୍କର ଦାଉରୁ କ୍ରମେ ମୁକ୍ତି ପାଉଥିବାରୁ କେତେ ଆନନ୍ଦିତ ହେଉଛନ୍ତି ।

ମୋର ତକଲିରେ ଅଳ୍ପ ସୂତା କାଟିଲି । ବ୍ରଜବାବୁଙ୍କ ସହ ମୁଁ ଉପରଓଳି ଲକ୍ଷ୍ମୀପୁର ଡାକଘରକୁ ଯାଇ ଡାକ ଆଣିଲି ।

୨୦.୪.୧୯୫୬

ସକାଳେ ଆଚାର୍ଯ୍ୟ ମହାଶୟ ବୁର୍ଜାରୁ ଏକାକୀ ଚାଲିକରି ବନ୍ଦୀକାର ଗାଁକୁ ଗଲେ ଓ ଫେରି ଆସିଲେ । । ତାଙ୍କର ଆଖିରେ Glucoma ରୋଗ ହୋଇଥିବାରୁ, ସେ ୨/୪ ଫୁଟ ଦୂରରୁ ସୁଦ୍ଧା କିଛି ଚିହ୍ନିପାରୁନାହାନ୍ତି । ଲୋକର ସ୍ୱରରୁ ଚିହ୍ନିପାରିବେ ମାତ୍ର ଲୋକକୁ ଦେଖି ଚିହ୍ନିପାରିବେ ନାହିଁ । ଅଥଚ, ଏପରି ଅବସ୍ଥାରେ ସେ କାହାରି ସାହାଯ୍ୟ ନ ନେଇ ତାଙ୍କର ନିଜର ଦୈନନ୍ଦୀନ ନିତ୍ୟ କର୍ମ କରିବେ; ତାହା ଉପରନ୍ତୁ ସହରବଜାରର ଯାନବାହନର ଓ ଲୋକଙ୍କର ଗହଳି ମଧ୍ୟରେ ଏକାକୀ ଯା ଆସ କରୁଛନ୍ତି । ଏଠାରେ ଉଚ୍ଚାବଚ ବାଟ, ସାନ ପାହାଡ଼ (ଡ଼ଙ୍ଗର), ଘାଟି ପାଦରେ ଚାଲି ଯାଉଛନ୍ତି । ଏକାଦିକ୍ରମେ ୫/୬ ମାଇଲ ମଧ୍ୟ ଚାଲିଯାଉଛନ୍ତି । ତାଙ୍କର ବର୍ତ୍ତମାନ ବୟସ ୭୭ ବର୍ଷ ଚାଲିଛି । ତଥାପି ଏତେ ନୀରୋଗ ଓ କାର୍ଯ୍ୟକ୍ଷମ ଥିବାର କାରଣ ମଧ୍ୟରେ ମୁଁ ଭାବେ ତାଙ୍କର ସାତ୍ତ୍ୱିକ ଭାବନା, ବ୍ରହ୍ମଚର୍ଯ୍ୟ, ପରୋପକାର ବୃତ୍ତି, ସେବା-ପ୍ରବୃତ୍ତି, ଆଦି ପ୍ରଧାନ ଅଟେ ।

ଆଚାର୍ଯ୍ୟ ମହାଶୟ ଶ୍ରୀମଦ୍ ଭଗବଦ୍‌ଗୀତାର ଏକ ଓଡ଼ିଆ ବ୍ୟାଖ୍ୟା ହଜାରୀବାଗ ଜେଲରେ ସେ ରାଜନୈତିକ ବନ୍ଦୀ ଥିବାବେଳେ ୧୯୨୯-୩୦ ମସିହାରେ କରିଥିଲେ ଓ ତାହା ଛାପା ଯାଇ, ବିଶେଷ ଆଦୃତ ହେଉଅଛି । ସେ ଉପନିଷଦରୁ କେତେଗୁଡ଼ିଏ ଓଡ଼ିଆରେ ଅନୁବାଦ କରିଛନ୍ତି । ସେଗୁଡ଼ିକର ପାଣ୍ଡୁଲିପି ତାଙ୍କର ଆଶ୍ରମରେ ଅଛି । ମାତ୍ର ଛପାଇଲେ ବିକ୍ରୀ ହେବନାହିଁ ଭାବି, ସେ ଛପାଉନାହାନ୍ତି ବୋଲି ଆମକୁ କହିଲେ ।

ଏ ଦୁଇ ଦିନ ମୁଁ ବୁରଜା ସେବା କେନ୍ଦ୍ରରେ ଶ୍ରୀ ଅଲେଖ ପାତ୍ରଙ୍କ ଠାରେ ରହିଲି ଓ ଖାଇଲି ।

ଶ୍ରୀ ବ୍ରଜସୁନ୍ଦର ଦାସଙ୍କ ସହ ମୁଁ ମୋଟର-ବସ୍‌ରେ ପ୍ରାୟ ୧୩ ମାଇଲ ଦୂର କାକରୀଗୁମ୍ମା ଡାକବଙ୍ଗଳା ପର୍ଯ୍ୟନ୍ତ ଆସି, ସେଠାରୁ ଆମେ ଦୁଇଜଣ ପ୍ରାୟ ୪ ମାଇଲ ଦୂର ଭିତରଗଡ଼ ସେବାଶ୍ରମକୁ (ଆଦିବାସୀମାନଙ୍କର ପିଲାମାନଙ୍କ ପାଇଁ ନିମ୍ନ ପ୍ରାଥମିକ ସ୍କୁଲକୁ) ଚାଲିକରି ଗଲୁ । ସିମଲିଗୁଡ଼ା ସଡ଼କରେ ୧୯ m - ୩ f ଠାରୁ ଭିତରଗଡ଼ ୧୫m ୪f ଅଟେ । ଏଠାରେ ଶ୍ରୀ ବାବୁଲାଲ ମିତ୍ତଲ ବର୍ତ୍ତମାନ ରହୁଛନ୍ତି । ସେ ଉତ୍ତରପ୍ରଦେଶର ଆଗ୍ରା ସହରରୁ ଜଣେ ଏମ୍.ଏଲ୍.ଏ. ଥିଲେ । ବିନୋବାଜୀଙ୍କର ଭୂଦାନ ଆନ୍ଦୋଳନରେ ନିଜର ଓକିଲାତି ଧନ୍ଦା, ଆସେମ୍ବ୍ଲି ସଦସ୍ୟ ପଦ ଛାଡ଼ି, ଗତବର୍ଷ ବିନୋବାଜୀଙ୍କ ସହ ପଦଯାତ୍ରାରେ ଓଡ଼ିଶାରେ ବୁଲୁଥିଲେ । ବିନୋବାଜୀଙ୍କର ଉପଦେଶ କ୍ରମେ ସେ କୋରାପୁଟ ଜିଲ୍ଲାରେ ଆଦିବାସୀମାନଙ୍କର ସେବାରେ ନିଜକୁ ନିଯୁକ୍ତ କରିଛନ୍ତି । ଆଦିବାସୀମାନଙ୍କୁ ନାନାପ୍ରକାରେ ଡ଼ୋମ, ଉଚ୍ଚ ହିନ୍ଦୁମାନେ, ସାହୁକାରମାନେ, ଶାସକ ଦଳ ଶୋଷଣ ଓ ଅତ୍ୟାଚାର କରିଆସୁଛନ୍ତି । ଶୋଷଣ ଓ ଅତ୍ୟାଚାର ବନ୍ଦ କରିବାକୁ ମିତ୍ତଲଜୀ ଆଇନ ଦୃଷ୍ଟିରୁ ଆଦିବାସୀମାନଙ୍କୁ ଓ ଭୂଦାନ ଓ "ନବନିର୍ମାଣ" କର୍ମୀମାନଙ୍କୁ ପରାମର୍ଶ ଦେଉଛନ୍ତି ।

ମିତ୍ତଲଜୀ ଆମକୁ ଭାରୀ ଆଦର କଲେ ଓ ନିଜେ ଅଟା ଚକଟି, ପୁରୀ ବେଲି, ଛାଣି ଆମକୁ ଖାଇବାକୁ ଦେଲେ । ସେ କହିଲେ ଯେ କୌଣସି ବ୍ୟକ୍ତି - ଯେତେ ପାଠୁଆ ହେଉ, ସେବା ମନୋଭାବ ପୋଷଣ କରିଥାଉ, ଅନ୍ୟାନ୍ୟ ସଦ୍‌ଗୁଣଯୁକ୍ତ ହୋଇଥାଉ ପଛକେ – ନିଜେ ଅଭାବରେ ନ ପଡ଼ିଲେ, କଷ୍ଟକର ଅବସ୍ଥା ନ ଭୋଗିଲେ, ଅନ୍ୟ ସହିତ ସମଦୁର୍ଦ୍ଦଶାପନ୍ନ ନହେଲେ କେବେହେଁ ଅନ୍ୟର ମନର କଥା ଜାଣିପାରିବ ନାହିଁ କିମ୍ୱା ଅନ୍ୟ ପାଇଁ କିଛି କରିପାରିବ ନାହିଁ । ଏହା ବଡ଼ ଠିକ୍ କଥା । ମୁଁ ମଧ୍ୟ ତାହା ସ୍ୱୀକାର କରେ । ଭୀଷ୍ମଙ୍କର ପ୍ରତିଜ୍ଞା, ଅର୍ଜ୍ଜୁନଙ୍କର ସ୍ୱାବଲମ୍ବନ (ନିଜ ପ୍ରାଣ ନିଜେ ରକ୍ଷା କରିବା), ଶ୍ରୀକୃଷ୍ଣଙ୍କର ଅର୍ଜ୍ଜୁନଙ୍କୁ ଯୁଦ୍ଧରେ ସାହାଯ୍ୟ କରିବା ବିଷୟ ସେ(ମିତ୍ତଲଜୀ) ବୁଝାଇଲେ ।

କଟକ ଜିଲ୍ଲାର ଜଗତ୍‌ସିଂହପୁରର ଶ୍ରୀ ଶୁକଦେବ ସାହୁ ଏହି ସେବାଶ୍ରମରେ ୨ୟ ଶିକ୍ଷକ ଅଛନ୍ତି ।

୨୧.୪.୧୯୫୬

ଭିତରଗଡ଼ରୁ କୋରାପୁଟ ସହରକୁ ଯାତ୍ରା । ଭିତରଗଡ଼ରେ ମିତ୍ତଲଜୀଙ୍କ ସହ ସକାଳ ଓଳି କଟାଇଲୁ । ପୁଟ ଗାଁରେ ମିତ୍ତଲଜୀ କେଉଁଠି ତାଙ୍କର ଆଶ୍ରମ-ଘର କରିବେ, ତାହା ଦେଖିଆସିଲୁ । ମଧ୍ୟାହ୍ନଭୋଜନର ଖାଦ୍ୟ ବ୍ରଜବାବୁ ମାଟିହାଣ୍ଡିର ..ରେ ତିଆରି କଲେ । ଖାଇସାରି, ବ୍ରଜବାବୁ ଓ ମୁଁ କାକରୀଗୁମ୍ମା ୪ ମାଇଲ ଚାଲି ଆସି, ସେଠାରୁ ୨୪ m ୬ f ଠାରୁ କୋରାପୁଟ ଟାଉନ୍‌କୁ ଓମ୍ ସରକାରୀ ସର୍ଭିସ ମୋଟର-ବସ୍‌ରେ ଆସିଲୁ । ବସ୍‌ରେ ବିଡ଼ି, ସିଗାରେଟ୍ ଟାଣିବା ମନା ଥିଲେ ହେଁ, ଜଣେ ପୋଲିସ୍ କନ୍‌ଷ୍ଟବଲ୍ ନ. ୨୨୭ ବିଡ଼ି ଟାଣିବାରୁ, ବ୍ରଜବାବୁ ବସ୍-କଣ୍ଡକ୍‌ଟରଙ୍କୁ ତାହା ଜଣାଇ, ବନ୍ଦ କରାଇଲେ ।

କୋରାପୁଟ ଟାଉନ୍‌ରେ "ଗାଂଧୀ ସୂତାକଟା କେନ୍ଦ୍ର'' ଘରେ ଆମେ ରହିଲୁ । ଏଠାରେ ସୂତାକଟାର ଚିହ୍ନ ନାହିଁ । ଏବେ ୨ ଜଣ ହରିଜନ ଛାତ୍ର ଗୋଟିଏ ସାନ କୋଠରୀରେ ରହିଛନ୍ତି ଏବଂ ଭୂଦାନ କର୍ମୀମାନେ ମଝେ ମଝେ ଆସି ଏଠାରେ ଦିନେ ଓଳିଏ ରହନ୍ତି ।

ସର୍ବ ଶ୍ରୀଯୁକ୍ତ ଗୋପବାବୁ, ରମା ଦେବୀ, ଗୁଣନିଧି ମହାନ୍ତି ଓ ସୋରର ନନ୍ଦକିଶୋର ଦାସଙ୍କୁ ଏଠାରେ ଦେଖାକଲି । ଅର୍ଣ୍ଣାସାହେବଙ୍କ ସହ ଦେଖା କରିବାକୁ ନନ୍ଦବାବୁ, ନରେନ୍ଦ୍ରନାଥ ଜେନା, ସୁଧାଂଶୁଶେଖର ଦାସ ଓ ମୃତ୍ୟୁଞ୍ଜୟ ଜେନା ଏଠାକୁ ଆସିଥିଲେ । ଆମର ଭୂମିବଣ୍ଟନର ଅମୀନ ଶ୍ରୀ ପଙ୍କଜ ପ୍ରଧାନଙ୍କ ସହ ସନ୍ଧ୍ୟାରେ ମୁଁ କଥାବାର୍ତ୍ତା କଲି ।

୨୨.୪.୧୯୫୬

ଶ୍ରୀଯୁକ୍ତ ଗୋପବାବୁ କଥାପ୍ରସଙ୍ଗରେ କହିଲେ ଯେ କୋରାପୁଟ ଜିଲ୍ଲାରେ କେତେକ କର୍ମୀ ଜମିବଣ୍ଟନ କାର୍ଯ୍ୟ କରି ବେଶ୍ କୃତିତ୍ୱ ଦେଖାଇଛନ୍ତି – ସେମାନେ tested workers ଅଟନ୍ତି । ନିଶା ନିବାରଣ ହେବା ଫଳରେ କେତେକ ତଳିଆ ସରକାରୀ କର୍ମଚାରୀ ଅଡୁଆରେ ପଡ଼ିଛନ୍ତି । ଏ ଜିଲ୍ଲାକୁ ବାହାରୁ ଅନେକ ଲୋକ ଆସିଛନ୍ତି, ଦୁଇଟା ମନ୍ଦ କାର୍ଯ୍ୟରେ – (୧) ଚୋରି, ଅର୍ଥାତ୍ ଅନ୍ୟକୁ ଶୋଷଣ କରିବା ଅଥବା (୨) ନାରୀ, ଅର୍ଥାତ୍ ଅସତ୍ ନାରୀସଂସର୍ଗ କରିବା । ଏ ଦୁଇଟି ମନ୍ଦ ପ୍ରଥା ବନ୍ଦ କରିବାକୁ ଆମକୁ ଯତ୍‌ପରୋନାସ୍ତି ଯତ୍ନ କରିବାକୁ ହେବ ଓ ସଦା ଜାଗ୍ରତ ରହିବାକୁ ହେବ ।

ବୋଉ ଓ ଗୁଣନିଧିବାବୁ ଆଜି ସକାଳେ ଜମିବଣ୍ଟନ ପାଇଁ ଉମରକୋଟ ଆଡ଼େ ଗଲେ । ମୁଁ ଅନେକ ଚିଠିପତ୍ର ରାତି ୧୦ଟା ପର୍ଯ୍ୟନ୍ତ ଲେଖିଲି । ଗାନ୍ଧୀ ସୂତାକଟା କେନ୍ଦ୍ରରେ ୨୦/୨୨ ଜଣ ଆମ ଲୋକ ହୋଇଯିବାରୁ, ମୁଁ ଶ୍ରୀଯୁକ୍ତ ଗୋପବାବୁ ରହୁଥିବା ନୂଆ ବସାରେ ରହିଲି ।

୨୩.୪.୧୯୫୬

ଓଡ଼ିଶା ପ୍ରଦେଶର ବା ରାଜ୍ୟର କମ୍ୟୁନିଟି ପ୍ରୋଜେକ୍ଟ (ଗ୍ରାମଗୋଷ୍ଠୀ ଯୋଜନା),

ଜାତୀୟ ସଂପ୍ରସାରଣ ଯୋଜନାର ଏକ ବାର୍ଷିକ ସମ୍ମିଳନୀ କୋରାପୁଟ ଟାଉନ୍‌ରେ ହେଉଛି । ସେଥିରେ ଯୋଗଦେବାକୁ ଶ୍ରୀଯୁକ୍ତ ନବବାବୁ(ମୁଖ୍ୟମନ୍ତ୍ରୀ), ଖୁଡ଼ୀ ଭୁବନେଶ୍ୱରରୁ ମୋଟରରେ ସେ ଆସି ଆଜି ଦଶଟାବେଳେ ଏଠାରେ ପହଞ୍ଚିଲେ । ସେମାନଙ୍କ ସଙ୍ଗରେ ବାବୁଲି (ଜ୍ଞାନଦେବ) ଆସିଲା । ସର୍ବଶ୍ରୀଯୁକ୍ତ ଗୋପବାବୁ, ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ, ଇଞ୍ଜିନିୟର୍ ଦାତେ, ଖଦୀବୋର୍ଡ଼ର କର୍ମୀ ବିପିନବିହାରୀ ସକ୍‌ସେନା, ଖୁଡ଼ୀ ଓ ମୁଁ ଏହି ଆଲୋଚନା ସଭାରେ ଉପସ୍ଥିତ ଥିଲୁ । ଭାରତ ସରକାରଙ୍କର ଏହି ଯୋଜନାର ପ୍ରଧାନ କର୍ମଚାରୀ ଶ୍ରୀ ଏସ୍.କେ.ଦେ ତାଙ୍କର ଭାଷଣରେ କହିଲେ ଯେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଗତ ୨୫/୩୦ ବର୍ଷ ହେଲା ଯେଉଁମାନେ ଅଶେଷ ଦୁଃଖକଷ୍ଟ ସହି ଆଜି ଦେଶକୁ ନେତୃତ୍ୱ ଦେଉଛନ୍ତି, ପୃଥିବୀର ଅନ୍ୟ କୌଣସି ଦେଶରେ ସେପରି ତ୍ୟାଗ, ନେତୃତ୍ୱ ବିରଳ । (୨) ଭାରତର ଲକ୍ଷଲକ୍ଷ ଗ୍ରାମବାସୀ ଅତି ସରଳ, କଠିନ ପରିଶ୍ରମୀ; ଏପରି ଦେଶବାସୀ ଅନ୍ୟ ଦେଶରେ ମଧ୍ୟ ବିରଳ (୩) ସରକାରୀ କର୍ମଚାରୀମାନେ ନିଷ୍ଠା ସହକାରେ କାର୍ଯ୍ୟକଲେ ଏହା ଉଭୟଙ୍କୁ (ନେତୃତ୍ୱ ଓ ଦେଶବାସୀଙ୍କର ପରିଶ୍ରମ ତତ୍ପରତାକୁ) ନେଇ, ଆମେ ଏ ଦେଶକୁ ଅଚିରେ ସମୃଦ୍ଧ କରିପାରିବୁ । ପଣ୍ଡିତ ଜବାହରଲାଲ ନେହ୍ରୁଙ୍କର ପ୍ରେରଣା, ନବବାବୁଙ୍କର ସୁଗୁଣର ମଧ୍ୟ ପ୍ରଶଂସା କଲେ । ସର୍ବୋଦୟ ବିଚାର ପ୍ରତି ଟିକିଏ ଅନୁକୂଳ ମନୋଭାବ ଜଣାଗଲା ।

ବାବୁଲିକୁ ମୁଁ ଗ୍ରାମଗୋଷ୍ଠୀ ଯୋଜନାର ପ୍ରଦର୍ଶନୀ ଦେଖାଇ ଆଣିଲି । ଆମକୁ ଭୂଲ ସମୟ ଧାରଣା ଦିଆଯାଇଥିଲା । ତେଣୁ କରି ଶ୍ରୀ ସଦାଶିବ ତ୍ରିପାଠୀ (ରାଜସ୍ୱ-ମନ୍ତ୍ରୀ) ପ୍ରଥମେ ପ୍ରଦର୍ଶନୀରେ ପଶିବା କେତେକ ଲୋକ, ଓ ବାବୁଲି ଏବଂ ମୁଁ ଭିତରକୁ ଯିବାକୁ ଚେଷ୍ଟା କରିବାରୁ, ଫାଟକରେ ଥିବା ପୋଲିସ କନ୍‌ଷ୍ଟେବଲ୍‌ମାନେ ଭିତରକୁ ଛାଡ଼ିଲେ ନାହିଁ । ସନ୍ଧ୍ୟା ପରେ, ଆମେ ପ୍ରଦର୍ଶନୀ ଦେଖିଲୁ ।

୨୪.୪.୧୯୫୬

ଆମ ଭୋଜନାଳୟର କରେଇ, ଡ଼େକ୍‌ଚି, ମାଟିହାଣ୍ଡି ଆଦି ସକାଳେ ରନ୍ଧନପାତ୍ରଗୁଡ଼ିକ ମୁଁ ମାଜିଲି । ଚୁନୀକୁ, ଓ କାଳୀମେଳାର ଶ୍ରୀ ସୋମନାଥ ମିଶ୍ର (କୂଅ ଖୋଳାଳୀ)ଙ୍କୁ ଚିଠି ଲେଖିଲି ।

Community Project Seminar ରେ ସକାଳ ଓଳି ଯୋଗ ଦେଲି । ଶ୍ରୀଯୁକ୍ତ ଅର୍ଣ୍ଣାସାହେବ ମୂଳ ପ୍ରଶ୍ନ ଉଠାଇଲେ -Community ର ସମସ୍ତ ଲୋକଙ୍କୁ, ବିଶେଷରେ ଭାରତର ଯେଉଁ ୧,୭୪,୦୦୦ ଗରୀବ ପରିବାରଙ୍କର ପରିବାର ପ୍ରତି ବାର୍ଷିକ ଆୟ ଟ. ୬୦୦/- ରୁ ଊଣା ଅଟେ ସେମାନଙ୍କୁ, ଖାଦ୍ୟ ଓ କର୍ମ ଯୋଗାଇବା ପ୍ରଥମ ଧ୍ୟେୟ; ତତ୍‌ପରେ technical training, production-cum-training centre ଆଦି ବିଷୟ ।XXX ।

ଶ୍ରୀ ଏସ୍.କେ.ଦେ ବଡ଼ ଉତ୍ସାହରେ ଓ ଖୋଲାଖୋଲି ଭାବରେ ଅର୍ଣ୍ଣାସାହେବଙ୍କର ଧ୍ୟେୟକୁ ପୂରା ସମର୍ଥନ କଲେ, ଏବଂ କହିଲେ ଯେ ଏପର୍ଯ୍ୟନ୍ତ ସରକାରଙ୍କର ସବୁ ଯୋଜନା ଥିଲାବାଲାଙ୍କୁ ଆହୁରି ଧନୀ କରିଛି ମାତ୍ର ଗରୀବ ଲୋକଙ୍କ ପାଇଁ କିଛି କରିନାହିଁ । ଯଦି ଆସନ୍ତା ୫ ବର୍ଷ ମଧ୍ୟରେ ସେ ଏହି ଗ୍ରାମଗୋଷ୍ଠୀ ଯୋଜନା ଦ୍ୱାରା ଗରୀବ ଲୋକଙ୍କର କିଛି ଉପକାର କରି ନ ପାରନ୍ତି, ତାହାହେଲେ ସେ ଚାକିରି ଛାଡ଼ିଦେବେ ଏବଂ ଏହି ସରକାର ବିରୋଧରେ ଲୋକଙ୍କୁ ଆନ୍ଦୋଳନ କରିବାକୁ କହିବେ । ସେ କହିଲେ ଯେ ୭ ଦିନ ଗୋଟିଏ ଗ୍ରାମଗୋଷ୍ଠୀ କେନ୍ଦ୍ରରେ ଥିଲେ, ସେଠାରେ bath room ତିଆରି ହୋଇଛି, ମାତ୍ର ଗାଁର ସ୍ତ୍ରୀଲୋକଙ୍କର ଜଣକା ଖଣ୍ଡିଏ ମାତ୍ର ବସ୍ତ୍ର ଅଛି, ତାହା ମଧ୍ୟ ଅନେକ ଜାଗାରେ ଚିରା ଓ ଛିଣ୍ଡା । ସଭାରେ ଅନେକ ଏହି ଭାଷଣରେ ସଭାସଦ୍‌ମାନେ (ଅଧିକାଂଶ ତ ସରକାରୀ କର୍ମଚାରୀ) ପସନ୍ଦ କରି, କରତାଳି ଦେଲେ ।

ଶ୍ରୀଯୁକ୍ତ ଗୋପବାବୁ ଆଜି ଓ କାଲି ଭିତରେ ୩ ଥର କହିଲେଣି ଯେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ କାଜୀ ମହମ୍ମଦ ନିର୍ମାଣ କାର୍ଯ୍ୟର, କୌଣସି କମିଟିରେ ରହିବାର ଦାୟିତ୍ୱ ନ ନେଇ, କେବଳ ଲଗାତାର ବୁଲିବା ଏବଂ ଲୋକଙ୍କୁ ଶୋଷଣରୁ ମୁକ୍ତ ହେବାର ବାଟ ଦେଖାଇବା ଉଚିତ । ନୋହିଲେ, କିଛି କାର୍ଯ୍ୟ ହେବ ନାହିଁ । ସାହୁକାର ଓ ଅନ୍ୟମାନେ ଆଦିବାସୀଙ୍କୁ, ଭୂମିଗ୍ରହୀତାଙ୍କୁ ଶୋଷଣ କରୁଥିବେ ।

ପକ୍ଷାନ୍ତରେ, ଶ୍ରୀଯୁକ୍ତ ମାଳତୀ ଦେବୀଙ୍କର କାଲି ମୁଁ ଅଭିଯୋଗ ଶୁଣିଲି ଯେ ବିଶ୍ୱନାଥ ବାବୁ ତାଙ୍କ କଥା ମାନୁନାହାନ୍ତି, ଶ୍ରୀଯୁକ୍ତ ଗୋପବାବୁ ଯାହା କହିବେ, ତାହା ହେବ । ନବଜୀବନ ମଣ୍ଡଳର ବୈଠକର ସ୍ଥାନ ଓ ତାରିଖ ତେଣୁ କରି ସେ ସ୍ଥିର କରୁନାହାନ୍ତି । ଉପରଓଳି କୋରାପୁଟ ଜିଲ୍ଲାର କଲେକ୍ଟର ଶ୍ରୀ ସୋମନାଥ ମିଶ୍ର ଥାଇ, ସର୍ବଶ୍ରୀଯୁକ୍ତ ଗୋପବାବୁ ଓ ନବବାବୁ ଆଲୋଚନା କଲେ ।

୨୫.୪.୧୯୫୬

ସକାଳେ ମୁଁ ଆମର ଭୂଦାନ ଅଫିସ କାର୍ଯ୍ୟରେ ବ୍ୟସ୍ତ ରହିଲି । ଆଗାମୀ ତା ୭.୫.୫୬ରେ କୁନ୍ତରାରେ ଯେଉଁ ବୈଠକ ହେବ, ସେଥିରେ ଆଲୋଚ୍ୟ ବିଷୟରେ ଶ୍ରୀଯୁକ୍ତ ନବବାବୁ ଓ ଶ୍ରୀଯୁକ୍ତ ଗୋପବାବୁ କଥାବାର୍ତ୍ତା କଲେ । ମୁଁ ଆଜି ' Seminar'କୁ ଗଲି ନାହିଁ । ଚି –୨୫୬ ରୁ ୨୬୦ ପର୍ଯ୍ୟନ୍ତ ଚିଠିମାନ ମୁଁ ଲେଖିଲି ।

ଉପରଓଳି ଶ୍ରୀଯୁକ୍ତ ନବବାବୁ (ଦାଦା)ଙ୍କ ସହ ବାବୁଲି, ଖୁଡ଼ୀ କୋରାପୁଟରୁବୁର୍ଜା (ଲକ୍ଷ୍ମୀପୁର)କୁ ମୋଟରକାରରେ ଆସିଲେ । ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, କୋରାପୁଟ ସଦର Revenue Divisional Officer ଶ୍ରୀ ଅକ୍ଷୟ କୁମାର ବିଶ୍ୱାଳ (ଶ୍ରୀ ଅଧିରାଜମୋହନ ସେନାପତିଙ୍କର ଜାମାତା, ଘର ଚାନ୍ଦବାଲି ଥାନାରେ) ଓ ମୁଁ ମଧ୍ୟ ଦାଦାଙ୍କ ଗହଣରେ ଆସିଲୁ ।

ବୁର୍ଚ୍ଚାରୁ ଆଚାର୍ଯ୍ୟ ମହାଶୟଙ୍କୁ ସଙ୍ଗରେ ନେଇ, ଲକ୍ଷ୍ମୀପୁର-ନାରାୟଣପାଟଣା ଘାଟି ରାସ୍ତାରେ ଆମ୍ଭେମାନେ ୩୨୦୦ ଫୁଟରୁ କ୍ରମେ ୧୫୦୦ ଫୁଟକୁ ମୋଟର ଯାନରେ ଓହ୍ଲାଇଲୁ । ବାଟରେ ପାଲୁର ଗାଁରେ ଗ୍ରାମବାସୀମାନେ (ଆଦିବାସୀମାନେ) କିପରି ସାନ ସାନ ପୋଲିସ, ଜଙ୍ଗଲ, ରେଭିନ୍ୟୁ ବିଭାଗର କର୍ମଚାରୀମାନଙ୍କ ଦ୍ୱାରା ଅତ୍ୟାଚାରିତ ଏବେ ମଧ୍ୟ ହେଉଛନ୍ତି ତାହା ବର୍ଣ୍ଣନା କଲେ । ନାରାୟଣପାଟଣା (ଥାନାର ହେଡ୍‌କ୍ୱାଟର୍ସରେ) ମୁଖ୍ୟମନ୍ତ୍ରୀଙ୍କୁ ଲୋକେ ସମ୍ବର୍ଦ୍ଧନା ଜଣାଇଲେ ଏବଂ ହାଲଚାଲ, ଅଭାବ ଅସୁବିଧା କହିଲେ । ଶ୍ରୀ ରାମଚନ୍ଦ୍ର ପଣ୍ଡା ନାମକ ଯୁବକ ଉତ୍ସାହୀ ଲୋକ ଆମ ସହ ବନ୍ଧୁଗାଁ ଡାକବଙ୍ଗଳାକୁ ଆସିଲେ । ରାତିରେ ଏହି ଡାକବଙ୍ଗଳାରେ ଆମ୍ଭେମାନେ ରହିଲୁ । ଏ ଗ୍ରାମରେ ଜଳର ଅଭାବ, ଦୂରରୁ ନଦୀରୁ ପାଣି ଆଣନ୍ତି ।

ଶ୍ରୀ ବାଲୁକେଶ୍ୱର ମହାନ୍ତି, P.A. to Chief Minister ଆମ ସହିତ ଥିଲେ । ଆମ୍ଭେମାନେ ରାତିରେ ପରଟା ଖାଇଲୁ । ବନ୍ଧୁଗାଁ ଡାକବଙ୍ଗଳାରେ ଶୋଇଲୁ ।

୨୬.୪.୧୯୫୬

ସକାଳେ ବନ୍ଧୁଗାଁରୁ ଆମେ ପ୍ରାୟ ୫ ମାଇଲ ଦୂର ନୀଳାବାଡ଼ି କ୍ଷୁଦ୍ର ଜଳସେଚନ ପ୍ରୋଜେକ୍ଟ ନୀଳାବାଡ଼ି ଗାଁ ଦେଇ ଗଲୁ ଓ ସେ କ୍ଷୁଦ୍ର ଜଳସ୍ରୋତରେ ଗାଧୋଇଲୁ । ସେଠାରୁ ଘୁମରା ଗାଁକୁ ଚାଲିକରି ଗଲୁ । ସେଠାରୁ ବନ୍ଧୁଗାଁ ଡାକବଙ୍ଗଳାକୁ ଆସି, ମୋଟରରେ ଆଲମୁଣ୍ଡା ଆସିଲୁ । ଆଲମୁଣ୍ଡାରୁ ଚାଲିକରି ପ୍ରାୟ ୪ ମାଇଲ ପେଣ୍ଡ୍ରା ଆଲୋଡ଼ା ଗ୍ରାମକୁ ଗଲୁ । ଆଲମଣ୍ଡା ଠାରେ ଝଞ୍ଜାବତୀ ନଦୀରେ ପଶିଗଲୁ । ଅଲୋଡ଼ା ଗାଁରେ ମଧ୍ୟାହ୍ନଭୋଜନ କଲୁ । ଲୋକଙ୍କର ଆପତ୍ତି ଅଭିଯୋଗ ଶ୍ରୀ ଅକ୍ଷୟ ବାବୁ (ଆର୍.ଡ଼ି.ଓ) ନୋଟ୍ କରୁଥିଲେ । ଉପରଓଳି ପ୍ରାୟ ୨୦୦୦ କନ୍ଧ ଲୋକଙ୍କର ସାଧାରଣ ସଭାରେ ଆଚାର୍ଯ୍ୟ ମହାଶୟ, ଖୁଡ଼ୀ (ମାଳତୀ ଦେବୀ), ମୁଁ ଓ ଦାଦା କିଛି କିଛି କହିଲୁ । ଆଦିବାସୀ ଲୋକେ ଆଦୌ ଭୟ କରନ୍ତି ନାହିଁ ଓ ସର୍ବଦା ସତ୍ୟ କହନ୍ତୁ, ଏକଜୁଟ ହେଅନ୍ତୁ ବୋଲି ମୁଁ କହିଲି । ତାହାହେଲେ, ଅନ୍ୟମାନେ ସେମାନଙ୍କୁ ଶୋଷଣ କରିପାରିବେ ନାହିଁ । ଦାଦାଙ୍କର ଭାଷଣର ସାରମର୍ମ ଥିଲା : - "ଗ୍ରାମଦାନ କରିବାର ମହତ୍ତ୍ୱ, ପୂରା ତାତ୍ପର୍ଯ୍ୟ ଆପଣମାନେ (ଆଦିବାସୀ ମାନେ) ବୋଧହୁଏ ବୁଝି ନଥିବାରୁ, ଅନ୍ୟମାନେ ସେମାନଙ୍କୁ ଡରାଉଛନ୍ତି । ସେମାନେ ସେ ସବୁ ଅତ୍ୟାଚାର, ଶୋଷଣ କଥା ଉପର ସରକାରୀ କର୍ମଚାରୀଙ୍କୁ ଜଣାନ୍ତୁ; ଭୟ ଛାଡ଼ନ୍ତୁ । ଜମିଦାରୀ, ମୁଣ୍ଡାଦାରୀ ପ୍ରଥା ଉଠିଗଲାଣି, ନାୟକମାନଙ୍କ କୌଣସି ଅଧିକାରୀ ନାହିଁ, ସେମାନେ ଅଯଥା ଭୟ କରନ୍ତୁ ନାହିଁ ।''

ଉପରଓଳି ଏଠାରୁ ୧ ମାଇଲ ଦୂର ବିକ୍ରମପୁର ଗ୍ରାମକୁ ଗଲୁ । ସେଠାରୁ ଆଲମଣ୍ଡା ଆସି, ଭୂଦାନକର୍ମୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକଙ୍କ ଘରେ ସନ୍ଧ୍ୟାଭୋଜନ କଲୁ । ତାଙ୍କର ଘରେ ଏକ ମହୀଶ୍ୱରୀ ବଳଦ ମୁଁ ନୂଆ କରି ଦେଖିଲି । ସେଠାରୁ ମୋଟରରେ ଆମେ ପାର୍ବତୀପୁରକୁ

ଆସିଲୁ । ଦାଦା କଟକ ଗଲେ, ଆମେ ରାତି ୧୦ଟାରେ ମୋଟରରେ ୩୦ ମାଇଲ ଦୂର ରାୟଗଡ଼ାକୁ ଆସି, ରାତି ୧୨ଟାରେ ପହଞ୍ଚିଲୁ ।

୨୭.୪.୧୯୫୬

ଆଚାର୍ଯ୍ୟ ମହାଶୟ, ବାବୁଲି ଓ ମୁଁ ରାୟଗଡ଼ାରୁ ଟ୍ରେନ୍‌ରେ କେସିଙ୍ଗାକୁ ଆସିଲୁ । ରାଧାରତନ ଦାସ ଅମ୍ବାଦଳାରେ ଆମଠାରୁ ଟ୍ରେନ୍‌ରୁ ବ୍ୟାସଜୀଙ୍କଠାକୁ ଗଲେ । ବ୍ୟାସଜୀ ମଧ୍ୟ ଷ୍ଟେସନକୁ ଆସିଥିଲେ । କେସିଙ୍ଗାରୁ ଆମେ ବସ୍‌ରେ ୨୨ ମାଇଲ ଦୂର ଭବାନୀପାଟଣାକୁ ଗଲୁ । ଶକ୍ତିଶେଖର ଦାସ ଆମକୁ ଅପେକ୍ଷା କରି ସେଠାରେ ଥିଲେ ।

୨୮.୪.୧୯୫୬

କଳାହାଣ୍ଡିର ମହାରାଜା ଶ୍ରୀ ପ୍ରତାପକେଶରୀ ଦେଓ, ଏମ୍.ଏଲ୍.ଏ ପ୍ରାଦେଶିକ ଭୂଦାନ ସମିତିର ସଦସ୍ୟ ଅଟନ୍ତି । ସେ ୧୦୦୨ ଏକର ଜମି ଭୂଦାନକୁ ଦେଇଛନ୍ତି । ତାଙ୍କର ସେହି ଜମି ବାଣ୍ଟିବାର ତାରିଖ ସେ ତା ୨୭ ଓ ୨୮ ଏପ୍ରିଲ ଧାର୍ଯ୍ୟ କରିଥିଲେ । ମାତ୍ର ସେ ଠିକ୍ ସମୟରେ ଭବାନୀପାଟଣାକୁ ଫେରି ନ ପାରିବାରୁ, ଜମିବଣ୍ଟନ ସମ୍ଭବପର ହେଲାନାହିଁ । ତେଣୁ କରି ଭବାନୀପାଟଣାରୁ ସକାଳେ ବାହାରି ଆସିଲୁ । ପ୍ରଚାର ବିଭାଗର ଜୀପ୍‌କାରରେ ବିଭୂତିବାବୁ ଆମକୁ ପାଷ୍ଟିକୁଡ଼ି ସେବାଶ୍ରମରେ ଛାଡ଼ିଦେଇ ଅନ୍ୟତ୍ର ଡ୍ୟୁଟିରେ ଗଲେ । ଏଠାରେ ଜେନାପୁର ଆଡ଼ର ଶ୍ରୀ ରାଧାଶ୍ୟାମ ପଟ୍ଟନାୟକ (ଶ୍ରୀ ବାସୁଦେବ ମହାନ୍ତିଙ୍କର ଭଣଜା) ପ୍ରଧାନ ଶିକ୍ଷକ ଅଛନ୍ତି । ସେ ଓ ତାଙ୍କର ସହକାରୀମାନେ ଆମକୁ ଖୁବ୍ ଆଦର ସମ୍ମାନ ଦେଖାଇଲେ । ରାଧାଶ୍ୟାମବାବୁଙ୍କ ବସାରେ ଖାଇଲୁ । ସନ୍ଧ୍ୟାରେ ପାଷ୍ଟିକୁଡ଼ି ଗ୍ରାମରେ ଜମିବଣ୍ଟନ ପାଇଁ ଗଲୁ ମାତ୍ର ଦାତାମାନେ ଜମି ବାଣ୍ଟିଦେବାକୁ ରାଜୀ ନ ହେବାରୁ, ଫେରିଆସିଲୁ । ଭୂଦାନକର୍ମୀ ଶ୍ରୀ କାର୍ତ୍ତିକ ରାଉତ ଆମ ସହ ଥିଲେ ।

୨୯.୪.୧୯୫୬

ପାଷ୍ଟିକୁଡ଼ି ଓ ଆଖପାଖ ଗାଁଗୁଡ଼ିକରେ ଜମିବଣ୍ଟନ ପାଇଁ ଆମେ ୨ ଦିନ ରହିବାକୁ ପ୍ରୋଗ୍ରାମ୍ କରିଥିଲୁ ମାତ୍ର କାଲିର ଅବସ୍ଥାରୁ, ଜମିବଣ୍ଟନ ସମ୍ଭବପର ନ ଦେଖି, ଆଜି ସକାଳର ମୋଟର-ବସ୍‌ରେ ଆଚାର୍ଯ୍ୟ ମହାଶୟ, ବାବୁଲି ଓ ମୁଁ ପାଷ୍ଟିକୁଡ଼ିରୁ କେସିଙ୍ଗା ବାଟେ ସଇଁତଳାକୁ (ପ୍ରାୟ ୩୮ ମାଇଲ) ଆସିଲୁ । ସଇଁତଳାରେ ଶ୍ରୀ ଦିବାକର ବହିଦାର (ବୟସ ପ୍ରାୟ ୬୦ ବର୍ଷ ହେବ)ଙ୍କ ଘରେ ରହିଲୁ । ଉପରଓଳି ତାଙ୍କର ଶଗଡ଼ରେ ଆଚାର୍ଯ୍ୟ ମହାଶୟ, ବାବୁଲି ଓ ମୁଁ ପ୍ରାୟ ୭ ମାଇଲ ଦୂର କଁସର ଗ୍ରାମକୁ ଗଲୁ । ମାତ୍ର ଏଠାର ଆମର ମୁଖ୍ୟ ପରିଚିତ ବ୍ୟକ୍ତି ଶ୍ରୀ ସୁନ୍ଦରମଣି ମେହେର (ଯେ ଶ୍ରୀ ଅଲେଖ ପାତ୍ରଙ୍କୁ ଆଶ୍ରମ କରିବାକୁ ୧୫ ଏକର ଜମି ଦେଇଥିଲେ

ଓ ନାନାପ୍ରକାର ସାହାଯ୍ୟ କରିଥିଲେ) ପ୍ରାୟ ୩ ଘଣ୍ଟା ପୂର୍ବରୁ ତାଙ୍କର ଅନ୍ୟ ଏକ ଗ୍ରାମ ନୂଆପଡ଼ାକୁ ସପରିବାର ବାହାରିଯାଇଥିବାରୁ, ଆମେ ସେହି ଶଗଡ଼ରେ ସଇଁତଳାକୁ ଫେରିଆସିଲୁ ।

୩୦.୪.୫୬

ସକାଳେ ଶ୍ରୀ ଦିବାକର ବହିଦାରଙ୍କ ଘରେ ଭାତ ଖାଇ, ଆମ୍ଭେମାନେ ବସ୍‌ରେ ବଲାଙ୍ଗୀରକୁ ଆସିଲୁ । ବଲାଙ୍ଗୀର ମୋଟରଷ୍ଟାଣ୍ଡରୁ ପୁଣି ବସ୍‌ରେ ସିଧା ସମ୍ବଲପୁର ଟାଉନ୍‌କୁ (୮୫ ମାଇଲ ଦୂର) ଆସିଲୁ । ବରଗଡ଼ଠାରେ ଶ୍ରୀ ଅନିରୁଦ୍ଧ ମିଶ୍ର, ଏମ୍.ଏଲ୍.ଏଙ୍କ ସହ ଦେଖା ହେଲା । ଘେଁସର ଶ୍ରୀ ଶ୍ରୀପତି ଦେବତା ମଧ୍ୟ ସେଠାରୁ ଆମ ସହ ବସ୍‌ରେ ସମ୍ବଲପୁରକୁ ଆସିଲେ । ଏଠାର ଭୂଦାନ ଅଫିସ ଘରେ (କଂସାରିପଡ଼ାରେ ଶ୍ରୀ ପ୍ରହ୍ଲାଦ ରାୟ ଲାଠଙ୍କର ବାହାର ଘରେ) ଆମେ ରହିଲୁ । ଶ୍ରୀ ମଦନ ମୋହନ ସାହୁ, ଜିଲ୍ଲା-ସଂଯୋଜକ ସ୍ୱାମୀ ଅଚ୍ୟୁତାନନ୍ଦ ସରସ୍ୱତୀଙ୍କର ଜମି ବଣ୍ଟନରୁ ରାତିରେ ଫେରିଲେ ।

୧.୫.୧୯୫୬

ଗତ ରାତିରେ ଏଠାରେ ଭାରୀ ଗରମ ହେଲା । ରାତି ୨ଟାରେ ମୁଁ ଉଠି, ମୋର ଗସ୍ତଖର୍ଚ୍ଚର ଭାଉଚର ଓ ଏପ୍ରିଲ ମାସର କାର୍ଯ୍ୟବିବରଣୀ ଲେଖିଲି ସକାଳ ୫ଟା ପର୍ଯ୍ୟନ୍ତ । ସମ୍ବଲପୁର ଟାଉନରେ ଥିବା ରାଷ୍ଟ୍ରଭାଷା ପ୍ରଚାରକ ଶ୍ରୀ ବାସୁଦେବ ମିଶ୍ରଙ୍କ ନିମନ୍ତ୍ରଣ ଥିଲା ମାତ୍ର ସମୟର ଅଭାବରୁ ମୁଁ ଯାଇପାରିଲି ନାହିଁ, ବାବୁଲି ଓ ଆଚାର୍ଯ୍ୟ ମହାଶୟ ତାଙ୍କ ବସାକୁ ଜଳଖିଆ କରିବାକୁ ଗଲେ । ଆଚାର୍ଯ୍ୟ ମହାଶୟ, ବାବୁଲି, ମଦନବାବୁ, ଶ୍ରୀମାନ୍ ନାରାୟଣ( ରାସବିହାରୀ ଦାସଙ୍କର ସାନ ପୁଅ) ଓ ମୁଁ ହୀରାକୁଦରେ ତିଆରି ହେଉଥିବା ମହାନଦୀ ଉପରେ ଆନିକଟ୍ ଓ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କଳର ଘର, ଆଦି ଦେଖିଆସିଲୁ । ଏ ମହା ବଡ଼ କାର୍ଯ୍ୟ ଚାଲିଛି । ସଙ୍ଗରେ ..ବା କୌଣସି ଇଞ୍ଜିନିୟର ଆମେ ନେଇ ନ ଥିବାରୁ, ଅନେକ ବିଷୟ କିଛି ବୁଝି ପାରିଲୁ ନାହିଁ, କେବଳ ଆଖିରେ ଦେଖିଆସିଲୁ । ଆସନ୍ତା ଜୁଲାଇ ମାସଠାରୁ ବନ୍ଧର ଉପର ଅଂଶ ଜଳମଗ୍ନ ହୋଇଯିବ । ଉପରକୁ ପ୍ରାୟ ୩୬ ମାଇଲ ପର୍ଯ୍ୟନ୍ତ ସ୍ଥାନ ଓ ତହିଁ ମଧ୍ୟରେ ପଡୁଥିବା ଗ୍ରାମମାନ ଜଳମଗ୍ନ ହୋଇଯିବ । ସେ ସବୁ ସ୍ଥାନରୁ ଲୋକେ ଅନ୍ୟ ଅଞ୍ଚଳକୁ ଉଠି ଯାଉଛନ୍ତି ।

ସମ୍ବଲପୁର ଟାଉନ୍‌ରେ ଶ୍ରୀ ଲିଙ୍ଗରାଜ ମେହେରଙ୍କର ଘରେ ଆଚାର୍ଯ୍ୟ ମହାଶୟ, ବାବୁଲି, ମଦନବାବୁ ଓ ମୁଁ ମଧ୍ୟାହ୍ନଭୋଜନ କଲୁ । ଉପରଓଳି ସର୍ବଶ୍ରୀ ବୋଧରାମ ଦୁବେ (ଏମ୍.ପି), କମ୍ୟୁନିଷ୍ଟ ଦୟାନନ୍ଦ ଶତପଥୀ, କୃପାସିନ୍ଧୁ ଖୁଣ୍ଡିଆ (ଘର ବରୀରେ), ସ୍ୱାମୀ ଅଚ୍ୟୁତାନନ୍ଦ ସରସ୍ୱତୀ, ସବ୍ ରେଜିଷ୍ଟ୍ରାର ବିଷ୍ଣୁପ୍ରସାଦ ମିଶ୍ର, ଆଦି ଆଚାର୍ଯ୍ୟ ମହାଶୟଙ୍କୁ ଭେଟି, ଭୂଦାନ ବିଷୟରେ କଥାବାର୍ତ୍ତା କରିଥିଲେ । ପଣ୍ଡିତ ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ର ମଧ୍ୟ ଆସି, ଆଚାର୍ଯ୍ୟ ମହାଶୟଙ୍କୁ ଦେଖା କଲେ । ସେ ନିକଟରେ ଶିବାନନ୍ଦଙ୍କ ଠାରୁ (ଋଷିକେଶ ଠାରୁ) ଏବଂ ଉତ୍ତର ଭାରତର କେତେକ ପ୍ରଧାନ ତୀର୍ଥରୁ ଫେରିଛନ୍ତି । ସେ ଅନ୍ୟର ନିନ୍ଦା ନ କରି, ବଡ଼ ଉଚ

ଧରଣର ଓ ଆଶାସୂଚକ ଆଲୋଚନା କଲେ । ଭୂଦାନ ଆନ୍ଦୋଳନକୁ ବହୁତ ପ୍ରଶଂସା କଲେ ଏବଂ କହିଲେ ଯେ "ଚୌଧୁରୀ'' ପରିବାର ପରି ପରିବାର ଭାରତରେ ଅତି ବିରଳ । ସନ୍ଧ୍ୟାରେ ଶ୍ରୀ ଶିବନାରାୟଣ ପାଢ଼ୀ ଆସି ଆଚାର୍ଯ୍ୟ ମହାଶୟଙ୍କୁ ଦେଖା କରିଗଲେ । ଭୂଦାନ ଅଫିସରେ ଆମ୍ଭେମାନେ ଆଜି କଟାଇଲୁ ।

୪.୫.୧୯୫୬

ସକାଳ ୮ଟାରେ ମଦନବାବୁ ଓ ମୁଁ ସାଇକେଲରେ ପ୍ରାୟ ୧ ମାଇଲ ଆସିବାପରେ, ଏସ୍.ଡ଼ି.ଓ.ଙ୍କ ପ୍ରେରିତ ମୋଟରରେ ପୁଣି ଆମ୍ଭେମାନେ ସମସ୍ତେ ପ୍ରାୟ ୧୩ ମାଇଲି ଦୂର କୁନ୍ତରାକୁ ଆସିଲୁ । ସାଢ଼େ ୯ଟାରେ ପହଞ୍ଚିଲୁ । ଶ୍ରୀ ରଙ୍ଗାଧର ଦାସଙ୍କ ବସାରେ ରହିଲୁ ଓ ଖାଇଲୁ ।

ସନ୍ଧ୍ୟାବେଳେ ଏହି ଗ୍ରାମର ଅନେକ ପୁରୁଷ ଓ ସ୍ତ୍ରୀ ଜମା ହୋଇଥିଲେ । ଆଚାର୍ଯ୍ୟ ମହାଶୟ ସେମାନଙ୍କୁ ଉପଦେଶ ଦେଲେ । ମୁଁ ମଧ୍ୟ ଦୁଇପଦ କହିଲି - ସରକାରୀ କର୍ମଚାରୀଙ୍କୁ ଅଯଥା ଡରନ୍ତୁ ନାହିଁ, କିମ୍ବା ନିନ୍ଦାପ୍ରଶଂସା କରନ୍ତୁ ନାହିଁ । ସେମାନେ ଆପଣାମାନଙ୍କୁ ସାହାଯ୍ୟ କରିବାକୁ ଅଛନ୍ତି । ରଚନାତ୍ମକ କାର୍ଯ୍ୟ ଏହି ଗ୍ରାମରେ ଲୋକେ କରନ୍ତୁ । ବିଡ଼ି, ତମାଖୁ, ନିଶା ସେବନ ଛାଡ଼ି ଦିଅନ୍ତୁ । ବସ୍ତ୍ର-ସ୍ୱାବଲମ୍ବୀ ହେଉନ୍ତୁ ।

ମୁଁ ଲକ୍ଷ୍ୟ କରୁଛି ଯେ ବାବୁଲି ନିଜର କାର୍ଯ୍ୟ ନିଜେ କରୁଛି ଏବଂ ନୂଆ ଜାଗାରେ ଓ ଲୋକଙ୍କ ଭିତରେ ବେଶ୍ ଚଳିପାରୁଛି ।

୫.୫.୧୯୫୬

ସକାଳ ଓଳି ଏ କେତେ ଦିନର ବାକୀ ଡାଏରୀ ଲେଖିଲି । ତା ୭.୫.ର କାର୍ଯ୍ୟକ୍ରମ ମଦନବାବୁଙ୍କ ସହ ସ୍ଥିର କଲୁ । ଉପରଓଳି ରଙ୍ଗାଧରବାବୁଙ୍କ ବସାରେ ପଖାଳ ଖାଇ, ଘ ୫.୫୦ରେ ମଦନବାବୁ, ହିଳେଶ୍ୱର ଗୌନ୍ତିଆ ମହାଶୟ ଓ ମୁଁ କୁନ୍ତରା ଚାଲି କରି ପ୍ରାୟ ୧୨ ମାଇଲ ଦୂର ରାମଝାଲି ଗ୍ରାମରେ ଶ୍ରୀ ରମାକାନ୍ତ ମିଶ୍ରଙ୍କ ଘରଠାରେ ରାତି ୯.୫୦ ରେ ପହଞ୍ଚିଲୁ । ରାତିରେ ଆଉ କିଛି ଖାଇଲୁ ନାହିଁ । ବାହାରେ ଶୋଇଲୁ ।

୬.୫.୧୯୫୬

ରାମଝାଲି ସମଗ୍ର-ଗ୍ରାମଦାନ ଗାଁ ହୋଇଥିଲା, ତା ୨୯.୧.୫୬ରେ ଜମିବଣ୍ଟନ ହୋଇଯାଇଛି । ତେଣୁ କରି, ଏହି ଗ୍ରାମରେ ୧୦/୧୫ ମିନିଟ୍ ଶ୍ରୀଯୁକ୍ତ ନବବାବୁ ରହନ୍ତେ ବୋଲି ଆମ୍ଭେମାନେ ସ୍ଥିରକରି, ରମାକାନ୍ତ ମିଶ୍ରଙ୍କୁ ଆଗରୁ ଜଣାଇଥିଲୁ । ମାତ୍ର ରାମାକାନ୍ତ ମିଶ୍ର

ବାବୁଙ୍କର ଏଥିରେ ପ୍ରକୃତ ଆଗ୍ରହ ନ ଦେଖି, ଗ୍ରାମବାସୀମାନେ ମଧ୍ୟ ଉତ୍ସାହିତ ହେଉଥିବା ନ ଦେଖି, ଆମେ ନବବାବୁଙ୍କର ଏଠାକୁ ଆସିବା ବନ୍ଦ କରିଦେଲୁ । ରମାକାନ୍ତ ବାବୁ କହିଲେ – "ବଣ୍ଟନ କରି ଆପଣମାନେ ମଞ୍ଜି (ଅର୍ଥାତ୍ କଳିମଞ୍ଜି) ପୋତି ଦେଇଗଲେ ।'' ମୁଁ ଅନେକଥର ତାଙ୍କର କଥାବାର୍ତ୍ତାରୁ ଲକ୍ଷ୍ୟ କଲିଣି ଯେ ସେ ନିଜେ ଗାଁରେ କିଛି ନ କରି, ସରକାରୀ କିରାଣୀ ଓ ଅଫିସରମାନଙ୍କୁ ଦୋଷ ଦେଉଛନ୍ତି । ଅଧୀର ହେଉଛନ୍ତି । ତାଙ୍କର ଏପରି indifference – ନବବାବୁଙ୍କର ଏ ଗାଁକୁ ଆସିବା ବିଷୟରେ – ଦେଖି ଓ ଆମକୁ ତାଙ୍କ ଗ୍ରାମରେ ଜମିବଣ୍ଟନରେ ଦୋଷ ଦେଉଥିବାରୁ, ମୁଁ ବିରକ୍ତ ହୋଇ କହିଲି ଯେ ଆଜି ଆପଣଙ୍କର ଗ୍ରାମର ଦାନ ଓ ବଣ୍ଟନ cancel କରିଦେଉଛି ।'' ପରେ ମୁଁ ଜାଣିଲି ଯେ ଏ ମଦ, ଦେଶୀମଦ ଖାଆନ୍ତି, ଏବଂ କାଲି ରାତିରେ ମଧ୍ୟ ତାହା ଖାଇଥିଲେ, ଅନୁମାନ । ସେଥିପାଇଁ ଏପରି ଅସ୍ଥିରମନା ।

ତାଙ୍କ ଘରେ ଆମେ ମୁଢ଼ି ଖାଇ, କୋଚିଣ୍ଡା ଗଲୁ । କଳାହାଣ୍ଡିର ମହାରାଜା ଓ ଗଣତନ୍ତ୍ର ଦଳର ଶ୍ରୀ ଶ୍ରଦ୍ଧାକର ସୂପକାରଙ୍କ ସହ କୋଚିଣ୍ଡା ଟାଉନ୍‌ରେ ଦେଖା ହେଲା । କଳାହାଣ୍ଡି ମହାରାଜ ମୋର ତା ୩୦.୪.୫୬ ର ନ.୨୬୯ ପତ୍ର ପାଇଛନ୍ତି କି ନାହିଁ, ସଫା କହିଲେ ନାହିଁ । କନ୍ତରାରେ ତା ୭.୫. ରେ ଘ ୯ଟା ବେଳେ ବୈଠକରେ ସେ ଯୋଗଦେବେ ବୋଲି ଆମକୁ କହିଲେ ।

ଶ୍ରୀଯୁକ୍ତ ନବବାବୁ ଏଠାରେ ଘ ୧୧.୨୫ରେ ପହଞ୍ଚିଲେ । ଆମେ ତାଙ୍କୁ ଦେଖା କରି , ଶ୍ରୀ ଗୌରଚନ୍ଦ୍ର ପଣ୍ଡାଙ୍କର କକେଇ–ଶ୍ୱଶୁର ..ମହାପାତ୍ରଙ୍କ ବସାରେ ମଧ୍ୟାହ୍ନଭୋଜନ କଲୁ ।

୧୦.୫.୧୯୫୬

କଟକରେ । ସକାଳେ କାଖରେ ମୋର ଉତ୍ତାପ ୯୮.୪ ଡିଗ୍ରି ଥିଲା । ଖରାବେଳକୁ ୧୦୦.୪ ଡ଼ିଗ୍ରି ହେଲା । କେବଳ ମିଶ୍ରି ସରବତ୍, ଓ ରନ୍ଧା ସାଗୁ, ଦୁଧ ପିଇଲି । ରାତିରେ ବେକ, ପିଠି ଅଂଶରେ ଖୁବ୍ ଝାଳ ବୋହିଲା । ଆଜି ୨ ପାନ alkaline mixture ଖାଇଲି । ସନ୍ଧ୍ୟାବେଳେ ଶ୍ୱେତ ପୁରୁଣି ଶାଗର ରସ ମଧ୍ୟ ୧ ଛଟାଙ୍କି ପିଇଲି ।

ବାବୁଲି ଓ ଆଚାର୍ଯ୍ୟ ମହାଶୟ ଶ୍ରୀଯୁକ୍ତ ନବବାବୁଙ୍କ (ଦାଦାଙ୍କ) ସହ ମୋଟରରେ କଟକରୁ ରାତି ୯ଟାରେ ଅନୁଗୋଳ ଗଲେ ।

୧୧.୫.୧୯୫୬

ଗତ ଦୁଇଦିନ ପରି ଆଜି ମଧ୍ୟ ମୋର ଜ୍ୱର ୯୮ ୦ ରୁ ୧୦୧ ୦ ପର୍ଯ୍ୟନ୍ତ ରହିଲା । ପେଟରେ ପୁରୁଣା ମଇଳା ଥିବା ପରି, ୨ ଥର ପାଇଖାନା ହେଲା । ଉପରଓଳି କନିକାର ଡାକ୍ତର ହରିଶ୍ଚନ୍ଦ୍ର ରାୟ (ଆଜିକାଲି ରେଭେନ୍ସା କଲେଜରେ ଡାକ୍ତର ଅଛନ୍ତି ) ମୋତେ

ଦେଖିଲେ ଏବଂ ଏ ଜ୍ୱର ମେଲେରିଆ ନୁହେଁ, କୁଇନାଇନ୍ ଖାଇବାକୁ ମନା କଲେ, ରୀତିମତ ଗାଧୋଇବାକୁ ଓ ସାଧାରଣ ଖାଦ୍ୟ ଖାଇବାକୁ କହିଲେ । alkaline mixture ଓ Vitamin C ର ବ୍ୟବସ୍ଥାପତ୍ର ଲେଖିଦେଇଗଲେ ।

ଡାକ୍ତର ହ. ରା ୧୯୨୬ ଓ ୨୭ ମସିହାରେ ରେଭେନ୍ସା କଲେଜରେ ମୋ ସହିତ ପଢୁଥିଲେ । ୧୯୨୭ର ବୈତରିଣୀ-ବନ୍ୟା ସମୟରେ ଆମ୍ଭେମାନେ ଏକତ୍ର ରିଲିଫ୍ କାର୍ଯ୍ୟରେ ବୈତରିଣୀ ରୋଡ୍, ମଞ୍ଜରିରୋଡ୍, ଆଦି ଅଞ୍ଚଳରେ ୧ ମାସ ବୁଲିଥିଲୁ । ସେ କଟକ ମେଡ଼ିକାଲ ସ୍କୁଲରେ ପଢ଼ି, ପରେ ଆୟାରଲାଣ୍ଡରେ ଡାକ୍ତରି ପଢ଼ି ଆସିଛନ୍ତି । ପ୍ରଦେଶଗୁଡ଼ିକର ଗତ ସୀମା-ଗଣ୍ଡଗୋଳ ବିଷୟରେ ସେ କଥାପ୍ରସଙ୍ଗରେ ତାଙ୍କର ଅନୁଭବ ଓ ମତ କହିଲେ ।

ରାତି ୨ଟା ବେଳକୁ ମୋର ଦେହର ଉତ୍ତାପ ୯୭ ଡିଗ୍ରି ଥିଲା ।

୧୨.୫.୧୯୫୬

ସକାଳ ୫ଟା ବେଳେ ମୁଁ ଥଣ୍ଡା ପାଣିରେ ଭଲ କରି ଗାଧୋଇଲି । ସକାଳ ୬ଟାରେ, ୧୦ଟାରେ, ଖରାବେଳେ ଓ ସନ୍ଧ୍ୟାରେ ମୋର ଦେହର ଉତ୍ତାପ ୯୭ ଡିଗ୍ରି ଥିଲା । ଦେହ ପୂରା ସୁସ୍ଥ ଲାଗିଲା । ମଧ୍ୟାହ୍ନରେ ଭାତ ଖାଇଲି । ରାତି ୯ଟାରେ ଚୁଡ଼ାଭଜା ଓ ଦୁଧ ଖାଇଲି ।

୧୩.୫.୧୯୫୬

ଅକ୍ଷୟ ତୃତୀୟା । ସକାଳ ୮ ରୁ ୧୦ ଟା ପର୍ଯ୍ୟନ୍ତ ସହରରେ ସର୍ବୋଦୟ ବିଚାର ପ୍ରଚାରର ଏକ ବୈଠକ ଭୂଦାନ ଅଫିସରେ ହେଲା । ସର୍ବଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ, କାଳିନ୍ଦୀ ପାଣିଗ୍ରାହୀ, ସରଳା ଦେବୀ (ଟିକୁନ୍‌ର ବୋଉ), ବୀରକିଶୋର ରାୟଙ୍କର ଝିଅ ପ୍ରଫେସର ଦେବବାଳା ରାୟ, ହରମୋହନ ପଟ୍ଟନାୟକ, ଦେବେନ୍ଦ୍ରନାଥ ଶତପଥି, ଓକିଲ ବିମଳକୃଷ୍ଣ ପାଳ, ନିତ୍ୟାନନ୍ଦ ମହାପାତ୍ର, (ଡ଼ଗରର ସଂପାଦକ, ନିକଟରେ ସେ ଭୂଦାନ ବିରୋଧରେ ଡ଼ଗରରେ ଏକ ସଂପାଦକୀୟ ଲେଖା ଲେଖିଥିଲେ), ନିତ୍ୟାନନ୍ଦ ସିଂହ, ବାଲେଶ୍ୱର କଲେଜର ଗଣିତ ଅଧ୍ୟାପକ ଭୁବନାନନ୍ଦ ରାୟ, କଲେଜ ଛାତ୍ର ଓ ଆମର କର୍ମୀ ପ୍ରଫୁଲ୍ଲ ଚନ୍ଦ୍ର ଦାସ, ଗୟାଧର ବାରିକ, ଜୟକୃଷ୍ଣ ବିଶ୍ୱାଳ, ବୁଲୁବାବୁ, ପ୍ରଭୃତି ଯୋଗ ଦେଇଥିଲେ । ଭଲ ଆଲୋଚନା ହେଲା ।

୧୫.୫.୧୯୫୬

ବାବାଙ୍କର ଫଟୋଟି ମୁଁ ଆଜି ବିଭୂତିଭୂଷଣ କାନୁନ୍‌ଗୋଙ୍କ ଠାରୁ (ଡ଼ଗରପଡ଼ାରୁ) ନେଇ ଆସିଲି ।

୧୭୫.୧୯୫୬

ଏ ବର୍ଷ ଓଡ଼ିଶାର ଉପକୂଳ ଜିଲ୍ଲାଗୁଡ଼ିକରେ ଆମ୍ବ ଅଣାଏ ଅଂଶରେ ସୁଦ୍ଧା ହୋଇନାହିଁ । ସହରରେ ଅବଶ୍ୟ କିଛି କିଛି ମିଳୁଛି । କଟକରୁ କିଛି ପାଚିଲା ଦେଶୀ ଆମ୍ବ କିଣି, ତାକୁ ସାଇକେଲରେ ବିଚିତ୍ରାନନ୍ଦ ମହାନ୍ତି ଓ ମୁଁ ନେଇ, କଟକରୁ ସକାଳ ୮ଟାରେ ବାହାରି ସତ୍ୟଭାମାପୁରରେ ସ୍ୱର୍ଗତଃ ଗୋପାଳବଲ୍ଲଭ ଦାସଙ୍କର ଘରେ (ବର୍ତ୍ତମାନ ମାତୃମଙ୍ଗଳ କେନ୍ଦ୍ରରେ) ଘ ୯.୩୦ରେ ପହଞ୍ଚିଲୁ । ନିର୍ମଳା ଓ ତାହାର ୨ ଝିଅ ଥିଲେ । ଆମ୍ଭେମାନେ ଭାତ ଖାଇ, ଧଡ଼ିବାବୁଙ୍କ ସହ କଥାବାର୍ତ୍ତା କରି, ଦିନ ଗୋଟାକ ବେଳେ ସେଠାରୁ ସାଇକେଲରେ ବାହାରି, ବେଣୀପୁର କମ୍ପଗଡ଼ ଘାଟରେ (ଜଗତ୍‌ପୁର କେନାଲରେ ୨୮ ୧/୨ ମାଇଲ ଠାରେ) ବିରୂପା ନଦୀ ପାର ହୋଇ, ସାଇକେଲ ଗଡ଼ାଇ ଗଡ଼ାଇ କୋଲଥଗିରିକୁ ଆସିଲୁ । ଅତ୍ୟଧିକ ଗରମ ଯୋଗୁଁ, ଦେହରେ ଜଳୀୟ ଅଂଶ ଊଣା ହେବାରୁ, ମୋର ପରିଶ୍ରା ଅତି କମ୍ ହେଲା ଓ କଷ୍ଟବୋଧ ହେଲା । ସାଇକେଲ ଚଢ଼ିବାମାତ୍ରେ ଗୋଡ଼ର ଆଙ୍ଗୁଳି ୨ଟା ଖିଲ ମାରିଗଲା । ଯାହାହେଉ, ଅଲିଆବାଦରୁ ସାଇକେଲ ଚଢ଼ି ହାଟସାହି ଘାଟକୁ ଓ ରାମଚନ୍ଦ୍ରପୁରକୁ ଆସି, ସଂଧ୍ୟା ଘ ୬.୧୫ ମିନିଟରେ ପହଞ୍ଚିଲୁ । କସ୍ତୁରବା କେନ୍ଦ୍ରରେ ତୋରାଣି ଓ ଦହି ବେଲାଏ(କଂସାଏ) ଖାଇଲି । ପ୍ରାୟ ୪୫ ମିନିଟ୍ ମଧ୍ୟରେ ମୋତେ ବେଶ୍ ଆରାମ ଓ ସୁସ୍ଥ ଲାଗିଲା ।

ବାବୁଲି ଭୁବନେଶ୍ୱରରୁ ଦାଦାଙ୍କ (ନବବାବୁଙ୍କ) ସହ ଗଞ୍ଜାମର ଟିକାବାଲି ଆଜି ଗଲା । ଶ୍ରୀମତୀ ଚୁନୀ ଦେବୀ କହିଲେ ଯେ ବନ୍ନୁ କେତେ ଥର କହିଲାଣି ଯେ ସେ ବାବାଜୀ (ସନ୍ନ୍ୟାସୀ) ହୋଇ ଚାଲିଯିବ ।

୧୮.୫.୫୬

ରାମଚନ୍ଦ୍ରପୁରରେ । ସକାଳେ ଡାକ୍ତର କାଳୀପଦ ଚୌଧୁରୀଙ୍କୁ ଖୁସିରେ ଦେଖା କଲି । ଶ୍ରୀ ବେଣୁଧର ବେଉରା ଆସିଥିଲେ । ମହାନଦୀ ଉପରେ ହୀରାକୁଦ ବନ୍ଧ କଥା ସେ ସ୍ୱତଃ ପଚାରିବାରୁ, ମୁଁ କହିଲି । ମେଦୁଆକୂଳର ଶ୍ରୀଯୁକ୍ତ କଣ୍ଡୁରି ଶାନ୍ତି (ବୟସ ୭୬ ବର୍ଷ) ଆସିଥିଲେ । ଶ୍ରୀଯୁକ୍ତା ସୁଶୀଳା ଦେବୀ (ରାମପୁରର) ବନ୍ନୁକୁ ଏବେ ଗୋଟିଏ ଛଡ଼ା (ମାଈ ବାଛୁରୀ) ଖୁସିରେ ଦେଇଛନ୍ତି । ବନ୍ନୁ ପିଲାଦିନେ ବାଛୁରୀ ଦେଖିବାକୁ ଓ ପାଳିବାକୁ ଭାରୀ ଭଲ ପାଉଥିଲା ।

୨୦.୫.୫୬

କଟକ ଜିଲ୍ଲାର ମୌଳିକ ଶିକ୍ଷକମାନଙ୍କର ବାର୍ଷିକ ଅଧିବେଶନରେ ରାମଚନ୍ଦ୍ରପୁରଠାରେ ମୁଁ ଉପସ୍ଥିତ ଥିଲି । ହଳଦୀବସନ୍ତର ଶ୍ରୀ ଗୟାଧର ଜେନା ସଭାପତି ହେଲେ । ୩ୟ ଓ ୫ମ ସୋପାନର ପିଲାଙ୍କର Common examination and scholarship examination

ବିରୋଧରେ ଅନେକେ କହିଲେ । ଏ ପରୀକ୍ଷାର କାରଣ ନ ଜାଣିବା ପର୍ଯ୍ୟନ୍ତ ମୁଁ କାହାକୁ ସମାଲୋଚନା କରି ଦୋଷ ଦେଇ ପାରୁନାହିଁ । ଶିକ୍ଷକମାନେ ନିଜେ ନିଜର ତ୍ରୁଟି ଦେଖନ୍ତୁ ଓ ଠିକ୍ ଠିକ୍ କାର୍ଯ୍ୟ କରି, ଉଚିତ ନମୁନା ଦେଖାନ୍ତୁ ଏବଂ ଉପର ଅଫିସରମାନଙ୍କୁ ସେମାନଙ୍କର ଆନ୍ତରିକ ମତାମତ ପ୍ରତୀକାର ପାଇଁ ଜଣାନ୍ତୁ ବୋଲି ମୁଁ କହିଲି । ଶିକ୍ଷକମାନଙ୍କର ପଙ୍‌କ୍ତି ଭୋଜନରେ ଦିନ ୨ଟା ବେଳେ ମୁଁ ଖାଇଲି ।

ଉପରଓଳି ଶ୍ରୀ ହରି ବିଶ୍ୱାଳଙ୍କର ବନ୍ଧୁବାନ୍ଧବ ଓ ଗୟାଧର ଜେନାଙ୍କ ସହ ଘଣ୍ଟାଏ ବାହାଘର ବିଷୟରେ କଥାବାର୍ତ୍ତା ମୁଁ ଶୁଣିଲି । ଶ୍ରୀ ଦ୍ୱିଜ ବିଶ୍ୱାଳଙ୍କ ଘରକୁ ମୁଁ ବୁଲି ଗଲି । ଜଣେ ପଡ଼ୋଶୀଙ୍କର ରୁଗ୍‌ଣା ସ୍ତ୍ରୀଙ୍କୁ କେନ୍ଦ୍ରପଡ଼ା ଡାକ୍ତରଖାନାରେ ଚିକିତ୍ସାପାଇଁ ଚିଠି ଲେଖିଦେଲି ।

ସନ୍ଧ୍ୟାପରେ କସ୍ତୁରବା କେନ୍ଦ୍ରରେ ପଖାଳ ଖାଇ, ବିଚିତ୍ରାନନ୍ଦ, କଣ୍ଠୁରିଶାନ୍ତି ମହାଶୟ ଓ ମୁଁ ହଳଦୀବସନ୍ତ ଗଲୁ । ବିକ୍ରମ କେଶରୀ ବିଶ୍ୱାଳର ବିବାହ ସେଠାର ଶ୍ରୀ ଅଚ୍ୟୁତାନନ୍ଦ ଜେନାଙ୍କର ୨ୟା କନ୍ୟା ଶ୍ରୀମତୀ ଶାନ୍ତି ସହ ହେଲା । ଆମ୍ଭେମାନେ ରାତି ଗୋଟାକ ବେଳେ ଯୋଗ ଦେଲୁ ଓ ହଳଦୀବସନ୍ତରେ ଶୋଇଲୁ ।

୨୧.୫.୫୬

ଖରା ଓ ପଥଶ୍ରମ ଯୋଗୁଁ ଅବସାଦ । କଟକକୁ ଯାତ୍ରା । ହଳଦୀବସନ୍ତରୁ ସାଇକେଲରେ ବିଚିତ୍ରାନନ୍ଦ ଓ ମୁଁ ଘ ୪.୪୫ରେ ବାହାରି, ରାମଦାସପୁର, ଖଡ୍ଗପୁର ଘାଟ ଦେଇ, ପଟାମୁଣ୍ଡାଇ କେନାଲବନ୍ଧରେ ଆସିଲୁ । ପବନର ବାଧାଯୋଗୁଁ ଘଣ୍ଟାରେ ୫ ମାଇଲ ମାତ୍ର ଗତିରେ ସାଇକେଲ ଚଳାଇପାରିଲୁ । ଗୋପୀନାଥପୁର ଲକ୍‌ଠାରୁ ବିଚିତ୍ରାନନ୍ଦ ସତ୍ୟଭାମାପୁରକୁ ଗଲେ । ମୁଁ କ୍ଳାନ୍ତ ହୋଇଥିଲେ ହେଁ, ଭୂଦାନ ଅଫିସରେ ମୋର ଶୀଘ୍ର ପହଞ୍ଚିବା ଉଚିତ ଭାବି, ଖରାରେ ସାଇକେଲରେ ଆସିଲି ଏବଂ ଘ ୧୧.୪୦ ମିନିଟ୍‌ରେ ଥୋଡ଼ିଆସାହିରେ ପହଞ୍ଚିଲି । କଟକରେ ପହଞ୍ଚି, ସଚ୍ଚିବାବୁଙ୍କ ଦ୍ୱାରା ପ୍ରସ୍ତୁତ ଧୁଆଁଭାତ ଖାଇଲି । ଥକା ଯୋଗୁଁ ମୁଁ କେବଳ ଶୋଇ ରହିଲି । ଉପରଓଳିଠାରୁ ରାତି ୮ଟା ମଧ୍ୟରେ ୪ ଥର ପତଳା ଝାଡ଼ା ହେଲା, ଅଜୀର୍ଣ୍ଣ ଦୋଷ ପରି ଲାଗିଲା । ରାତିରେ କିଛି ଖାଇଲି ନାହିଁ ।

୨୨.୫.୧୯୫୬

ଆଜି ମଧ୍ୟ ମୁଁ ଜଳଖିଆ ଓ ମଧ୍ୟାହ୍ନଭୋଜନ କଲି ନାହିଁ । ଦୁର୍ବଳତା କାଲିପରି ଥିଲା । ସନ୍ଧ୍ୟାବେଳକୁ ଚୁଡ଼ାକୁ ଖୁବ୍ ବତୁରାଇ, ନରମ କରି ଦହି ମିଶାଇ ଖାଇଲି । ପେଟର ଗୋଳମାଳ ନ ଥିଲା ଓ ମୋତେ ଆରାମ ଲାଗିଲା ।

ରାତି ଗୋଟାଏ ବେଳେ ହାଉଡ଼ା-ମାଡ୍ରାସ ଡାକଗାଡ଼ିରେ ମୁଁ, ବାବୁଲି, ସୁମିତ୍ରା ଦେବୀ, ନାନା, ନାନୀ, ବୃନ୍ଦାବନ ଚନ୍ଦ୍ର ଜେନା, ନିର୍ମଳ ଚନ୍ଦ୍ର ରାୟ, ବାଙ୍କିର ଗୋଲକଚନ୍ଦ୍ର ମହାରଣା,

ଜଗନ୍ନାଥ ନାୟକ ଆଦି ଏଗାର ଜଣ ଏକ ରିଜର୍ଭ ୩ୟ ଶ୍ରେଣୀ ଡବାରେ କାଞ୍ଚିପୁରମ୍ ଅଭିମୁଖେ ବାହାରିଲୁ । ଭୁବନେଶ୍ୱର ଠାରୁ ଶ୍ରୀମତୀ ଅଶୋକା ଘୋଷ ଉଠିଲେ ।

ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବ ଯେଉଁ କାଞ୍ଚି ଜୟ କରିଥିଲେ, ଏ ସେହି କାଞ୍ଚିପୁରମ୍ ଅଟେ । ବିଜୟନଗରମ୍ ରେଲଷ୍ଟେସନ୍‌ରୁ ସର୍ବଶ୍ରୀଯୁକ୍ତ ଗୋପବାବୁ, ରମାଦେବୀ, ଆଚାର୍ଯ୍ୟ ହରିହର ଦାସ, ଗୁଣନିଧି ମହାନ୍ତି, ମନମୋହନ ଚୌଧୁରୀ, ବିଶ୍ୱନାଥ ପରିଡ଼ା, ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ, ଅଦ୍ୱୈତଚରଣ ଦାସ, ସୁରେନ୍ଦ୍ରନାଥ ମହାନ୍ତି, ଆଦି ତେରଜଣ ଆମର ସହଯାତ୍ରୀ ହେଲେ । ଖୁଡ଼ୀ (ମାଳତୀ ଚୌଧୁରୀ) ମଧ୍ୟ ସେଠାରୁ ଗଲେ ।

୨୪.୫.୧୯୫୬

ସକାଳ ପ୍ରାୟ ୧୦.୩୫ରେ ଆମ୍ଭେମାନେ ମାଡ୍ରାସ ସେଣ୍ଟ୍ରାଲ ଷ୍ଟେସନ୍‌ରେ ପହଞ୍ଚିଲୁ । ସେଠାରୁ ଆଡର୍ଗଣମ୍ ଦେଇ କାଞ୍ଚିଭେରମ୍ ଷ୍ଟେସନ୍‌ରେ ଆମ୍ଭେମାନେ ପ୍ରାୟ ୪ଟା ବେଳେ ପହଞ୍ଚିଲୁ । ଏଠାରୁ କାଞ୍ଚିପୁରମ୍ ସର୍ବୋଦୟ ସମ୍ମିଳନୀ ପୀଠ ପ୍ରାୟ ୨ ମାଇଲ । ସନ୍ଧ୍ୟା ୫ଟାରେ ପହଞ୍ଚିଲୁ ।

୧୯୩୯-୪୦ ମସିହାରେ ପ୍ରାୟ ୪ ମାସ ପାଇଁ ଆମ୍ଭେମାନେ ୭ ଜଣ ଓଡ଼ିଶାରୁ ମଧ୍ୟପ୍ରଦେଶର ୱାର୍ଦ୍ଧାରେ ନଈତାଲିମ ବା ମୌଳିକ ଶିକ୍ଷାର ପ୍ରଥମ ଦଳଙ୍କର ଟ୍ରେନିଂରେ ଥିଲୁ । ମାଡ୍ରାସ ପ୍ରଦେଶରୁ ୩ ଜଣ – ଶ୍ରୀ ସୁନ୍ଦରମ୍, ଶ୍ରୀ ଭେଙ୍କଟରମଣ ଓ ଶ୍ରୀ ରଙ୍ଗରତ୍ନ ଶାସ୍ତ୍ରୀ ସମସ୍ତେ ଅଭିଜ୍ଞ ଶିକ୍ଷକ ଓ ଗ୍ରାଜୁଏଟ୍ – ଆମ ସହ ସେଠାରେ ଟ୍ରେନିଂରେ ଥିଲେ । ଆମ୍ଭେମାନେ ୱାର୍ଦ୍ଧା ଟାଉନ୍‌ର ବିଦ୍ୟାମନ୍ଦିର ଟ୍ରେନିଂ ସ୍କୁଲରେ ଯୋଗ ଦେଇଥିଲୁ । ଓଡ଼ିଶାର ୭ ଜଣ ଟାଉନ୍‌ରେ ବସା କରି ରହିଥିଲୁ । ଶ୍ରୀମତୀ ଅନ୍ନପୂର୍ଣ୍ଣା (ଚୁନୀ) ଦେବୀ ମହିଳାଶ୍ରମରେ ରହୁଥିଲେ । ସେତେବେଳେ ଶ୍ରୀ ଅରୁଣାଚଳମ୍‌ଙ୍କ ସହ ମଧ୍ୟ ମୋର ପରିଚୟ ହୋଇଥିଲା । ଏହି କାଞ୍ଚିପୁରମ୍ ସର୍ବୋଦୟ ୮ମ ବାର୍ଷିକ ସମ୍ମିଳନୀରେ ଶ୍ରୀ ରଙ୍ଗରତ୍ନ ଶାସ୍ତ୍ରୀ ଓ ଶ୍ରୀ ଅରୁଣାଚଳମ୍ ମୁଖ୍ୟ ଦାୟିତ୍ୱରେ ଥିଲେ । ସେ ଦୁହିଙ୍କ ସହ ସେଠାରେ ଦେଖା ହେଲା ।

୨ ଦିନ ପୂର୍ବେ ଏଠାରେ ପ୍ରଚୁର ବର୍ଷା ହୋଇଯାଇଥିଲା । ଜଳବାୟୁ ଥଣ୍ଡା ଥିଲା ଏବଂ ବ୍ୟବସ୍ଥା ଉତ୍ତମ ଥିଲା । ତାମିଲ ଲୋକେ ମୋଟ ଉପରେ ବଡ଼ ଶାନ୍ତ, ଭଦ୍ର ଓ ଶିଷ୍ଟାଚାରୀ ଜଣାଗଲେ । ସର୍ବତ୍ର ପରିଚ୍ଛନ୍ନତା ଦେଖିଲୁ । ଖାଦ୍ୟ ଅତି ସାଦାସିଧା ଓ ବର୍ତ୍ତମାନ ମହଙ୍ଗା ସମୟକୁ ଚାହିଁ ଏକପ୍ରକାରେ ସୁଲଭ ଥିଲା ।

ପୂଜ୍ୟ ବିନୋବାଜୀ ତା ୨୭.୫.୫୬ ସକାଳ ୧୦ଟାରେ ସମ୍ମିଳନୀ ପୀଠରେ ପହଞ୍ଚିଲେ ।

ଚୁନୀ, ବନ୍ନୁ, ସଚ୍ଚିଦାନନ୍ଦ ମହାନ୍ତି, ତାଙ୍କର ପୁଅ ପ୍ରଫୁଲ୍ଲ ଓ ସହଧର୍ମିଣୀ ଶ୍ରୀମତୀ ପ୍ରଭା ଦେବୀ ଆଦି ତା ୨୫.୬.୫୬ ଦିନ ୧୧ଟାରେ ପହଞ୍ଚିଲେ । ତା ୨୫ ଓ ୨୭ ରେ ସର୍ବସେବା ସଂଘର ବୈଠକ ହେଲା । ପ୍ରଦେଶିକ ସଂଯୋଜକ ଭାବରେ ମୁଁ ଗୋଟିଏ ଦୁଇଟା ବୈଠକରେ ଯୋଗ ଦେଇଥିଲି ଏବଂ ବିନୋବାଜୀଙ୍କ ସହ ଶ୍ରୀଯୁକ୍ତ ଗୋପବାବୁ, ପ୍ରଭୃତି ୫/୬ ଜଣ ଓଡ଼ିଶା-ଲୋକଙ୍କର ସହ ତା ୨୭.୫.୫୬ର ଭୋର ୪ଟାରେ ଆଲୋଚନା ବେଳେ ମୁଁ ଉପସ୍ଥିତ ଥିଲି ।

୨୭ - ୨୯.୫.୫୬

ସର୍ବୋଦୟ ସମ୍ମିଳନୀରେ ମୁଁ ଯୋଗ ଦେଲି । ୨୮.୫. ରାତି ୧୨ଟା ପର୍ଯ୍ୟନ୍ତ ଆମର ଓଡ଼ିଶା ପ୍ରତିନିଧିମାନଙ୍କର ନିଜ ମଧ୍ୟରେ ବୈଠକ ହେଲା । ତା ୨୯ ଭୋର ୪ଟାରେ ଉଠିବା ବେଳକୁ ମୋର ମୁଣ୍ଡ ବୁଲାଇଲା nervous breakdownର ପୂର୍ବ ଅବସ୍ଥା ପରି ଲାଗିବାରୁ, ମୋର ମନରେ ଭାରୀ ଭୟ ହେଲା । ପାଇଖାନାରୁ ଆସି, ମୁଁ ଦିନ ୭ଟା ପର୍ଯ୍ୟନ୍ତ ଶୋଇ ରହିଲି । ତତ୍‌ପରେ ସ୍ନାନ ଓ ଜଳଖିଆ ପରେ ଭଲ ଲାଗିଲା । ପୂଜ୍ୟ ବିନୋବାଜୀଙ୍କର ଭାଷଣ, ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ, କଂଗ୍ରେସ ସଭାପତି ୟୁ.ଏନ୍.ଢ଼େବର୍ ଆଦି ଥାଇ - ବଡ଼ ଚମତ୍କାର ଓ ବିଶେଷ ବିଚାରଣୀୟ ହୋଇଥିଲା । ଧେବରଙ୍କର ବକ୍ତୃତା ମୋତେ ଅତି ହାଲୁକା ଧରଣର ଲାଗିଲା ।

ତା ୩୦ ଓ ୩୧ ମେ ସକାଳ ଦଶଟା ପର୍ଯ୍ୟନ୍ତ ମୁଁ ନଇ ତାଲୀମର ୧୧ଶ ବାର୍ଷିକ ସମ୍ମିଳନୀରେ ମଧ୍ୟ ଉପସ୍ଥିତ ଥିଲି । ସମୟର ଅଭାବରୁ ତା ୧.୬. କୁ ମୁଁ ରହିପାରିଲି ନାହିଁ । ଆମ୍ଭେମାନେ ୩୧.୫ ମେ ରେ କାଞ୍ଚିପୁରମ୍‌ରୁ ପଣ୍ଡିଚେରୀକୁ ଆସି ଶ୍ରୀ ଅରବିନ୍ଦ ଆଶ୍ରମର "Pare Sorbone" (କୋଇଲା ଗୋଦାମ - ଆକ୍ଷରିକ ଅର୍ଥ) ଅତିଥି ଶାଳାରେ ରାତିରେ ରହିଲୁ ।

ବନ୍ନୁ, ବାବୁଲି, ଚୁନୀ, ବୁଲୁବାବୁ, ସଚ୍ଚିବାବୁ, ଆଦି ଆମେ ପ୍ରାୟ ୫୦ ଜଣ ଓଡ଼ିଶାବାସୀ ଏଠାକୁ ଆସିଥିଲୁ ।

୧.୬.୧୯୫୬

ଆତ୍ମଶୁଦ୍ଧି ଉଦ୍ଦେଶ୍ୟରେ ଆଚାର୍ଯ୍ୟ ବିନୋବା ଭାବେ ସକାଳ ଘ ୭.୫୫ ରୁ ପୂର୍ଣ୍ଣ ୩ ଦିନ ଅନଶନ କାଞ୍ଚିପୁରମ୍‌ଠାରେ ଆରମ୍ଭ କଲେ । ଆମ୍ଭେମାନେ ଅରବିନ୍ଦଙ୍କର ଆଶ୍ରମରେ ଆଜି ଦିନଟି କଟାଇଲୁ । ଅରବିନ୍ଦଙ୍କର ଓ "ମା"ଙ୍କର କି ବିରାଟ ସାଧନା ଏବଂ ବ୍ୟକ୍ତିତ୍ୱ । ଏପରି ସହର ମଧ୍ୟରେ ଓ ବାହାରକୁ କୋଠାବାଡ଼ି ଓ ସାଜସଜ୍ଜାମୟ ପରିବେଶ ମଧ୍ୟରେ କି ଗଭୀର ଯୋଗ, ଚିନ୍ତନ, ମନନ, ଅଧ୍ୟୟନ ଓ କର୍ମଯୋଗରେ ଏମାନେ ତନ୍ମୟ ଥିଲେ !! ଓ ଏବେ The Mother ଓ ତାଙ୍କର ସହକର୍ମୀମାନେ ମଧ୍ୟ ସାଧନା କରୁଛନ୍ତି ।

ବେଣ୍ଟକାର ଦ୍ୱୀପ ମଧ୍ୟରେ ଅବସ୍ଥିତ, କଟକ ସହରରୁ ପ୍ରାୟ ୮ ମାଇଲ ଦୂର ବସନ୍ତ କୁଣ୍ଡଳ ଗ୍ରାମରେ ଜନ୍ମଲାଭ କରିଥିବା ଶ୍ରୀ କାଙ୍ଗାଳୀ ଚରଣ ପତି (ଅବିବାହିତ, ବୟସ ୨୮/ ୨୯, ଜୟପୁର କଲେଜରେ ଅଧ୍ୟାପକ ଥିଲେ) ଏବଂ ଜଗତ୍‌ସିଂହପୁର ନିକଟ ଏକ ଗ୍ରାମରେ ଜନ୍ମଲାଭ କରିଥିବା, ବୟସ ପ୍ରାୟ ୫୦ ବର୍ଷ, ପୂର୍ବେ ୧୫ ବର୍ଷ ଉତ୍ତର ଭାରତରେ ସନ୍ନ୍ୟାସୀରୂପେ ଥିଲେ ଓ ୧୨/୧୩ ବର୍ଷ ହେଲା ଅରବିନ୍ଦ ଆଶ୍ରମର ଅନ୍ତେବାସୀ ଶ୍ରୀ ରାମକୃଷ୍ଣ ଦାସ ଏଠାରେ ଅଛନ୍ତି । ମୋଟରେ ୩୦୦ ଗୋଟି କୋଠାଘର ଅଛି । ବାହ୍ୟ କର୍ମ (activities ) ଆମେ କେତୋଟି ଦେଖିଲୁ । ଯଥା : Bakery, Wood & Cane Work, Building constructions ଭୋଜନାଳୟ, ସନ୍ଧ୍ୟାବେଳେ ଅନ୍ତେବାସୀ ପିଲା ଓ ବଡ଼ ମଣିଷଙ୍କର ଖେଳ, କସରତ୍, ଆସନ ଆଦି ।

ପ୍ରତି ଇଂରାଜୀ ମାସର ପହିଲାରେ ଅନେକ କାର୍ଯ୍ୟ ଓ ପଢ଼ା ବନ୍ଦ ରହେ । ଆଜି ମଧ୍ୟ ବନ୍ଦ ଥିଲା । ଆଜି ' The Prosperity' ଥିଲା । The Mother ପ୍ରତ୍ୟେକଙ୍କୁ ମରୁଆ ପତ୍ର (The emblem of New Birth) ଓ ଅନ୍ତେବାସୀମାନଙ୍କୁ ସେମାନଙ୍କର ଆବଶ୍ୟକ ଜିନିସ ବାଣ୍ଟିଲେ । ମୁଁ ମଧ୍ୟ ମରୁଆପତ୍ର ତାଙ୍କଠାରୁ ପାଇଲି ।

ପ୍ରତି ଦିନ ସକାଳେ The Mother କୋଠାର ଉପର ବାରନ୍ଦାରେ ଠିଆ ହୋଇ, ସାଧାରଣ ଲୋକଙ୍କୁ ଦର୍ଶନ ଦିଅନ୍ତି । ଆଜି ମଧ ତଦ୍ରୁପ ଦର୍ଶନ ଦେଲେ ।

ଆମ୍ଭେମାନେ ପ୍ରାୟ ୩୬ ଜଣ ଆଶ୍ରମର ଭୋଜନାଳୟରେ ମଧ୍ୟାହ୍ନଭୋଜନ କଲୁ । ଅତି ସାଦାସିଧା ଖାଦ୍ୟ - ଏକ ତାଟିଆ ଭାତ, ଗିନାଏ ହରଡ଼ ଡାଲି, ଦୁଇଟା ପାଚିଲା କଦଳୀ, ଏକ ଚତୁର୍ଥାଂଶ କାଗଜୀଲେମ୍ବୁ, ତାଟିଆଏ ଦହି ବା ଦୁଧ ଓ ୨ ତୋଳା ଚିନି । ସମସ୍ତଙ୍କୁ ସମାନ ପରିମାଣରେ ଦିଆଯାଏ । ସବୁ ଥାଳୀ, ତାଟିଆ, ଗ୍ଲାସ stainless ଧାତୁର ତିଆରି । Queue ରେ ଠିଆ ହୋଇ ପ୍ରତ୍ୟେକଙ୍କୁ ଏହା ନେବାକୁ ହେଲା । ବାହାର ଲୋକ କିଏ ଆସିଲେ, କିଏ ଖାଇଲେ, ଚାର୍ଯ୍ୟ ଦେଲେ କି ନାହିଁ, କେହି କିଛି ପଚାରନ୍ତି ନାହିଁ । ଅବଶ୍ୟ ଏତେ ସାଧୁତା ଓ ବିଶ୍ୱାସରେ ଏବଂ ଭଗବତ୍-ସମର୍ପଣରେ ଯେଉଁଠି କାର୍ଯ୍ୟ ଚାଲିଛି, ସେଠାରେ କାହିଁକି ଏହି କ୍ଷୁଦ୍ର ବିଷୟପ୍ରତି କିଏ ନଜର ଦେବେ ? ବାହାର ଲୋକ କାହିଁକି ଅସାଧୁତା କରିବେ ?

ଅନ୍ତେବାସୀମାନେ ନିଜକୁ ଏବଂ ନିଜର ସମସ୍ତ ସଂପତ୍ତିକୁ ଆଶ୍ରମଠାରେ ସମର୍ପଣ କରି ଦେଇଛନ୍ତି । The Mother ନିଜେ ସବୁ ଟିକିନିଖି ବ୍ୟବସ୍ଥା କରନ୍ତି, ପ୍ରତ୍ୟେକ ଅନ୍ତେବାସୀଙ୍କୁ ଜାଣନ୍ତି ଓ ସବୁ ବୁଝନ୍ତି । ତାଙ୍କର ବୟସ ୭୯ ବର୍ଷ; ମୋତେ ଲାଗିଲା ନାକ ଅଗରେ ପ୍ରାଣ ଅଛି । ମାତ୍ର କି ଅଦ୍ଭୁତ ଶକ୍ତି ! ଏବେ ମଧ୍ୟ ସେ ଘଣ୍ଟାଏ କାଳ ପ୍ରତିଦିନ ଟେନିସ୍ ଖେଳନ୍ତି ଓ ପ୍ରତ୍ୟେକ କାର୍ଯ୍ୟ ନିଜେ ଯାଇ ବୁଲି ଦେଖନ୍ତି ।।

ଆଶ୍ରମର ସ୍କୁଲ, କଲେଜ, ପ୍ରକାଣ୍ଡ ପୁସ୍ତକାଗାର ଅଛି । ବହିବିକ୍ରୟ ମଧ୍ୟ ହୁଏ । ବଗିଚା, ଚାଷ, ଦୂରରେ ମଫସଲରେ ଅଛି ।

ଦିନଟି ଆନନ୍ଦରେ କଟିଲା । ନାନା, ନାନୀ ଅଯଥା ଅଝଟ ଧରିବାରୁ, ଚୁନୀ ଓ ସୁମିତ୍ରା ଦେବୀ କିଛି ଦେଖିପାରିଲେ ନାହିଁ ଓ କେତେକ କାର୍ଯ୍ୟକ୍ରମରେ ଯୋଗ ଦେଇପାରିଲେ ନାହିଁ । ରାତି ୮ଟାରେ ଆମ୍ଭେମାନେ ପଣ୍ଡିଚେରୀରୁ ମାଡ୍ରାସ ଅଭିମୁଖେ ଟ୍ରେନ୍‌ରେ ବାହାରିଲୁ ।

୨.୬.୧୯୫୬

ମାଡ୍ରାସ ଏଗ୍‌ମୋର୍ ଷ୍ଟେସନ୍‌ରୁ ୯ଟକାରେ ମାଡ୍ରାସ ସେଣ୍ଟ୍ରାଲ୍ ଷ୍ଟେସନ୍‌କୁ ଆସି ଦିନ ୧୧ଟାରେ "ଜନତା" ଟ୍ରେନ୍‌ରେ ଆମ୍ଭେମାନେ ଶ୍ରୀଯୁକ୍ତ ଗୁଣନିଧିବାବୁଙ୍କ ସହ ଆସିଲୁ ।

୩.୬.୧୯୫୬

ସକାଳେ ଲୁଗାପଟା ସଫା କଲି । ଗତ ଦିନଗୁଡ଼ିକର ଚିଠିପତ୍ର ପଢ଼ିଲି । ୧୧ ଖଣ୍ଡଯାକ ସବୁ ଚିଠିରେ ସହକର୍ମୀମାନେ କେବଳ ସେମାନଙ୍କର ଟଙ୍କାପଇସା ଭୂଦାନ ସମିତିରୁ ପାଇନାହାନ୍ତି, ଏହି ଏକା କଥା ଲେଖିଛନ୍ତି । ମୋର ଅନୁମାନ ଯେ ଗତ ବର୍ଷେ ବା ଦେଢ଼ ବର୍ଷ ମଧ୍ୟରେ ଶତକଡ଼ା ୯୫ ଚିଠିରେ ମୁଁ ଏବଂ ଭୂଦାନ ଅଫିସର ଅଫିସ-ସଂପାଦକ ଏହି ପଇସାକଉଡ଼ି ବିଷୟ ପାଇଁ, ଅନ୍ୟ କଥା କ୍ୱଚିତ ଲେଖାଯାଏ । ତେଣୁ କରି, ମୋର ଆଶଙ୍କା ଯେ ଅଧିକାଂଶ ସହକର୍ମୀ ନିଜର ଆର୍ଥିକ ଅଭାବ ଓ ଅସୁବିଧା କଥାରେ ବ୍ୟସ୍ତ ଏବଂ ଆନ୍ଦୋଳନର ପ୍ରକୃତ କଥା ଖୁବ୍ କମ୍ ଭାବୁଛନ୍ତି । ଏହି ଅବସ୍ଥାରେ ଆମେ କି କ୍ରାନ୍ତି କରିବୁ ବା କରାଇବୁ ?

ରାତି ପ୍ରାୟ ୧୨ଟା ପର୍ଯ୍ୟନ୍ତ ଚିଠିପତ୍ର, ମୋର ହିସାବ ଓ ଡାଏରୀ ଲେଖିଲି ।

୫.୬.୧୯୫୬

ଅଫିସ କାର୍ଯ୍ୟ କଲି । ପ୍ରଫେସର ଠାକୁରଦାସ ବଙ୍ଗଙ୍କୁ ଚିଠି ଲେଖିଲି । ଶ୍ରୀ ଧନେଶ୍ୱର ରାଉତଙ୍କୁ ଏକାନ୍ତରେ ମୁଁ କହିଦେଲି ଯେ ତାଙ୍କର ଆଚରଣରେ ଅଳସ ପ୍ରକୃତିରେ ଅନେକ ସହକର୍ମୀ ତାଙ୍କ ପଛରେ ସମାଲୋଚନା କରୁଛନ୍ତି । ସଚ୍ଚିବାବୁଙ୍କର ଫାଉଣ୍ଟେନ୍ ପେନ୍ ଚୋରି କଥା, ଧନେଶ୍ୱର ରାଉତ ନିଜ ସ୍ତ୍ରୀଙ୍କର ଅସୁସ୍ଥତା ବେଳେ ଥିଏଟର୍, ସିନେମା ଦେଖିଯିବା କଥା - ମୁଁ ଯାହା ଅନ୍ୟମାନଙ୍କଠାରୁ ଶୁଣିଥିଲି - ତାହା ତାଙ୍କୁ କହିଦେଲି ।

Indian Press Council ର ଶ୍ରୀ ରମେଶ ଚନ୍ଦ୍ର (ବୟସ ପ୍ରାୟ ୨୯/୩୦ ବର୍ଷ, ଦିଲ୍ଲୀରେ ରହନ୍ତି) କଟକକୁ ଆସିଛନ୍ତି । ଓଡ଼ିଶାର ପ୍ରଧାନ ଲେଖକ ଶ୍ରୀଯୁକ୍ତ କାଳିନ୍ଦୀ ପାଣିଗ୍ରାହୀ ତାଙ୍କୁ ମଧ୍ୟାହ୍ନଭୋଜନ ଦେଲେ । କାଳିନ୍ଦୀବାବୁଙ୍କର ଅନୁରୋଧ କ୍ରମେ ଶ୍ରୀ ଜୟକୃଷ୍ଣ ବିଶ୍ୱାଳ, ସଚ୍ଚିଦାନନ୍ଦ ମହାନ୍ତି ଓ ମୁଁ ତାଙ୍କ ଘରକୁ ମଧ୍ୟ ଖାଇବାକୁ ଯାଇଥିଲୁ । କମ୍ୟୁନିଷ୍ଟ ସର୍ବଶ୍ରୀ

ରାମକୃଷ୍ଣ ପତି, ଗୋକୁଳ ରାୟ ଚୂଡ଼ାମଣି, ମନମୋହନ ମିଶ୍ର, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ପ୍ରବୀର ପାଲିତ, ଆଦିଙ୍କୁ ମଧ୍ୟ କାଳିନ୍ଦୀବାବୁ ନିମନ୍ତ୍ରଣ କରିଥିଲେ । ଓଡ଼ିଶାରେ ଭୂଦାନ ଯଜ୍ଞର ଗ୍ରାମଦାନ, ଜମିର ପୁନର୍ବଣ୍ଟନ ଓ ନବନିର୍ମାଣ କଥା ସେମାନେ ସମସ୍ତେ ଆମଠାରୁ ପଚାରି ବୁଝିଲେ ।

ଶ୍ରୀ ବୁଲୁବାବୁ ମହାବଳୀପୁର ଯିବେ ନାହିଁ ସରଳ ଭାବରେ ନ କହି, "ଆପଣଙ୍କ ଠାରୁ ବୋକା ଲୋକ ଆଉ କେହି ନାହାନ୍ତି '' ବୋଲି ହରିବାବୁଙ୍କୁ ପଣ୍ଡିଚେରୀରୁ ଫେରିବା ବେଳେ କହିଥିବାରୁ, ହରିବାବୁ ବଡ଼ ଦୁଃଖିତ । ସେ ଏହା ମୋଠାରେ ପ୍ରକାଶ କଲେ ।

୬.୬.୧୯୫୬

ପଛିକୋଟର ରାଜାଙ୍କ ସହ କଟକ ଷ୍ଟେସନ୍‌ରେ ମୋର ସାକ୍ଷାତ ହେଲା । ମହତାବ ବାବୁଙ୍କ ସହ ଯାଜପୁରରେ ଭୋଜୀ ଖାଉଥିବା ବେଳେ ଶ୍ରୀ ପଦ୍ମନାଭ ରାୟ ଭୂଦାନ ଯଜ୍ଞକୁ ସମାଲୋଚନା କରିଥିଲେ ବୋଲି ସେ କହିଲେ ।

୭.୬.୧୯୫୬

ଭୋର ବୃନ୍ଦାବନ ଚନ୍ଦ୍ର ଜେନା (ଅଫିସ ସଂପାଦକ) ବରୀ ଗଲେ । ଆଜିର ଚିଠିପତ୍ର ପଢ଼ିଲି ଓ ସେଗୁଡ଼ିକ ଉପରେ ନୋଟ୍ ଦେଲି । ଶ୍ରୀଯୁକ୍ତ ଗୋପବାବୁଙ୍କୁ ପତ୍ର ନମ୍ବର ୧୭୯୯ - ୧୫ଟି ପଏଣ୍ଟରେ ଲେଖିଲି । "ଗ୍ରାମଦାନ'' ପୋଷ୍ଟରର ପ୍ରୁଫ୍ ସଂଶୋଧନ କଲି । ନିଜର ଡାଏରୀ ଓ ହିସାବ ପ୍ରତିଦିନ ନିୟମିତରୂପେ ଲେଖିବାର ଆବଶ୍ୟକତା ଶ୍ରୀ ପରମାନନ୍ଦ ଦଲାଇଙ୍କୁ ବୁଝାଇଲି ।

ଏ ୩/୪ ଦିନ ହେଲା ଆଷାଢ଼ ମାସର ଗୁଳୁଗୁଳି ହେଉଛି । ଏଣେ ୮/୯ ଦିନ ହେଲା ବର୍ଷା ହେଉଛି ଓ ମେଘୁଆ ହୋଇଅଛି । ଗାଁରେ ଲୋକେ ବୋଧହୁଏ ୨ ଅଣା ଅଂଶରେ ଜମିରେ ଧାନ ବୁଣି ନାହାନ୍ତି । ହଠାତ୍ ଏପରି ଲଗାତର ବର୍ଷା ଚାଲିଛି । ଚାଷୀ ବଡ଼ ଚିନ୍ତାରେ ପଡ଼ିଲେଣି । ବର୍ତ୍ତମାନ (ରାତି ୯ଟା) ମେଘ ଉଠାଣି ଧରି ଖୁବ୍ ବର୍ଷା ହେଉଛି ।

ଗତ ବର୍ଷ ତା.୯.୧୯୫୫ ରେ ଓଡ଼ିଶାରେ ଯେଉଁ ପ୍ରବଳ ବନ୍ୟା ହୋଇଥିଲା ତାହା ବୋଧହୁଏ ଗତ ୧୦୦ ବର୍ଷ ମଧ୍ୟରେ ସବୁଠାରୁ ବଡ଼ ବନ୍ୟା ଏବଂ ସବୁଠାରୁ ବେଶୀ କ୍ଷତି କରିଥିଲା ।

୮.୬.୧୯୫୬

ସକାଳେ ଡ଼େରିରେ ପ୍ରାର୍ଥନା ହେଲା । ଆମେ ସମସ୍ତେ ଥଣ୍ଡା ପାଗ ଯୋଗୁଁ ଅଧିକ ବେଳଯାଏ ଶୋଇ ପଡ଼ିଲୁ । ବର୍ଷା ହେଲା । ମୁଁ ରୋଷାଇଘରର ବାସନ ମାଜିବାରେ ସାହାଯ୍ୟ

କଲି । ମୁଁ ତ ଦିନେ ହେଲେ ରୋଷାଇ କରୁନାହିଁ, କାଠ ଚିରୁନାହିଁ, ପରିବା କାଟୁନାହିଁ । ବାସନ, ହଣ୍ଡା, ବାଲଟୀ ଆଦି ମାଜିବାରେ ମଧ୍ୟେ ମଧ୍ୟେ - ମୁଁ କଟକରେ ଥିଲେ - ସାହାଯ୍ୟ କରେ ।

୧୧.୬.୧୯୫୬

ସୋମବାର ଭୋର ୫ଟାରେ ଉପାସନା ସରିଲା । ରୋଷେଇଘରର ବାସନ, ହଣ୍ଡା ଆଦି ଶ୍ରୀ ରାଧାଶ୍ୟାମ ମହାରାଜଙ୍କ ସହିତ ମୁଁ ମାଜିଲି । ଏହା ଓ ନିତ୍ୟକର୍ମ ସାରିବାକୁ ଘ ୬.୩୦ମି. ହେଲା ।

କାଲି ପରି, ଆଜି ମଧ୍ୟ ପ୍ରାୟ ୧୦ ଘଣ୍ଟା ମୋର ନିଜର ଜମାଖର୍ଚ୍ଚ ଖାତା ଦେଖି ଭୂଦାନ ସମିତି ସହିତ ଓ ଅନ୍ୟମାନଙ୍କ ସହିତ ମୋର ଦେଣାପାଉଣାର ଖତୀୟାନ୍ ଲେଖିଲି । ମୋର ହିସାବଖାତା ନଂ. ୧୩ ଓ ନ ୧୨ ଦେଖି verify ମଧ୍ୟ କରିଲି ।

ରୂପଷାର ଶ୍ରୀଯୁକ୍ତ ହେମଚନ୍ଦ୍ର ଦାସଙ୍କୁ, ସର୍ବୋଦୟ ସାହିତ୍ୟ ବିକ୍ରି ବିଷୟରେ, ରାମଚନ୍ଦ୍ରପୁରର ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସଙ୍କୁ ଘିଅ କଟକକୁ ପଠାଇବାକୁ ଓ ମାସୀଙ୍କୁ (କଲିକତାକୁ) କାର୍ଡ଼ମାନ ଲେଖିଲି । ରାଜସ୍ୱମନ୍ତ୍ରୀ ସଦାଶିବ ତ୍ରିପାଠୀ, ଶ୍ରୀଯୁକ୍ତ ନୀଳମଣି ସେନାପତି, ଆଇ.ସି.ଏସ୍. ଆଦିଙ୍କୁ ମଧ୍ୟ ଅଫିସିଏଲ୍ ପତ୍ର ଦେଲି । ଶ୍ରୀଯୁକ୍ତ ସାଧୁ ବାବୁଙ୍କୁ ମଧ୍ୟ । ରାତି ୧୦ଟା ।

୧୪.୬.୧୯୫୬

ସକାଳ ଜନତା ଏକ୍ସପ୍ରେସ୍ ଟ୍ରେନ୍‌ରେ କଟକରୁ ବିଜୟନଗରମ୍‌କୁ ଓ ସେଠାରୁ ପାସେଞ୍ଜର ଟ୍ରେନ୍‌ରେ ରାୟଗଡ଼ା ଗଲି । କଟକ ଷ୍ଟେସନ୍‌ରେ ରେଲଟିକଟ କିଣିବା ବେଳେ କ୍ଲାର୍କ ମୁଁ ଠିକ୍ ୨ ଖଣ୍ଡ ୫ (ପାଞ୍ଚ) ଟଙ୍କିଆ ନୋଟ ଦେଲି କିମ୍ବା ଖଣ୍ଡିଏ ଦେଲି ବୋଲି ସେ ମୋତେ ପଚାରିଲେ । ମୁଁ ଠିକ୍ ୨ ଖଣ୍ଡ ଦେଇଥିଲେ ସୁଦ୍ଧା, ମୋ ମନରେ ଓଲଟା ସନ୍ଦେହ ହେଲା ଯେ ମୁଁ କଣ ୩ ଖଣ୍ଡ ନୋଟ୍ ଦେଲି କି ? ଏ ସନ୍ଦେହଯୋଗୁଁ ମୁଁ ପୁଣି ମୋର ସମସ୍ତ ଟଙ୍କା ତରତରରେ ଗଣିଲି, ମୁଁ ଟିକିଏ ବିଚଳିତ ହୋଇପଡ଼ିଲି । ଏପରି କି, ରାୟଗଡ଼ାରେ ପହଞ୍ଚି ମୋର ଜମାଖର୍ଚ୍ଚ ମିଳାଇବାପରେ, ଟଙ୍କା ପଇସା ଠିକ୍ ଅଛି ଜାଣିବାରୁ ନିଶ୍ଚିନ୍ତ ହେଲି । ମୁଁ ଅବଶ୍ୟ ସେହି କ୍ଲାର୍କଙ୍କୁ ମୋର ନାମ ଓ ଠିକଣା ଜଣାଇ ଆସିଥିଲି ।

ଜଣକର ମନରେ ସନ୍ଦେହ ହେଲେ କିପରି ଅନ୍ୟର ମନରେ ତାହାର ପ୍ରତିକ୍ରିୟା ହୁଏ, ଏହା ତାହାର ଏକ ନମୁନା ।

ବ୍ରହ୍ମପୁର ଷ୍ଟେସନ୍‌ଠାରେ ଟ୍ରେନ୍ ଭିତରେ ମୁଁ ଜଳଖିଆ କରୁଥିବା ବେଳେ ଜଣେ ଭିକ୍ଷା କରୁଥିବା ସ୍ତ୍ରୀ ଲୋକ କୋଳରେ ଗୋଟିଏ ପିଲା ଧରି ଡ଼ବା ଭିତରକୁ ପଶିଲେ । ମୁଁ ଜଳଖିଆ କରୁଥିବା ଦେଖି ସେ ମୋ ଆଡ଼କୁ ଚାହିଁଲେ ନାହିଁ ସୁଦ୍ଧା । କି ଉଚ୍ଚ ବିଚାର ଏବଂ ଉନ୍ନତ ରୁଚି ଓ

ସମ୍ଭବ ତାଙ୍କଠାରେ ମୁଁ ଲକ୍ଷ୍ୟ କଲି । ମୋ ମନରେ ଅବଶୋଷ ରହିଗଲା ଯେ ମୁଁ ଚଞ୍ଚଳ ପଇସା ଯାଚି କରି ତାଙ୍କୁ ଦେଇ ନଥିଲି ।

୧୫.୬.୧୯୫୬

ରାୟଗଡ଼ାଠାରେ ଠକ୍କର ଆଶ୍ରମ (ଆବାସଯୁକ୍ତ ପ୍ରାଇମେରୀ ସ୍କୁଲ - ଆଦିବାସୀ ପିଲାମାନଙ୍କ ପାଇଁ )ରେ ଗତବର୍ଷଠାରୁ ଶ୍ରୀଯୁକ୍ତ ଗୋପବାବୁ, ରମାଦେବୀ ଓ କେଉଁଠୁ କେହି ଭୂଦାନ କର୍ମୀ ଆସିଲେ ସେମାନେ ରହୁଛନ୍ତି । ଏହି ଘର ଓ ଅଗଣା ମୁଁ କିଞ୍ଚିନ୍ମାତ୍ର ଓଳାଇଦେଲି । ବୋଉ (ରମାଦେବୀ) ମୋତେ ବହୁତ ପାଚିଲା ଆମ୍ବ ଓ କଦଳୀ ଖାଇବାକୁ (ଜଳଖିଆ) ଦେଲେ । ରାୟଗଡ଼ା ସରକାରୀ ହାଇସ୍କୁଲ ଘରେ (ଗ୍ରୀଷ୍ମ ବିକାଶ ଯୋଗୁଁ ସ୍କୁଲକାର୍ଯ୍ୟ ବନ୍ଦ ଥିଲା) କୋରାପୁଟ ଜିଲ୍ଲାର ଭୂଦାନ କାର୍ଯ୍ୟର ଆଲୋଚନା ହେଲା । ଶ୍ରୀଯୁକ୍ତ ଅର୍ଣ୍ଣାସାହେବଙ୍କର ପ୍ରସ୍ତାବ କ୍ରମେ ମୁଁ ସେହି ଆଲୋଚନା ସଭାର ସଭାପତି ହୋଇ କାର୍ଯ୍ୟ ଚଳାଇଲି ।

ଭୂମିଗ୍ରହୀତାମାନେ ଯେମିତି ନୂତନ ଜମି ଚାଷ କରିପାରିବେ, ପୂର୍ବ ମାଲିକମାନେ ଦତ୍ତ ଜମିକୁ ପୁଣି ଚାଷ ନ କରନ୍ତି, କେତେଜଣ ସତତ ପରିବ୍ରାଜକ ରହି, ସବୁ ସାନ ବଡ଼ ସମସ୍ୟା ଜାଣିବେ ଓ ପ୍ରତୀକାରର ଚେଷ୍ଟା କରିବେ, ଆଦି ଚର୍ଚ୍ଚା ହେଲା ।

ସମସ୍ତଙ୍କ ପାଇଁ ନବଜୀବନ ମଣ୍ଡଳ ଅଫିସ-ସଂଲଗ୍ନ ଭୋଜନାଳୟରେ ରୋଷାଇ ହୋଇପାରି ନ ଥିଲା । ଅନ୍ୟ ସହକର୍ମୀମାନଙ୍କ ପରି ମୁଁ ମଧ୍ୟ ଏଠାର "ମାଦ୍ରାସ ହୋଟେଲ''ରେ ମଧ୍ୟାହ୍ନଭୋଜନ କଲି ।

୧୬-୧୭.୬.୧୯୫୬

ଉତ୍କଳ ନବଜୀବନ ମଣ୍ଡଳର "ନିର୍ମାଣ-ସମିତି''ର ବୈଠକରେ ରାୟଗଡ଼ାରେ ମୁଁ ଯୋଗ ଦେଲି । ସର୍ବଶ୍ରୀ ଅର୍ଣ୍ଣାସାହେବ, ଗୋପବାବୁ, ରମାଦେବୀ, ମାଳତୀ ଦେବୀ, ଈଶ୍ୱରଲାଲ ବ୍ୟାସ, ମନମୋହନ ଚୌଧୁରୀ, ବିଶ୍ୱନାଥ ପଟ୍ଟନାୟକ, ଆଦି ବହୁ ଭୂଦାନକର୍ମୀ, ନିର୍ମାଣକର୍ମୀ ଓ ନବନିର୍ମାଣ କାର୍ଯ୍ୟ ବ୍ଲକ୍-ସଂଗଠକମାନେ ଏଥିରେ ଯୋଗ ଦେଇଥିଲେ । ଇଞ୍ଜିନିୟର ଦାତେ, ସଂଘର କର୍ମୀ ସଚ୍ଚିଦାନନ୍ଦ, ନଗେଶ ପରୀଖ, ନାନା (ଆକାଉଣ୍ଟାଣ୍ଟ) ଆଦି ଯୋଗ ଦେଇଥିଲେ । ନିର୍ମାଣ କାର୍ଯ୍ୟର ନୀତି, କାର୍ଯ୍ୟପଦ୍ଧତି, ଆଗକୁ କାର୍ଯ୍ୟ ଆଦି ବିଷୟରେ ବହୁ ଚର୍ଚ୍ଚା ହେଲା । ମୁଁ କେବଳ ସବୁ କଥା ଶୁଣିଲି । କୌଣସି ବିଷୟରେ ମୋର ମତାମତ ବ୍ୟକ୍ତ କରି ନାହିଁ । କାରଣ "ନବନିର୍ମାଣ'' କାର୍ଯ୍ୟ କଣ ହେଉଛି, କାର୍ଯ୍ୟରେ ସୁବିଧା ଅସୁବିଧା କଣ, ମୂଳ ବିଚାର, ଯୋଜନା, ଆଦି ମୁଁ ଆଗେ ଭଲ କରି ନ ଜାଣି, ଏଣୁତେଣୁ କହିବା ଠିକ୍ ନୁହେଁ ।

ଅର୍ଣ୍ଣାସାହେବ " Deficit Economy'' ର ଯୁକ୍ତି ଭଲ କରି ବୁଝାଇଲେ ଏବଂ ଏହି ଗରୀବ ଆଦିବାସୀମାନଙ୍କଠାରୁ ସ୍ୱାବଲମ୍ବନ ଭିତ୍ତିରେ ସାହାଯ୍ୟ ଆଗେ ଆଶା ନ କରି,

ସରକାରୀ ଓ ବେସରକାରୀ ସାହାଯ୍ୟ (ସାଧନ ଦାନ), ଜଳସେଚନ ବ୍ୟବସ୍ଥା ଆଦି କରାଇ, ସେମାନଙ୍କର ବର୍ତ୍ତମାନର ବାର୍ଷିକ ପରିବାର ପ୍ରତି ଆୟ ଦୁଇଶହ ଟଙ୍କାରୁ ଦୁଇ, ତିନି ଗୁଣକୁ ଆସନ୍ତା ୫ ବର୍ଷ ମଧ୍ୟରେ ବଢ଼ାଇଦେବା ଉଚିତ ଅଟେ । ଏହା ତାଙ୍କର ନିଶ୍ଚିତ ମତ । ଅନ୍ୟ କେହି ଭିନ୍ନ ମତ ପୋଷଣ କରୁଥିଲେ ସେ ଏ ଅଞ୍ଚଳରେ ନବନିର୍ମାଣ କାର୍ଯ୍ୟର ଭାର ନେବାକୁ ଅସମ୍ମତ । ବାହାରୁ, ସରକାରଙ୍କଠାରୁ ଲକ୍ଷ ଲକ୍ଷ ଟଙ୍କା ଆଣି ଏହି ଗ୍ରାମଦାନ ଅଞ୍ଚଳରେ ସର୍ବସେବା ସଂଘ ସୁଦ୍ଧା ନିର୍ମାଣ କାର୍ଯ୍ୟରେ ଖର୍ଚ୍ଚ କରିବାରେ ଲୋକଙ୍କର ସ୍ୱାବଲମ୍ବନ-ଶକ୍ତିର ଉଦ୍ରେକ ନ ହେବାର, କର୍ମୀମାନଙ୍କର ମନ ପଇସା ଦିଗକୁ ଟାଣି ହୋଇଯିବାର ଆଶଙ୍କା କରି, ଶ୍ରୀଯୁକ୍ତ ଗୋପବାବୁ ଆମ୍ଭମାନଙ୍କୁ ଚେତେଇ ଦେଉଥିଲେ । ଅର୍ଣ୍ଣାସାହେବଙ୍କର ସ୍ପଷ୍ଟୀକରଣ ପରେ ଅନେକ ପରିମାଣରେ ଆମର ଏହି ଆଶଙ୍କା ବର୍ତ୍ତମାନ ପାଇଁ ଦୂର ହୋଇଗଲା ପରି ମୋତେ ଲାଗିଲା ।

ଏ ଦୁଇଦିନ ମୁଁ ସକାଳେ ଚୂଡ଼ା ଓ ଦହି, ଏବଂ ମଧ୍ୟାହ୍ନରେ ଭାତ ଓ ସାଧାରଣ ସିଝା ତରକାରୀ ଖାଇଲି । ଦିନେ ପାଚିଲା ଜାମୁକୋଳି ୨ ଥର ପ୍ରାୟ ୧୦/୧୨ ଗଣ୍ଡା ଖାଇଲି । ମୋର ପେଟକୁ ଏହି ଜାମୁକୋଳି ବଡ଼ ଉପକାର କଲା । ଝାଡ଼ା ସଫା ହେଲା, ପେଟର ଫମ୍ପାଇବା ଦୋଷ ଦୂର ହୋଇଗଲା । ଶ୍ରୀ ରାଧାରତନ ଦାସ କୋରାପୁଟ ଜିଲ୍ଲାର ଭୂଦାନ ସଂଯୋଜକ ଆଉ ନ ରହନ୍ତୁ ଓ ଟଙ୍କାପଇସା କାରବାର ନ କରନ୍ତୁ ବୋଲି ଶ୍ରୀଯୁକ୍ତ ଗୋପବାବୁ ୩/୪ ଥର କହିଲେ । ସେହି ହେତୁରୁ ତା ୧୭/୧୮ ଅଧରାତିରେ ଆମ୍ଭେମାନେ ବସି, ଶ୍ରୀଯୁକ୍ତ ଈଶ୍ୱରଲାଲ ବ୍ୟାସଜୀଙ୍କୁ ସଂଯୋଜକ ସ୍ଥିର କଲୁ ।

୨୪.୬.୧୯୫୬

ଶ୍ରୀ ଚାଟୁବାବୁଙ୍କ ସହ ତାଙ୍କ ଘରେ "ନବନିର୍ମାଣ'' କାର୍ଯ୍ୟ ବିଷୟରେ କଥାବାର୍ତ୍ତା କଲୁ, ଚାଟୁବାବୁ ଭୂଦାନ କାର୍ଯ୍ୟରେ ପରିବ୍ରାଜକରୂପେ ବୁଲନ୍ତୁ ବା ନବନିର୍ମାଣ କାର୍ଯ୍ୟ କରନ୍ତୁ ବା ଟ୍ରେନିଂ କେନ୍ଦ୍ରର ଦାୟିତ୍ୱରେ ରହନ୍ତୁ ବୋଲି ମୁଁ ଓ ସଚ୍ଚିବାବୁ ତାଙ୍କୁ ଅନୁରୋଧ କଲୁ । ସେ ଆସିବେ ବୋଲି ଆଗ ଥରଗୁଡ଼ିକ ପରି କହିଲେ । ମାତ୍ର ମନରୁ ତାଙ୍କର ଗ୍ଲାନି ଯାଇନାହିଁ , କାରଣ କଥାପ୍ରସଙ୍ଗରେ ତାଙ୍କ ତୁଣ୍ଡରୁ ବାହାରିପଡ଼ିଲା ଯେ ତାଙ୍କର ଖଦୀମଣ୍ଡଳରୁ ବେତନ ହଠାତ୍ ବନ୍ଦ କରିଦିଆଯାଇଥିଲା, ସ୍ୱାଧୀନ ଭାବରେ କିଛି କରିବାକୁ ସୁଯୋଗ ଦିଆଯାଇ ନଥିଲା, ବୁଲୁବାବୁ ଓ ଶ୍ରୀଯୁକ୍ତ ଗୋପବାବୁ ତ ତାଙ୍କୁ କେବେ ଡାକୁନାହାନ୍ତି ବା ପତ୍ର ଲେଖୁନାହାନ୍ତି ।

ହଇଜା ପ୍ରତିଷେଧକ ଇଞ୍ଜେକସନ୍ ପୁରୀରେ ତା ୨୦.୬.ରେ ନେବାରୁ, ଚୁନୀର ଜ୍ୱର ଓ ବାନ୍ତି ପୁରୀରେ ସେ ଦିନ ହେଲା । ଶ୍ରୀମତୀ ରମ୍ଭା ଦେବୀ ଦୁତିଆଙ୍କ ପୁରୀବସାରେ ସେମାନେ ଅଛନ୍ତି । "ଜିଜୀ'' କେଉଁଠାରେ ମାତୃମଙ୍ଗଳ କେନ୍ଦ୍ର କରିବେ, ଆଦି ବିଷୟରେ

କଥାବାର୍ତ୍ତା କରିବାକୁ ସେମାନେ ପୁରୀ ଯାଇଥିଲେ । ବନ୍ନୁର ମଧ୍ୟ ପୁରୀରେ ତା ୨୩.୬.ରେ ଜ୍ୱର ହୋଇଛି ।

୨୯.୬.୧୯୫୬

ଡାକ୍ତର ମହାଦେବ ମିଶ୍ର ବନ୍ନୁକୁ ଦେଖିବାକୁ ଆସିଥିଲେ । ବନ୍ନୁର ପଥ୍ୟ ଓ ଔଷଧ କହିଗଲେ । ସେ ଭୂଦାନ କଥା ମଧ୍ୟ ଆଗେ ଚର୍ଚ୍ଚା କଲେ । ସେ କହିଲେ ଯେ "ଏମିତି ପ୍ରଚାରରେ କିଛି ହେବ ନାହିଁ । କୋରାପୁଟରେ ଓ ଓଡ଼ିଶାର ଅନ୍ୟତ୍ର ଶତ ଶତ ସମଗ୍ର ଗ୍ରାମଦାନ ମିଳିଛି ମାତ୍ର ଶତକଡ଼ା ୫ ଜଣ ସୁଦ୍ଧା ଠିକ୍ ବୁଝିସୁଝି ଜମି ଦେଇନାହାନ୍ତି; ଚାପରେ ଜମି ଦେଇଛନ୍ତି । ଆମେ ଲୋକଙ୍କୁ ଆର୍ଥିକ security ଦିଅନ୍ତୁ, ଭିକାରୀ ଭିକ ଯେପରି ନ ମାଗିବେ ଏବଂ ସ୍ୱଚ୍ଛଳ ପରିବାର ଜଣେ ଜଣେ ଭିକାରୀକୁ ତାଙ୍କର ପରିବାରର ମେମ୍ବର କରି ରଖନ୍ତୁ, ... ଏ ସବୁ କାର୍ଯ୍ୟ ହେଉ । ବିଶେଷ କରି ଖାଣ୍ଟି ବ୍ରାହ୍ମଣ ଆଗେ ବାହାର କରନ୍ତୁ – ସେ ଯେ ବ୍ରାହ୍ମଣ ଜାତିରୁ ବାହାରିବେ ତାହା ନୁହଁ, ଅନ୍ୟ ଜାତିରୁ ମଧ୍ୟ ବାହାରିବେ । ଆଗେ Brahminismର ଅଭ୍ୟୁଦୟ ହେଉ । ଆଉ ସବୁ କଥା ତାହା ମନକୁ ଆପଣା ଛାଏଁ ଠିକ୍ ହୋଇଯିବ ।

ଗ୍ରାମସେବକ ପତ୍ରିକାର ଲିପି-ସଂସ୍କାରକୁ ସେ ନାପସନ୍ଦ କଲେ । ସେ କହିଲେ ଗୋଟିଏ ନୂଆ ଭାବଧାରା ଗ୍ରହଣ ବେଳେ ପୁଣି ପଢ଼ିବାର କଠିନତାକୁ ସେଥିସହ ପୂରାଇବା ଠିକ୍ ନୁହେଁ । ଆଧୁନିକ ଶିକ୍ଷାପଦ୍ଧତି, ଯୁବକ ଯୁବତୀ ନିଜ ଇଚ୍ଛାରେ ବିବାହ କରିବାକୁ ସେ ବଡ଼ ନାପସନ୍ଦ କଲେ ।

ଶ୍ରୀ ପୂର୍ଣ୍ଣ ବାବୁ କଟକ ଯିବେ ବୋଲି ମୁଁ ଟ୍ରେନ୍ ପାଖକୁ ଗଲି ମାତ୍ର ସେ ୯ ଟା ବେଳର ଟ୍ରେନ୍‌ରେ ଗଲେ ନାହିଁ, ୫ ଟା ବେଳର ଟ୍ରେନ୍‌ରେ ଗଲେ । ମୋତେ ଜ୍ୱରଜ୍ୱର ଲାଗୁଥିଲେ ହେଁ ମୁଁ ଏ ଦୁଇଦିନ ଗାଧୁଆ, ଭାତଖିଆ ଓ ରାତିରେ ଖାଇବା ମଧ୍ୟ ବନ୍ଦ କରି ନାହିଁ ।

୧.୭.୧୯୫୬

ଭୋର ପୁରୀ-ଆସନ୍‌ସୋଲ୍ ଟ୍ରେନ୍‌ରେ କଟକରୁ ମୁଁ ଓ ଶ୍ରୀମାନ୍ ବିକ୍ରମକେଶରୀ ବିଶ୍ୱାଳ ହରିଦାସପୁର ଆସିଲୁ । କଦଳାମଠରେ ଆମେ ଚୁଡ଼ା ଦହି ଆଦି ଜଳଖିଆ କରି, ଚାଲି କରି ଘ. ୮.୩୫ରେ ବାହାରି, ପାଟପୁର, ରାଆପଡ଼ା, ବନ୍ଧଡ଼ିହ, ବାଲିଆ ଦେଇ ଉପରଓଳି ଘ ୩.୩୫ରେ ରାମଚନ୍ଦ୍ରପୁରରେ ପହଞ୍ଚିଲୁ ।

୨୯.୬.୫୬ରେ ଆଚାର୍ଯ୍ୟ ମହାଶୟ, ଗୋପବାବୁ, ରମାଦେବୀ, ଗୁଣନିଧିବାବୁ,

ବୁଲୁବାବୁ ଯାଜପୁର ବାଟେ କଟକରୁ ବରୀକୁ ଆସିଥିଲେ । ରାମଚନ୍ଦ୍ରପୁରରେ ପୁଣି ଉତ୍ତର ମୌଳିକ ଶିକ୍ଷା ବିଭାଗ ଖୋଲିବାକୁ ସେମାନେ ଆସିଛନ୍ତି ।

ସନ୍ଧ୍ୟାବେଳେ ମୁଁ ଶ୍ରୀ ଫକୀର ମିଶ୍ରଙ୍କୁ କହିଲି ଯେ ଏହି ଉତ୍ତର ମୌଳିକ ବିଭାଗ ଖୋଲିବାର ମୁଁ ଘୋର ବିରୋଧୀ । କାରଣ ଏଥିପାଇଁ ଯେଉଁସବୁ ପ୍ରଧାନ ପ୍ରାରମ୍ଭିକ ବ୍ୟବସ୍ଥା ଦରକାର, ସେଗୁଡ଼ିକ (ଜମି, ଜଳସେଚନ ସୁବିଧା, ଛାତ୍ର-ବୃତ୍ତି, ଏ ଅଞ୍ଚଳରୁ ହାଇସ୍କୁଲ ପ୍ରତିଷ୍ଠା ବନ୍ଦ କରିବା) ଆମେ ନ କରି ଏହା ଖୋଲିଲେ ଏ ଶିକ୍ଷା ଚଳିବ ନାହିଁ ଏବଂ ସମସ୍ତେ ପୁଣି ଲୋକହସା ହେବେ । ରାତିରେ ମୁଁ ମୋର ଏହି ବିରୋଧ ଆଚାର୍ଯ୍ୟ ହରିହର ଦାସ, ଶ୍ରୀଯୁକ୍ତ ରମା ଦେବୀ ଓ ଫକୀର ମିଶ୍ରଙ୍କ ଆଗରେ ମଧ୍ୟ ରମାଦେବୀଙ୍କର ବାରନ୍ଦାରେ କହିଲି ।

୨.୭.୧୯୫୬

ସକାଳେ ପାଇଖାନା ସଫା କଲି । ଏହି ବାଲତୀ-ବସା ପାଇଖାନା ଆଚାର୍ଯ୍ୟ ମହାଶୟ, ଗୁଣନିଧି ବାବୁ, ଆଦି ବ୍ୟବହାର କରୁଛନ୍ତି ।

ମୁଁ ବରୀ ମାତୃମଙ୍ଗଳ କେନ୍ଦ୍ରରେ ସକାଳ ଘ ୮ଟାରେ ପହଞ୍ଚି, ଶ୍ରୀ ଗଣେଶଚନ୍ଦ୍ର ମହାନ୍ତି ଓ ବାବାଜୀ ସାହାଯ୍ୟରେ ସେଠାର ଓ ବୁଲୁବାବୁଙ୍କର ପୁରୁଣା ଆଶ୍ରମଡିହର ଜମି, ଘରଦ୍ୱାର ମାପିଲି । ଶ୍ରୀ ବୃନ୍ଦାବନ ଚନ୍ଦ୍ର ଜେନାଙ୍କର ଘର ତିଆରିର ଡିହ ଓ ପାହ୍ୟା ଦେଖିଆସିଲି ।

ଉପରଓଳି ଉତ୍ତର ମୌଳିକ ଶିକ୍ଷା ରାମଚନ୍ଦ୍ରପୁରରେ ଖୋଲିବାର ଗୁରୁଜୀମାନଙ୍କ ସହ ଶ୍ରୀଯୁକ୍ତା ରମା ଦେବୀ, ଶ୍ରୀଯୁକ୍ତ ଗୋପବାବୁ ଆଦିଙ୍କର କଥାବାର୍ତ୍ତାବେଳେ ମୁଁ ଚୁପ୍ କରି ବସିଥିଲି । ମୋର ମତ ପଚରା ଯାଇ ନଥିଲା । ମୁଁ ଦେଖିଲି ଯେ, ଏହା ଆଗରୁ ବିନୋବାଜୀଙ୍କଠାରେ କାଞ୍ଚିପୁରର ସମ୍ମିଳନୀରେ ସ୍ଥିର ହୋଇଯାଇଛି । ମୋର ଆପତ୍ତି ଶୁଣିବା ଅନାବଶ୍ୟକ । ମୁଁ ବିନୋବାଜୀଙ୍କୁ "ଦେବତା'' ବୋଲି ମୁଁ ମନେ କରେ ନାହିଁ ଏବଂ ସବୁ କଥା infallible ବୋଲି ବିଶ୍ୱାସ କରେ ନାହିଁ । ଅନେକ କଥା ଆମର ଦୁର୍ବଳତା, ତ୍ରୁଟି, ଆମର ପ୍ରକୃତ ପରିସ୍ଥିତି ବିନୋବାଜୀଙ୍କ ଠାରେ ସର୍ବଦା ଠିକ୍ ରୂପେ ପ୍ରକାଶ କରାଯାଏ ନାହିଁ । ଏଠାର ସବୁ ଅଭାବ, ବାଧା, ଆମର ଦୁର୍ବଳତା ବିନୋବାଜୀ ନ ଜାଣି, ସମ୍ମତ, ସମର୍ଥନ ଓ ଆଶୀର୍ବାଦ ଦେଇଛନ୍ତି । ତେଣୁ କରି, ମୁଁ ଏ ପ୍ରସ୍ତାବରେ ଆଦୌ ଏକମତ ନୁହେଁ । ସେମାନେ ଯାହା ଇଚ୍ଛା କରିଯାନ୍ତୁ । ଅନେକ ଶିକ୍ଷକ ଓ ଆମେ ନିଜନିଜକୁ କାର୍ଯ୍ୟରେ ସମର୍ପଣ କରି ନ ଦେଇ, ଆଗକୁ ଚାଲିଛୁ । ସେବାଗ୍ରାମରୁ ଆସିଥିବା ପଦ୍ମନାଭ ଓ ତ୍ରିଲୋଚନ ଜେନା ମାସିକ ଟ. ୧୧୫/- ଲେଖାଁଏ ଦରମା ନେବେ । x x x ଏହା ଜାଣି ମୁଁ କହୁଛି ଯେ ଏହା ସଫଳ ହେବ ନାହିଁ । ମୋର ତା ୧୨.୧୦.୫୫ର ୬୩୪୨ ନମ୍ବର ପତ୍ରରେ ମୋର ଆପତ୍ତିଗୁଡ଼ିକ (ପ୍ରାୟ ୧୨ଟି) ମୁଁ ଶ୍ରୀଯୁକ୍ତା ରମାଦେବୀଙ୍କୁ ଜଣାଇଥିଲି ।

୬.୭.୧୯୫୬

ହରିଦାସପୁର ନିକଟ କଦଳାମଠରେ ଅଧିକାରୀ ଶ୍ରୀଯୁକ୍ତ ଚକ୍ରଧର ଦାସ (ବୟସ ପ୍ରାୟ ୫୯ ବର୍ଷ ହେବ) ଆଜି ମୋତେ କହିଲେ ଯେ ମଠର ସମସ୍ତ ଜମି ସେ ଭୂଦାନ ଯଜ୍ଞକୁ ଦେବେ ଏବଂ ଭୂଦାନ ସମିତି ମଠର ପରିଚାଳନାର ବ୍ୟବସ୍ଥା କରନ୍ତୁ । ଏହା ବିଚାର କରି ଓ ଅନ୍ୟମାନଙ୍କ ସହ ପରାମର୍ଶ କରି, ମୁଁ ଏଥିରେ ମତ ଜଣାଇବି ବୋଲି କହିଲି ।

ଖ୍ରୀଷ୍ଟାବ୍ଦ ୧୯୩୯ର ପ୍ରାୟ ଅକ୍ଟୋବର ମାସଠାରୁ - ମୁଁ ତା ୨୯ ମାର୍ଚ୍ଚ, ୧୯୩୯ରେ ସର୍ବପ୍ରଥମେ ବରୀ "ସେବାଘର''କୁ ଯିବାଠାରୁ ଓ ପରେ ପରେ ମୌଳିକ ଶିକ୍ଷାର କେନ୍ଦ୍ର ରାମଚନ୍ଦ୍ରପୁରରେ ରହିବାଠାରୁ - ଏହି ମଠବାଟେ କଟକ ଯିବାଆସିବା କରୁଅଛି ଏବଂ ଅଧିକାରୀ ମହାଶୟଙ୍କ ସହ ଆତ୍ମୀୟତା ଜନ୍ମିଅଛି ।

ମଠରେ ସକାଳେ ଦହି ସରବତ ପିଇଲି ଏବଂ ମଧ୍ୟାହ୍ନଭୋଜନ କଲି । ଉପରଓଳି ୩ଟା ବେଳର ଟ୍ରେନ୍‌ରେ ହରିଦାସପୁରରୁ ଭଦ୍ରକକୁ ଆସିଲି । ଆଚାର୍ଯ୍ୟ ମହାଶୟ, ଶ୍ରୀମତୀ ଅନ୍ନପୂର୍ଣ୍ଣ ଦାସ ଏବଂ ଶ୍ରୀଯୁକତ ପୁରୁବାଇ ମଧ୍ୟ କଟକରୁ ଓ ସୋରରୁ ଆସିଥିଲେ । ସାଳନ୍ଦୀ ନଦୀରେ ବନ୍ୟାଯୋଗୁଁ ସେମାନେ ନଣ୍ଡାବାବୁ ( ଏକ ଗୁଜରାଟୀ ବ୍ୟବସାୟୀ)ଙ୍କର ଘରେ ପୁରୁଣାବଜାରରେ ରହିଲେ । ସର୍ବଶ୍ରୀ କପିଳ ବାବୁ, ଶ୍ୟାମସୁନ୍ଦର ବିଶ୍ୱାଳ, ବଳରାମ ପାଣ୍ଡବ ଓ ମୁଁ ଡ଼ଙ୍ଗାରେ ନଦୀ ପାର ହୋଇ, ରାତି ୮ଟାରେ ଜୀବରାମ କଲ୍ୟାଣୀଙ୍କର ଗରଜପୁର ଆଶ୍ରମରେ ପହଞ୍ଚିଲୁ ।

ରାତି ୧୦ଟାରେ ମୁଁ ଦୁଧ, ଅଟାର ଲଡୁ ଓ ୪ ଖଣ୍ଡ ରୋଟି, ଆଳୁ-ତରକାରୀ, ଆମ୍ବ ଆଚାର ଖାଇଲି । ଭୋକ ହେଉଥିବାରୁ ଏତେ ରାତିରେ ମଧ୍ୟ ଖାଇଲି ।

୭.୭.୫୬

ଭଦ୍ରଖର ଗରଦପୁରରେ । ଜୀବରାମ ଶ୍ରାଦ୍ଧଦିବସ । ସକାଳେ ବାଳାଶ୍ରମକୁ ଆସି, ସାଳନ୍ଦୀର ବାମ କୂଳରେ ଜୀବରାମଜୀଙ୍କର ସମାଧି ସ୍ଥାନରେ ଆମ୍ଭେମାନେ ତିଳ ତର୍ପଣ କଲୁ । ଆଚାର୍ଯ୍ୟ ହରିହର ଦସ୍, ପୁରୁବାଇ, ଅନ୍ନପୁର୍ଣ୍ଣା ଦାସ, ମାୟାଧର ଖୁଣ୍ଟିଆ, ସୁଧାଂଶୁଶେଖର ଦାସ, ବାଳାଶ୍ରମର ଶିକ୍ଷକ ଓ ବଡ଼ ପିଲାମାନେ, ଆଦି ତର୍ପଣ କଲେ । ଶ୍ରୀ ଅଚ୍ୟୁତାନନ୍ଦ ଜେନା ମଧ୍ୟ । ଆଶ୍ରମକୁ ଆମ୍ଭେମାନେ ସମସ୍ତେ ଯାଇ, ଘଣ୍ଟାଏ ସୂତ୍ରଯଜ୍ଞ କଲୁ । ଆଚାର୍ଯ୍ୟ ମହାଶୟ ପିଲାମାନଙ୍କୁ ଜୀବରାମଜୀଙ୍କ ବିଷୟରେ ଘଣ୍ଟାଏ ଖଣ୍ଡେ କହିଲେ ।

ଦିନ ୨ଟା ବେଳେ ଆମ୍ଭେମାନେ ଭୋଜନ କଲୁ । ଆଚାର୍ଯ୍ୟ ମହାଶୟ ଆଦି କଟକ ଯିବାକୁ ଆଶ୍ରମରୁ ଆସିଲେ । ଆମେ ରହିଲୁ । ଏଠାରେ ପଡ଼ୋଶୀ ବାଉଲୀ ନାମକ ମୁସଲମାଲ

ବୁଢ଼ା କପିଳବାବୁଙ୍କ ବିରୋଧରେ, ବାଉଲୀର ପୁଅ ହୋସେନ୍‌କୁ ଚାକିରୀ ମିଳୁନାହିଁ, ଆଶ୍ରମ ପକ୍ଷରୁ ଏକ ଡ଼ଙ୍ଗା ନଦୀରେ ରଖାଯାଉନାହିଁ, .... ଆମକୁ କହିଲା । ଅଧିକାଂଶ ଜାଗାରେ ଆଶ୍ରମ, ସର୍ବସାଧାରଣ ବେସରକାରୀ ଅନୁଷ୍ଠାନର ବିରୋଧରେ ସ୍ଥାନୀୟ ଲୋକଙ୍କର ଏହିପରି ମନୋଭାବ ଗତ ୭/୮ ବର୍ଷ ହେଲା ମୁଁ ଲକ୍ଷ୍ୟ କରିଆସୁଛି । ଆଶ୍ରମ ବା ଅନୁଷ୍ଠାନରେ କର୍ମୀ ଥିବା ଲୋକେ ଅଧିକାଂଶ ବିବାହିତ ଓ ପିଲାପରିବାର ପାଖରେ ଅଛନ୍ତି । ଏମାନେ ଜୀବିକା-ନିର୍ବାହ ପାଇଁ ମାସରେ ପ୍ରାୟ ୫୦ ରୁ ୭୦ ପର୍ଯ୍ୟନ୍ତ ନେଉଛନ୍ତି । ଆଶ୍ରମକୁ ନିଜର ଘର ମନେ କରି, ବାଡ଼ିବଗିଚା କାମ କରୁଛନ୍ତି, ଖଟୁଛନ୍ତି । ମାତ୍ର କେତେକ ଲୋକ ଏମାନେ ଏହି ପାରିଶ୍ରମିକ ନେବାକୁ ସହିପାରୁନାହାନ୍ତି ।

୧୪.୭.୧୯୫୬

ପ୍ରାଦେଶିକ ଭୂଦାନ ସମିତିର ବୈଠକ ଥୋଡ଼ିଆସାହିରେ ହେଲା । ଶ୍ରୀଯୁକ୍ତ ଗୋପବାବୁ, ସାଧୁବାବୁ, ନବ ବାବୁ, ବିଶ୍ୱନାଥ ପଟ୍ଟନାୟକ ଓ ମୁଁ ମେମ୍ବରମାନେ ଯୋଗ ଦେଇଥିଲୁ ।

ଏକ ବେସରକାରୀ ପ୍ରାଦେଶିକ ସମିତି ଓ ଏକ ସରକାରୀ ସମିତି ଏକତ୍ର ରହିଅଛି ଓ ଏକାଠି ବୈଠକ ବରାବର ହେଉଅଛି ବୋଲି ଶ୍ରୀଯୁକ୍ତ ଗୋପବାବୁଙ୍କର ଧାରଣା ଏବଂ ଶ୍ରୀଯୁକ୍ତ ବଲ୍ଲଭ ସ୍ୱାମୀଙ୍କର ମଧ୍ୟ ଧାରଣା ଯେ ସର୍ବସେବା ସଂଘ ଏହି ବେସରକାରୀ ସମିତିକୁ ମଞ୍ଜୁର କରିଛନ୍ତି । ମାତ୍ର ଲିଖିତ ଚିଠି ଏହିପରି ନାହିଁ, ବରଂ ଓଲଟା ଅଛି । ଏପରି anomalous ରେ ମୁଁ ସଂଯୋଜକ କାର୍ଯ୍ୟ ଚଳାଇପାରିବି ନାହିଁ ବୋଲି ବୈଠକ ଆରମ୍ଭରେ ମୁଁ ଶ୍ରୀଯୁକ୍ତ ଗୋପବାବୁଙ୍କୁ କହିଲି ।

୧୬.୭.୧୯୫୬

ଉତ୍କଳ ନବଜୀବନ ମଣ୍ଡଳର ବୈଠକ କଟକରେ ହେଲା । ଶ୍ରୀଯୁକ୍ତ ଅର୍ଣ୍ଣାସାହେବ ସେଥିରେ ଯୋଗ ଦେଇଥିଲେ । ପ୍ରାଦେଶିକ ଭୂଦାନ ସମିତିର ସଂଯୋଜକ ପଦାଧିକାରରେ ମୁଁ ସେହି ମଣ୍ଡଳରେ ସଦସ୍ୟ ଅଛି ଓ ବୈଠକରେ ଯୋଗ ଦେଲି ।

୧୯.୭.୧୯୫୬

ପାଞ୍ଚଟି ଅଞ୍ଚଳ (zone)ରେ ପ୍ରଦେଶକୁ ବିଭକ୍ତ କରି, ବ୍ୟାପକ ଭୂଦାନ କାର୍ଯ୍ୟର ଯୋଜନା ଅନୁସାରେ ଓ ସର୍ବସେବା ସଂଘରୁ ଏ ବର୍ଷରେ ମିଳିବା ଟଙ୍କାର ସ୍ୱଳ୍ପତାକୁ ଚାହିଁ, ଭାରପ୍ରାପ୍ତ କର୍ମୀଙ୍କର ନୂଆ ତାଲିକା ଦେଇ, ଜିଲ୍ଲା ଭୂ-ଦାନ ସଂଯୋଜକମାନଙ୍କୁ ଏକ ଲମ୍ବା ପରିପତ୍ର ଚିଠା କଲି । କୋରାପୁଟ ଜିଲ୍ଲାରେ ଯେଉଁ କର୍ମୀମାନେ ରହିବେ, ସେମାନେ ତା ୧.୭.୧୯୫୬ରୁ ସର୍ବସେବା ସଂଘର ପରିଚାଳନାକୁ ଗଲେ ବୋଲି ପତ୍ର ଦେଲି ।

ତା ୧୭ରୁ ୧୯ ଅଗଷ୍ଟ ପର୍ଯ୍ୟନ୍ତ ୩ ଦିନ କଟକ ଟାଉନରେ ପ୍ରାଦେଶିକ ଭୂଦାନ ସମ୍ମିଳନୀ ହେବା ବିଷୟରେ ସର୍ବଶ୍ରୀ ଫକୀର ମିଶ୍ର, ସଚ୍ଚିଦାନନ୍ଦ ମହାନ୍ତିଙ୍କର ପରାମର୍ଶ ଓ ସୂଚନାମାନ ଶୁଣିଲି ।

୨୦.୭.୧୯୫୬

ଭୋର ଚାଟୁବାବୁ (ବ୍ରଜମୋହନ ସିଂହ), ଫକୀର ମିଶ୍ର ଓ ଶରତ ମହାରଣା କଟକରୁ ପୁରୀ-ଆସନ୍‌ସୋଲ ଟ୍ରେନ୍‌ରେ କଦଳାମଠକୁ ଗଲେ । ସେଠାରେ ଦିନରାତି ରହିଣି ଓ ଠାକୁରଙ୍କର ପ୍ରସାଦ ପାଇଲୁ ।

ଅଧିକାରୀ ଶ୍ରୀଯୁକ୍ତ ଚକ୍ରଧର ଦାସ ଆମକୁ କହିଲେ ଯେ ମଠର ଓ ତାଙ୍କର ବ୍ୟକ୍ତିଗତ ନାମରେ ଥିବା ସମସ୍ତ ଜମିବାଡ଼ି ସେ ଶରତ୍‌ଚନ୍ଦ୍ର ମହାରଣାଙ୍କୁ ସମର୍ପଣ କରି ଦେଉଛନ୍ତି, ସେ (ଶରତ୍ ମହାରଣା) ଯାହା ଯେପରି କରିବେ, କରନ୍ତୁ । ମୁଁ ନିଜେ ଏହା କ'ଣ କରିବି ? ମୋତେ (ବ୍ୟକ୍ତିକୁ) ସେ ଅବା ଏ ସବୁ କାହିଁକି ଦେବେ ? ଏହାର ଅର୍ଥ ସେ ସେହି ସବୁକୁ ବିନୋବାଜୀଙ୍କର ଭୂଦାନ ଯଜ୍ଞକୁ ଦାନ କରୁଛନ୍ତି । ଆମେ କହିଲୁ ଯେ ଏଠାର କଦଳାଗ୍ରାମର ଯଦି ସମସ୍ତ ଜମି ଦାନ କରନ୍ତେ, ତାହା ହେଲେ ଗୋଟିଏ ବଡ଼ କାର୍ଯ୍ୟ ହୁଅନ୍ତା । ସନ୍ଧ୍ୟା ପରେ କଦଳା ଗାଁ ମଧ୍ୟରେ ମାଷ୍ଟରଙ୍କର ପୁଅ ଶ୍ରୀ ଦାମୋଦର ସାମଲ (ବୟସ ୨୩/୨୪ ବର୍ଷ), ହରି ସାହୁ, ଆଦି ୧୫/୧୭ ଜଣଙ୍କ ସହ ଆମ୍ଭେମାନେ ଗ୍ରାମଦାନ ବିଷୟରେ କଥାବାର୍ତ୍ତା କଲୁ ।

୨୧.୭.୧୯୫୬

ଆଜି ଭୋର ଆଚାର୍ଯ୍ୟ ମହାଶୟ କଟକରୁ ସୋର ଗଲେ । ରଚନାତ୍ମକ କର୍ମୀ, ଭୂଦାନକର୍ମୀ ଓ ପୂର୍ବର ଘନିଷ୍ଠ ବନ୍ଧୁମାନଙ୍କର ପରିବାରମାନଙ୍କୁ ଭେଟିବା ପାଇଁ ସେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଗସ୍ତ କରିବେ । ଆଜି ଏହି ଗସ୍ତ ଆରମ୍ଭ କଲେ । ସଙ୍ଗରେ ଜୟକୃଷ୍ଣ ବିଶ୍ୱାଳ ଓ ସଚ୍ଚିଦାନନଦ ମହାନ୍ତି ଗଲେ ।

୨୨.୭.୧୯୫୬

ସକାଳେ ବାଳ ଗଙ୍ଗାଧର ତିଲକଙ୍କର ସଂକ୍ଷିପ୍ତ ଜୀବନୀ ଦୈନିକ ସମାଜରୁ ପଢ଼ିଲି । ଆସନ୍ତା କାଲି ତିଲକଙ୍କର ଶତବାର୍ଷିକ ଜନ୍ମଦିବସ ( ତା ୨୩.୭.୧୮୫୬ ଖ୍ରୀରେ ସେ ଜନ୍ମଗ୍ରହଣ କରିଥିଲେ) ହେବ । ରାମଚନ୍ଦ୍ରପୁର ମୌଳିକ ସ୍କୁଲ ଓ ଅନୁଗୋଳ ମୌଳିକ ଶିକ୍ଷାକେନ୍ଦ୍ର ମଧ୍ୟରେ ସହୃଦୟତା ନାହିଁ ଓ ଆମେ କେହି ଶ୍ରୀଯୁକ୍ତା ମାଳତୀ ଦେବୀଙ୍କୁ ସାହାଯ୍ୟ କରୁନାହୁଁ, ମୁଁ ବାଜୀରାଉତ ଛାତ୍ରାବାସର ଟ୍ରଷ୍ଟୀ ରହିଲି ନାହିଁ – ଇତ୍ୟାଦି କଥା ତା ୧୩.୭.୫୬ରେ କଟକରେ ପଡ଼ିଥିଲା ବୋଲି ଶ୍ରୀ ଭୁବନାନନ୍ଦ ସ୍ୱାଇଁ ଆଜି କହିଲେ । ୧୯୪୬ରେ ଏହି ଭୁଲ ବୁଝିବା କିପରି ଆରମ୍ଭ

ହୋଇଛି ତାହା ମୁଁ କହିଲି । ମୋ ମନକୁ ଆସିଲା ଯେ ମୋ ମତରେ ଏକ co-ordinating ସଂସ୍ଥା ରହୁ, ଏବଂ ଉଭୟ ଅନୁଷ୍ଠାନ ମଧ୍ୟରେ ବେଶୀ ସଂପର୍କ ରହୁ ।

ରାମଚନ୍ଦ୍ରପୁର ମୌଳିକ ଶିକ୍ଷା କେନ୍ଦ୍ରର ଘର ମରାମତି ଦରଖାସ୍ତ ଟାଇପ୍ କରିଦେଲି । ଚୁନୀ, କୁନ, ଅଧିକାରୀ ଚକ୍ରଧର ଦାସ, ଆଦିଙ୍କୁ ପତ୍ର ଲେଖିଲି । ବାବୁଲି ପାଇଁ ପଢ଼ା ବହି ପ୍ୟାକ୍ କରି ରଖିଲି ।

ରାତି ଶେଷରେ ମୁଁ ସ୍ୱପ୍ନ ଦେଖିଲି ଯେ ପଲେ ହାତୀ ମୋ ପାଖଦେଇ ଯାଉଅଛନ୍ତି ।

୨୩.୭.୫୬

ଶ୍ରୀଯୁକ୍ତ ଗୋପବାବୁ, ବ୍ୟାସଜୀ, ରମା ଦେବୀ ଆଦି ପୁରୀ ଏକ୍ସପ୍ରେସ୍ ଟ୍ରେନ୍‌ରେ କଟକରେ କଲିକତାରୁ ପହଞ୍ଚିଲେ । ଶ୍ରୀଯୁକ୍ତା ରମା ଦେବୀ appreciate କରି କହିଲେ ଯେ, ସିରାଜଉଦ୍ଦିନ (ଖଣି ପଟାଦାର ବ୍ୟବସାୟୀ) ତାଙ୍କୁ ଓ ଶ୍ରୀଯୁକ୍ତ ଗୋପବାବୁଙ୍କୁ କହିଲେ ଯେ ଓଡ଼ିଶାରେ କୃଷିର ଖୁବ୍ ଉନ୍ନତ ପ୍ରୟୋଗ କରି ସେମାନେ ଦେଖାନ୍ତୁ, ସେ ସବୁ ମତେ ସାହାଯ୍ୟ କରିବେ; ସେମାନେ ଏ ବୃଦ୍ଧ ବୟସରେ ଆଉ ଏତେ ବୁଲନ୍ତୁ ନାହିଁ । ସିରାଜଉଦ୍ଦିନ୍ ସାହେବ କୁଆଡ଼େ ଭାରୀ ସାହାସୀ, ମୌଳିକ ଚିନ୍ତା କରିବାର ଲୋକ ଅଟନ୍ତି । ସାଧାରଣ ଗରୀବ ଲୋକର କି ସୁଖ ସ୍ୱାଚ୍ଛନ୍ଦ୍ୟ ବଢ଼ିବ, ସେ ତାହା ପ୍ରତି କାର୍ଯ୍ୟରେ ଚିନ୍ତା କରୁଛନ୍ତି ।

ବୋଉଙ୍କର ଜ୍ୱର ହେଲା । ରାତିରେ ଛାଡ଼ିଲା । ଦିନଯାକ ଓ ସନ୍ଧ୍ୟାରେ ମୁଁ ଗତ ସମିତି-ବୈଠକର ବିବରଣୀର ଚିଠା ପୂର୍ଣ୍ଣ କରି, ଅଧା fair କଲି । ଚୁନୀର ଦେହ କିପରି ଅଛି ପଚାରି ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସଙ୍କୁ ଓ ବାବୁଲିକୁ ଲଫାଫାରେ ଚିଠି ଦେଲି । ବ୍ୟାସଜୀ ଡାକଗାଡ଼ିରେ କଟକରୁ ବିଜୟନଗରମ୍ ଗଲେ ।

୨୪.୭.୧୯୫୬

ଆମର ଭୂଦାନ କାର୍ଯ୍ୟର ପୁନର୍ଗଠନ ବିଷୟକ ପରିପତ୍ର ତୁଳନା କରି ଦେଖିଲି ଠିକ୍ ଅଛି କି । ଆଜି ଡାକରେ ଆସିଥିବା ସବୁ ଚିଠିର ଉତ୍ତର ଦେଲି । ପଣ୍ଡିଚେରୀରେ ଶ୍ରୀ ଅରବିନ୍ଦ ଆଶ୍ରମରେ ଥିବା ଶ୍ରୀ କାଙ୍ଗାଳୀ ଚରଣ ପତିଙ୍କୁ ତାଙ୍କର ତା ୧୮.୭.୫୬ର ପତ୍ରର ଉତ୍ତର ଦେଲି । ମଦନମୋହନ ସାହୁଙ୍କ ପତ୍ର ୩ଟିର ଉତ୍ତର ଦେଲି ।

ତକଲିରେ ଥିବା ମୋର ସୂତାକୁ ନଟେଇରେ ଗୁଡ଼ାଇଲି । ତକଲିରେ ପ୍ରାୟ ୧୫୦ ଘେରା ମାତ୍ର ସୂତା କାଟିଲି । ପୁରୁବାଈଙ୍କ ଆଶ୍ରମରୁ କିଣି ଆଣିଥିବା ବଳଣା ଖରାପ ପଡ଼ିଲା । ଅନ୍ୟ ଦ୍ୱାରା – ଚୁନୀ ତିଆରି କରିଥିବାକୁ ଛାଡ଼ି – ପ୍ରସ୍ତୁତ ବଳଣାରେ ମୁଁ ସୂତା କାଟିବାକୁ ଚାହେଁ

ନାହିଁ । ଲେଖିବାରେ, ଅଫିସ କାର୍ଯ୍ୟରେ ଏତେ ବେଶୀ ସମୟ ଯାଉଛି ଯେ ମୁଁ ତୂଳା ବାଛି ପାରୁନାହିଁ ଓ ଭିଣି ପାରୁନାହିଁ । ନୋହିଲେ, ମୁଁ ନିଜେ ସବୁ ପ୍ରକ୍ରିୟା କରି ସୂତା କାଟିବାକୁ ଅଭ୍ୟାସ କରିଥିଲି ଓ ତାହାକୁ ଭଲ ପାଏ ।

ଚୁନୀର ତା ୨୩.୭.୫୬ର ଚିଠିରୁ ଜାଣିଲି ଯେ ତାହାର ଆମାଶୟ ଭଲ ହୋଇଯାଇଅଛି । ମାତ୍ର ସେ ଅନ୍ନସଂସ୍ଥାନ ଦିଗରେ ବଡ଼ ଉଦ୍‌ବିଗ୍ନ । ଚିନ୍ତିତ ହେବାର କଥା, ଆମେ ଯେଉଁ ପରିସ୍ଥିତିରେ ପଡ଼ିଛୁ । ମୁଁ ଉତ୍ତର ଦେଲି, ସେ ଅପେକ୍ଷା କରୁ ।

୨୫.୭.୧୯୫୬

ସକାଳେ ଇଂରାଜୀ ଅମୃତ ବଜାର ପତ୍ରିକାରୁ ଭୂଦାନ ବିଷୟରେ ବାହାରିଥିବା ଖବର ଆଦି ଅଧଘଣ୍ଟାଏ ପଢ଼ିଲି । ପ୍ରାଦେଶିକ ସମିତିର ଗତ ବୈଠକର ବିବରଣୀ ଚିଠି ଶେଷ କଲି । କେବଳ amend of the Act ଅଂଶଟି ଶ୍ରୀଯୁକ୍ତ ସାଧୁବାବୁଙ୍କର ପରାମର୍ଶ ପାଇଁ ରଖିଲି ।

ଜୟ ପ୍ରକାଶ ନାରାୟଣ ଜୀଙ୍କ ଭାରତ ବ୍ୟାପୀ ଗସ୍ତ ବିଷୟକ ଉତ୍ତର ପ୍ରଦେଶର ଭୂଦାନ-ସଂଯୋଜକ ଶ୍ରୀ ଅକ୍ଷୟ ପ୍ରସାଦ କରଣଙ୍କର ପରିପତ୍ର ପଢ଼ିଲି ଓ ନୋଟ ଲେଖିଦେଲି ।

ଥୋଡ଼ିଆ ସାହିରେ ସର୍ବଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, କାଳିନ୍ଦୀଚରଣ ପାଣିଗ୍ରାହୀ, ବିମଳକୃଷ୍ଣ ପାଳ (ଓକିଲ), ନିଶାମଣି ଖୁଣ୍ଟିଆ, ସାଧୁଚରଣ ମହାନ୍ତି, ବାଞ୍ଛାନିଧି ଦାସ (ସମାଜ ପ୍ରେସ୍‌ର କର୍ମୀ ଓ କବି), ବଲାଇ ପାଲିତ, ଉମେଶ ଚନ୍ଦ୍ର ପାଣିଗ୍ରାହୀ (ଭାରତ-ପର୍ଯ୍ୟଟକ), ରଘୁନାଥ ମହାନ୍ତି, ନନ୍ଦିନୀ ଶତପଥି, ଦେବେନ୍ଦ୍ର ଶତପଥି, ହରମୋହନ ପଟ୍ଟନାୟକ, ଶ୍ରୀବତ୍ସ ନାୟକ, ଜାନକୀବଲ୍ଲଭ ପଟ୍ଟନାୟକ, ମାଗୁଣିଚରଣ ମହାପାତ୍ର, ରାଜକୃଷ୍ଣ ମହାନ୍ତି, ଦାମୋଦର ପଣ୍ଡା (ଇନ୍‌ସିଓରାନ୍ସ କାର୍ଯ୍ୟ କରନ୍ତି), ସର୍ବ ଶ୍ରୀମତୀ ରତ୍ନମଣି ଜେମା (କୁଜଙ୍ଗର), ନିଶାମଣି ମହାନ୍ତି (ରଜା ବଗିଚାର), ହରିପ୍ରିୟା ଦେବୀ ଉପସ୍ଥିତ ହୋଇ, ଓଡ଼ିଶାରେ ଗୋଟିଏ ପ୍ରାଦେଶିକ ଭୂଦାନ ସମ୍ମିଳନୀ କଥା ଆଲୋଚନା କଲେ । ସେଥିରେ ସର୍ବଶ୍ରୀ ଗୋପବାବୁ, ଗୁଣନିଧିବାବୁ, ହରେକୃଷ୍ଣ ବିଶ୍ୱାଳ, ଜୟକୃଷ୍ଣ ମହାନ୍ତି, ପ୍ରଫୁଲ୍ଲଚନ୍ଦ୍ର ଦାସ, ସଚ୍ଚିଦାନନ୍ଦ ମହାନ୍ତି, ରାମକୃଷ୍ଣ ରାୟ, ଆଦି ଆମ୍ଭେମାନେ ଏଠାରେ ରହୁଥିବା ଲୋକେ ମଧ୍ୟ ଉପସ୍ଥିତ ଥିଲୁ ।

କଟକ ଟାଉନ୍‌ରେ ଅଗଷ୍ଟ ୧୭ରୁ ୧୯ ପର୍ଯ୍ୟନ୍ତ ସମ୍ମିଳନୀ କରିବା ସ୍ଥିର ହେଲା । ..(ଅସ୍ଥାୟୀ ସ୍ୱାଗତ ସମିତିରେ) ଏମାନେ (ଆମର ବାହାରର ଲୋକେ) ସମସ୍ତେ ମେମ୍ବର ରହିଲେ, ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ସଭାପତି, ବିମଳବାବୁ ଉପସଭାପତି; ରଘୁବାବୁ, ହରମୋହନ ବାବୁ, ବଲାଇବାବୁ ଓ ପ୍ରାଦେଶିକ ଭୂଦାନ ସଂଯୋଜକ ଜଏଣ୍ଟ-ସଂପାଦକଗଣ ଏବଂ ଶ୍ରୀମତୀ ନିଶାମଣି ମହାନ୍ତି କୋଷାଧକ୍ଷ ନିର୍ବାଚିତ ହେଲେ । ପ୍ରଥମେ ଶ୍ରୀଯୁକ୍ତ ଜୟପ୍ରକାଶ

ନାରାୟଣ, ୨ୟରେ ଦାଦା ଧର୍ମାଧିକାରୀ ନୋହିଲେ ଧୀରେନ୍ ମଜୁମଦାରଙ୍କୁ ସଭାପତି ରୂପେ ଡାକିବାର ପ୍ରସ୍ତାବ ହେଲା ।

ଅଫିସ କାର୍ଯ୍ୟ କରି, ରାତି ୧୧ଟାରେ ଶୋଇବାକୁ ଗଲି । ମୁଁ ଲକ୍ଷ୍ୟ କରୁଅଛି ଯେ ଭୋର ୪ଟା ବେଳକୁ ମୁଁ ନିଦରୁ ଉଠିବାବେଳକୁ (ଭୋର ଉପାସନା ହେଉଅଛି ଓ ସମସ୍ତେ ଉଠୁଛନ୍ତି) ମୋର ନିଦ ଆଦୌ ଭୋଗ ହୋଇ ନଥାଏ । ମସ୍ତିଷ୍କର ପଛପାଖ ଭାରୀ ଲାଗୁଥାଏ । ଅବସାଦ ଦୂର ହୋଇ ନଥାଏ । ଏହା ଉପଯୁକ୍ତ ଧରଣର ଖାଦ୍ୟର ଅଭାବ, ଖାଲି ବସି ବସି ଲେଖା ଲେଖି କାର୍ଯ୍ୟ କରିବା, କୌଣସି ଶାରୀରିକ ଶ୍ରମର ବା ବ୍ୟାୟାମର ଅଭାବ ଯୋଗୁଁ ହେଉଅଛି । ମନର ଅବସ୍ଥା ମଧ୍ୟ ଦାୟୀ ।

୨୬.୭.୧୯୫୬

ପଣ୍ଡିତ ଗୋଦାବରୀଶ ମିଶ୍ର, (ଗଣତନ୍ତ୍ର ପରିଷଦର ଏବେ ସଭାପତି ହୋଇଥିଲେ, ପୂର୍ବର ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷକ, ବିହାର-ଓଡ଼ିଶା ଲାଟସଭାର ପୂର୍ବତନ ମେମ୍ବର ଏବଂ ଏବର ଓଡ଼ିଶା ଆସେମ୍ବ୍ଲିର ମେମ୍ବର) ଆଜି ସକାଳ ଘ ୮.୩୨ ମିନିଟରେ କଟକ ବଡ଼ ଡାକ୍ତରଖାନାରେ ପ୍ରାଣତ୍ୟାଗ କଲେ । କେତେ ମାସ ହେଲା ସେ ରୋଗଗ୍ରସ୍ତ ହୋଇ ଚିକିତ୍ସାଧୀନ ଥିଲେ ।

ଶ୍ରୀ ନଗେନ୍ ପରୀଖଙ୍କର କୋରାପୁଟର ଗ୍ରାମଦାନ ଗ୍ରାମଗୁଡ଼ିକ ପାଇଁ ନଈତାଲୀମର କ୍ଷୁଦ୍ର ଯୋଜନା ଓ ହିସାବପତ୍ର ଦେଖିଲି । ଶ୍ରୀ ଉମାଚରଣ ମହାନ୍ତିଙ୍କର ବହି ପାଇଁ ଏକ ପ୍ରବନ୍ଧ ଲେଖିବାକୁ ଆରମ୍ଭ କଲି ।

ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ପୁରୀ ଜିଲ୍ଲା ସ୍କୁଲରେ ବାବାଙ୍କର (ଚନ୍ଦ୍ରମୋହନ ମହାରଣାଙ୍କର) ଅତି ପ୍ରିୟ ଛାତ୍ର ଥିଲେ । କଟକ ରେଭେନ୍ସା କଲେଜ୍‌ରେ ପଢ଼ିବା ବେଳେ ଗୋଦାବରୀଶ ବାବୁ ଆମ ବସାରେ କଟକ ଟ୍ରେନିଂ ସ୍କୁଲର ହେଡ୍‌ମାଷ୍ଟରଙ୍କର ବାହାର ପାଖ ଘରେ ରହୁଥିଲେ । ମୋର ବଡ଼ ଭାଇ ରଜନୀରଞ୍ଜନ, ବଡ଼ ଭଉଣୀ ଉମା ଦେବୀ, ଆଦି ତାଙ୍କୁ "ଗୋଦାବରୀଶ ଭାଇନା" ବୋଲି ଡାକୁ ଥିଲେ । ସେ ଆମ ପରିବାରର ଏକ ମେମ୍ବର ଥିଲେ । ତାଙ୍କର ଖାଦ୍ୟପେୟ ଖର୍ଚ୍ଚ ବୋଧହୁଏ ବାବା ବହନ କରୁଥିଲେ । ତାଙ୍କର କେତେକ ଚିଠିପତ୍ର ଏବେ ମଧ୍ୟ ଆମ ଘରେ ଅଛି ।

ବାବାଙ୍କର ମୃତ୍ୟୁର ୨ ଦିନ ପୂର୍ବରୁ ଗୋଦାବରୀଶ ବାବୁ ଏପ୍ରିଲ, ୧୯୨୯ ମସିହାରେ ରେମୁଣା ଯାଇ, ମୃତ୍ୟୁ ଶଯ୍ୟାପାଖରେ ବସି କେବଳ ଅଶ୍ରୁ ବିସର୍ଜନ କରିଥିଲେ । ମୁଁ ନିଜେ ଏହା ଦେଖିଅଛି । ସେ ଆଦୌ ପଦେ ସୁଦ୍ଧା କିଛି କହିପାରି ନ ଥିଲେ ।

୨୭.୭.୧୯୫୬

ବହି-ବ୍ୟବସାୟୀ ଶ୍ରୀ ଉମାଚରଣ ମହାନ୍ତିଙ୍କର ଅନୁରୋଧ କ୍ରମେ ଆଜି ତାଙ୍କର ବହିପାଇଁ ଏକ ପ୍ରବନ୍ଧ ଲେଖିଦେଲି । କେଉଁଝରର କୁଅଁର, ଶୁଆକାଠି ଅଞ୍ଚଳରେ ୨୬ଟି ଗ୍ରାମର ଦାନ ମିଳିଛି ବୋଲି ଏଠାକୁ ନିତ୍ୟାନନ୍ଦ ପାଣିଗ୍ରାହୀ ଓ ମାର୍କଣ୍ଡ ମଲିକ ଭୂଦାନକର୍ମୀ ଆସି କହିଲେ । ସେମାନଙ୍କ ସହ ସାମାନ୍ୟ କଥାବାର୍ତ୍ତା କଲି ।

ଉପରଓଳି ପାଞ୍ଚଟାରୁ ୬ଟା ପର୍ଯ୍ୟନ୍ତ "ଡ଼ଗର"ର ସଂପାଦକ ନିତ୍ୟାନନ୍ଦ ମହାପାତ୍ରଙ୍କୁ ହସପିଟାଲରେ ଦେଖିଆସିଲି । ତାଙ୍କର Dudonal Ulcer ହୋଇ, ୩/୪ ଦିନ ପୂର୍ବେ ରକ୍ତ ବାନ୍ତି ହେଉଥିଲା । ତାଙ୍କୁ ତାଙ୍କର ପ୍ରିୟ ମନ୍ତ୍ରୀ ଓ ରାଜନୈତିକ ଲୋକେ ଟିକିଏ ଦେଖିବାକୁ ଆସୁନାହାନ୍ତି ବୋଲି ଦୁଃଖ ପ୍ରକାଶ କରି ପଦେ କହି ପକାଇଲେ । ନିର୍ଦ୍ଦଳୀୟ ଶାସନ ନ ହେଲେ, ପ୍ରକୃତ ଉନ୍ନତି ହେବ ନାହିଁ ବୋଲି ସେ କଥାଛଳରେ କହିଲେ । ବର୍ତ୍ତମାନ ଓଡ଼ିଶା ସରକାର ଦୂରଦୃଷ୍ଟିବିହୀନ, ପ୍ରତିକ୍ରିୟାଶୀଳ ବୋଲି ବିରକ୍ତି ଓ ଦୁଃଖ ସହକାରେ କହିଲେ । ତାଙ୍କର ଦେହ ଏବେ ଭଲ ଅଛି ।

ଗୋଦାବରୀଶ ମିଶ୍ରଙ୍କର କାଲି ପରଲୋକପ୍ରାପ୍ତି ହୋଇଥିଲା । ଆଜି କଟକରେ ଶୋକସଭା ହେଲା ।

୨୮.୭.୧୯୫୬

ସକାଳେ ତେଲେଙ୍ଗାବଜାରକୁ ଯାଇ, ମୁଁ ଗୋଟିଏ ପ୍ରବନ୍ଧ ଶ୍ରୀ ଉମାଚରଣ ମହାନ୍ତିଙ୍କୁ ଦେଲି । ଗ୍ରାମସେବକ ପ୍ରେସକୁ ଯାଇ, ଭୂଦାନ ସମିତିର ଗ୍ରାମସେବକ ପତ୍ରିକାର ଗ୍ରାହକଚାନ୍ଦା ଟ. ୧୨୫/- ବୃନ୍ଦାବନ ଜେନାଙ୍କଠାରୁ ନେଇ ଦେଇ ଆସିଲି । ଶ୍ରୀ ବଳାଇବାବୁ, ଦାଶରଥି (ବେହେରା) ବାବୁଙ୍କୁ ଦେଖା କରି, ଲକ୍ଷ୍ମୀନାରାୟଣ (ସାହୁ) ବାବୁଙ୍କ ଘରକୁ ଗଲି । ତାଙ୍କର ଅନୁରୋଧରେ ତାଙ୍କ ଘରେ ମଧ୍ୟାହ୍ନଭୋଜନ କରି, କେତେକ ତାଙ୍କ ଲିଖିତ ବହି ଆମର ଲାଇବ୍ରେରୀ ପାଇଁ ନେଇ, ଥୋଡ଼ିଆସାହିକୁ ଫେରିଲି ।

କଟକ ବୁକ୍ ଏମ୍ପୋରିୟମ୍‌ର ଶ୍ରୀ ପ୍ରାଣନାଥ ମିଶ୍ରଙ୍କଠାରୁ ଚନ୍ଦ୍ରମୋହନ ମହାରଣା(ବାବା)ଙ୍କ କୃତ ବ୍ୟାକରଣ ସୋପାନ ୧ମ ସୋପାନର ରୟାଲ୍‌ଟି ବାବତ୍ ଟ. ୫୦/- (ପଚାଶ ଟଙ୍କା) ମୁଁ ଆଣିଲି । ଶ୍ରୀ ହରମୋହନ ପଟ୍ଟନାୟକ ଆସି ଆସନ୍ତା ସମ୍ମିଳନୀ ବିଷୟରେ କଥାବାର୍ତ୍ତା କଲେ । ସେ ମୋତେ ଗୋଟିଏ ବଡ଼ ପ୍ରଶ୍ନ ପଚାରିଲେ - "ଆପଣ କିପରି ଆମ ପ୍ରଦେଶକୁ lead ଦେବେ କହନ୍ତୁ" । ଏ ତ ବଡ଼ ପ୍ରଶ୍ନ, ମୁଁ ସେଥିକି ଯୋଗ୍ୟ ନୁହେଁ ବୋଲି ମୋର ସଫା କଥା ।

୭.୮.୧୯୫୬

ଗତ ରାତିଠାରୁ ଆଜି ଦିନ ପ୍ରାୟ ୧୨ଟା ପର୍ଯ୍ୟନ୍ତ ପ୍ରବଳ ବର୍ଷା ହେଲା । ଘରୁ ବାହାରିବା କଠିନ ଥିଲା । ମୁଁ କଟକ ଯାଇପାରିଲି ନାହିଁ ।

ହଳଦୀଅଣ୍ଡାର ହରିଜନ ଶ୍ରୀ ଗୋବିନ୍ଦର ବାପା ବୁଢ଼ା ଆସି ମୋତେ ଦେଖା କଲେ । ତାଙ୍କର ପୁଅ ନବୀନକୁ ଚାକିରୀ ଦେବାପାଇଁ ନିବେଦନ କଲେ । ପାଠ ପଢ଼ି ପିଲାମାନେ ଅକର୍ମଣ୍ୟ ହେଉଥିବା ଦେଖି ମୁଁ ବଡ଼ ଚିନ୍ତିତ । ତାଙ୍କୁ ବୁଝାଇ କହି, ବିଦାୟ କଲି ।

ଶ୍ରୀ ବଂଶୀଧର ଉପାଧ୍ୟାୟଙ୍କ ପାଖକୁ ଯାଇ, ସେ ୧୯୫୨ରେ ଏଠାରେ ଯେଉଁ ସ୍ୱାବଲମ୍ବନ ପ୍ରୟୋଗ କରୁଥିଲେ ସେ ସମ୍ବନ୍ଧରେ ତଥ୍ୟ ବୁଝିଲି । କେତେକ ଆଶାପ୍ରଦ ସୂଚନା ସେ ଦେଲେ । ତାଙ୍କର ବର୍ତ୍ତମାନ କର୍ତ୍ତବ୍ୟ ବିଷୟରେ ମଧ୍ୟ କଥା ପଡ଼ିଲା । ଚାଟୁବାବୁଙ୍କ କଥା - ସେ କାହିଁକି ଭୂଦାନ କାମକୁ ବାହାରୁ ନାହାନ୍ତି । ଗ୍ରାମୋଦ୍ୟୋଗ ଉପରେ ଜୋର ଦେବା କଥା । ବଂଶୀବାବୁଙ୍କର ସ୍ତ୍ରୀ ଶ୍ରୀମତୀ ସରସ୍ୱତୀ ଦେବୀ କହିଲେ ଯେ କର୍ମୀମାନେ ଗାଁର ଗରୀବ ଲୋକଙ୍କ ପରି ଦୈନିକ ଆଠ ଅଣା ମାତ୍ର ମୂଲରେ (ଭତ୍ତାରେ) ଚଳୁନାହାନ୍ତି କାହିଁକି ।

ଚୁନୀର ଗାଲ ଭିତରେ ବାମ ପାଖରେ ମାଂସବୃଦ୍ଧି ହୋଇ ବଡ଼ ଯନ୍ତ୍ରଣା ହେଉଅଛି ।

୧୫.୦୮.୧୯୫୬

୧୯୪୭ ଖ୍ରୀଷ୍ଟାବ୍ଦର ଏହି ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ପାଇଥିଲା । ସାଧାରଣ ଲୋକେ, ଗରୀବ ଲୋକେ ଆଜି ଦିନର ମହତ୍ତ୍ୱ ଓ ତାହା ପାଳନ କରିବାର ଔଚିତ୍ୟ କିଛି ବୁଝୁନାହାନ୍ତି । ସ୍ୱାଧୀନତା ମିଳିବାଦ୍ୱାରା ସେମାନଙ୍କର ସୁଖ କିଛି ହୋଇନାହିଁ । ସରକାରୀ କ୍ଷମତାରେ ଥିବା ଲୋକଙ୍କର ବୈଷୟିକ ଉନ୍ନତି ଓ ସୁବିଧା ହୋଇଛି ମାତ୍ର । ତେଣୁ ସେହି କେତେ ଜଣଙ୍କ ମଧ୍ୟରେ ଏ ଦିବସ ପାଳନ କରିବାର ସ୍ଫୂର୍ତ୍ତି ଯାହା ଦେଖାଯାଉଛି ।

ଶ୍ରୀଯୁକ୍ତ ନବବାବୁ ଥୋଡ଼ିଆସାହିକୁ ଆସିଥିଲେ । ମେଘ ତୁହାକୁ ତୁହା ଆସି ଅଳ୍ପ ସମୟ ପାଇଁ ବର୍ଷିଯାଉଛି ।

ସନ୍ଧ୍ୟାରେ ବୁଲୁବାବୁ ଓ ମୁଁ ଡଃ. ଦୟାନିଧି ପଟ୍ଟନାୟକ ପ୍ରଫେସରଙ୍କର ନିମନ୍ତ୍ରଣରେ ରାତ୍ରିଭୋଜନ କଲୁ । ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ, ଦେବେନ୍ଦ୍ର ଶତପଥୀ ଆଦିଙ୍କ ସହ ସର୍ବୋଦୟ ବିଚାର ଓ ଓଡ଼ିଶାର ବର୍ତ୍ତମାନ ଅବସ୍ଥା ବିଷୟରେ ସାମାନ୍ୟ ଚର୍ଚ୍ଚା ହେଲା ।

୧୬.୮.୧୯୫୬

ଭୋର ୪ ଟାରେ ଉଠିଲି - ଯଦିଓ ନିଦ ଭୋଗ ହୋଇ ନ ଥିଲା । ଭୋର ଉପାସନାରେ ଅନ୍ୟାନ୍ୟ ଦିନ ପରି ଯୋଗ ଦେଲି । ମାତ୍ର ଉପାସନାବେଳେ ଅନେକ ଦିନ

ମୋର ମନର ଏକାଗ୍ରତା ଆଦୌ ନ ଥାଏ । ବରଂ, ମାମୁଲି ନିଜର ରୁଟିନ୍ କାର୍ଯ୍ୟ ବିଷୟ ମନେ ପଡ଼େ । ସମୂହ ଉପାସନାରେ ମୋର ଏହା ହିଁ ହୁଏ । ମୋର ତ ଈଶ୍ୱର-ବିଶ୍ୱାସ, ନିରାକାର ବା ସାକାର ରୂପରେ ଧ୍ୟାନ କିଛି ନ ଥାଏ । ତଥାପି, ଏକାକୀ କେତେବେଳେ ମିନିଟିଏ ବା ୨ ମିନିଟ୍ ଭାବିଲେ ମନର ଏକାଗ୍ରତା ହେଲେ ଟିକିଏ ଥାଏ ।

ମୃତ୍ୟୁ ପରେ ପୁନର୍ଜନ୍ମର ବିଶ୍ୱାସ ମୋର ଏ ପର୍ଯ୍ୟନ୍ତ ହୋଇନାହିଁ । ଅବଶ୍ୟ, ସେ ବିଷୟରେ ମୁଁ ସେମିତି କିଛି ଜାଣେ ନାହିଁ ବା ଭାବିନାହିଁ ।

ଦିନଯାକ ସମ୍ମିଳନୀର ନିମନ୍ତ୍ରଣ-ପତ୍ର, ପ୍ରୋଗ୍ରାମ୍ ପଠାଇବାର ଅତି ମାମୁଲି ରୁଟିନ୍ କାମରେ ସକାଳଠାରୁ ରାତି ୧୦ଟା ପର୍ଯ୍ୟନ୍ତ ସମୟ ଗଲା । ଏହି କାମ ଯେ କୌଣସି ମିଡ଼ିଲ ପାସ୍ କରିଥିବା ୧୫/୧୬ ବର୍ଷର ପିଲା କରିପାରନ୍ତା । ମାତ୍ର ମୋର ସମୟ ଅଧିକାଂଶ ଏହିରୂପେ ଅତିବାହିତ ହେଉଅଛି ।

ସକାଳେ ଫକୀର ମିଶ୍ର ମୋତେ କହିଲେ ଯେ ଶ୍ରୀଯୁକ୍ତ ଗୋପବାବୁ ସୂଚନା ଦେଇଛନ୍ତି ଯେ ଭୂଦାନ କର୍ମୀଙ୍କର ପିଲାମାନେ କୌଣସି କର୍ମୀଙ୍କର ତତ୍ତ୍ୱାବଧାନରେ ରହି ଘରୋଇ ଶିକ୍ଷା ପାଇବାର ବ୍ୟବସ୍ଥା ଶୀଘ୍ର ହେଉ । ଏ ଗୋଟିଏ ଭଲ idea, ମାତ୍ର ଆମର ସେପରି ଲୋକ ନାହାନ୍ତି ଯେ ଏ କାମ କରିବେ ଏବଂ ମୁଣ୍ଡ ଲଗାଇବେ । ମୁଁ ବଡ଼ ରକ୍ଷ ଭାବରେ ଓ ଦୃଢ଼ ଭାବରେ କହିଲେ ଯେ ଏପରି ଗୋଟିଏ ଗୋଟିଏ ନୂଆ କଥା ଲୋକଙ୍କ ଆଗରେ ରଖି, ଆଶା ସଂଚାର କରି, ସେମାନଙ୍କୁ ଭଣ୍ଡିବା (ଅର୍ଥାତ୍ କାର୍ଯ୍ୟ ଆଦୌ କରି ନ ପାରିବା ବା ମୁଣ୍ଡ ଲଗାଇ ନ ପାରିବା) ବଡ଼ ଖରାପ କଥା । ମୁଁ ସେଥିରେ ମତ ଦେବାକୁ ଚାହେଁ ନାହିଁ । ଭଲ ଭଲ ନୂଆ ନୂଆ idea ନିଜ ମନରେ ରଖି ବା ନିଜ ମଧ୍ୟରେ କୁହାକୁହି ହୋଇ ଆନନ୍ଦ ପାଇବାରେ ମୋର ଆପତ୍ତି ନାହିଁ ମାତ୍ର କରିବୁଁ ବୋଲି ଢ଼କା ବଜାଇ ଏବଂ କିଛି କରି ନ ପାରି ଲୋକହସା ହେବା ଅନୁଚିତ ।

ମଧ୍ୟପ୍ରଦେଶର ପ୍ରଫେସର ଠାକୁରଦାସ ବଙ୍ଗ ଭୂଦାନ ସମ୍ମିଳନୀର ସଭାପତି ହେବାପାଇଁ କଟକରେ ପହଞ୍ଚିଲେ । ଶ୍ରୀ ଅର୍ଣ୍ଣାସାହେବ ମଧ୍ୟ ଆସିଛନ୍ତି ।

୧୭.୮.୧୯୫୬

କଟକ ଟାଉନର ଶ୍ରୀରାମଚନ୍ଦ୍ର ଭବନରେ ଉତ୍କଳ ଭୂଦାନ ସମ୍ମିଳନୀ ବସିଲା । ଅଭ୍ୟର୍ଥନା ସମିତିର ସଭାପତି "ପଦ୍ମଶ୍ରୀ'' ଲକ୍ଷ୍ମୀନାରାୟଣ ସାହୁ, ଏମ୍.ଏ. (ହିନ୍ଦସେବକ ସମାଜର ମେମ୍ବର) ହୋଇଥିଲେ । ସମ୍ମିଳନୀର ସଭାପତି ମଧ୍ୟପ୍ରଦେଶର ଅଧ୍ୟାପକ ଠାକୁର ଦାସ ବଙ୍ଗ ହୋଇଥିଲେ । ସର୍ବସେବା ସଂଘର ସଂପାଦକ ଶ୍ରୀ ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ, ପ୍ରାୟ ୧୭୦ ଜଣ ଭୂଦାନକର୍ମୀ ଓ ସ୍ୱେଚ୍ଛାସେବକ, କଟକ ଟାଉନର ସର୍ବଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ବିମଳକୃଷ୍ଣ ପାଲ

(ଓକିଲ), ଅଟଳବିହାରୀ ଆଚାର୍ଯ୍ୟ, ଯଦୁମଣି ମଙ୍ଗରାଜ, ନିଶାମଣି ଖୁଣ୍ଟିଆ, ବାଙ୍କବିହାରୀ ଦାସ, ଅଧ୍ୟାପକ ଦୟାନିଧି ପଟ୍ଟନାୟକ, ଶ୍ରୀମତୀ ନନ୍ଦିନୀ ଶତପଥି, ଅଧ୍ୟାପିକା ଦେବବାଳା ରାୟ, ଶିକ୍ଷାମନ୍ତ୍ରୀ ରାଧାନାଥ ରଥ, ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ଆଇନମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତି, ଶ୍ରୀମତୀ ବସନ୍ତକୁମାରୀ ମହାନ୍ତି, ଶ୍ରୀମତୀ ରତ୍ନମାଳୀ ଜେମା, ଦେବେନ୍ଦ୍ର ନାଥ ଶତପଥି, ରଘୁନାଥ ମହାନ୍ତି, ଆଦି ଯୋଗ ଦେଇଥିଲେ । ପୁରୀରୁ ଶ୍ରୀମତୀ କ୍ଷମା ମାଉସୀ, ଜିଜୀ ମଧ୍ୟ ଯୋଗ ଦେଇଥିଲେ ।

ଅଭ୍ୟର୍ଥନା ସମିତିର ବ୍ୟବସ୍ଥାରେ ଓ ଖର୍ଚ୍ଚରେ 'ସୁକିନ୍ଦା କୋଠି'ରେ ଆମ୍ଭମାନଙ୍କର ଭୋଜନ ବ୍ୟବସ୍ଥା ହୋଇଥିଲା । ଏହି ସମ୍ମିଳନୀରେ ଗୋଟିଏ ପ୍ରଧାନ ବିଶେଷତ୍ୱ ଦେଖିଲୁ ଯେ ଓଡ଼ିଶାର ଗଣତନ୍ତ୍ର ପରିଷଦ ଦଳକୁ ଛାଡ଼ି, ଆଉ ସବୁ ପ୍ରଧାନ ରାଜନୈତିକ ଦଳରୁ କେହି ୨/ ୪ ଜଣ ହେଲେ ହେଁ ଜଣାଶୁଣା ଲୋକ ସଭାରେ ଯୋଗ ଦେଇଥିଲେ । ସ୍ୱାଗତସମିତିର ଜଏଣ୍ଟ ସେକ୍ରେଟାରୀ ସର୍ବଶ୍ରୀ ବୃନ୍ଦାବନଚନ୍ଦ୍ର ପାଳିତ, ରଘୁନାଥ ମହାନ୍ତି, ହରମୋହନ ପଟ୍ଟନାୟକ ଓ ଶରତ୍‌ଚନ୍ଦ୍ର ମହାରଣା ତିନିଦିନ ଯାକ ସଭାରେ ଉପସ୍ଥିତ ଥିଲେ ।

୧୮.୮.୧୯୫୬

ପ୍ରାଦେଶିକ ଭୂଦାନ ସମ୍ମିଳନୀର ୨ୟ ଦିନ । ମୁଁ ସେଥିରେ ଯୋଗ ଦେଲି । ଆଜିକାଲି ରାମଚନ୍ଦ୍ରପୁରରୁ କଟକ ଆସିବାର ଅସୁବିଧା, ବହୁତ ପଇସାଖର୍ଚ୍ଚକୁ ଡ଼ରି, ଚୁନୀକୁ ସମ୍ମିଳନୀରେ ଯୋଗଦେବା ପାଇଁ ମୁଁ ଜଣାଇ ନଥିଲି । ସେ ଆସିପାରି ନ ଥିଲା ।

ଆଜି ଶ୍ରୀ ଅର୍ଣ୍ଣାସାହେବ ଭାଷଣ ଦେଲେ ।

୧୯.୮.୧୯୫୬

ପ୍ରାଦେଶିକ ଭୂଦାନ ସମ୍ମିଳନୀର ଶେଷ ଦିନ । ଆଜି ମଧ୍ୟ ମୁଁ ଯୋଗ ଦେଲି । ଆଜି ଶ୍ରୀ ବଲ୍ଲଭସ୍ୱାମୀ ଭାଷଣ ଦେଲେ । ତିନିଦିନ ଯାକ, ପ୍ରତିଦିନ ଥରେ ଲେଖାଁଏ, ସାଧାରଣ ସମ୍ମିଳିତ ସଭାରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଭାଷଣ ଦେଇଥିଲେ । ଭୂଦାନ ଆନ୍ଦୋଳନକୁ ଜନ ଆଧାରିତ କରିବା, (୨) ଲୋକନୀତି (୩) ନିର୍ବାଚନ ଓ ସର୍ବୋଦୟ ବିଷୟମାନଙ୍କରେ ସେ ବଡ଼ ସୁନ୍ଦର ଭାବରେ ବିଶ୍ଳେଷଣାତ୍ମକ ଜ୍ଞାନ ଦେଇଥିଲେ । ସନ୍ଧ୍ୟା ଉପାସନା ପରେ ପରେ ପ୍ରଥମ ଦିନ ଆଚାର୍ଯ୍ୟ ହରିହର ଦାସ, ଦ୍ୱିତୀୟ ଦିନ ଶ୍ରୀଯୁକ୍ତ ଗୋପବାବୁ ଓ ଶେଷ ଦିନ ଶ୍ରୀଯୁକ୍ତା ରମା ଦେବୀ ଭାଷଣ ଦେଇଥିଲେ । ଆଠଟି ଚର୍ଚ୍ଚା-ମଣ୍ଡଳରେ ନାନା ବିଷୟ ଆଲୋଚିତ ହୋଇଥିଲା । ମୁଁ ସଂସ୍କୃତି କ୍ଷେତ୍ରରେ ସର୍ବୋଦୟ ବିଚାରର ପ୍ରୟୋଗ ଏବଂ (୨) ରଚନାତ୍ମକ କାର୍ଯ୍ୟ ଓ ନବନିର୍ମାଣ ଚର୍ଚ୍ଚା ମଣ୍ଡଳରେ ଯୋଗ ଦେଇଥିଲି ।

୨୦.୮.୧୯୫୬

ଗ୍ରାମସେବକ ସମବାୟ ପ୍ରକାଶନ ଲିମିଟେଡ୍‌ର ପ୍ରଥମ ସାଧାରଣ ବାର୍ଷିକ ସଭାରେ ବିଶେଷ ନିମନ୍ତ୍ରଣରେ ମୁଁ ବାଖରାବାଦଠାରେ ଯୋଗ ଦେଇଥିଲି । ମୁଁ ଏହି ସଂସ୍ଥାରେ ମେମ୍ବର ହୋଇନାହିଁ । ସମୂହ ଭୂଦାନ ପଦଯାତ୍ରା ସମ୍ବନ୍ଧରେ ମଧ୍ୟ ସେଠାରେ ଘଣ୍ଟାଏ ଚର୍ଚ୍ଚା ହୋଇଥିଲା । ସୁକିନ୍ଦା କୋଠିର ଭୋଜନାଳୟରେ ଉକ୍ତ ପ୍ରକାଶନ ଲିମିଟେଡ୍‌ଙ୍କର ଖର୍ଚ୍ଚରେ ମୁଁ ମଧ୍ୟାହ୍ନଭୋଜନ କଲି ।

ଓପରଓଳି ଥୋଡ଼ିଆସାହିରେ ଭୂଦାନ ଅଫିସରେ କର୍ମୀମାନଙ୍କର ପିଲାମାନଙ୍କର ଶିକ୍ଷାବ୍ୟବସ୍ଥା କିପରି ହେବ ଓ କିଏ ସେହି ଦାୟିତ୍ୱ ନେବ, ସେ ବିଷୟରେ ଚର୍ଚ୍ଚା ହେଲା । ମାତ୍ର, ମୋର ପୂର୍ବ ଅନୁମାନ ଅନୁସାରେ, କେହି ଜଣେ ସୁଦ୍ଧା ତାହା ମୁଣ୍ଡାଇବାକୁ ନ ବାହାରିବାରୁ କୌଣସି ନିଷ୍ପତ୍ତି ହୋଇପାରିଲା ନାହିଁ ।

ଭୂଦାନ କର୍ମୀ ଓ କେତେକ ବିଶେଷ କର୍ମଠ ସ୍ୱେଚ୍ଛାସେବକଙ୍କୁ ସମ୍ମିଳନୀ ବାବତ୍ ବାଟଖର୍ଚ୍ଚ ଓ ପାରିଶ୍ରମିକ ଦେବା ପାଇଁ ମୁଁ ଅଫିସରେ ରାତି ୧୧ଟା ପର୍ଯ୍ୟନ୍ତ ବ୍ୟସ୍ତ ରହିଲି । ଶ୍ରୀ ନାରାୟଣ ଚକ୍ର, ରମାକାନ୍ତ ଅଧିକାରୀ, ଗଞ୍ଜାମର ଗଦାଧର ପଟ୍ଟନାୟକ, ଆଦି କେତେ ଜଣ ପଇସାକଉଡ଼ି ପାଇବାକୁ ଭାରୀ ଅଭିମାନ କରି କଥା କହିଲେ ।

ଏତେ ଅଧିକ ଲୋକ ଏହି ଗସ୍ତଖର୍ଚ୍ଚ ନେବା ଓ ହିସାବପତ୍ର ତୁଟାଇବାକୁ ଅଫିସରେ ଅଟକି ରହିଲେ ଯେ ଶୋଇବା, ବସିବାକୁ ସେମାନେ ସ୍ଥାନ ପାଇଲେ ନାହିଁ ।

ଶ୍ରୀଯୁକ୍ତ ଗୋପବାବୁ ଏପରି ଲୋକ-ଗହଳିକୁ ମନେ ମନେ ଆଦୌ ଭଲ ପାଆନ୍ତି ନାହିଁ । ଭଲ ନ ପାଇଲେ ସୁଦ୍ଧା, ଆଉ କଣ କରାଯିବ ? ଯେତେବେଳେ ଅନ୍ୟ ବହୁ ଲୋକଙ୍କୁ ନେଇ ଗୋଟାଏ କାର୍ଯ୍ୟ କରାଯାଉଅଛି, ସେତେବେଳେ ଏପରି ସାମୟିକ ଗହଳି ସମ୍ଭାଳିବାକୁ ହେବ ।

ମୋର ବହୁଦିନରୁ ସୂଚନା ଅଛି ଯେ ଶ୍ରୀଯୁକ୍ତ ଗୋପବାବୁ ଟିକିଏ ନିରୋଳା ସ୍ଥାନରେ ଏପରି ଗହଳଚହଳଠାରୁ ଦୂରରେ (respectable distance)ରେ ରହିବା ଉଚିତ । ମାତ୍ର ଅର୍ଥାଭାବରୁ ଓ ଘରର ଅଭାବରୁ ତାହା ହୋଇପାରିନାହିଁ ।

ଏଥରର ପ୍ରାଦେଶିକ ସମ୍ମିଳନୀ ବଡ଼ ସୁରଖ୍ୟରେ ଓ ସୁଚାରରୂପେ ସଂପନ୍ନ ହୋଇଗଲା । କାହାରି କ୍ରୋଧ, ମାନଅଭିମାନ, ବୃଥା ଉଦ୍‌ବେଗ, ଧାଁ ଧପଡ଼ ସେମିତି ଆଦୌ ଦେଖାଯାଉନାହିଁ ।

୨୧.୮.୧୯୫୬

ଆଜି ଭୋର ଆଚାର୍ଯ୍ୟ ମହାଶୟ, ଶ୍ରୀଯୁକ୍ତା ରମାଦେବୀ, ବ୍ୟାସଜୀ, ଅର୍ଣ୍ଣାସାହେବ,

ସୁଧାଂଶୁଶେଖର ଦାସ କଟକରୁ ରୂପସା ଗଲେ । ସେଠାରେ ନବନିର୍ମାଣ କାର୍ଯ୍ୟର ଗ୍ରାମୋଦୟ ସମିତିର ବୈଠକରେ ଯୋଗ ଦେବେ ।

କଟକରେ ସଚ୍ଚିଦାନନ୍ଦ ମହାନ୍ତି, ଶକ୍ତିଶେଖର ଦାସ, ବୁଲୁବାବୁ, ରାମଚନ୍ଦ୍ର ମିଶ୍ର, ଭଜନ ମହାନ୍ତି, ହରେକୃଷ୍ଣ ବିଶ୍ୱାଳ, ପ୍ରଭୃତି "ସାମୂହିକ'' ପଦଯାତ୍ରା ବିଷୟରେ ବିଷଦ ଆଲୋଚନା କରି, ପ୍ରତି ଅଞ୍ଚଳ ପାଇଁ ଶିବିର ଓ କାର୍ଯ୍ୟକ୍ରମ ସ୍ଥିର କଲେ । ମୁଁ ମଧ୍ୟ କିଛି ସମୟ ପାଇଁ ଉପସ୍ଥିତ ଥିଲି ।

ମୁଁ ମାମୁଲି ଅଫିସ କାର୍ଯ୍ୟ କଲି । Philosophy of Education ବହିରୁ କିଛି ଅଂଶ ପଢ଼ିଲି ।

୨୪.୮.୧୯୫୬

ଶ୍ରୀ ବିଶବଦା (ବିଶ୍ୱାନାଥ ପରିଡ଼ା) ମୋର ମୁଣ୍ଡରବାଳ କାଟିଦେଲେ । ଅନେକ ବର୍ଷ ହେଲା ସେ ତ ତାଙ୍କପରି କେତେକ କର୍ମୀ ଭଣ୍ଡାରିର ସାହାଯ୍ୟ ନ ନେଇ ନିଜେ ନିଜେ ଏପରି କାର୍ଯ୍ୟ ଚଳାଇ ଆସୁଛନ୍ତି ।

ସକାଳେ ପୂର୍ବୋକ୍ତ ଇଂରାଜୀ ବହିର କିଛି ଅଂଶ ମୁଁ ପଢ଼ିଲି ଓ ଭୁବନାନନ୍ଦ ସ୍ୱାଇଁଙ୍କୁ ପଢ଼ି ଶୁଣାଇଲି ।

ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ଆଜି ସକାଳ ଟ୍ରେନ୍‌ରେ ଢେଙ୍କାନାଳ ଏବଂ ଶ୍ରୀ ମଦନମୋହନ ସାହୁ ସମ୍ବଲପୁର ଅଭିମୁଖେ କଟକରୁ ଗଲେ ।

ବୋର୍ଡ୍ ଅଫ୍ ରେଭିନ୍ୟୁର ସେକ୍ରେଟାରୀଙ୍କୁ, ରାଜସ୍ୱ-ମନ୍ତ୍ରୀଙ୍କୁ ଓ ମୁଖ୍ୟମନ୍ତ୍ରୀଙ୍କୁ ଭୂଦାନ ସମିତିର ଗତ ବୈଠକର ବିବରଣୀର ଅଂଶମାନ forwarding letters ସହିତ କାର୍ଯ୍ୟାନୁଷ୍ଠାନ ପାଇଁ ପଠାଇଲି ।

ନୂଆ ବେସରକାରୀ ପ୍ରାଦେଶିକ ଭୂ-ଦାନ ସମିତି ଗଢ଼ିବାପାଇଁ ନିମ୍ନଲିଖିତ ୧୨ ଜଣଙ୍କର ନାମ ଦେଇ, ମୁଁ ସର୍ବସେବା ସଂଘଙ୍କୁ ଓ ଶ୍ରୀଯୁକ୍ତ ବଲ୍ଲଭସ୍ୱାମୀଙ୍କୁ ଚିଠି ଦେଲି ।

| | | |
|---|---|---|
| ୧) ସାଧୁଚରଣ ମହାନ୍ତି | ୨) ନନ୍ଦକିଶୋର ଦାସ | ୩) ବିଶ୍ୱନାଥ ପଟ୍ଟନାୟକ |
| ୪) ଫକୀର ମିଶ୍ର | ୫) ଶକ୍ତିଶେଖର ଦାସ | ୬) ସୁଧାଂଶୁଶେଖର ଦାସ |
| ୭) ମନମୋହନ ଚୌଧୁରୀ | ୮) ମାଲତୀ ଚୌଧୁରୀ | ୯) ଈଶ୍ୱରଲାଲ ବ୍ୟାସ |
| ୧୦) ଶରତ୍‌ଚନ୍ଦ୍ର ମହାରଣା | ୧୧) ସଚ୍ଚିଦାନନ୍ଦ ମହାନ୍ତି | ୧୨) ଆଲବାନ୍ ବେନିୟା |

ମୁଁ (ଶରତ) ଏହି ସମିତିରେ ସଂଯୋଜକ ରହିବା ତ ଦୂରର କଥା, ସଦସ୍ୟ ସୁଦ୍ଧା ରହିବାକୁ ଇଚ୍ଛା କରେ ନାହିଁ। ଅନ୍ୟମାନେ ମୋର ନାମ ସୁପାରିସ କରିଥିଲେ ବୋଲି ମୁଁ ଜଣାଇଲି ମାତ୍ର।

୨୫.୮.୧୯୫୬

ମାମୁଲି ଅଫିସ କାର୍ଯ୍ୟ କଲି। ପୂର୍ବୋକ୍ତ ଇଂରାଜୀ ବହିରୁ କିଛି ଅଂଶ ପଢ଼ିଲି। "ସାମୂହିକ'' ପଦଯାତ୍ରା ସମ୍ବନ୍ଧରେ ଅଞ୍ଚଳ (zone) ର ସଂଯୋଜକମାନଙ୍କୁ ଚିଠି ଦେଲି।

କାଲି ମୁଁ ମଧ୍ୟାହ୍ନଭୋଜନରେ କଞ୍ଚା ଘଣାପେଡ଼ା ସୋରିଷତେଲ ପ୍ରାୟ ୧ ଚାମଚ ମିଶାଇ ଖାଇଥିଲି। ରାତିରେ ଭାତ ବା ରୋଟି ଖାଇଲି ନାହିଁ। ମାତ୍ର ମୁଁ ଲକ୍ଷ୍ୟ କଲି ଯେ ମୋର ତଳିପେଟ ବେଶ୍ ହାଲୁକା ଓ ସ୍ୱାଭାବିକ ଲାଗୁଥିଲା। ବୋଧହୁଏ ଶ୍ୱେତସାର ସହ ଉଚିତ ପରିମାଣରେ ତୈଳ ମିଶିବାରୁ ଏପରି ଭଲ ଲାଗିଲା। ଅନ୍ୟ ଦିନ – ମୁଁ ତେଲ ବା ଘିଅ ଏପରି ଯଥେଷ୍ଟ ନ ଖାଇଲେ - ଏପରି ଭଲ ବୋଧ ହୁଏ ନାହିଁ। ତଳିପେଟ ଭାରୀ ଭାରୀ ଲାଗେ।

"ମଧୁସାଗର ବିଦ୍ୟାପୀଠ''ର ପ୍ରଧାନ ବ୍ୟକ୍ତି ଶ୍ରୀ ଚିନ୍ତାମଣି ସ୍ୱାଇଁ ୪/୫ ଦିନ ହେଲା ଏଠାରେ ଅଛନ୍ତି। ତାଙ୍କର ସାତ ବର୍ଷର ଝିଅଟି ତୁଳସୀମଞ୍ଜରୀ (ଡାକ ନାମ "ବୁପୂ'') ଓ ତାହାର ମାଆ ମଧ୍ୟ ଏଠାରେ ଅଛନ୍ତି। ତୁଳସୀ ବଡ଼ ସିଧାସରଳ ଭାବରେ ତାହାର ମନର କଥା, ମନ୍ତବ୍ୟ ବ୍ୟକ୍ତ କରୁଛି। ବଡ଼ free ଅଛି। ପିଲାମାନେ ଏହି ବୟସରେ କେତେ free ଥାନ୍ତି ! ମାତ୍ର ଆମେ ସେମାନଙ୍କୁ ଜଟିଳ କରିପକାଉ। ଆଜି ତୁଳସୀ ଓ ତାହାର ମାଆ ଏଠାରୁ ମଧୁସାଗର ବିଦ୍ୟାପୀଠକୁ ଗଲେ।

୨୬.୮.୧୯୫୬

କାଲି ରାତି ୧୦ଟା ଠାରୁ ଆଜି ସକାଳ ୮ଟା ପର୍ଯ୍ୟନ୍ତ ପ୍ରବଳଭାବରେ ମେଘ ବରଷିଲା। ଏ ବର୍ଷ ଓଡ଼ିଶାର ଅଧିକାଂଶ ଅଞ୍ଚଳରେ ଧାନ ବୁଣା ହୋଇ ପାରି ନଥିଲା। ପରେ, ଚାଷୀମାନେ ଅଧିକାଂଶ ଜମି ରୋଇଛନ୍ତି। ଶୁଣାଯାଉଛି ଯେ ଏପରି ଲଗାତାର ବର୍ଷା ହେଉଥିବାରୁ, ଏ ପର୍ଯ୍ୟନ୍ତ ରୁଆଧାନର ଅବସ୍ଥା ବେଶ୍ ଭଲ ଅଛି।

ଆଜି ସକାଳେ ମୁଁ R.L.Finney ଙ୍କର ଲିଖିତ Sociological Philosophy of Education ବହିଟି (ପ୍ରାୟ ୫୫୦ ପୃଷ୍ଠା) ପଢ଼ିବା ଶେଷ କଲି। ଘଣ୍ଟାରେ ହାରାହାରି ୧୫ ପୃଷ୍ଠା ରେଟ୍‌ରେ ପଢ଼ିପାରିଲି। ଏ ବହି ୧୯୩୫-୩୬ରେ ପାଟନା ଟ୍ରେନିଂ କଲେଜରେ "Master of Education'' ରେ ଆମ୍ଭେମାନେ ପଢ଼ିଥିଲୁ। ଏବେ ଆଉ ଥରେ ଭଲ କରି ମୁଁ ପଢ଼ିଲି। ଏ ବହିରେ ପୃ୨୦୯, ୨୦୨, ୨୧୮, ୫୪୩, ୫୫୧, ୩୧୦, ୩୩୦, ୩୩୨, ୩୬୪, ୩୬୯, ୩୭୩, ୩୭୪,୩୮୦,୩୭୭,୩୭୮, ୪୦୫ରେ ଲେଖାଗୁଡ଼ିକ

ମୋତେ ଖୁବ୍ ଭଲ ଲାଗିଲା । ସର୍ବୋଦୟ ବିଚାରକୁ ଏକ ପ୍ରକାରେ ଖାପ୍ ଖାଇବା ଭଳି କଥା - ଶିକ୍ଷାବିଜ୍ଞାନ ଦୃଷ୍ଟିରୁ - ଏହି ଅଂଶଗୁଡ଼ିକରେ ଲେଖା ଅଛି । ପୃ ୧୦୮ରେ ... institution of private property ସମ୍ବନ୍ଧରେ - "The greatly increased quantity per capita of personal property is one of the reasons why the distribution of wealth is so anxious a problem; and there are already indications that the private ownership of land and capital may prove as ill adapted to the new regime as public ownership would have been in the old."

୨୯.୮.୧୯୫୬

"କଟକ ଟ୍ରେନିଂ କଲେଜକୁ ମୁଁ ଯାଇ ପ୍ରିନ୍ସପାଲ ଶ୍ରୀ ବୈଦ୍ୟନାଥ ରଥଙ୍କର Applied Psychology by Gray ବହି (ନମ୍ବର ୧୦୬/୭) ଆଣିଲି । ତାଙ୍କ ସହ କଥାବାର୍ତ୍ତା ହେଲି । ସେ କହିଲେ ଯେ କେତେକ କାର୍ଯ୍ୟ ଅବଶ୍ୟ ଦେଶରେ ହେଉଛି । ମାତ୍ର ଅଧିକାଂଶ ସ୍ଥାନରେ a sense of frustration ରହିଛି । ତାଙ୍କଠାରେ ସହକାରୀ ଅଧ୍ୟାପକ ପୂରା ସଂଖ୍ୟାରେ ନାହାନ୍ତି । ତାଙ୍କର ଉତ୍ତୀର୍ଣ୍ଣ ଛାତ୍ରମାନେ ମଫସଲରେ ହାଇସ୍କୁଲର ଶିକ୍ଷକ ହୋଇ ମାସରେ ଟ. ୮୦ ବା ଟ.୯୦ ପାଇ କଷ୍ଟରେ ଅଛନ୍ତି । ... ଭୁବନେଶ୍ୱରରେ ଗୋଟିଏ ବିଭାଗର Deputy Secretary ସେହି ବିଭାଗର Under Secretary ଙ୍କୁ ସୁଦ୍ଧା ଉଚିତ ସଦ୍‌ବ୍ୟବହାର ଦେଖାଉନାହାନ୍ତି, ଅବଜ୍ଞା କରୁଅଛନ୍ତି । ଉଭୟଙ୍କର ଚପରାସୀମାନଙ୍କ ମଧ୍ୟରେ ସୁଦ୍ଧା ଏହି ଉଚ୍ଚନୀଚ ଭାବ ଅଛି !! ସେ Rousseaus' Emile ରୁ ଗୋଟିଏ ଅଂଶ ପଢ଼ି ଶୁଣାଇଲେ । କି ମୌଳିକ ଭାବନା ରୁସୋଙ୍କର !!

ଗ୍ରାମସେବକ ପ୍ରେସକୁ ଯାଇଥିଲି । ଶ୍ରୀ ବଳଦେବ ରଥ ଜୟକୃଷ୍ଣ ବିଶ୍ୱାଳଙ୍କର ବ୍ୟବହାର ବିରୋଧରେ ଗୁଡ଼ାଏ ମୋତେ କହିଲେ । ଏହି ତ ଆମର ଅବସ୍ଥା । ମୋର ତ ଏହିଥିରୁ ବହୁତ ଶିକ୍ଷା ହେଉଛି । ଆମେ ଆହୁରି ସାବଧାନ ହେବା ଉଚିତ । ଆହୁରି ନମ୍ରତା ଓ ସହିଷ୍ଣୁତା ଏବଂ ମସ୍ତିଷ୍କର ଶୀତଳତା ଲୋଡ଼ା ।

୩୦.୮.୧୯୫୬

ଭୋର ପୁରୀ ଆସନସୋଲ ଟ୍ରେନ୍‌ରେ ଶରତ୍‌ଚନ୍ଦ୍ର ମହାରଣା କଟକରୁ କେନ୍ଦୁଆପଦା ଯାଇ, ସେଠାରୁ ୨ ମାଇଲ ଦୂର ଫୁଲଗଡ଼ିଆ ଗ୍ରାମକୁ ଗଲି । ମୁଁ (ଶରତ) ଭୂଦାନ କର୍ମୀ ଶ୍ରୀ ମାୟାଧର ଖୁଣ୍ଟିଆଙ୍କର ଦେହ ଖରାପ ଥିଲା ଜାଣି, ତାଙ୍କୁ ଦେଖିବାକୁ ଯାଇଥିଲି । ତାଙ୍କର ଜ୍ୱର ଛାଡ଼ି ଯାଇଥିଲା ଓ ସେ ତାଙ୍କର "ମଠ ବାଡ଼ି"ରେ ଧାନରୁଆ ହିଡ଼ ଉପରେ ବସି ଦେଖୁଥିଲେ । ମାୟାଧର ବାବୁଙ୍କ ସହିତ "ସାମୂହିକ ପଦଯାତ୍ରା" ଓ "ସୂତାଞ୍ଜଳି" ବିଷୟରେ କଥାବାର୍ତ୍ତା କରି,

ତାଙ୍କ ଘରେ ମଧ୍ୟାହ୍ନ ଭୋଜନ କରି, ମୁଁ ଅପ୍ ଆସନ୍‌ସୋଲ-ପୁରୀ ଟ୍ରେନ୍‌ରେ ହରିଦାସପୁରକୁ ଆସିଲି । କଦଳାମଠରେ ରାତିରେ ରହିଲି । ବିନୋବଜୀଙ୍କର କୃତ ହିନ୍ଦୀ "କାର୍ଯ୍ୟକର୍ତ୍ତା ପ୍ରତି'' (ଭୂଦାନ କର୍ମୀମାନଙ୍କୁ ଉପଦେଶ - ବଙ୍ଗଳାରେ ସେ ପଦଯାତ୍ରା କରୁଥିବା ବେଳେ ଯେଉଁ ସବୁ ଭାଷଣ ଦେଇଥିଲେ, ସେଥିରୁ ସଂଗୃହୀତ ହୋଇଅଛି ) ବହିରୁ କେତେକ ଅଂଶ ପଢ଼ିଲି ।

୩୧.୮.୧୯୫୬

ସକାଳ "ଜନତା'' ଏକ୍ସପ୍ରେସ୍ ଟ୍ରେନ୍‌ରେ କଟକକୁ ଆସିଲି । ଷ୍ଟେସନରୁ ରିକ୍ସା ନ କରି, ଚାଲି ଚାଲି ଆସିଲି । ଉଦ୍ଦେଶ୍ୟ, ଏତଦ୍ୱାରା କିଛି ସାମାନ୍ୟ ହେଲେ ଶାରୀରିକ ପରିଶ୍ରମ ହେବ, ରିକ୍ସାଭଡ଼ା ରହିଯିବ, ଭୂଦାନ ସମିତିର ବା ମୋର ନିଜର ଖର୍ଚ୍ଚ ସେତିକି କମ୍ ହେବ ।

ମୟୂରଭଞ୍ଜର ଛେଳିଆ ଗ୍ରାମର ବାସିନ୍ଦା ଶ୍ରୀ କୈଳାଶଚନ୍ଦ୍ର ଘଡ଼େଇ କଟକକୁ ଆସିଥିଲେ । ତା ୧.୮.୧୯୫୬ ଠାରୁ ଭତ୍ତାପ୍ରାପ୍ତ ଭୂଦାନ କର୍ମୀ ତାଲିକାରୁ ତାଙ୍କର ନାମ ଉଠାଇ ଦିଆଯାଇଛି, କାରଣ ସେ ଖଟିକରି ବିଧିମତେ କାର୍ଯ୍ୟ କଲେ ନାହିଁ । ମାତ୍ର ସେ ଏହି ସିଦ୍ଧାନ୍ତରେ ଆପତ୍ତି ଜଣାଇଲେ । ଜିଲ୍ଲା ସଂଯୋଜକ ଶ୍ରୀ ରମାକାନ୍ତ ଅଧିକାରୀଙ୍କୁ ସେ ସବୁ କଥା ଲେଖି ଜଣାନ୍ତୁ ବୋଲି ମୁଁ ପରାମର୍ଶ ଦେଲି । ଶ୍ରୀଯୁକ୍ତ ବୈକୁଣ୍ଠନାଥ ବ୍ରହ୍ମଚାରୀ ଏଠାକୁ ଆସିଥିଲେ ।

ରାମଚନ୍ଦ୍ରପୁର ମୌଳିକ ସ୍କୁଲର (ବର୍ତ୍ତମାନ) ପ୍ରଧାନ ଗୁରୁଜୀ ଶ୍ରୀ ନିକୁଞ୍ଜକିଶୋର ଦାସ ସକାଳେ ଆସିଥିଲେ । ତାଙ୍କର ଗୋଟିଏ ଲେଖା ମୋତେ ଦେଖିବାକୁ ଦେଲେ । ମୁଁ କହିଲି ଯେ ଅନ୍ୟର ଦୋଷ ନ ଦେଖାଇ, ଆକ୍ଷେପମୂଳକ କୌଣସି ମନ୍ତବ୍ୟ ନ ଦେଇ, positive ଲେଖା, ଉତ୍ତମ ଦିଗଟା ଲେଖନ୍ତୁ । ଆମର ନିଜର ଦୋଷତ୍ରୁଟି, ପ୍ରକୃତ ଆମର ଆଚରଣ ଅନୁଧ୍ୟାନ କରନ୍ତୁ ।

୧.୯.୧୯୫୬

ପୂର୍ବ ଦିନଗୁଡ଼ିକ ପରି ଆଜି ମଧ୍ୟ ମୋର ନିଦ ଭୋଗ ହୋଇ ନଥିଲା, ଭୋର ଉଠିବାବେଳକୁ ଆଦୌ refreshed ଲାଗିଲା ନାହିଁ । ତଥାପି, କାର୍ଯ୍ୟ କରିବାକୁ ପଡୁଅଛି ।

ସକାଳ ଓଳି ୮/୧୦ ମିନିଟ ଖବରକାଗଜ ପଢ଼ିଲି ଏବଂ Psychology applied to Human affairs ବହିର Propaganda Chapter ରୁ ୫/୭ ପୃଷ୍ଠା ପଢ଼ିଲି ।

କେତେକ ଜରୁରୀ ଚିଠିପତ୍ର ଦେଖି, ଉତ୍ତର ଲେଖିଲି । ଖିଆବେଳେ ଅଧଘଣ୍ଟାଏ ଖଣ୍ଡେ ସାମାନ୍ୟରୂପେ ଶୋଇଥିଲି । ଲଗାତାର ଅଫିସ କାର୍ଯ୍ୟ କରୁ କରୁ ରାତି ୧୦ଟା ବାଜିଲା ।

ବୃଦ୍ଧ ଦେଶସେବୀ ଓ ଗତ ୩ ବର୍ଷ ହେଲା ଭୂଦାନ କର୍ମୀ ମହାଙ୍ଗାଥାନାର କୁମୁଡ଼ା

ଜୟପୁର ନିକଟ ଶଶିଲୋ-ନିବାସୀ ଶ୍ରୀଯୁକ୍ତ ବୃନ୍ଦାବନ ଷଡ଼ଙ୍ଗୀ ଅଫିସକୁ ଆସିଲେ । ମାନପୁରର ଶ୍ରୀ ଉଦୟନାଥ ମଲିକ ଭେଲା (କଳାହାଣ୍ଡି) ଅଭିମୁଖେ ଗଲେ ।

ଜରୁରୀ ଚିଠିପତ୍ର କାର୍ଯ୍ୟ ଥିବାରୁ, ମୁଁ ଧଳପୁର (ଢେଙ୍କାନାଳ) ସାମୂହିକ ପଦଯାତ୍ରା ଶିବିରକୁ ଯାଇପାରିଲି ନାହିଁ । ସକାଳ ଓଳି ମୋର ତୂଳା ମୁଁ ଭିଣାରେ ଭିଣିଲି । ଶ୍ରୀମାନ୍ ବିକ୍ରମକେଶରୀ ବିଶ୍ୱାଳଙ୍କୁ ମୁଁ ବିରକ୍ତ ହୋଇ କହିଲି ଯେ ରାମଚନ୍ଦ୍ରପୁରରେ ତାହାର ସହକର୍ମୀ ଗୁରୁଜୀମାନେ Private tution ନ କରନ୍ତୁ, text books ସମସ୍ତେ ବସି ଭାବି ଚିନ୍ତି ବିଚାର କରି ନିର୍ବାଚନ କରନ୍ତୁ । ଏତେ ବ୍ୟକ୍ତିସ୍ୱତନ୍ତ୍ର ଓ ଅଯଥା ବିକେନ୍ଦ୍ରୀକରଣ ଭଲ ନୁହେଁ । ବାବୁଲିଙ୍କୁ ୭ ପୃଷ୍ଠାର ଚିଠି ଲେଖିଲି । ସେ ରାଗିବା, ଚିଡ଼ିବା ଅନୁଚିତ ଅଟେ ।

୨.୯.୧୯୫୬

ସକାଳ ଓଳି ଏବଂ ଉପରଓଳି ଶ୍ରୀ ଅଦ୍ୱୈତ ବାବୁଙ୍କ ସହ ଓ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଜେନାଙ୍କ ସହ ମୋର ହିସାବ ମିଳାଇଲି । ସନ୍ଧ୍ୟା ପରେ ଅଫିସର ମାମୁଲି ଚିଠିପତ୍ର ଲେଖିଲି । ଅର୍ଥନୀତିଜ୍ଞ ଡ଼କ୍ଟର ଜ୍ଞାନଚାନ୍ଦଙ୍କର ଲେଖା ଇଂରାଜୀ ସାପ୍ତାହିକ "ଭୂଦାନ'' ପତ୍ରିକାରୁ ଜୟକୃଷ୍ଣ ବିଶ୍ୱାଳ ପଢ଼ି ଶୁଣାଇଲେ ଏବଂ ମୁଁ ତକଲୀରେ ସାମାନ୍ୟ ପରିମାଣରେ ସୂତା କାଟିଲି ।

୬.୯.୧୯୫୬

ସକାଳେ ପୂର୍ବୋକ୍ତ Psychology ବହିରୁ Personality Adjustment Chapter ପଢ଼ିଲି । ଭଲ ସରଳ ଲେଖା । ଅଫିସ କାର୍ଯ୍ୟ - ସୂତାଞ୍ଜଳି ବିଷୟରେ ଶ୍ରୀଯୁକ୍ତ ଗୁଣନିଧି ବାବୁଙ୍କର ଏକ ଚିଠି କମ୍ୟୁନିଟି ପ୍ରୋଜେକ୍ଟର ଡିରେକ୍ଟରଙ୍କ ଠାକୁ ଚିଠା କରିଦେଲି - ଇଂରାଜୀରେ ।

ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତି ଆସିଥିଲେ । ସର୍ବସେବା ସଂଘ ତାଙ୍କର "ଅଯୋଗ୍ୟତା'' ଜାଣି କରି ସୁଦ୍ଧା ସଦସ୍ୟ ରହିବାକୁ ମତ ଦେଲେ ସେ ରାଜୀ ଅଛନ୍ତି । ସେ କହିଲେ " Paint me as I am'' ଅଥଚ ସେ ଜଣେ ମାତ୍ର, କର୍ମୀ ନ ହୋଇ, ପ୍ରାଦେଶିକ ଭୂଦାନ ସମିତିର ସଦସ୍ୟ ଯେ କି ବହୁତ ଯତ୍ନ ନିଅନ୍ତି ଓ ଆମକୁ ସବୁ ପ୍ରକାରେ ସକ୍ରୀୟ ସାହାଯ୍ୟ କରନ୍ତି ।

୧୦.୯.୧୯୫୬

କାଲି ରାତି ୮ଟା ଠାରୁ କ୍ରମାଗତ ଆଜି ଦିନ ଗୋଟାକ ପର୍ଯ୍ୟନ୍ତ ବେଶ୍ ପ୍ରବଳ ବର୍ଷା ହେଲା । ମୋଟରେ ୫ ଇଞ୍ଚ ବର୍ଷା ହେଲା ବୋଲି ଖବରକାଗଜରୁ ପରେ ଜାଣିଲୁ । ଏହି ବର୍ଷାରେ ମୁଁ ଆଜି ବାସନ, କରେଇ, ଆଦି ମାଜିଲି । ମାନପୁରର ବଂଶୀ ମଧ୍ୟ ମାଜିଲା । ଏପରି ପାଗ ଖରାପ ହେଲେ, ମୋର ଦେହ ଭଲ ଥିଲେ, ମୁଁ ବାହାରିଆ କାର୍ଯ୍ୟ କରିବାକୁ

ଫୂର୍ତ୍ତିରେ ବାହାରେ । କାରଣ, ଅନ୍ୟମାନେ ଏପରି ପାଗରେ କାର୍ଯ୍ୟ କରିବାକୁ କୁଣ୍ଠିତ ହୁଅନ୍ତି ।

ସକାଳେ ବୁଲୁବାବୁ ସହକର୍ମୀ, ବୟସରେ ସାନ ଯୁବକମାନଙ୍କ ଉପରେ ଭାରୀ ବିରକ୍ତ ହେଲେ । ମୋ ମତରେ, remonstrance ଯଥେଷ୍ଟ ହୋଇଥାନ୍ତା, rebuke ଦରକାର ନଥିଲା । ତଦ୍ୱାରା ତାଙ୍କରି ନିଜର ମନର ଶାନ୍ତି ନଷ୍ଟ ହେଉଛି ।

ସହକର୍ମୀମାନେ ସମସ୍ତେ ନିମନ୍ତ୍ରଣପତ୍ର ବାଣ୍ଟିବାକୁ ଏହି ଅନବରତ ବର୍ଷାରେ ତିନ୍ତି କରି ଗଲେ । ମୁଁ ଜୟକୃଷ୍ଣ ବିଶ୍ୱାଳଙ୍କ ସହ ମଧ୍ୟ ବକ୍ସିବଜାର, କଟକ ଚଣ୍ଡୀ ଆଡ଼େ ଗଲି । ହିନ୍ଦ ସେବକ ସମାଜର ଓଡ଼ିଶାରୁ ମେମ୍ବର (ଏବଂ ରେଭେନ୍ସା କଲେଜରେ ୧୯୩୦-୩୧ରେ ମୋର ସହଧ୍ୟାୟୀ ବି.ଏ.କ୍ଲାସ୍‌ରେ) ଶ୍ରୀ ଶ୍ୟାମସୁନ୍ଦର ମିଶ୍ରଙ୍କୁ ନିମନ୍ତ୍ରଣ ପତ୍ର ଦେଲୁ । ସେ ଖୁସି ହେଲେ । ବର୍ଷାରେ ଯିବା ଆସିବାକୁ ଭାରି ଫୂର୍ତ୍ତି ଲାଗିଲା ।

୧୨.୯.୧୯୫୬

ସକାଳେ ମୁଁ ବାସନ ମାଜିଲି । ମାମୁଲି ଅଫିସକାର୍ଯ୍ୟ କଲି । ପଞ୍ଜାବର ଶ୍ରୀ ଭୀମସେନ ସାଚାର ଓଡ଼ିଶାର ଗବର୍ଣ୍ଣର (ରାଜ୍ୟପାଳ) ହୋଇ, ଆଜି କଟକରେ ପହଞ୍ଚିଲେ । ମୁଖ୍ୟମନ୍ତ୍ରୀ ନବବାବୁ ଓ ରାଜସ୍ୱମନ୍ତ୍ରୀ ସଦାଶିବ ତ୍ରିପାଠୀ ତାଙ୍କୁ ଷ୍ଟେସନ୍‌ରେ ସ୍ୱାଗତ ଜଣାଇ, ଥୋଡ଼ିଆସାହିକୁ ଏମିତି ଖାଲି ବୁଲି ଆସିଲେ । ଭୂଦାନ ଆକ୍ଟର amendment ହେଉଛି କହିଲେ । ଜ୍ୟୋତିଷୀଙ୍କଠାରେ ଲୋକଙ୍କର ବିଶ୍ୱାସ କଥା ପଡ଼ିଲା ।

ସନ୍ଧ୍ୟା ପୁରୀ-ତାଳଚେର ଟ୍ରେନ୍‌ରେ କଟକରୁ ମୁଁ ମେରାମଣ୍ଡଳୀକୁ ଆସିଲି । ଆଚାର୍ଯ୍ୟ ମହାଶୟ (ହରିହର ଦାସ) ସାମୂହିକ ଭୂଦାନ ପଦଯାତ୍ରାର ପ୍ରଥମ ଶିବିର ଢେଙ୍କାନାଳ ଗଡ଼ରେ ତା ୧୧.୯.୫୬ରେ ଉଦ୍‌ଯାପନରେ ଯୋଗ ଦେବାକୁ ଆସିଥିଲେ । ସେ ଏହି ଟ୍ରେନ୍‌ରେ ଉଠିଲେ । ଆମ୍ଭେମାନେ ମେରାମୁଣ୍ଡଳୀରୁ ସରକାରୀ ମୋଟର-ବସ୍‌ରେ ଚଢ଼ି ରାତିରେ ସମ୍ବଲପୁର ଗଲୁ । ଶ୍ରୀ ରାଧାଶ୍ୟାମ ମହାରା, ଶ୍ରୀ ନବଘନ ବେହେରା ଓ ଅନୁଗୋଳର ମହିମାଶ୍ରମର କେତେକ ଶିକ୍ଷାର୍ଥିନୀ ଟ୍ରେନ୍‌ରୁ ଅନୁଗୋଳ ଗଲେ ।

ମୋ ସାଙ୍ଗରେ ବିକ୍ରୟ ପାଇଁ ନେଲି ୧) ଗୀତା ପ୍ରବଚନ ହିନ୍ଦୀ - ୧ (୨) ଗୀତା ପ୍ରବଚନ ଓଡ଼ିଆ -୧ (୩) ଲୋକନୀତି - ୧ (୪) ବିଜ୍ଞାନ ଓ ଅହିଂସା - ୧ (୫) ବିନୋବା ବିଚାରର ଧାରା - ୧ (୬) ସର୍ବୋଦ ଓ ବିଶ୍ୱଶାନ୍ତି - ୧ (୭) ଯୁଗର ଦାବୀ - ୧ (୮) ଆମ ଭୂମିସମସ୍ୟା - ୧ (୯) ସଂପତ୍ତିଦାନ ବିଚାର - ୧ (୧୦) ଭୂଦାନଗୀତିକା - ୧ (୧୧) ଆଶ୍ରମ ପ୍ରାର୍ଥନା - ୧(୧୨) ସ୍ଥିତପ୍ରଜ୍ଞର ଲକ୍ଷଣ -୧ (୧୩) ଆଶ୍ରମ ଭଜନାବଳୀ - ୧ (୧୪) ଗ୍ରାମ ରାଜ୍ୟ - ୧ (୧୫) ଧର୍ମଚକ୍ର ପ୍ରବର୍ତ୍ତନ - ୧ (ହିନ୍ଦୀ) ୧୬) ଭକ୍ତି, ଜ୍ଞାନ ଓ କର୍ମ - ୧ (ବଙ୍ଗଳା) (୧୭) Principles and Philosophy - 1(୧୮) Revolu-

tionary Bhudan Yajnya - 1(୧୯) Bh. Govt. Challenge - 1 (୨୦)Swaraj Sastra - 1 (ଇଂ)

୧୩.୯.୧୯୫୬

ସକାଳ ୭ଟାରେ ଆଚାର୍ଯ୍ୟ ମହାଶୟଙ୍କ ସହ ମୁଁ ସମ୍ବଲପୁର ଟାଉନ୍‌ରେ ପହଞ୍ଚିଲି । ପ୍ରହ୍ଲାଦ ରାୟ ଲାଠଙ୍କର ପଛପଟ ଘରେ କଂସାରିପଡ଼ାରେ ଭୂଦାନ ଅଫିସରେ ରହିଲୁ ।

ଗୌର ମଠର ମହନ୍ତ ଶ୍ରୀଯୁକ୍ତ ଅଚ୍ୟୁତାନନ୍ଦ ସରସ୍ୱତୀଙ୍କର ଅନୁରୋଧ କ୍ରମେ ତାଙ୍କର ମଠରେ ଆଚାର୍ଯ୍ୟ ମହାଶୟ, ମୁଁ ରାସବିହାରୀ ଦାସ ଓ ମଦନବାବୁଙ୍କର ସାନ ସାନ ପିଲା (ରହୀବ୍ ଓ ମନୁ) ମଧ୍ୟାହ୍ନଭୋଜନ କଲୁ । ଉପରଓଳି ୫ଟା ବେଳେ ସମ୍ବଲପୁରରୁ ପୁରୋହିତ ମୋଟର ସର୍ଭିସ ବସ୍‌ରେ ୨୬ ମାଇଲ ଦୂର ଜୁନାଡ଼ିହଠାକୁ ( ୧୨ ମାଇଲରେ ପେନୁପାରି, ସିନ୍ଦୁରପଙ୍କ, ପରମାନପୁର, ଲୁହାକଣି, କୁସୁମଡ଼ିହି, ରଣୀମହୁଲ ) ବାଟେ ଆସିଲୁ ସେଠାରୁ ପ୍ରାୟ ୬ ମାଇଲ ଦୂର ଲୟଡ଼ାକୁ ଚାଲି କରି ଆସିଲୁ । ଲୟଡ଼ାରେ ପ୍ରଧାନ ଭୂଦାନ ଉଦ୍ୟୋକ୍ତା ସର୍ବଶ୍ରୀ ଘାସିରାମ ଗୁପ୍ତା, ସଚ୍ଚିଦାନନ୍ଦ ସାହୁ, ରାଧାବଲ୍ଲଭ ତିୱାରୀ ପ୍ରଭୃତି ଆଚାର୍ଯ୍ୟ ମହାଶୟଙ୍କୁ ସମ୍ବର୍ଦ୍ଧନା ଜଣାଇ ଥିଲେ । ଆମ୍ଭେମାନେ ଗ୍ରାମପଞ୍ଚାୟତ ଅଫିସ ଘରେ ଓ ଘାସିରାମ ଗୁପ୍ତାଙ୍କର ଦତ୍ତ ପୁରୁଣା ଗୋଦାମ ଘରେ ରହିଲୁ । ସ୍ଥାନୀୟ ଲୋକଙ୍କର ଆତିଥ୍ୟରେ ଆମ୍ଭେମାନେ ଓ ଶିବିରର ସ୍ୱେଚ୍ଛାସେବକ ମିଶି ୪୯ ଜଣ ରହିଲୁ ।

୧୪.୯.୫୬

ଲୟଡ଼ାରେ ସମ୍ବଲପୁର-ସୁନ୍ଦରଗଡ଼ ଜିଲ୍ଲାର ପ୍ରଥମ "ସାମୂହିକ ପଦଯାତ୍ରା'' ଭୂଦାନ ଶିବିର ଆଜି ଆରମ୍ଭ ହେଲା । ମୋଟରେ ନୂଆ, ପୁରୁଣା ହୋଇ ୪୯ ଜଣ ଯୋଗଦେଲେ । ଶ୍ରୀ ଭଜନଚନ୍ଦ୍ର ମହାନ୍ତି, ରଙ୍ଗାଧର ଦାସ, ଡିଲେଶ୍ୱର ଗୌନ୍ତିଆ, ମଦନମୋହନ ସାହୁ, ଆଚାର୍ଯ୍ୟ ହରିହର ଦାସ, ସମ୍ବଲପୁର ଟାଉନର ଗୌରମଠର ମହନ୍ତ ଅଚ୍ୟୁତାନନ୍ଦ ସରସ୍ୱତୀ ଆଦି ଏଥିରେ ଯୋଗ ଦେଇଥିଲେ । ପ୍ରତିଦିନ ଉପରଓଳି ସାଧାରଣ ସଭା ଓ ଉପାସନାରେ ପ୍ରାୟ ପାଞ୍ଚଶହ ଲୋକ (କେତେକ ସ୍ତ୍ରୀଲୋକ ମଧ୍ୟ) ଯୋଗ ଦେଉଥିଲେ । ଲଏଡ଼ାରେ କେତେକ ଧନୀ ଲୋକ, ଗୌନ୍ତିଆଙ୍କର ଯେଉଁ ଭୟ ଓ ଭୂଦାନ-ବିରୋଧଭାବ ଥିଲା, ତାହା ଏହି ସବୁ ସଭାରେ ଆମ୍ଭମାନଙ୍କର ବକ୍ତୃତା ଦ୍ୱାରା ଅନେକ ପରିମାଣରେ ଦୂର ହୋଇଗଲା ।

ଏଠାର ମି.ଇ. ସ୍କୁଲର ୨ୟ ଶିକ୍ଷକ ଅଚ୍ୟୁତାନନ୍ଦ ରଥ (ପଣ୍ଡିତ ଜଗଦୀଶ ରଥ, ବରଗଡ଼ଙ୍କର ଭାଇ) ଭଲ ଓଡ଼ିଆ-ଲେଖକ ଓ ଉତ୍ସାହୀ ଲୋକ । ତାଙ୍କର ଯତ୍ନରେ ଆମ୍ଭେମାନେ ମି.ଇ.ସ୍କୁଲରେ ମଧ୍ୟ ପିଲାଙ୍କୁ କିଛି କହିଲୁ ।

୧୮.୯.୧୯୫୬

ସମାସିଂହାକୁ ଯାତ୍ରା । ମଙ୍ଗଳବାର ସକାଳ ୯ଟାରେ ଆମ୍ଭେମାନେ (ଆଚାର୍ଯ୍ୟ ମହାଶୟ, ଅଚ୍ୟୁତାନନ୍ଦ ସରସ୍ୱତୀ, ମଦନବାବୁ, ରଙ୍ଗାଧର ଦାସ, ଆଦି) ଲଏଡ଼ାରୁ ଚାଲି କରି, ଭେଡ଼େନ୍ ନଦୀ ନୌକାରେ ପାରିହୋଇ, ମୋଟ ପ୍ରାୟ ୪ ମାଇଲ ଦୂର ସମାସିଂହା ଗ୍ରାମକୁ ଗଲୁ । ଗ୍ରାମର ଗୌନ୍ତିଆ, ନାଏବ ପଞ୍ଚ, ଆଦି ମୁଖ୍ୟ ଲୋକେ ଆମର ରହିବା ପାଇଁ ସର୍ବସାଧାରଣ ଘର, ରୋଷାଇ, କରିବାକୁ ଡ଼େରାଘରରେ ସ୍ଥାନ ନ ଦେବାରୁ, ସାଧାରଣ ଗ୍ରାମବାସୀ ଶ୍ରୀ.... ଙ୍କର ଘରେ ଆମ୍ଭମାନଙ୍କୁ ଏହି ଗରୀବ ଲୋକେ ରଖାଇଲେ । ବଡ଼ ଆଦର କଲେ । ପରେ, ନାଏବ ପଞ୍ଚ ଶ୍ରୀ ଉପେନ୍ଦ ସାହୁ ସ୍ନାନ କରି, ଓଦା ଲୁଗା ନ ପାଲଟି ସୁଦ୍ଧା, ଆମଠାରେ ପହଞ୍ଚି ନିଜର ନିର୍ଦ୍ଦୋଷତା ପ୍ରତିପାଦନ କଲେ । ଉପରଓଳି ସାଧାରଣ ସଭା ଏହାଙ୍କର ସଭାପତିତ୍ୱରେ ହେଲା । ପ୍ରାୟ ୫୫୦ ଜଣ ପୁରୁଷ, ସ୍ତ୍ରୀ ଓ ପିଲା (୪୦/୪୫ଜଣ) ସଭାରେ ଯୋଗ ଦେଇଥିଲେ । ମଦନବାବୁ ଗ୍ରାମଦାନ ଓ ଗ୍ରାମରାଜ୍ୟ ବିଷୟ ବୁଝାଇଲେ । ରାତିରେ ଆମ୍ଭେମାନେ ଏଠାର ପ୍ରଶସ୍ତ ଡ଼େରାଘରେ ବା ଅତିଥିଶାଳାରେ ରହିଲୁ । ଉ.ପ୍ରା. ସ୍କୁଲ ବର୍ତ୍ତମାନ ଏହି ଘରେ ଚଳୁଛି । ରାତିରେ ଗୌନ୍ତିଆ ଶ୍ରୀ ମୁକ୍ତେଶ୍ୱର ପଟେଲ ଆସି ଆମକୁ ଦେଖା କରି, ଆତିଥ୍ୟ ଦେଖାଇ ନଥିବାରୁ, ନିଜର ଅପ୍ରତିଭତା ପ୍ରକାଶ କଲେ । ରାତି ୯ଟାରୁ ୧୧ଟା ପର୍ଯ୍ୟନ୍ତ ଡ଼େରାଘର ଆଗ ଦାଣ୍ଡରେ ପୁଣି ସଭା ହେଲା ଓ ମୁଁ ଏଥିରେ ଧନୀ ଲୋକଙ୍କର କର୍ତ୍ତବ୍ୟ ବିଷୟରେ ୧ ଘଣ୍ଟା ବୁଝାଇଲି ।

୧୯.୯.୧୯୫୬

ସକାଳେ ଡ଼େରିରେ ଆମେ ଉଠିଲୁ । ରାତିଯାକ (୧ଟାଠାରୁ) ପ୍ରବଳ ବର୍ଷା ହୋଇଥିଲା । ଉପାସନା କଲୁ । ପୁଣି ସମାସିଂହା ଉ.ପ୍ରା. ସ୍କୁଲର ଛାତ୍ର ଓ ୩ ଜଣ ଶିକ୍ଷକମାନଙ୍କ ସହ ଉପାସନା କଲୁ । ପିଲାମାନେ ବଡ଼ ସମାନ ସ୍ୱରରେ ଓ ସୁନ୍ଦର ଭାବରେ ପ୍ରାର୍ଥନା ଓ ଭଜନ ବୋଲିଲେ । ଗୌନ୍ତିଆଙ୍କର ନିମନ୍ତ୍ରଣ କ୍ରମେ ଆମ୍ଭେମାନେ ସକାଳ ଜଳଖିଆ ତାଙ୍କ ଘରେ କଲୁ । ଶ୍ରୀ ରଙ୍ଗାଧର ବାବୁ ତତ୍‌ପୂର୍ବରୁ ନିଜର ଗନ୍ତବ୍ୟ ଗ୍ରାମକୁ ଚାଲିଯାଇଥିଲେ ।

ସକାଳ ୯ଟାରେ ଆମ୍ଭେମାନେ ୧ ମାଇଲ ଚାଲି, ଭେଡ଼େନ ନଦୀକୁ ନୌକାରେ ପାରି ହୋଇ, ଆଉ ପ୍ରାୟ ୧ ମାଇଲ ଦୂର ସୋଢ଼ାମାଲ ଗ୍ରାମକୁ ଆସି, ସାମାନ୍ୟ ବର୍ଷା ହେତୁ ସମ୍ବଲପୁର ଟାଉନର ପଟ୍ଟନାୟକପଡ଼ାବାସୀ ନବୀନ ମହାନ୍ତିଙ୍କର ଅମାରଘରେ (ଖମାର ଘରେ) ୫/୬ ମିନିଟ୍ ବସି, ପୁଣି ଚାଲି କରି ଜୁନାଡ଼ିହି ପର୍ଯ୍ୟନ୍ତ ଆସି, ସଡ଼କ ଛାଡ଼ି କୀନାଲୋଇ ଗ୍ରାମକୁ ଆସିଲୁ । ମୋଟ ପ୍ରାୟ ୭ ମାଇଲ ଦୂର । ବାଟରେ ଆସିବା ବେଳେ ଜଣେ ମହିଳା ଆଚାର୍ଯ୍ୟ ମହାଶୟଙ୍କୁ ଓ ସ୍ୱାମୀଜୀଙ୍କୁ ତାଙ୍କର ଶଗଡ଼ରେ ବସିବାକୁ ସନିର୍ବନ୍ଧ ଅନୁରୋଧ କରିବାରୁ, ସେମାନେ ଶଗଡ଼ରେ ବସି ୨ ମାଇଲ ଖଣ୍ଡେ ଆସିଲେ ।

କୀନାଲୋଈରେ ଶ୍ରୀ ସୁବଳ ପଟାଙ୍କ ଘରେ ଆମେ ରହିଲୁ । ଆଚାର୍ଯ୍ୟ ମହାଶୟ ତାଙ୍କର "କୌଟମ୍ବିକ ମିଳନ'' ଗସ୍ତରେ ଏହାଙ୍କ ଘରକୁ ଆସିଥିଲେ । ସେ ରଚନାତ୍ମକ କର୍ମୀ, ଭୂଦାନ କର୍ମୀ, ମୁଖ୍ୟ ଦାତା, ତାଙ୍କର ଘନିଷ୍ଠ ପ୍ରିୟ ଲୋକଙ୍କୁ ସେମାନଙ୍କର ଘରେ ବା ଆଶ୍ରମରେ ଭେଟିବାକୁ "କୌଟମ୍ବିକ ମିଳନ'' କୁହାଯାଉଛି ।

ଦିନ (ରାତି ଯାକ) ଟି ତାଙ୍କର ଆତିଥ୍ୟରେ ରହିଲୁ । ରାତିରେ ପିଠା, ମୁଗକୁ ବାଟି ସେଥିରେ ତିଖିରୀ (କ୍ଷୀରି) ତିଆରି କରି ଶ୍ରୀ ସୁବଳ ବାବୁଙ୍କର ସ୍ତ୍ରୀଲୋକମାନେ ଆମକୁ ଖାଇବାକୁ ଦେଲେ । ରାତିରେ ଉତ୍କଳର ପ୍ରାଚୀନ ଇତିହାସ, ତାମିଲ ଦେଶ, ଚୋଳ, ଆନ୍ଧ୍ରଦେଶ ସହିତ ସଂପର୍କ ଆଦି ଚର୍ଚ୍ଚା ହେଲା । ଏଠାରେ ଉପରଓଳି ଭୂଦାନ ସଭା ହେଲା । ସନ୍ତୋଷ ଚନ୍ଦ୍ର ପ୍ରଧାନ, କୁଞ୍ଜବିହାରୀ ଦାସ, ମଦନ ବାବୁ ସଭାରେ କହିଲେ । ସ୍ୱାମୀଜୀ (ଅଚ୍ୟୁତାନନ୍ଦ ସରସ୍ୱତୀ) ବଡ଼ ସୁନ୍ଦର ଭାବରେ ବୁଝାଇ, ଭୂଦାନକୁ "ନୂତନ ଭାଗବତ'' ବୋଲି ବୁଝାଇଲେ ।

୨୦.୯.୧୯୫୬

ସକାଳେ ସୁବଳ ବାବଙ୍କ ଘରେ କୀନାଲୋଈରେ ଜଳଖିଆ କରି, ଆମ୍ଭେମାନେ ଚାଲି କରି ସଡ଼କକୁ ଆସି ରଣୀମହୁଲ ଗ୍ରାମ ପାଖଦେଇ, ପ୍ରାୟ ୪ ମାଇଲି ଦୂର କତରବଗା (ପୋଲିସ ଥାନାର ଏହା ହେଡ୍‌କ୍ୱାଟର୍ସ)କୁ ଆସିଲୁ । ଏଠାରେ ନୂଆ ତିଆରି ହୋଇଥିବା ପ୍ରସ୍ତାବିତ ମଧ୍ୟ ଇଂରାଜୀ ବିଦ୍ୟାଳୟର ଘରେ ରହିଲୁ । ଶ୍ରୀ ରାଜୀବଲୋଚନ ସାମଲ ଆଗରୁ ଏଠାକୁ ସଭାର ପ୍ରାଥମିକ ଆୟୋଜନ ପାଇଁ ଆସିଥିଲେ । ଉଚ୍ଚ ପ୍ରାଥମିକ ସ୍କୁଲରେ ଛାତ୍ରମାନଙ୍କୁ ଆଚାର୍ଯ୍ୟ ମହାଶୟ, ସ୍ୱାମୀଜୀ ଓ ମଦନ ବାବୁ କିଛି କିଛି କହିଲେ ।

୨୨.୯.୧୯୫୬

ଆମ୍ଭେମାନେ ପ୍ରଧାନପାଲିରୁ ଚାଲି କରି ପ୍ରାୟ ୫ ମାଇଲ ଦୂର ରେଙ୍ଗାଲି ଷ୍ଟେସନକୁ ଆସିଲୁ । ସଡ଼କ ବାଟ ଭଲ ଥିଲା । ରେଙ୍ଗାଲି ଗାଁ ପାଖ ରମ୍ପେଲାରୁ ହୀରାକୁଦ ବନ୍ଧ ତିଆରି ହେବାରୁ ବୁଡ଼ିଯାଉଥିବା ଅଞ୍ଚଳରୁ ଅନେକ ଲୋକ ଏହି ଅଞ୍ଚଳରେ ନୂଆ ବସବାସ କରିଛନ୍ତି । ଅନେକ କଂସାବାସନ ତିଆରି କରିବାର କାରିଗର ମଧ୍ୟ ରମ୍ପେଲରୁ ଏଠାକୁ ଆସିଛନ୍ତି । ଆଚାର୍ଯ୍ୟ ମହାଶୟ ଓ କୁଞ୍ଜବିହାରୀ ଦାସ ରେଙ୍ଗାଲିରୁ ଟ୍ରେନ୍‌ରେ ଝାରସୁଗୁଡ଼ା ଗଲେ । ଆମ୍ଭେମାନେ ବଜାରରୁ ପକୋଡ଼ି, ଚିନାବାଦାମ ତେଲରେ ଛଣା ପୁରୀ, ଜଳଖିଆ କରି, ଖରାବେଳଟା ଷ୍ଟେସନରେ କଟାଇ, ସମ୍ବଲପୁରକୁ ଟ୍ରେନ୍‌ରେ ଆସିଲୁ । ଗୌରମଠରେ ପଖାଳ ଏବଂ ରାତିରେ ରୋଟି ତରକାରୀ ଖାଇଲୁ । ସ୍ୱାମୀଜୀ ମଠର ଘରେ ଭୂଦାନ ଅଫିସ କରିବାକୁ ଓ କର୍ମୀମାନଙ୍କୁ ରହିବାକୁ କହୁଛନ୍ତି । ଘରର କେତେକ ମରାମତି ଦରକାର ।

ଆଜି କଟକରେ ଡାକ୍ତର ଗିରିଜାପ୍ରସାଦ ଦାସ ମହାପାତ୍ର ଚୁନୀର ପାଟି ଭିତରର

Polypକୁ ଅପରେଶନ୍ କଲେ । ମାତ୍ର ପରେ ତା ୨୨.୯ର ଶ୍ରୀଯୁକ୍ତ ରମାଦେବୀଙ୍କର ଚିଠିରୁ ଜାଣିଲି ଯେ ଅଚେତ ନ କରି ଏହି ଅପରେଶନ୍ ହେଲା ।

୨୩.୯.୧୯୫୬

ଭୋର ୩ଟା ବେଳୁ ଉଠି, ମୁଁ କେତେକ ଚିଠିପତ୍ର ଲେଖିଲି । ସକାଳ ୬ଟା ବେଳର ସରକାରୀ-ସର୍ଭିସ୍-ବସ୍‌ରେ ମଦନବାବୁ, ସ୍ୱାମୀଜୀ ଓ ମୁଁ ସମ୍ବଲପୁରରୁ ୩୯ ମାଇଲ ଦୂର ଟିକଲୀପଡ଼ାକୁ ପଡ଼ିଆବାହାଲ ହାଟ, ଗୌଡ଼ପାଲି, କଦଳୀପାଲ, ବଡ଼ରମା ଘାଟି, ବଡ଼ରମା ହାଟ, କୁଡ଼େବାହାଲ, କନ୍ଧ ବସ୍ତି, ଜମନକୀରା ହାଟ, ଟିକଲୀପଡ଼ା ଦେଇ ଆସିଲୁ । ଟିକଲୀପଡ଼ା ସରକାରୀ ସେବାଶ୍ରମ (ଆଦିବାସୀ ପିଲାଙ୍କ ପାଇଁ ପ୍ରାଥମିକ ସ୍କୁଲ)ରେ କେଉଁଝରର ଅଳତୀପାଖ ଗ୍ରାମର ଜଣେ ଯୁବକ ଦୟାନିଧି ପାତ୍ର ଶିକ୍ଷକ ଅଛନ୍ତି । ଗ୍ରାମ ସେବକ ପତ୍ରିକା ଏଠାକୁ ଆସୁଥିଲା । ଆମ୍ଭେମାନେ ଗ୍ରାମ ଭିତରେ ରହିଲୁ ଏବଂ ସାଧାରଣ ଗ୍ରାମବାସୀଙ୍କର ଆତିଥ୍ୟରେ ଖାଇଲୁ । ଏଠାର ଗୌନ୍ତିଆ ଶ୍ରୀ ଶ୍ରଦ୍ଧାକର ଗୌନ୍ତିଆ (ବୟସ ୩୦ ରୁ ୨୫ ବର୍ଷ) ବାରମ୍ବାର ନିମନ୍ତ୍ରଣ କରି ପଠାଇଲେ ସୁଦ୍ଧା ଆମଠାକୁ ବା ସଭାକୁ ଆସିଲା ନାହିଁ । ପ୍ରବଳ ବର୍ଷା ହେଲେ ହେଁ ଲୋକେ ପିଣ୍ଡାରେ ବସି ଆମର ଭୂଦାନ କଥା ଶୁଣିଲେ । ଆମ୍ଭେମାନେ ଶ୍ରୀ ଲୋକନାଥ ସାହୁଙ୍କ ଘରେ ଭୋଜନ କଲୁ ।

୨୪.୯.୧୯୫୬

ସକାଳେ ଆମ୍ଭେମାନେ ଟିକଲୀପଡ଼ାରେ ଜଳଖିଆ (ଘର ତିଆରୀ ପକୋଡ଼ି ଓ ମୁଢ଼ି) ଖାଇ, ସେଠାର ଗୌନ୍ତିଆଙ୍କୁ ୨/୪ ମିନିଟ ପାଇଁ ଦେଖା କରି, ଆମ୍ଭେମାନେ ଝିପି ଝିପି ବର୍ଷାରେ ଚାଲି ୯ ମାଇଲ ଦୂର ପାଲୁଣୀପଡ଼ାକୁ ଆସିଲୁ । ପାଲୁଣୀପଡ଼ାରେ ସାଧାରଣ ଗ୍ରାମବାସୀମାନଙ୍କ ମଧ୍ୟରେ ଭାରୀ ଉତ୍ସାହ ଦେଖିଲୁ । ପ୍ରତି ଘର ଆଗରେ ପୂର୍ଣ୍ଣ କୁମ୍ଭ, ପୂର୍ଣ୍ଣ ପିତ୍ତଳ ଗରା, ଆମ୍ବପତ୍ର ବନ୍ଧା ଦେଖିଲୁ । ହରିବୋଲ ଓ ହୁଳୁହୁଳି ମଧ୍ୟ ତୁହାକୁ ତୁହା ଲୋକେ ପକାଉଥିଲେ । ଭୂଦାନ କର୍ମୀ (ପଦଯାତ୍ରୀମାନେ) ସ୍ଲୋଗାନ୍ ମଝେ ମଝେ ପକାଉଥାନ୍ତି । ଶ୍ରୀ ନୀରାକାର ବେହେରା ଭୂଦାନ ଗୀତ ଗାଉଥାନ୍ତି । ପ୍ରସାଦ ଗୁଣ-ବିଶିଷ୍ଟ ଗୀତ ଗାଇବା ଉଚିତ ବୋଲି ମୁଁ ମନେ କରେ । ମାତ୍ର ସେ ବିପ୍ଳବର ଗୀତ ଗାଉଥାନ୍ତି । ମାଦଳ କନ୍ଧ ବାଙ୍କୁଲି ବାଡ଼ି ଧରି ନାଚି ଗୀତ ଗାଇଲେ ।

ପାଲୁଣୀପଡ଼ାରେ ୨୪ରୁ ୨୭ ପର୍ଯ୍ୟନ୍ତ ଭୂଦାନ ଶିବିର ହେଲା । କର୍ମୀମାନଙ୍କୁ ଆଦୌ କୌଣସି ଶିବିରକାର୍ଯ୍ୟ (ସଫେଇ, ରୋଷାଇ, ଆୟୋଜନ ଆଦି) କରିବାକୁ ପଡ଼ି ନଥିଲା । ସାଧାରଣ ଗ୍ରାମବାସୀମାନେ ଏହା ସବୁ କରିଥିଲେ । ୨୫,୨୬ ଓ ୨୭ର ସକାଳେ ମୁଁ ଶିବିରର ପାଖରେ ପଡ଼ିଥିବା ଅଇଁଠାପତ୍ର ଆଦି, ରୋଷାଇ ଘରର ପଛପଟେ ବୋହିଯାଇଥିବା ପେଜ

ସଫା କରିଥିଲି ଏବଂ ଗୋବରପାଣି ଛିଞ୍ଚିଲି ଓ ଛିଞ୍ଚାଇଲି । ପ୍ରତିଦିନ ଭୋର ୪ଟା ବେଳୁ ଗ୍ରାମବାସୀ ଗରୀବ ଲୋକେ ଗ୍ରାମରେ ବୁଲି ଭୂମିହୀନ କେହି ରହିବେ ନାହିଁ, ଭୂମିମାଲିକ କେହି ରହିବେ ନାହିଁ, ଭାରତ ମାତା କୀ ଜୟ, ଗାଂଧୀଜୀ କି ଜୟ, ବିନୋବା ଜୀ କୀ ଜୟ'' ସ୍ଲୋଗାନ୍ ଦେଉଥିଲେ । ପ୍ରତିଦିନ ଉପରଓଳି ସାଧାରଣ ସଭା ହେଲା ।

ପ୍ରତି ସନ୍ଧ୍ୟାରେ ସ୍ୱାମୀ ଅଚ୍ୟୁତାନନ୍ଦ ସରସ୍ୱତୀ ଗୀତା, ସକାଳର ଉପାସନା, ଆଦିର ଅଂଶରୁ କର୍ମୀମାନଙ୍କୁ ଅର୍ଥ ବୁଝାଉଥିଲେ ।

୨୮.୯.୧୯୫୬

ସକାଳେ ପାଲୁଣିପଡ଼ା ପ୍ରସ୍ତାବିତ ନି.ପ୍ରା. ସ୍କୁଲଘରେ (ଭୂଦାନ ଶିବିରରେ) ଭୂଦାନକର୍ମୀ, ୧୦/୧୫ ଜଣ ଗ୍ରାମବାସୀ, ଚିନ୍ତାମଣି ଗୌନ୍ତିଆ, ରାମେଶ୍ୱର ପଟେଲଙ୍କୁ ମୁଁ ଖୁବ୍ ସ୍ୱଷ୍ଟ ଭାବରେ କହିଲି ଯେ ଭୂଦାନ ଯଜ୍ଞରେ ହିଂସାର କଥା, ଗୁପ୍ତ ଆଲୋଚନା କିଛି ନାହିଁ । ଭାରତବର୍ଷରେ ଲୋକେ ହିଂସାବାଦୀ ନୁହନ୍ତି, ହିଂସା କରିବା ଆମ୍ଭମାନଙ୍କର ଅନୁଚିତ ଓ ଆମ୍ଭେମାନେ ଭାରତବାସୀ ମଧ୍ୟ ଅସମର୍ଥ । ଏ ଅଞ୍ଚଳରେ କେତେକ ଧନୀ ଲୋକେ ମିଛରେ ଶାନ୍ତିଭଙ୍ଗ ହେବା, ହିଂସାକାଣ୍ଡ ହେବା ପ୍ରଚାର କରୁଛନ୍ତି । ମୁଁ ମୋର ଅନୁଭବ ଡ଼ି.ଆଇ.ଜି. ଅଫ୍ ପୋଲିସ୍‌ଙ୍କୁ ସମ୍ବଲପୁରରେ କହିବି । କେହି କାହାକୁ ଚିହାଇବା, ଚିଡ଼ାଇବା ମଧ୍ୟ ଅନୁଚିତ ।

୨୯.୯.୧୯୫୬

ସ୍ୱାମୀଜୀ, ମଦନବାବୁ ଓ ମୁଁ ଟିକଲୀପଡ଼ାର ଗୌନ୍ତିଆଙ୍କ ଘରେ ୧୦ଟାରେ ଜଳଖିଆ କରି, ତାଙ୍କୁ ଅନ୍ତତଃ ୧/୬ ଅଂଶ ଜମିଦାନ କରିବାକୁ କହି, ୧ଟାରେ ଚାଲି କରି ଜମନକୀରାରେ ପହଞ୍ଚିଲୁ । ଗରୀବଲୋକଙ୍କର ସାହିରେ ଆମ୍ଭେମାନେ ରହିଲୁ । ଏମାନେ ମୃଦଙ୍ଗ, କରତାଳ ବଜାଇ ଆଜି ସଭା ପାଇଁ ଉଚ୍ଚ ଜାତିର ଲୋକଙ୍କର ବସ୍ତିକୁ ପ୍ରଚାର କରିବାକୁ ଯାଇଥିଲେ । ଜମିବାଲା ଉଚ୍ଚଜାତିର ଲୋକ ମୃଦଙ୍ଗ ଛଡ଼ାଇ ନେଲେ । ଏମାନେ ଟିକିଏ ଭୀତ ଓ ବିଚଳିତ ଜଣାଗଲେ । ଏଠାରେ କିଛି ଗୋଳମାଳ ଆଗରୁ ଥିବ ବୋଲି ମୁଁ ଆଶଙ୍କା କରିଥିଲି । ପରେ, ସେପରି ଆଶଙ୍କା ପ୍ରକୃତରେ କିଛି ଘଟି ନ ଥିଲା । ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକ (ପୂର୍ବେ ପଟବାରୀ ଥିଲେ, ବିରଳା କମ୍ପାନୀର ବାଉଁଶ କଟାଇବାର ସୁପରଭାଇଜର୍ ଥିଲେ) ଖଦଡ଼ଧାରୀ ତାଙ୍କ ବସ୍ତିର ଲୋକଙ୍କୁ ଧରି ହାଟଚାଳିକୁ ଆସିଲେ । ଏଠାରେ ଆଉଟପୋଷ୍ଟର ଏ.ଏସ୍.ଆଇ. ଶ୍ରୀ ବ୍ରଜବନ୍ଧୁ ମିଶ୍ର ପୋଲିସ ପୋଷାକ ପିନ୍ଧି ସଭାକୁ ଆସିଥିଲେ ଓ ଆମର ଭାଷଣ ଗୋଟିଏ ଛୋଟ ନୋଟ ଖାତାରେ ଟିପୁଥିଲେ । ମଦନବାବୁ ଆମ ଭୂଦାନନୀତି ବୁଝାଇଲେ । ମୁଁ କୃଷ୍ଣବାବୁଙ୍କର ପ୍ରଶ୍ନର ଉତ୍ତର ଦେଲି । (୧) ଦାନପତ୍ର ଆଦି କାହିଁକି ରେଜିଷ୍ଟର ହେଉଛି ? (୨) ଆଇନ୍

ଦ୍ୱାରା ଏ କାର୍ଯ୍ୟ କାହିଁକି ହେଉନାହିଁ ? (୩) ଭୂଦାନ କର୍ମୀମାନେ "ଚିତ୍ତଚୋରୀ'' କରୁଛନ୍ତି, ବଡ଼ ବଡ଼ ଲକ୍ଷପତି, ଶାସକମାନେ ବିତ୍ତଚୋରୀ, ଦସ୍ୟୁ ରତ୍ନାକର ପରି ଡକାୟତି କରୁଛନ୍ତି । ଉତ୍ପାଦନ କମୁଛି । ଭୂଦାନବାଲା ଦାୟୀ (୪) ନବବାବୁଙ୍କର ଜମିବାଡ଼ିରେ ବହୁତ ଗୋଳମାଳ ଅଛି; ଜମି, କୋଠାବାଡ଼ି ବିକ୍ରି କରି ବ୍ୟାଙ୍କରେ ଟଙ୍କା ଜମା କରିଛନ୍ତି । ଏହାର ଜବାବ ଦିଅନ୍ତୁ, ସଭାପତି ହୋଇଥିଲେ ଶ୍ରୀ ଦଶରଥ ଭୋଏ ।

୧.୧୦.୧୯୫୬

ଆଚାର୍ଯ୍ୟ ମହାଶୟ (ହରିହର ଦାସ) "କୌଟମ୍ବିକ ମିଳନ'' ପ୍ରୋଗ୍ରାମ୍‌ରେ ବରଗଡ଼ ସବ୍‌ଡିଭିଜନର ଭୂଦାନକର୍ମୀ ଓ ରଚନାତ୍ମକ କାର୍ଯ୍ୟରେ ନିଯୁକ୍ତ କର୍ମୀମାନଙ୍କର ଘରକୁ ବା ଆଶ୍ରମକୁ ଯାଇ, ସେମାନଙ୍କର ପରିବାରଙ୍କୁ ଦେଖିବା ଓ ଦିନେ ଓଳିଏ କଟାଇବା ପାଇଁ ବୁଲୁଛନ୍ତି । ଆଜି ସେ ବରପାଲି ନିକଟ କୁସୁମଡ଼ିହ ଗ୍ରାମରେ ଭୂଦାନ କର୍ମୀ ଶ୍ରୀ ଭାସ୍କର ପଣ୍ଡାଙ୍କ ଘରକୁ ଯାଇଥିବେ । ତାଙ୍କ ସହ ଶ୍ରୀ କୁଞ୍ଜବିହାରୀ ଦାସ ଅଛନ୍ତି ।

ସମ୍ବଲପୁର ସହରରୁ (ଭୂଦାନ କାର୍ଯ୍ୟାଳୟରୁ) ମୁଁ ଆଜି ସକାଳେ ସରକାରୀ ସର୍ଭିସ୍ ମୋଟର ବସ୍‌ରେ ମେରାମଣ୍ଡଳୀ ଆସିଲି । ସମୟର ଅଭାବରୁ, ଇଚ୍ଛା ଥିଲେ ହେଁ, ମୁଁ ଅନୁଗୋଳରେ ଓହ୍ଲାଇ ପାରିଲି ନାହିଁ ବା ଓଳିଏ ସୁଦ୍ଧା ରହିପାରିଲି ନାହିଁ । ଆଚାର୍ଯ୍ୟ ମହାଶୟଙ୍କର ଅନୁଗୋଳକୁ ଆସିବା ବିଷୟରେ ମୋଟର ଷ୍ଟାଣ୍ଡରୁ ଚିଠି ଶ୍ରୀ ସର୍ବେଶ୍ୱର ନାୟକ, ଶତ୍ରୁଘ୍ନ ନାଥ ଓ ଗୌରଚନ୍ଦ୍ର ପାଢ଼ୀଙ୍କୁ ଲେଖି ପଠାଇଦେଲି । ତାଳଚେର - ପୁରୀ ପାସେଞ୍ଜର ଟ୍ରେନ୍‌ରେ ଆସି, କଟକରେ ରାତି ୮ଟାରେ ପହଞ୍ଚିଲି । କଞ୍ଚା ଚୁଡ଼ା, ଦହି ଓ ଲୁଣ ଚୁନୀ ଖାଇବାକୁ ଦେଲା ।

୨.୧୦.୧୯୫୬

କଟକ ଟାଉନ୍‌ରେ ସଫାଇ ପ୍ରୋଗ୍ରାମ୍ କଂଗ୍ରେସ ସେବାଦଳ ଓ ଅନ୍ୟମାନେ ରଖିଥିଲେ । ଆମର ଭୂଦାନ ଅଫିସରୁ ଶ୍ରୀ ସଚ୍ଚିବାବୁ, ବୃନ୍ଦାବନ ବାବୁ, ଆଦି ସେଥିରେ ଯୋଗ ଦେବାକୁ ଅଲିସାବଜାରକୁ ଗଲେ । ଆସନ୍ତା କାଲି ପ୍ରାଦେଶିକ ସରକାରୀ ଭୂଦାନ ସମିତିର ବୈଠକ ଥିବାରୁ ଓ ତାହାର କାଗଜପତ୍ର ଆଗରୁ ଦେଖି ନେବାକୁ, ମୁଁ କୁଆଡ଼େ ଗଲି ନାହିଁ ।

ଓଡ଼ିଶାକୁ ପଞ୍ଜାବର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଭୀମସେନ ସାଚାର ଲର୍ଟ (ରାଜ୍ୟପାଳ) ହୋଇ ଏବେ ଆସିଛନ୍ତି । ସେ ଆଗରୁ କିଛି ନ ଜଣାଇ, ହଠାତ୍ ଭୂଦାନ ଅଫିସକୁ ବୁଲି ଆସିଲେ । ଆମର ବାରନ୍ଦା, ଘର , ଆଦି ସେତେ ସଫା ନ ଥିଲା; ଛିଣ୍ଡା ଖଜୁରୀଚଟ ପଡ଼ିଥିଲା । ଆମ୍ଭମାନଙ୍କୁ ସ୍ୱାଭାବିକ ଢ଼ଙ୍ଗରେ, ଖାଲି ଦେହରେ କୁର୍ତ୍ତା ପିନ୍ଧି ନ ଥିବା ଅବସ୍ଥାରେ ଦେଖି, ଟିକିଏ କଥାବାର୍ତ୍ତା କରିଗଲେ । ସଡ଼କ ପାଖରେ ସାଧାରଣ ଲୋକଙ୍କ ସହିତ ଓ ଜଣେ ରିକ୍ସାବାଲାଙ୍କ ସହ ମଧ୍ୟ ଦୁଇ ପଦ କଥାବର୍ତ୍ତା କରିଗଲେ ।

ଉପରଓଳି ମୁଁ ସୂତ୍ରଯଜ୍ଞ, ଗାନ୍ଧୀବିଚାର ଆଲୋଚନା, ଉପାସନା ଓ ସାଧାରଣ ସଭାକୁ ମଧ୍ୟ ଯାଇପାରିଲି ନାହିଁ । ବଣାଇରେ ଅନେକ ଦିନ ଶିକ୍ଷକ ଥିବା ଶ୍ରୀ ଭରତଚନ୍ଦ୍ର ମହାନ୍ତି ଉତ୍କଳ ନବଜୀବନ ମଣ୍ଡଳର ଦିନାକେତେ ସେକ୍ରେଟାରୀ ଥିଲେ । ସେ ମଳଦ୍ୱାରରେ କ୍ୟାନ୍ସର ରୋଗରେ ଅନେକ ଦିନୁ ଆକ୍ରାନ୍ତ ହୋଇ, ଏବେ କଟକ ଜେନେରାଲ ହସପିଟାଲରେ ଅପରେଶନ୍ ହୋଇ ପଡ଼ିଛନ୍ତି । ତାଙ୍କୁ ଟିକିଏ ଦେଖିବାକୁ ଗଲି । ଫେରି ଆସି, ମୁଁ ଏକାକୀ ସୂତ୍ରଯଜ୍ଞ କଲି । ବସାରେ ଆଉ କେହି ନ ଥିଲେ । ମୁଁ ଏକପ୍ରକାରେ ଜଗି ରହିଥିଲି ମଧ୍ୟ । ଗତ ୧୮ ଦିନର ଚିଠିପତ୍ର ଦେଖିଲି ଓ କେତେକ ଜରୁରୀ ପତ୍ରର ଉତ୍ତର ଦେଲି । ରାତିରେ କଞ୍ଚା ଚୂଡ଼ା ଓ ଭଜା ଚୂଡ଼ା ଗୁଣ୍ଡ, ପାଚିଲା କଦଳୀ ଖାଇଲି । ସେପ୍ଟେମ୍ବର ମାସର ମୋର ଡାଏରୀ (ମାସିକ କାର୍ଯ୍ୟ ବିବରଣୀ) ଓଡ଼ିଆରେ ଲେଖି, ଅଫିସକୁ ଆଜି ଦେଲି ।

୩.୧୦.୧୯୫୬

ଓଡ଼ିଶାର ସରକାରୀ ପ୍ରାଦେଶିକ ଭୂଦାନ ଯଜ୍ଞ ସମିତିର ସପ୍ତଦଶ ବୈଠକ ସମିତିର କାର୍ଯ୍ୟାଳୟରେ ସକାଳ ୯ଟାରେ ବସିଲା । ସଭାପତି ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ସଦସ୍ୟ ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତି, ସଦସ୍ୟ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ସଂପାଦକ ଶରତ୍ ଚନ୍ଦ୍ର ମହାରଣା ଏବଂ ବିଶେଷ ନିମନ୍ତ୍ରଣରେ ଶ୍ରୀଯୁକ୍ତ ଈଶ୍ୱରଲାଲ ବ୍ୟାସ, ଗୁଣନିଧି ମହାନ୍ତି, ରମା ଦେବୀ, ମନମୋହନ ଚୌଧୁରୀ, ଫକୀର ମିଶ୍ର, ସଚ୍ଚିଦାନନ୍ଦ ମହାନ୍ତି, ବୃନ୍ଦାବନ ଚନ୍ଦ୍ର ଜେନା ଓ ନୀଳକଣ୍ଠ ସେନ (ସୁଧାଂଶୁ ଶେଖର ଦାସଙ୍କ ଦ୍ୱାରା ପ୍ରେରିତ ) ଉପସ୍ଥିତ ଥିଲେ ।

ଓଡ଼ିଶା ସରକାର "ନବନିର୍ମାଣ'' (ଜମିବଣ୍ଟନ ପରେ ଭୂମିଗ୍ରହୀତାମାନଙ୍କୁ ବଳଦ, ବିହନ, ଜଳସେଚନ ଓ ଆବାଦୀ ପାଇଁ ) ପାଇଁ ଯେଉଁ ୨ ଲକ୍ଷ ୯୦ ହଜାର ଟଙ୍କା ଏ ବର୍ଷ ମଞ୍ଜୁର କରିଛନ୍ତି, ସେ ଟଙ୍କା ଠିକ୍ ଖର୍ଚ୍ଚ ହେଲା କି ନାହିଁ ଦେଖିବାକୁ ଆମର ଅବସର ନ ଥିବାରୁ ଓ ସେପରି ଯୋଗ୍ୟ ଲୋକ ଆମେ ପାଉ ନ ଥିବାରୁ, ଉକ୍ତ ସାହାଯ୍ୟ ଆଦୌ ନେବା ଅନୁଚିତ ବୋଲି ଶ୍ରୀଯୁକ୍ତ ଗୋପବାବୁଙ୍କର ସଫା ମତ ଜଣାଇଲେ ।

ବେସରକାରୀ ପ୍ରାଦେଶିକ ଭୂଦାନ ସମିତିରେ ସଂଯୋଜକ ହେବା ତ ଦୂରର କଥା, ମୁଁ ସଦସ୍ୟ ସୁଦ୍ଧା ହେବାକୁ ଚାହେଁ ନାହିଁ ଏବଂ ସରକାରୀ କମିଟିରେ ମଧ୍ୟ ରହିବାକୁ ଚାହେଁ ନାହିଁ ବୋଲି ମୁଁ ସଫା ଜଣାଇଲି । ମାତ୍ର ଉପସ୍ଥିତ ବ୍ୟକ୍ତିମାନେ ଏବଂ ଖାସ୍ କରି ଶ୍ରୀଯୁକ୍ତ ଗୋପବାବୁ, ମୁଁ ଉଭୟ ସମିତିରେ ସଂପାଦକ ରହେଁ କହିବାରୁ, ମୁଁ ବାଧ ହୋଇ ରହୁଅଛି ।

ପ୍ରସ୍ତାବିତ ସରକାରୀ ସମିତିରେ ନିମ୍ନଲିଖିତ ବ୍ୟକ୍ତିମାନେ ରହନ୍ତୁ ବୋଲି ସମସ୍ତେ ଏବଂ ଶ୍ରୀଯୁକ୍ତ ଗୋପବାବୁ ସ୍ଥିର କଲେ । ସର୍ବଶ୍ରୀ ସାଧୁଚରଣ ମହାନ୍ତି, ନନ୍ଦକିଶୋର ଦାସ, ବିଶ୍ୱନାଥ ପଟ୍ଟନାୟକ, ଫକୀର ମିଶ୍ର, ଶକ୍ତିଶେଖର ଦାସ, ମାଳତୀ ଚୌଧୁରୀ, ମନମୋହନ

ଚୌଧୁରୀ, ସୁଧାଂଶୁଶେଖର ଦାସ, ଶରତ୍‌ଚନ୍ଦ୍ର ମହାରଣା, ସଚ୍ଚିଦାନନ୍ଦ ମହାନ୍ତି, ଈଶ୍ୱରଲାଲ ବ୍ୟାସ, ତିଳେଶ୍ୱର ଗୌନ୍ତିଆ ।

ଉପରଓଳି କର୍ମୀ-ନିଯୁକ୍ତି ସବ୍ କମିଟିର ଓ ଅର୍ଥ ସବ୍‌କମିଟିର ବୈଠକ ହେଲା ।

ଆଜି ସକାଳେ ଭୂଦାନ କାର୍ଯ୍ୟାଳୟ-ସଂଲଗ୍ନ ଭୋଜନାଳୟର ସୁବ୍ୟବସ୍ଥା କିପରି ହେବ, ପାଳି କରି ମେନେଜର ହେବେ, ଆଜି କଥା ପଡ଼ିଲା । ବିଶିଷ୍ଟ ସେବକ (ନେତୃସ୍ଥାନୀୟ ଲୋକ)ଙ୍କ ପାଇଁ ଅନେକ ଅଧିକା କାର୍ଯ୍ୟ ପଡୁଛି - ଶ୍ରୀ ଜୟକୃଷ୍ଣ ବିଶ୍ୱାଳ କହିଲେ ଓ ବୃନ୍ଦାବନ ଜେନା ଏ ମାସର ମେନେଜର ହେବାକୁ ଅନିଚ୍ଛା ପ୍ରକାଶ କଲେ । ଏଥିରେ ଶ୍ରୀଯୁକ୍ତ ଗୋପବାବୁ ବିରକ୍ତ ହୋଇଗଲେ ଏବଂ ହଠାତ୍ ଓଲଟା ଜିଦ୍ ଧରିବା ପରି, କହିଲେ ଯେ ସେ ହୋଟେଲରୁ ଖାଦ୍ୟ ମଗାଇ ଖାଇବେ ଏବଂ ଏଠା ଭୋଜନାଳୟରେ ଖାଇବେ ନାହିଁ । ପରେ ଶାନ୍ତି ହୋଇଗଲେ ।

ଆଚାର୍ଯ୍ୟ ବିନୋବା ଭାବେ ଓଡ଼ିଶାରେ ଭୂଦାନ ପଦଯାତ୍ରା କରୁଥିବା ବେଳେ ତା ୨୬.୧.୧୯୫୫ ଠାରୁ ୩୦.୯.୧୯୫୫ ପର୍ଯ୍ୟନ୍ତ ମୁଁ ତାଙ୍କର ମୋଟ ୩୦ ତିରିଶଟି ମାତ୍ର ସନ୍ଧ୍ୟା ଉପାସନା-ପ୍ରବଚନ ଶୁଣିବାର ସୁଯୋଗ ପାଇଥିଲି ।

ତା ୨୯.୫.୫୨ ଠାରୁ ତା ୩୦.୯.୧୯୫୬ ପର୍ଯ୍ୟନ୍ତ ମୁଁ ମୋଟରେ ୨୯୫ ସ୍ଥାନରେ (ଅଧିକାଂଶ ଏ ସବୁ ମଫସଲ ଗାଁ) ୨୩୩ଟି ସଭାରେ ଭୂଦାନର ମୂଳକଥା, ଭୂମି-ବିତରଣ ଏବଂ ମାମୁଲି ସର୍ବୋଦୟ ବିଚାର ପ୍ରାୟ ୩୩,୬୭୫ ଲୋକଙ୍କୁ ଶୁଣାଇ ପାରିଅଛି ।

୪.୧୦.୧୯୫୬

ଏଠା ଭୋଜନାଳୟରେ ମୁଁ ତ କେବେହେଁ ରୋଷାଇ କରେ ନାହିଁ । ଅନ୍ୟ ପାଳି କାର୍ଯ୍ୟ ମଧ୍ୟ କେହି ଦିଅନ୍ତି ନାହିଁ, ମୋତେ ଅଧିକ ଖାତିର ଦେଖାଇ । ମୋ ନିଜ ଇଚ୍ଛାରେ ବାସନବର୍ତ୍ତନ କେବେ କେବେ ମାଜେ । ଆଜି ମଧ୍ୟ ତାହା ମାଜିବାରେ ସାହାଯ୍ୟ କଲି ।

ଉତ୍କଳ ଖଦୀ ମଣ୍ଡଳର ବୈଠକରେ ବିଶେଷ ନିମନ୍ତ୍ରଣ ପାଇ, ଆଜି ମୁଁ ଯୋଗ ଦେଲି । ମଣ୍ଡଳର ଆର୍ଥିକ ଅବସ୍ଥା, ଗ୍ରାମୋଦ୍ୟୋଗ ଖାଦ୍ୟ ପଦାର୍ଥ କଟକରେ ବିକ୍ରୟ କରିବା, ସୂତାଞ୍ଜଳି ବିଷୟ ଆଦି ଚର୍ଚ୍ଚା ହେଲା ।

ଖରାବେଳେ ଆଜି ସୂତ୍ରଯଜ୍ଞ ଆରମ୍ଭ ହେଲା । ପ୍ରତିଦିନ ଅଧଘଣ୍ଟାଏ ଲେଖାଁଏ ଏହିପରି ହେବ । ମୋର ବଳଣା ନ ଥିବାରୁ, ମୁଁ ନିଜର କପା ବାଛିଲି । ଅଧଘଣ୍ଟାଏ "ଭୂଦାନ ଯଜ୍ଞ" ହିନ୍ଦୀ ପତ୍ରିକାରୁ ମଧ୍ୟ ପଢ଼ାଗଲା । ରାତି ୯ଟା ପର୍ଯ୍ୟନ୍ତ ଅଫିସର ଚିଠିପତ୍ର ଲେଖିଲି ।

୫.୧୦.୧୯୫୬

ସକାଳେ ତା ୩.୧୦.୧୯୫୬ ର ଭୂଦାନ ସମିତି ବୈଠକର ବିବରଣୀ ଲେଖିଲି ।

ତତ୍‌ପୂର୍ବରୁ ଭୋର ଶେଖବଜାର ଯାଇ, ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କୁ ଦେଖା କରି ଟେରଣ୍ଡାକଟା-ନିବାସୀ ଶ୍ରୀ ଦୀନବନ୍ଧୁ ପାତ୍ରଙ୍କୁ ଆର୍ଥିକ ସାହାଯ୍ୟ କଥା ଜଣାଇଆସିଲି ।

ଖରାବେଳେ କଟକ ଜେନେରାଲ ହସପିଟାଲକୁ ବ୍ୟାସଜୀ, ଫକୀର ମିଶ୍ର ଓ ମୁଁ ଯାଇ ଭରତଚନ୍ଦ୍ର ମହାନ୍ତିଙ୍କୁ ଓ 'ଡ଼ଗର'ର ସଂପାଦକ ଲେଖକ ନିତ୍ୟାନନ୍ଦ ମହାପାତ୍ରଙ୍କୁ ଦେଖିଆସିଲୁ । ନିତ୍ୟାନନ୍ଦ ବାବୁଙ୍କ ସହ ଭଲ ଆଲୋଚନା ହେଲା । ଦେହ ଠାରୁ ଆତ୍ମାକୁ ଅଲଗା ମନେ କରି, ଚଳିବାର କଥା ସେ କହିଲେ । ସକ୍ରେଟିସ୍‌ଙ୍କର କଥା ମଧ୍ୟ ଉଦାହରଣ ସ୍ୱରୂପ ପଡ଼ିଲା । ନିତ୍ୟାନନ୍ଦବାବୁ କହିଲେ ଯେ ଆମ ମନ ସମୟରେ କୁରୁଚିପୂର୍ଣ୍ଣ ବିଷୟ ଭାବୁଥିଲେ ହେଁ, ତାକୁ (ସେହି ବହୁ ଦିନର ମନ୍ଦ ଅଭ୍ୟାସ ବା ମନ୍ଦ ସଂସ୍କାରକୁ) ଅତିକ୍ରମ କରି ଆମେ ମହତ୍ତର ବିଷୟ ଭାବିବା ଉଚିତ । ପିଲାମାନଙ୍କ ପାଇଁ ସେ ସର୍ବୋଦୟ ବିଚାରରେ ସାନ ସାନ ଗଳ୍ପ ଓ ପଦ୍ୟ ଲେଖୁଛନ୍ତି । ଯୋଡ଼ିଏ, ତିନୋଟି ନମୁନା ଶୁଣାଇଲେ । ସନ୍ଧ୍ୟାରେ ଅଫିସର ମାମୁଲି ଚିଠିପତ୍ର କାର୍ଯ୍ୟ କଲି ।

୭.୧୦.୧୯୫୬

ଭୋର ବାସନ ମାଜିବାରେ ସାହାଯ୍ୟ କଲି । ଗାଧୋଇ ସାରି, ମୁଁ ଏଠାରେ ସକାଳେ ଜଳଖିଆ କରୁନାହିଁ । ଭୂଦାନ କାର୍ଯ୍ୟରେ ମଫସଲରେ ବୁଲିବା ବେଳେ ଜଳଖିଆ କରୁଥିଲି । କାରଣ ଚାଲିବାକୁ ପଡୁଥିଲା, ପଥଶ୍ରମରେ ହଜମ ହେଉଥିଲା । ଏଠାରେ ତ ଖାଲି ବସିବା କାର୍ଯ୍ୟ । ଅମୃତ ବଜାର (ଅମୃତ ବଜ୍ରାର) ଖବରକାଗଜର ଦୁର୍ଗାପୂଜା ସଂଖ୍ୟା ୫/୧୦ ମିନିଟ ମାତ୍ର ପଢ଼ିଲି । ଶ୍ରୀ ଜୟକୃଷ୍ଣ ବିଶ୍ୱାଳଙ୍କର ପୁତୁରା ଶ୍ୟାମସୁନ୍ଦର "ଜୀବରାମ ବାଳାଶ୍ରମ" ଭଦ୍ରକରୁ କାଲି ଆସିବ । ସେ ଭୂଦାନ କାର୍ଯ୍ୟ କରୁ, ମୋର ଆପତ୍ତି ନାହିଁ, ବରଂ ସୂଚନା ଅଟେ । ତାଙ୍କୁ ଏହା କହିଲି ।

୯.୧୦.୧୯୫୬

ସକାଳେ ଭୂଦାନ ସମିତିର ହିସାବ ଯାଞ୍ଚ କଲି । Journal entries . 516-26, 156-356, 101-155, 44-100, 357-458, ମଝିରେ ମଧ୍ୟାହ୍ନଭୋଜନ ଓ ଖରାବେଳେ ଘଣ୍ଟାଏ ଶୋଇଲି ।

ଉପରଓଳି ଅଫିସର ଚିଠିପତ୍ର ଲେଖିଲି । ସେପ୍ଟେମ୍ବର ମାସର ଆୟବ୍ୟୟ ଫର୍ଦ୍ଦ ଗାଂଧୀସ୍ମାରକ ନିଧି (କେନ୍ଦ୍ର), ନୂଆ ଦିଲ୍ଲୀକୁ ଓ ସର୍ବସେବା ସଂଘ, ଗୟାକୁ ଦସ୍ତଖତ କରି ପଠାଇଲି ।

ଅଫିସରେ ଏହି ମାମୁଲି କାମରେ ମୋର ସବୁ ସମୟ, ଚିନ୍ତା ଓ ଶକ୍ତି ଯାଉଅଛି । ନଷ୍ଟ ହେଉଛି ବୋଲି ମନେ କରେ । ମାତ୍ର ଗୁରୁଜନମାନେ ଓ ଜାଣିବାଶୁଣିବା ସହକର୍ମୀମାନେ

ଏହାର ଅନ୍ୟ ବ୍ୟବସ୍ଥା କରିବାକୁ ଏକା ବେଳେକେ ପରାଙ୍ମୁଖ । କେହି ଦାୟିତ୍ୱ ନେବାକୁ ରାଜୀ ନୁହନ୍ତି । ଏଡ଼ିବାର ଏକ ବାଟ ଏହା ନୁହେଁ ତ ଆଉ କଅଣ ?

୯.୧୦.୧୯୫୬

ଏ ୨ /୩ ଦିନ ହେଲା ମୋର ୨ କାନ ଭିତର ଖୁବ୍ ଠେଲି ହେଉଛି । ବାୟୁର ପ୍ରକୋପ ହେତୁ ? ୧୯୪୭ରେ nervous break down ପୂର୍ବର ଅବସ୍ଥା ପରି ହେବ କି !! ହେଲେ ସୁଦ୍ଧା, ଅନ୍ୟମାନେ ମୋତେ ତ୍ରାହି ଦେବାକୁ ନାରାଜ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ (କଂଗ୍ରେସ ଦଳର ଆସେମ୍ବ୍ଲିରେ ନେତୃତ୍ୱରୁ) ଶ୍ରୀଯୁକ୍ତ ନବବାବୁ ଇସ୍ତଫା ଦେଲେ । ଗତ କାଲି ଓଡ଼ିଶା ବିଧାନସଭାର ବୈଠକ ଭୁବନେଶ୍ୱରରେ ଶେଷ ହେଲା ।

୧୦.୧୦.୧୯୫୬

ଖୁଡ଼ୀ ଶ୍ରୀଯୁକ୍ତା ମାଳତୀ ଦେବୀ, ତିନୁ ଓ ପରେ ଦାଦା (ନବବାବୁ) ଏଠାକୁ ଖୁସିରେ ବୁଲିଆସିଥିଲେ । କୋରାପୁଟ ଜିଲ୍ଲାର କେତେକ ଗ୍ରାମଦାନ ଗାଁରେ ଏବେ ସୁଦ୍ଧା ଆପତ୍ତି ଅଛି ଓ ଠିକ୍ ଯାଞ୍ଚ କରାଯାଇ ଗ୍ରାମଦାନ ଘୋଷଣା ହୋଇନାହିଁ ବୋଲି ଖୁଡ଼ୀ କହିଲେ । ଆଚାର୍ଯ୍ୟ ମହାଶୟଙ୍କର ଆଜି ଟିକିଏ ଇନ୍‌ଫ୍ଲୁଏଞ୍ଜା ହୋଇଅଛି – ଡାକ୍ତର ଶରତ୍‌ଚନ୍ଦ୍ର ମିଶ୍ର ତାଙ୍କ ବସାରେ ଦେଖି କହିଲେ ।

ସରକାରୀ ଭୂଦାନ ସମିତିରୁ ଶ୍ରୀଯୁକ୍ତ ଗୋପବାବୁ ହଟିଯିବେ ବୋଲି ମୋତେ ଚିଠି ଲେଖିଛନ୍ତି । ତାଙ୍କୁ ଉତ୍ତର ଦେଲି ଯେ ମୁଁ ସମିତିର ବୈଠକ ଡକାଉଅଛି । ସେ ବିନୋବାଜୀଙ୍କୁ ମଧ୍ୟ ତାହା ଜଣାଇବେ କି ? – ମୁଁ ତାଙ୍କୁ ଚିଠିରେ ଲେଖିଲି ।

୧୫.୧୦.୧୯୫୬

ଲୋକ ସେବକ ମଣ୍ଡଳର ବିଧାନର ନକଲ ମିଳାଇଲି । ସନ୍ଧ୍ୟା ପରେ ଶ୍ରୀ ସୁଧୀରଚନ୍ଦ୍ର ଘୋଷଙ୍କ ସହିତ ମାସୀ, ଚୁନୀ, ମୁଁ ଓ ଆମ ଅଫିସର ୪ ଜଣ ସହକର୍ମୀ, ହଳଦୀବସନ୍ତର ନୃସିଂହ ଚରଣ ସାମଲ, ବଂଶୀ, କଟକ ଟାଉନ୍‌ର "ଶହୀଦ୍‌ଭବନ"ରେ "ଯୁଗେ ଯୁଗେ ଉତ୍କଳ" – ମୂର୍ତ୍ତି ଓ ଫଟୋ ସାହାଯ୍ୟରେ ଉତ୍କଳ ଇତିହାସର ପ୍ରଧାନ ଘଟଣାଗୁଡ଼ିକ ପ୍ରଦୀପିତ ହୋଇଅଛି – ଦେଖିଲୁ । ଏହା ଓଡ଼ିଶା ସରକାରଙ୍କ ପକ୍ଷରୁ ୨ ମାସ ହେଲା ପ୍ରଦର୍ଶିତ ହେଉଅଛି । ପ୍ରାୟ ୭ ହଜାର ଟଙ୍କାର ଟିକଟ ବିକ୍ରି ହେଲାଣି ଏବଂ ୫୬ ହଜାର ଲୋକ ଦେଖିଲେଣି । ସାଧାରଣ ଲୋକଙ୍କୁ ଓ ପିଲାମାନଙ୍କୁ ଇତିହାସର କଥା ଶିଖାଇବାକୁ ବେଶ୍ ଭଲ ହୋଇଅଛି ।

୧୬.୧୦.୧୯୫୬

ଦିନ ଟ୍ରେନ୍‌ରେ ଶ୍ରୀ ବୃନ୍ଦାବନ ପାତ୍ରଙ୍କ ସହ କଟକରୁ ମୁଁ ଖୋର୍ଦ୍ଧାରୋଡ୍‌କୁ ଓ ସେଠାରୁ

ସର୍ଭିସ୍ ମୋଟର ବସ୍‌ରେ ବାଘମାରି, ବେଗୁନିଆ, ନୂଆଗଡ଼ ଦେଇ ଦଶପଲ୍ଲାକୁ ରାତି ୮ଟାରେ ପହଞ୍ଚିଲି । ରାମଚନ୍ଦ୍ରପୁରରେ ୧୯୪୧ ରୁ ୧୯୪୫ ପର୍ଯ୍ୟନ୍ତ ମୌଳିକ ଶିକ୍ଷାରେ ଶିକ୍ଷକତା କରିଥିବା ଶ୍ରୀ ମଧୁସୂଦନ ମିଶ୍ର (ଘର ଜଗତ୍‌ସିଂହପୁର ଥାନାର ନାଳୀବରରେ ଏବଂ ଏବେ ଟାକରା ଆଶ୍ରମ ସ୍କୁଲର ହେଡ଼୍‌ମାଷ୍ଟର) ମଧ୍ୟ ଆମ ସହିତ ଆସିଲେ । ଦଶପଲ୍ଲାର ବର୍ତ୍ତମାନ ରାଜା ଶ୍ରୀ କିଶୋର ଚନ୍ଦ୍ର ଭଞ୍ଜ ଓଡ଼ିଶାର କଂଗ୍ରେସ ସରକାରରେ ଶିକ୍ଷମନ୍ତ୍ରୀ ୧୯୫୨ ଠାରୁ ଅଛନ୍ତି । ତାଙ୍କର ମ୍ୟାନେଜର ଶ୍ରୀ ରମେଶ ଚନ୍ଦ୍ର ଜେନାଙ୍କ ସହିତ ଦେଖା ହେଲା ଓ ରାତିରେ ଆମେ ଅତିଥିଶାଳାରେ ରାଜବାଟି ବାହାରେ ଏକ ଛୋଟ ଚାଳଘରେ ରହିଲୁ ।

୧୭.୧୦.୧୯୫୬

ସକାଳେ ଚୂଡ଼ା, ଗୁଡ଼, ନଡ଼ିଆ, ଜଳଖିଆ କରି, ବୃନ୍ଦାବନ ବାବୁଓ ମୁଁ ଦଶପଲ୍ଲାଗଡ଼ରେ ସରପଞ୍ଚ ଶ୍ରୀ ଜୟକୃଷ୍ଣ ମିଶ୍ରଙ୍କ ସହ ୨ ମିନିଟ ଦେଖାକରି, ଯୁବକ ଶ୍ରୀ ଉଦୟନାଥ ଦାସ (ପାଠାଗାରର ପରିଚାଳକ)ଙ୍କ ସହ କଥାବାର୍ତ୍ତା କରି, ଚାଲି କରି ୧୪ ମାଇଲ ଦୂର ଗଣିଆକୁ ଘ ୪.୪୦ ମିନିଟ୍ ସମୟ ମଧ୍ୟରେ ଖରାବେଳେ ୧୨ଟା ୪୦ ମିନିଟ୍‌ରେ ପହଞ୍ଚିଲୁ । ବାଟରେ ଡ଼ିହଗାଁ, ମଧଖଣ୍ଡ, ଘୋଳାହାଣ୍ଡି, ଆଡ଼କଟା, ଧୁଆମଡ଼ା, କରଡ଼ାପଡ଼ା, ପ୍ରଧାନ ଗାଁଗୁଡ଼ିକ ପଡ଼ିଲା । ଆମ ସାଙ୍ଗରେ ସାଧୁ ଭାରୁଆ ଆସିଥିଲେ । ବୃନ୍ଦାବନ ବାବୁଙ୍କୁ ମୋର ମତାମତ ଭୂଦାନ କାର୍ଯ୍ୟ ବିଷୟରେ କହିଲି ।

୧୮.୧୦.୧୯୫୬

ସକାଳେ ବୃନ୍ଦାବନ ଜେନାଙ୍କୁ (କଟକକୁ) ଓ ଏଲାହାବାଦକୁ ଶ୍ରୀ ସୁରେଶ ରାମଭାଇଙ୍କୁ ଚିଠି ଲେଖିଲି । ଗଣିଆ ଡାକବଙ୍ଗଳାରେ ଆମର (ଭୂଦାନ କର୍ମୀମାନଙ୍କର) ବୈଠକ ହେଲା । ନିଜ ନିଜର ଅଭିଜ୍ଞତା କହିଲେ । ଗଣିଆରୁ ୨ ମାଇଲ ଦୂର ପତଣ୍ଡା ଗ୍ରାମବାସୀ ଶ୍ରୀ ଜଗନ୍ନାଥ ପଣ୍ଡା ଏ ଅଞ୍ଚଳର ଜଣେ ବଡ଼ ଜମିମାଲିକ ଏବଂ କଂଗ୍ରେସ ଲୋକ । ସେ ଆଲୋଚନା ବେଳେ ଉପସ୍ଥିତ ଥିଲେ । ସେହି ଗ୍ରାମର ଶ୍ରୀ ହରେକୃଷ୍ଣ ପଣ୍ଡା ଏଠା ବେଲଘଡ଼ା ମଧ୍ୟ ଇଂରାଜୀ ସ୍କୁଲର ଶିକ୍ଷକ ଓ ତାଙ୍କର ୧୧/୧୨ ବର୍ଷର ପୁଅ ମହେଶ୍ୱର ମଧ୍ୟ ଉପସ୍ଥିତ ଥିଲେ ।

ଉପରଓଳି ୫ଟା ବେଳେ ହାଟପଡ଼ିଆରେ ସାଧାରଣ ସଭା ହେଲା । ଶ୍ରୀ ରମେଶଚନ୍ଦ୍ର ଜେନା ସଭାପତି ହୋଇଥିଲେ । ଦଶପଲ୍ଲାଗଡ଼ରୁ ଯୁବକ ଉଦୟନାଥ ଦାସ, ମଧଖଣ୍ଡରୁ ସୋମନାଥ ଦାସ (ସରକାରଙ୍କର ପ୍ରଚାର ବିଭାଗର କର୍ମୀ, ଗଣିଆର ବିଦ୍ୟାଧର ଦାସ, ପ୍ରଭୃତି ମୋଟରେ ପ୍ରାୟ ୨୦୦ ଲୋକ ସଭାରେ ଯୋଗ ଦେଇଥିଲେ । କସ୍ତୁରିଚରଣ ନାୟକ, ହୋତା ମହାଶୟ ଓ ମୁଁ ସଭାରେ କିଛି କହିଥିଲୁ । ବୃନ୍ଦାବନ ପାତ୍ର ରିପୋର୍ଟ ପାଠ କରିଥିଲେ । ସଭାଶେଷ ଆଡ଼କୁ ଉଦୟନାଥ ଦାସ ଅଭିଯୋଗ କଲେ ଯେ ରମେଶବାବୁ ଦଶପଲ୍ଲାର ଭୂଦାନ ଅଭ୍ୟର୍ଥନା ସମିତିକୁ

ସର୍ବଦଳୀୟ ନ କରି, କଂଗ୍ରେସ ଦଳୀୟ କରିବାକୁ ସମସ୍ତଙ୍କ ଠାରୁ ସହଯୋଗ ମିଳିଲା ନାହିଁ । ବୃନ୍ଦାବନ ବାବୁ କହିଲେ ଏହା ଭୁଲ କଥା; ସଭାକୁ ସବୁ ଦଳର ଲୋକେ ଆସିଥିଲେ ।

ସଭାରେ ମୁଁ ନିବେଦନ କରିଥିଲି, ଏହି କାର୍ଯ୍ୟରେ ସମସ୍ତେ ଆସନ୍ତୁ । ଏହା ସମାଧାନର ବାଟ । ଏଥିରେ ସଂଘର୍ଷ ନାହିଁ । ଏହା ସମୃଦ୍ଧି-ବଣ୍ଟନ; ଏଥିରେ ଦାରିଦ୍ର୍ୟ ବଣ୍ଟନ ନାହିଁ ।

୧୯.୧୦.୧୯୫୬

କୁମାରପୂର୍ଣ୍ଣିମା ସକାଳେ ଗଣିଆ inspection bungalow ରେ ସର୍ବଶ୍ରୀ ରମେଶଚନ୍ଦ୍ର ଜେନା, ବିଦ୍ୟାଧର ଦାସ, ମଦନମୋହନ ସରଦାର ସିଂହ, ଗଦାଧର ମିଶ୍ର (ଗଣିଆର ସରବରାକାର)ଙ୍କ ସହ ଭୂଦାନରେ ମଧ୍ୟବିତ୍ତ ଲୋକ ଓ ବର୍ତ୍ତମାନ ଗ୍ରାମ ପରିଚାଳନକମାନଙ୍କର କର୍ତ୍ତବ୍ୟ ବିଷୟରେ ମୁଁ କଥାବାର୍ତ୍ତା କଲି । ମଧ୍ୟାହ୍ନଭୋଜନ ପରେ, ଆମ୍ଭେମାନେ (ଭୂଦାନ କର୍ମୀମାନେ) ଚାଲି କରି ୭ ମାଇଲ ଦୂର ଜଗନ୍ନାଥ ପ୍ରସାଦ ଗ୍ରାମକୁ ଆସିଲୁ । ଆଜି ପୂର୍ଣ୍ଣିମା ହେତୁରୁ ଏଠାରେ ପିଲାମାନେ କଇଁଫୁଲ ଦେଇ ପୂଜା କରୁଥିଲେ ଏବଂ ରୁଦ୍ର-ତାଣ୍ଡବ ଅଭିନୟ କରିବାକୁ ଯୁବକମାନେ ବ୍ୟସ୍ତ ଥିଲେ । ଜଗନ୍ନାଥମନ୍ଦିର ଆଗରେ ଆମେ ଅଳ୍ପ ୨୦/୨୫ ମିନିଟ ପାଇଁ ଭୂଦାନ କଥା କହିଦେଲୁ । ଏ ଗ୍ରାମର ବୃଦ୍ଧ ଶ୍ରୀ ପତିତ ପାବନ ଶତପଥି ଲବଣ ସତ୍ୟାଗ୍ରହ ବେଳେ କେନ୍ଦ୍ରାପଡ଼ା ଆଡ଼େ କାର୍ଯ୍ୟ କରିଥିଲେ ।

୨୦.୧୦.୧୯୫୬

ଭୋର ଆମ୍ଭେମାନେ ଚାଲି କରି ୨ ମାଇଲ ଦୂର ଗୋବିନ୍ଦପୁରକୁ ଆସି ସଡ଼କପାଖ ଆମ୍ବଗଛ ମୂଳେ ଆସ୍ଥାନ ଜମାଇଲୁ । ଘୋଳାହାଣ୍ଡି ଗ୍ରାମର ଶ୍ରୀ ବଂଶୀଧର ମହାରଣାଙ୍କ ଘରେ ଭାତ ଖାଇଲୁ । ଏ ୨ଗାଁ ମଧ୍ୟରେ ଆଗରୁ ମନୋମାଳିନ୍ୟ ଥିବାରୁ ଘୋଳାହାଣ୍ଡିର କୌଣସି ଲୋକ ଆମର ଆଲୋଚନାରେ ଯୋଗ ଦେବାକୁ ଆସିଲେ ନାହିଁ ।

ଏଠାରୁ ୨ ମାଇଲ ଦୂର ମଧଖଣ୍ଡରେ ଆମ୍ଭେମାନେ ସନ୍ଧ୍ୟାରେ ଭୂଦାନ-ସଭା କଲୁ । ହୋତା ମହାଶୟ ତାଙ୍କର ଭାଷଣ ପରେ ଜଣେ ଜମିମାଲିକଙ୍କର ପ୍ରଶ୍ନର ଉତ୍ତର ଦେବାକୁ ଯାଇ, ଭାଗଚାଷ ଆଇନର କଥା ପରିଷ୍କାର କହିଦେବାରୁ, ମଧଖଣ୍ଡର ଭାଗଚାଷ ଲଗାଇଥିବା ଜମିର ମାଲିକମାନେ ଭାରୀ ଚମକି ଉଠିଲେ । ଆଗରୁ ସ୍ଥିର ହୋଇଥିବା ମହାନ୍ତିପଲ୍ଲୀ ଓ ମଦନପୁର ଗ୍ରାମର ଲୋକେ ଆସି, ଏହି ସଭାରେ ସେ ୨ ଗ୍ରାମର ସମଗ୍ର ଜମିଦାନ ଘୋଷଣା କଲେ । ବୃଦ୍ଧ ଶ୍ରୀ ଗୋପୀନାଥ ଦାସ ସଭାପତି ହୋଇଥିଲେ ।

ରାତିରେ ସଭା ସାରି, ପଣ୍ଡିତ କୃପାସିନ୍ଧୁ ହୋତା, ବୃନ୍ଦାବନ ପାତ୍ର, କସ୍ତୁରିଚରଣ ନାୟକ, ଶ୍ରୀଧର ଚୌଧୁରୀ ଚାଲି କରି ଦଶପଲ୍ଲାଗଡ଼ ଅଭିମୁଖେ ଆସିଲୁ । ଆମେ ମଧ୍ୟବର୍ତ୍ତୀ ୩

ଜଣ ଦଶପଲ୍ଲା ଡାକବଙ୍ଗଳାରେ ଶୋଇଲୁ । ବାକୀ ହୋତା ମହାଶୟ ଓ ଶ୍ରୀଧର ବାବୁ ଡିହଗାଁରେ ରହିଗଲେ ।

ପରେ ଆମେ ଶୁଣିଲୁ ଯେ ଗୋପୀନାଥ ବାବୁ ଭାଗଚାଷ କଥାରେ ବ୍ୟସ୍ତ ହୋଇ ତା ୨୧.୧୦. ଭୋର ଦଶପଲ୍ଲାଗଡ଼କୁ ଆସି ରମେଶଚନ୍ଦ୍ର ଜେନା, ରାମଚନ୍ଦ୍ର ମିଶ୍ର ଆଦିଙ୍କୁ ଭୂଦାନ କର୍ମୀଙ୍କର ବିରୋଧରେ କହିଗଲେ ।

୨୧.୧୦.୧୯୫୬

ଶ୍ରୀ ମଧୁସୂଦନ ମିଶ୍ର, ବୃନ୍ଦାବନ ପାତ୍ର, କଣ୍ଡୁରିଚରଣ ନାୟକ ଓ ମୁଁ ଦଶପଲ୍ଲାଗଡ଼ରୁ ଚାଲିକରି ରଥଗାଁ, ପଥରପଞ୍ଝା ଦେଇ ଟାକରା ଆଶ୍ରମ ସ୍କୁଲକୁ ଗଲୁ । ମଧୁବାବୁ ସେଠାରେ ପ୍ରଧାନ ଶିକ୍ଷକ ଅଛନ୍ତି । ତାଙ୍କର ଆତିଥ୍ୟରେ ଆମେ ରହିଲୁ । ସହକାରୀ ରାଜକିଶୋର ଦାସ, କୀର୍ତ୍ତନବିହାରୀ ଆଦି ଏଗାର ଜଣ ଅଛନ୍ତି । ସନ୍ଧ୍ୟା ପରେ ଟାକରା ଗାଁକୁ ଯାଇ ଗ୍ରାମବାସୀମାନଙ୍କ ସହ ଭୂଦାନ ବିଷୟରେ କଥାବାର୍ତ୍ତା କଲୁ ।

୨୨.୧୦.୧୯୫୬

ସକାଳେ ଟାକରାରୁ ବୁରୋସାହି ଦେଇ ୪ ମାଇଲ ଦୂର ତୀଳାବାଡ଼ି ଗ୍ରାମକୁ ଗଲୁ । ସେଠାର ପ୍ରଧାନ ଲୋକ ଶ୍ରୀ ଅନନ୍ତ କୁଅଁର (କନ୍ଧ ଜାତିର ଲୋକ) ଗତ ନିର୍ବାଚନରେ ଦଶପଲ୍ଲା ରାଜାଙ୍କର ବିରୋଧରେ ଠିଆ ହୋଇଥିଲେ । ଅକୃତକାର୍ଯ୍ୟ ହୋଇଥିଲେ । ଏଠାର ସେବାଶ୍ରମ ସ୍କୁଲରେ ଏ ଗାଁର ଓ ମୁଟୁକୁଳିର ଓ ମଞ୍ଜାରି ଗ୍ରାମର ସମଗ୍ରଦାନ ଅଳ୍ପଦିନ ପୂର୍ବେ ହୋଇଛି । ତିଳାବାଡ଼ିର ଲୋକଙ୍କ ସହ ଆମେ କଥାବାର୍ତ୍ତା ହୋଇ, ମଧ୍ୟାହ୍ନକୁ ଟାକରା ଫେରିଲୁ ।

ଅପରାହ୍ନରେ ଆଶ୍ରମ ସ୍କୁଲର ପିଲା ଓ ଗୁରୁଜୀମାନଙ୍କ ସହ ଭୂଦାନ ବିଷୟରେ କଥାବାର୍ତ୍ତା ହେଲୁ ।

୨୩.୧୦.୧୯୫୬

ସକାଳେ ଟାକରା ଆଶ୍ରମ ସ୍କୁଲରେ ଛାତ୍ରମାନେ ମୋତେ ପତାକା ଉତ୍ତୋଳନ କରିବାକୁ କହିଲେ । ମୁଁ ଅନୁରୋଧ ରକ୍ଷା କଲି । ବିଶ୍ୱବିଜୟ କର୍ କେ ଦେଖ୍‌ଲାଙ୍ଗେ'' ପରିବର୍ତ୍ତରେ "ବିଶ୍ୱମୁଗ୍‌ଧ'.. ହେବ ବୋଲି ମୁଁ ବୁଝାଇଦେଲି । ଦେଶ-ଧର୍ମ...ର ଅର୍ଥ ମୁଁ ବୁଝାଇଦେବାକୁ ଚେଷ୍ଟା କଲି ।

ଜଳଖିଆ (ରୋଟି ଓ ଡ଼ାଲମା) ବହୁତ ଖାଇ, ଆମେ ୩ ଜଣ ଚାଲି କରି ଦଶପଲ୍ଲାଗଡ଼କୁ ଆସିଲୁ । ସେଠାରେ ଶ୍ରୀ ଉଦୟନାଥ ଦାସଙ୍କ ସହ ଦେଖା କରି, ସର୍ଭିସ୍ ବସ୍‌ରେ ୧୧ ମାଇଲ ଦୂର ନୂଆଗାଁକୁ ଆସିଲୁ । ସନ୍ଧ୍ୟାରେ ଗାଁ ଭିତରେ ଭୂଦାନ ସଭା ହେଲା । ମଧ୍ୟବିତ୍ତ ଓ ବଡ଼

ଜମିମାଲିକମାନଙ୍କର ଏହି ଆନ୍ଦୋଳନରେ କିପରି ଶାନ୍ତି, ସମାଧାନ ରହିଛି, ମୁଁ ସଂକ୍ଷେପରେ ବୁଝାଇଦେବାକୁ ଯତ୍ନ କଲି ।

ନୂଆଗାଁ ପୋଲିସ ଥାନାର ପଛ ପାଖରେ ୧୯୪୨ର ଆନ୍ଦୋଳନରେ ପୋଲିସ ଗୁଳିରେ କଷ୍ଟୀ ଡାକୁଆ (କନ୍ଧ ଲୋକ)ଙ୍କର ପ୍ରାଣ ଯାଇଥିଲା ଓ ୧୦/୧୫ ଜଣ ଲୋକ ଆଘାତ ପାଇଥିଲେ । ସେମାନଙ୍କର ମଧ୍ୟରୁ ଜଣଙ୍କର ଏ ପର୍ଯ୍ୟନ୍ତ ଘା ପୂରା ଶୁଖିନାହିଁ ବୋଲି ଶୁଣିଲୁ ।

୨୪.୧୦.୧୯୫୬

ସକାଳେ ଶ୍ରୀ କସ୍ତୁରି ଚରଣ ନାୟକ ନୂଆଗାଁ ଶହୀଦପୀଠରୁ ଘାସ ଛେଲି, ସଫା କରି ଶ୍ରୀ ଅନନ୍ତ ଚରଣ ପଣ୍ଡାଙ୍କ ସହ ସୂତ୍ରଯଜ୍ଞ କଲେ । ଶ୍ରୀ ବୃନ୍ଦାବନ ପାତ୍ର ଓ ମୁଁ ଆମର ବିଛଣା କାନ୍ଧରେ ପକାଇ, ଚାଲି କରି ୮ ମାଇଲ ଦୂର ଭିରୁଡ଼ା ଗ୍ରାମକୁ ଆସିଲୁ । ଭିରୁଡ଼ାର ପ୍ରଧାନ ଧନୀ ଓ ବିଚାରବାନ୍ ଲୋକ ଶ୍ରୀ ବଳଭଦ୍ର ସାମନ୍ତ କଟକ ଯାଇଥିଲେ । ତାଙ୍କର ବଡ଼ ପୁଅ ବୃନ୍ଦାବନ ସାମନ୍ତ ଆମକୁ ଆତିଥ୍ୟ ଦେଖାଇଲେ । ସେ ଏବେ ରାସ୍ତାର କଣ୍ଟ୍ରାକ୍ଟରି ନେଉଛନ୍ତି ।

ଅପରାହ୍ନରେ ଏଠାର ୧୦/୧୨ ଜଣ ଗ୍ରାମବାସୀଙ୍କୁ ବୃନ୍ଦାବନ ବାବୁ ସଂକ୍ଷେପରେ ଭବିଷ୍ୟତ ଗ୍ରାମ-ରଚନା କଥା ବୁଝାଇଲେ । ସାମନ୍ତ କଟକରୁ ଫେରିଲେ, ଗ୍ରାମବାସୀମାନେ ଏ କଥା ତାଙ୍କଠାରେ ପକାଇବେ ବୋଲି କହିଲେ ।

କଟକ ଭୂଦାନ ଅଫିସକୁ କେତେକ ପୁରୁଣା ଚିଠି ପଠାଇଲି ଓ ଲେଖିଲି । ଉପରଓଳି ବୃନ୍ଦାବନ ପାତ୍ର ମୁଁ ଭିରୁଡ଼ାରୁ ୧ ମାଇଲ ଦୂର ମହୀପୁରକୁ ଗଲୁ । ଏଠାର ଧନି ଓ ଭୂଦାନ ସପକ୍ଷରେ ଯୁକ୍ତି ଦେଖାଇବା ବ୍ୟକ୍ତି ମଦନମୋହନ ଦାସ (କରଣ, ବୟସ ପ୍ରାୟ ୪୦ ବର୍ଷ) ତାଙ୍କର ଲେଖାଯୋଖା ଭାଇ ଜଗନ୍ନାଥ ଦାସ (ସରପଞ୍ଚ) ପ୍ରଭୃତିଙ୍କ ସହ ସନ୍ଧ୍ୟାପରେ ଆଲୋଚନା ହେଲା । ମୋହରୀର "ନିଆଖୁଣ୍ଟା" କାଗଜରୁ ମିଥ୍ୟା ଅପପ୍ରଚାରରୁ କହିବା ପରି କଥା ଉଠାଇଲେ । ମୁଁ ପ୍ରକୃତ କଥା କହିଦେଲି ।

୨୫.୧୦.୧୯୫୬

ଗତ କାଲି ଆମ୍ଭେମାନେ ମହୀପୁର ମଧ ଇଂରାଜୀ ସ୍କୁଲର ଘରେ ଥିଲୁ । ଗତ ରାତିରେ ମଦନମୋହନ ଦାସଙ୍କ ଘରେ ଭାତ ଖାଇଥିଲୁ । ଆମ ସହ ବାହାଡ଼ାଝୋଲାର ଜଣେ ପ୍ରଧାନ ସାଧାରଣ-ସେବକ ଶ୍ରୀ ସୁଦର୍ଶନ ପୃଷ୍ଟି କାଲି ଥିଲେ । ଗଡ଼ଜାତ ଆନ୍ଦୋଳନରେ ୧୯୩୮ ଠାରୁ ଏବଂ ବିଶେଷରେ ୧୯୪୨ ରେ ଏ ମହାଶୟ ବହୁତ କାର୍ଯ୍ୟ ପ୍ରଜାମାନଙ୍କ ପକ୍ଷରୁ କରିଥିଲେ । ଆମ୍ଭେମାନେ ନିକଟବର୍ତ୍ତୀ ନଦୀରେ ଗାଧୋଇ, ମଦନବାବୁଙ୍କ ଘରେ ଚୁଡ଼ା,ଚିନି ଖାଇ ଚାଲିକରି ୯ ମାଇଲ ଦୂର ବାହାଡ଼ଝୋଲାକୁ ଆସିଲୁ ।

ଶ୍ରୀ ସୁଦର୍ଶନ ପୃଷ୍ଟିଙ୍କ ଘରେ ଭାତ ଖାଇଲୁ । ତାଙ୍କ ମା ପରଶିଲେ । ଉପରଓଳି ହାଟ ଆଜି ବସିଥିଲା । ନୟାଗଡ଼ ଓ ଦଶପଲ୍ଲାର ମାଳ ଅଞ୍ଚଳରୁ ଋତୁ-ଉପଯୋଗୀ ବହୁତ ପରିବା, ସୋରିଷ, ରାଶି, ଜଡ଼ା, କଝୁରୀପଟି, ଝାମ୍ପୀ, ଆଦି ଏହି ହାଟରୁ ବାହାରକୁ ରପ୍ତାନି ହୁଏ ।

ବୃନ୍ଦାବନ ବାବୁ ଓ ମୁଁ ଶ୍ରୀ ଲକ୍ଷ୍ମଣ ଭୂୟାଁ ଓ ଶ୍ରୀ କୁବେର ସାହୁଙ୍କ ସାହିରେ ଭାଗବତ ଘରେ ରହିଲୁ । ଶ୍ରୀ ବାଞ୍ଛାନିଧି ସେନାପତି ଆସିଲେ । ଏମାନେ ଗଡ଼ଜାତ ଆନ୍ଦୋଳନରେ ୧୯୩୮ ମସିହାରେ ନୟାଗଡ଼ରେ ବହୁତ ପ୍ରଜା ସଂଗଠନ କରିଥିଲେ ଏବଂ ଚହଳ ପକାଇ ଦେଇଥିଲେ । ଶ୍ରୀ ବାଞ୍ଛାନିଧି ସେନାପତି ଲୋକସାଧାରଣଙ୍କର ନିଜର କର୍ତ୍ତବ୍ୟବୋଧ ଉପରେ ଅଧିକ ଧ୍ୟାନ ଦେବା କଥା କହିଲେ । କେବଳ ଦାବୀର ଧାରଣା ଓ ଉତ୍ତେଜନା ଦେଲେ, ପ୍ରକୃତ ରାମରାଜ୍ୟ ଗଢ଼ା ହୋଇପାରିବ ନାହିଁ । ପରେ ମୁଁ ଶୁଣିଲି ଯେ ଏ ମହାଶୟ ଭୂଦାନକୁ ସମର୍ଥନ କଲେ ହେଁ, ସକ୍ରୀୟ କାର୍ଯ୍ୟ କରୁନାହାନ୍ତି, ନିଜର ଭୂଦାନକୁ ଦତ୍ତ ଜମିକୁ ବାଣ୍ଟିଦେବାକୁ ରାଜୀ ନୁହନ୍ତି । ଶ୍ରୀ କୁବେର ସାହୁ ଖଣ୍ଡିଏ ଦୋକାନ ଚଳାଉଛନ୍ତି । ଶ୍ରୀ ଲକ୍ଷ୍ମଣ ଭୂୟାଁ ୧୯୪୨ରେ ବହୁତ ପୋଡ଼ାପୋଡ଼ି କାର୍ଯ୍ୟ କରାଇଥିଲେ । ବର୍ତ୍ତମାନ ଉଦ୍ଦାମ ଭାବ ଓ ଉତ୍ତେଜନା ଅଛି । ସେ କହିଲେ ଯେ "ସାହୁ ଓ ସାହୁଆଣୀ ଯେତିକି ଧାନ ନିଜେ ନିଜେ କାଟିପାରିବେ, ସେତିକିରେ ସେ ପରିବାରର ଅଧିକାର ଅଟେ; ବାକୀ ଧାନ ମୂଲିଆଙ୍କର ।" ଦେଶ ଏ ଧରଣର ବିଚାରର ପରିଣତ ପାଇଁ ଆମେ ପ୍ରସ୍ତୁତ ହେବା ଦରକାର, ନୋହିଲେ ସଂଯତ, ସାମୂହିକ ଚିନ୍ତା, ଯୋଜନା ଓ ଏକକାଳୀନ କାର୍ଯ୍ୟାନୁଷ୍ଠାନର ଅଭାବରୁ ବିଭ୍ରାଟ ଘଟିବ – ଏହା ମୋର ମତ ।

ଏ ଅଞ୍ଚଳର ୯ ଖଣ୍ଡ କନ୍ଧଲୋକ ବାସ କରୁଥିବା ଗ୍ରାମ ସମଗ୍ର ଦାନରେ ମିଳିଛି । ଏହି ଗ୍ରାମଗୁଡ଼ିକରୁ ଜଣେ ଜଣେ ଆସିଥିଲେ । ଶ୍ରୀ ହରି ପ୍ରଧାନ (କନ୍ଧ) ଭାରୀ କୁହାଳିଆ ଅଟେ ମୁଁ ପରେ ଶୁଣିଲି ଯେ ସେ ଜମି ବିକି ଗୁଲି ଓ ନିଶା ଖାଏ । ଶ୍ରୀ ରଘୁନାଥ ଖଣ୍ଡୁଆଳ (କନ୍ଧ) ଧୀରସ୍ଥିର ଲୋକ ବୋଧ ହେଲେ ।

ଏମାନଙ୍କୁ ମୁଁ ସଫା କହିଦେଲି ଯେ "ନବନିର୍ମାଣ" କାର୍ଯ୍ୟର ଦାୟିତ୍ୱ ଆମେ ନେଇପାରିବୁ ନାହିଁ କିମ୍ବା କୌଣସି ଅର୍ଥ ସାହାଯ୍ୟ ଦେଇପାରିବୁ ନାହିଁ ।

ରାତିରେ ଶ୍ରୀ ଲକ୍ଷ୍ମଣ ଭୂୟାଁଙ୍କ ଘରେ ଭାତ ଖାଇଲୁ । ଭାଗବତ ଘରେ ଶୋଇଲୁ ।

୨୬.୧୦.୧୯୫୬

ବାହାଡ଼ାଝୋଲାର ଲକ୍ଷ୍ମଣ ଭୂୟାଁଙ୍କ ଘରେ ଭାତ ଖାଇ, ବୃନ୍ଦାବନ ପାତ୍ର, କୁବେର ସାହୁ ଓ ମୁଁ ଚାଲି କରି ୮ ମାଇଲ ଦୂର ଓଡ଼ଗାଁରେ ଖରାବେଳେ ପହଞ୍ଚିଲୁ । ଶ୍ରୀ ଲକ୍ଷ୍ମଣ ମହାରଣା (ଏଠାର ପ୍ରଧାନ କଂଗ୍ରେସ ଲୋକ ଓ ୨ ବର୍ଷ ପୂର୍ବେ କେତେକ ମାସ ଭୂଦାନ କାମ ମଧ୍ୟ

ଭତ୍ତାପ୍ରାପ୍ତ କର୍ମୀରୂପେ କରୁଥିଲେ) ଆଗରୁ ଗୋଡ଼ିପଡ଼ାକୁ ବାହାରି ଯାଇଥିଲେ, ତାଙ୍କ ଘରେ ବିଶ୍ରାମ ନେଲୁ । ଓଡ଼ଗାଁର ପ୍ରଧାନ ଠାକୁର ରଘୁନାଥ ଜୀଉ । ଭଲ ମନ୍ଦିର ଅଛି । ଦଳିତ ଜାତିର ପ୍ରଚାରକ ନରସିଂହ ନନ୍ଦ । "ମୋଟର ବସ୍‌ରେ ଆମେ ୭ ମାଇଲ ଦୂର ଶରଣକୂଳକୁ ଆସିଲୁ । ଓଡ଼ିଗାଁର ପଣ୍ଡିତ ଶ୍ରୀ ମହେଶ୍ୱର ନନ୍ଦ ବସ୍‌ରେ ଆମକୁ ତାଙ୍କର ରଚିତ କେତେକ ପଦ୍ୟ – ଭୂଦାନ ବିଚାର, ଅସ୍ପୃଶ୍ୟତା ନିବାରଣ ବିଷୟରେ ଶୁଣାଇଲେ । ଭଲ ହିନ୍ଦୀ କହିପାରନ୍ତି । ମାତ୍ର ପରେ ମୁଁ ଶୁଣିଲି ଯେ ସେ ନିଜେ କାର୍ଯ୍ୟରେ ପ୍ରତିକ୍ରିୟାଶୀଳ ଅଟନ୍ତି ।

ଆମ୍ଭେମାନେ ଶରଣକୂଳକୁ ଚାଲି କରି ୭ ମାଇଲ ଦୂର ଗୋଡିପଡ଼ାରେ ସନ୍ଧ୍ୟା ୭ଟାରେ ପହଞ୍ଚିଲୁ । ସେଠାର ମଧ୍ୟ ଇଂରାଜୀ ସ୍କୁଲରେ ରହିଲୁ । ଏଠାର ପ୍ରଧାନ କଂଗ୍ରେସ ଲୋକ ଶ୍ରୀଧର ଦାସ । ବୟସ ପ୍ରାୟ ୪୨ ବର୍ଷ । ନୟାଗଡ଼ରେ ପ୍ରଜା ଆନ୍ଦୋଳନରେ ସେ ଓ ଏହି ଗ୍ରାମ ଖୁବ୍ ଉତ୍ସାହ ଓ ସାହସ ଦେଖାଇଥିଲେ । ରାଜା କିଛି ସ୍ୱାୟତ୍ତଶାସନ ୩ ମାସ (ଗଡ଼ଜାତ ମିଶ୍ରଣ ପୂର୍ବରୁ) ଦେଇଥିଲେ । ଶ୍ରୀଧର ବାବୁ ଓ ବାଞ୍ଛାନିଧି ସେନାପତି ଯଥାକ୍ରମେ ଶିକ୍ଷାମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀ ହୋଇଥିଲେ । ଆମର ରାତିରେ ଭୋଜନ ଓ ଶୟନ ସ୍କୁଲରେ ।

୨୭-୨୮.୧୦.୧୯୫୬

ସାମୂହିକ ପଦଯାତ୍ରାର ଭୂଦାନ ଶିବିରରେ ଗୋଡ଼ିପଡ଼ାରେ କଟାଇଲି । ମୁଁ ବିନୋବାଜୀଙ୍କର ଜୀବନୀ ଓ କାର୍ଯ୍ୟ ବିଷୟରେ ଦୁଇଚାରିପଦ କହିଲି । ନୟାଗଡ଼ ଓ ଦଶପଲ୍ଲା ଅଞ୍ଚଳରେ ଏ ପର୍ଯ୍ୟନ୍ତ ୧୫ଟି ସାନ ସାନ ଗାଁ ସମଗ୍ରଦାନ ହୋଇଛି । ଏଠାରେ "ନବନିର୍ମାଣ'' ପାଇଁ କ'ଣ କରାଯିବ – ଉପସ୍ଥିତ ଲୋକେ ବେଶୀ ଚର୍ଚ୍ଚା ପକାଇଲେ ।

ଭୂଦାନ ସମିତି ଓଡ଼ିଶା ବା ଭାରତ ସରକାରଠାରୁ କୌଣସି ଗ୍ରାଣ୍ଟ ଭୂମିପ୍ରାପ୍ତି ପାଇଁ ନଜର ନାହିଁ । ବିତରଣ ଓ ନବନିର୍ମାଣ ବାବତ୍‌ରେ ଟଙ୍କା ମଞ୍ଜୁର ହୋଇଥିଲେ ହେଁ, ଆମେ କେତେକ ସର୍ତ୍ତରେ ତାହା ନେଉନାହିଁ । ବିନୋବାଜୀଙ୍କର ପଦଯାତ୍ରା ବେଳେ ଓଡ଼ିଶାରେ "ନିଆଁଖୁଣ୍ଟା''ର ସଂପାଦକ ଓ ଆଉ କେତେକ ଲୋକେ ବହୁତ ମିଥ୍ୟା ପ୍ରଚାର ଭୂଦାନ, ବିନୋବା ଓ ଗୋପବାବୁଙ୍କର ପରିବାରର ବିରୋଧରେ କରିଥିଲେ । ମୁଁ ୨/୩ ଟି କଥା ବୁଝାଇ କହି ସେହି ଅପପ୍ରଚାର ମିଥ୍ୟା ବୋଲି ଜଣାଇଥିଲି ।

ନବନିର୍ମାଣରେ ଭୂଦାନ କର୍ମୀ ଓ ସମିତି ସମୟ ଓ ଅର୍ଥ ଦେଇପାରିବେ ନାହିଁ ବୋଲି ମୁଁ ସମସ୍ତଙ୍କୁ ବୁଝାଇ ଦେଲି । ଏଠାର ଶିବିରରେ ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ଶୁକ୍ରୁ ବେହେରା (ଦର୍ପନାରାୟଣପୁର), ଗଞ୍ଜାମର ଭୂଦାନ ସଂଯୋଜକ ରାମଚନ୍ଦ୍ର ମିଶ୍ର, ପ୍ରଭୃତି ଯୋଗ ଦେଇଥିଲେ । ତା ୨୭ ରାତିରେ ଗୋଡିପଡ଼ାରେ ଗ୍ରାମବାସୀମାନେ ଆମ ସହିତ ଆଲୋଚନା କରିଥିଲେ । ମାତ୍ର କେତେକ ଏଠାର କେତେକ କଂଗ୍ରେସ ଲୋକଙ୍କର ନାମ ନ ଧରି ଆକ୍ଷେପ କରି କହିଥିଲେ । ରାମଚନ୍ଦ୍ର ମିଶ୍ର ତାହାର ବ୍ୟର୍ଥତା ବୁଝାଇ କହିବାକୁ ଯାଇ

ଶ୍ରୀଧର ଦାସଙ୍କ ପ୍ରତି ସେହି ଆକ୍ଷେପ ଅଛି ବୋଲି ଧରି ନେଇ, ଉତ୍ତର ଦେଇଥିଲେ । କାହାରି ନାମ ଧରିବା ଆମର ଅନୁଚିତ ଓ ଆମେ ଏ ସ୍ଥାନୀୟ ରାଜନୀତି ବା ତଥ୍ୟ କିଛି ଜାଣୁନାହିଁ ବୋଲି କହି, ମୁଁ ଶ୍ରୀଧର ବାବୁଙ୍କଠାରେ ଆମର ଭୁଲ ସ୍ୱୀକାର କରିଥିଲି ।

୨୯.୧୦.୧୯୫୬

ସକାଳେ ଶ୍ରୀ ରାମଚନ୍ଦ୍ର ମିଶ୍ର ଓ ମୁଁ ଶ୍ରୀ ଭଗବାନ ସାହୁଙ୍କ ସହିତ ଆଗରେ ଗୋଡ଼ିପଡ଼ାରୁ ଶରଣକୂଳକୁ ଚାଲିଆସିଲୁ । ଆଚାର୍ଯ୍ୟ ମହାଶୟ, ହୋତା ମହାଶୟ ପଛେ ପଛେ ଆସିଲେ । ଆମେ ଦେଖିଲୁ ଯେ ଆଚାର୍ଯ୍ୟ ମହାଶୟ ପ୍ରଥମେ ପ୍ରଥମେ ଘଣ୍ଟାରେ ପ୍ରାୟ ୪ ମାଇଲ ରେଟ୍‌ରେ ଚାଲିଲେ ।

ଶରଣକୂଳରେ ଲଡୁକେଶ ଦେବମନ୍ଦିର ଅଛି । ଏଠାରେ ସାମାନ୍ୟ ବଜାରଦୋକାନ, ହାଇସ୍କୁଲ ଅଛି । ଆମେ ସଡ଼କରେ ମୋଟର-ବସ୍‌କୁ ଅପେକ୍ଷା କରି ରହିଥିବା ବେଳେ ବଜାର ଦୋକାନୀ ଓ ଠାକୁରଙ୍କର ଭୋଗ୍ୟ ନଡ଼ିଆ, ପାଚିଲା କଦଳୀ ବିକୁଥିବା କେତେକ ଲୋକ, ଭୂଦାନକର୍ମୀଙ୍କୁ ମାଗିଖିଆ, ବୁଲିଖିଆ ଗାନ୍ଧୀବିଚାରକୁ ବୁଡ଼ାଇ ଦେଇଥିବା ଲୋକ ବୋଲି ଥଟ୍ଟା, ବିଦ୍ରୁପ କରି କହୁଥାନ୍ତି । ଚାରି ବର୍ଷ ଭୂଦାନ ପ୍ରଚାର ପରେ, ଗତ ବର୍ଷ ମେ ମାସରେ ବିନୋବାଜୀ ଏହି ନୟାଗଡ଼-ଗୋଡ଼ିସାହି-ନନ୍ଦୀଘର - ଓଡ଼ଗାଁ ବାଟେ ପଦଯାତ୍ରା କରି ଯାଇଥିଲେ । ସାମୂହିକ ପଦଯାତ୍ରାରେ ଆମର ସହକର୍ମୀମାନେ ମଧ୍ୟ ଏବେ କିଛି ବୁଲିଲେଣି । ତଥାପି, ଏହି ଅବସ୍ଥା !

ଶ୍ରୀ ଜଗନ୍ନାଥ ମହାପାତ୍ର (ସରପଞ୍ଚ)ଙ୍କ ଉପସ୍ଥିତିରେ ମୁଁ ୨/୩ ଜଣ ସ୍କୁଲ ଛାତ୍ରଙ୍କୁ ଖଦୀର ଅର୍ଥନୀତି ସାମାନ୍ୟ ରୂପେ ବୁଝାଇ ଦେଲି । ସେମାନେ ଟିକିଏ ଥଣ୍ଡା ପଡ଼ିଗଲା ପରି ମୋତେ ବୋଧ ହେଲେ ।

ଆଚାର୍ଯ୍ୟ ମହାଶୟ, ହୋତା ମହାଶୟ ଓ ନିର୍ମଳକୁମାର ରାୟ ବୋଲଗଡ଼ଠାରେ ରହିଲେ । ରାମଚନ୍ଦ୍ର ମିଶ୍ର ଓ ମୁଁ ଖୋର୍ଦ୍ଧା ରୋଡ୍‌କୁ ଆସିଲୁ । ଦାନପୁର (କଟକ ଜିଲ୍ଲା)ର ଶ୍ରୀ ଯୁଧିଷ୍ଠିର ମିଶ୍ର (extra department postal servantsଙ୍କ ପାଇଁ ଏକ ଅଖିଳ ଭାରତ ଇଉନିୟନ୍ ଗଠନର ଉଦ୍ୟୋକ୍ତା) ଙ୍କ ସହ ଆଳାପ କରୁ କରୁ ଆମେ ଟ୍ରେନ୍‌ରେ ଆସିଲୁ । ଥୋଡ଼ିଆ ସାହିରେ ମୁଁ ରାତି ୯ଟାରେ ପହଞ୍ଚିଲି ।

ବନ୍ନୁର ଜ୍ୱର ଓ କାସ ଛାଡ଼ିଯାଇଛି । ଚୁନୀର ପାଟି ଭିତରର ସେହି ଦରଜ ପୂର୍ବବତ୍ ରହିଅଛି । ଏବେ ସେ (ଚୁନୀ) କଟକ ଟାଉନ୍‌ର ରାଜାବଗିଚାରେ ରହୁଥିବା ହୋମିଓପ୍ୟାଥି ଡାକ୍ତର ଶ୍ରୀ ଅଦ୍ୱୈତ ଚରଣ ଦାସଙ୍କ ଠାରୁ ହୋମିଓପ୍ୟାଥିକ ଔଷଧ ଖାଉଛି । ଶ୍ରୀ ବୁଲୁବାବୁ ନଳଗଜା (ମୟୂରଭଞ୍ଜ) ଭୂଦାନ ଶିବିରକୁ ଯାଇଛନ୍ତି । ଶ୍ରୀମତୀ ନିର୍ମଳା (ବିଚିତ୍ରାନନ୍ଦ ମହାନ୍ତିର ପତ୍ନୀ)ର ଟାଇଫଏଡ୍ ହୋଇଛି । ସେ ଏଠାରେ ଉକ୍ତ ଡାକ୍ତରଙ୍କର ଚିକିତ୍ସାରେ ଅଛି ।

ଆଜି ଦିନ ୧୨ଟା ଠାରୁ ଓଡ଼ିଶାରେ ଚାରିଆଡ଼େ ପ୍ରବଳ ବର୍ଷା ହେଉଅଛି । ଧାନ ଫସଲର କ୍ଷତି ହେବ - ଝଡ଼ତୋଫାନ ନ ଥାଇ ସୁଦ୍ଧା । ବୀରି, ସୋରିଷ, ଆଦି ରବିଫସଲ ବୁଣା ଯାଇଥିଲା, ସେଗୁଡ଼ିକ ନଷ୍ଟ ହେବ ।

୩୧.୧୦.୧୯୫୬

ବାବୁଲିର ଆଜି ଜନ୍ମଦିନ । ସେ ତା ୩୧. ୧୦.୧୯୪୫ ମସିହାରେ କଟକରେ ଜନ୍ମ ହୋଇଥିଲା । ଏଗାର ବର୍ଷ ପୂରିଗଲା ।

୧.୧୧.୧୯୫୬

ଶ୍ରୀଯୁକ୍ତ ଗୋପବାବୁ ଆଜି ଦିନ ଟ୍ରେନ୍‌ରେ କଟକରୁ ଅମର୍ଦାରୋଡ୍ ଏକାକୀ ଗଲେ ।

ଏଠାରେ ଆମ ମେସ୍‌ରେ ପାଳି କାମ କେତେ ଜଣ କରୁ ନଥିବାରୁ ଓ ଅଧିକ ପରିଶ୍ରମ କରିବାକୁ (କାଗଜପତ୍ର କାମରେ ସୁଦ୍ଧା) କଷ୍ଟବୋଧ କରୁଥିବାରୁ, ଆଜି ସନ୍ଧ୍ୟା ପରେ ଦେଢ଼ ଘଣ୍ଟା ସେ ସମ୍ବନ୍ଧରେ, ଶ୍ରୀଯୁକ୍ତା ରମାଦେବୀ ଓ ହରେକୃଷ୍ଣ ବିଶ୍ୱାଳ ଓ ବୁଲୁବାବୁ ଥାଇ, କଥା ପଡ଼ିଲା । ଏଇଥିରୁ ଏବଂ ଆମର ସହକର୍ମୀମାନଙ୍କ ମଧ୍ୟରେ ଅବସର ବେଳେ ଯେଉଁସବୁ କଥା ସ୍ୱତଃ ପଡ଼େ ସେଥିରୁ ମୋର ପୂରା ସ୍ପଷ୍ଟ ଧାରଣା ଯେ ଆମେ ଅହରହ ଗରୀବ ଲୋକଙ୍କର କଥା, ଦେଶର ସମସ୍ୟାମାନ, ସର୍ବୋଦୟ ବିଚାର, ଅହିଂସକ କ୍ରାନ୍ତି କଥା ଭାବୁନାହୁଁ । ଏହା ବଡ଼ ଚିନ୍ତାର ବିଷୟ ଅଟେ ।

୩.୧୧.୧୯୫୬

ସକାଳଓଳି ସର୍ବସେବା ସଂଘଙ୍କ ଠାରୁ ଗତ ୭ ମାସ ମଧ୍ୟରେ ଆସିଥିବା ଚିଠିପତ୍ରଗୁଡ଼ିକୁ ଦେଖି, କୌଣସି ଉତ୍ତର ଆମେ ଦେବା ବାକୀ ଅଛି କି ଯାଞ୍ଚ କଲି । ଯେଉଁ ପ୍ରଦେଶରେ ସରକାର ଭୂଦାନ ଆଇନ କରିନାହାନ୍ତି, ସେଠାରେ କି ପ୍ରକାରେ ଜମିବଣ୍ଟନକୁ ଲୋକେ ଭୂଦାନ ଯଜ୍ଞରେ ମାନି ନେଉଛନ୍ତି ତାହା ଜାଣିବାକୁ ଏକ ଚିଠି ସେହି ପ୍ରଦେଶର ସଂଯୋଜକମାନଙ୍କୁ ଲେଖିଲି ।

ମୁଁ ଗସ୍ତରେ ଥିବାବେଳେ ଲେଖିଥିବା ଚିଠିଗୁଡ଼ିକ ସଂକ୍ଷେପରେ ପ୍ରାଦେଶିକ ଅଫିସର ଡାକଖାତାରେ ଉତାରିଦେଲି । ଡାକଖର୍ଚ୍ଚର ହିସାବ ପାଇଁ । ଶ୍ରୀ ହରମୋହନ ପଟ୍ଟନାୟକ ଆସିଥିଲେ । ବିନୋବାଜୀଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା । ଓଡ଼ିଶା କଥା ବିନୋବାଜୀ ପ୍ରତିଦିନ କହୁଥିଲେ ବୋଲି ସେ ଜଣାଇଲେ ।

୫.୧୧.୧୯୫୬

ସକାଳେ ମୁଁ ସାଇକେଲ ଚଢ଼ି କଟକରୁ ଭୁବନେଶ୍ୱର ଗଲି । ଧୀରେ ଧୀରେ ସାଇକେଲ ଚଳାଇଲି । ପ୍ରାୟ ୨ ଘଣ୍ଟା ଲାଗିଲା । ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କ ସହ ଆସନ୍ତା ବୈଠକରେ

ଆଲୋଚ୍ୟ ବିଷୟଗୁଡ଼ିକ ସମ୍ବନ୍ଧରେ କଥାବାର୍ତ୍ତା କଲି । ତାଙ୍କର ବସାରେ ଭାତ ଖାଇଲି । ବନ୍ନୁପାଇଁ ସେ ଓ ତାଙ୍କର ମଧ୍ୟମା କନ୍ୟା ଶ୍ରୀମତୀ ହେମନ୍ତ କୁମାରୀ ଦେବୀ ଏବଂ ଏହାଙ୍କର ପୁଅ ପ୍ରଣବ କୁମାର ଓ ଝିଅ ସଂଘମିତ୍ରା ବାଡ଼ିରେ ଫଳିଥିବା ପିଜୁଳି ଓ ଡାଳିମ୍ବ ଦେଲେ ।

ଆଜି ଓଡ଼ିଶାର ଲାଟ (ଭୀମସେନ ସାଚାର) ମୋଟରରେ କଟକରୁ ବ୍ରହ୍ମପୁର ଯିବାକୁ ଥିଲା । ଜଗନ୍ନାଥ ସଡ଼କରେ ବାଲିଅନ୍ତାଠାରୁ ଫୁଲନଖରା ପର୍ଯ୍ୟନ୍ତ ପ୍ରାୟ ପ୍ରତି ଫର୍ଲଙ୍ଗରେ ଜଣେ ଜଣେ ଚୌକିଦାର ଠିଆ ହୋଇଥିଲେ । ବାଲିଅନ୍ତାର ହାବିଲଦାର (ବୟସ ପ୍ରାୟ ୨୭/୨୮ ବର୍ଷ ହେବ) ରାସ୍ତାରେ ମଧ୍ୟ ବୁଲି ଦେଖୁଥାନ୍ତି । ମୁଁ ସଡ଼କର ବାମ କଡ଼ରେ ପୀଚ୍ ଓ ଗୋଡ଼ି ସୀମାରେ ସାଇକେଲ ଚଳାଇ ଆସୁଥିଲି । ସେ କହିଲେ – "ମହାଶୟ । ତଳକୁ ଯାନ୍ତୁ ।" ନଅବର୍ଷ ସ୍ୱାଧୀନତା ପରେ ମଧ୍ୟ ପୋଲିସଙ୍କର ଏ ଉପଦେଶ !! (ବଙ୍ଗବାସୀ ବଙ୍ଗଳା ଆଖପାଖରେ ମୁଁ ଭୁବନେଶ୍ୱରରୁ ଫେରିବାବେଳର ଏ କଥା)

୭.୧୧.୧୯୫୬

ସକାଳେ ଦୈନିକ ଷ୍ଟେଟସ୍‌ମ୍ୟାନ୍ ଇଂରାଜୀ କାଗଜରୁ ପ୍ରଧାନ ଖବର 'ଇଂଲଣ୍ଡ ଓ ଫ୍ରାନ୍ସର ସରକାରଦ୍ୱୟ ମିଶର ଉପରେ ସୁଏଜ୍ କେନାଲ ଗଣ୍ଡଗୋଳ ଯୋଗୁଁ ତା ୩୧.୧୦.୫୬ ଠାରୁ ଆକ୍ରମଣ କରି ଯୁଦ୍ଧ ଚଳାଇଛନ୍ତି ଏବଂ ଋଷିଆ ସରକାର ହଙ୍ଗାରୀ ଦେଶର ଲୋକଙ୍କ ଉପରେ ଭୀଷଣ ଯୁଦ୍ଧ ଚଳାଇଛନ୍ତି ' – ପଢ଼ିଲି । ନୀତି, ବିଶ୍ୱଶାନ୍ତି, ଆଦି ବଡ଼ ବଡ଼ କଥା ଏ ପଶୁବଳରେ ବଳୀୟାନ୍ ଦେଶର ସରକାରମାନେ ଆଦୌ ମାନୁନାହାନ୍ତି ।

ଅଫିସର କେତେକ ଚିଠିପତ୍ରର ଉତ୍ତର ଦେଲି । "ଗ୍ରାମସେବକ" ସାପ୍ତାହିକ ପତ୍ରିକା (ତା ୫.୧୧.୫୬ର ସଂଖ୍ୟା) ପଢ଼ିଲି । ପୁଣି ନୂଆ ଟାଇପର ପ୍ରୟୋଗ ଚାଲିଛି । ଏହାଦ୍ୱାରା ସାଧାରଣ ଲୋକଙ୍କର ବିରକ୍ତି ସୃଷ୍ଟି କରାଯାଉଛି – ମୋର ଧାରଣା ।

ବନ୍ନୁ "କିନ୍ତୁ" ଅବ୍ୟୟ ପଦ ଠିକ୍ ବ୍ୟବହାର କରିଜାଣିଲାଣି ବୋଲି ଜୋର ଦେଇ ଗୋଟିଏ ବାକ୍ୟ ଆଜି କହୁଥାଏ । ସେ ବଡ଼ ବାକ୍ସ ଅରଟରେ ସୁନ୍ଦର ରୂପେ ସୂତା କାଟିପାରୁଛି । ପ୍ରାୟ ୫/୬ ଦିନରେ ନିଜ ମନକୁ ସେ ଏହା ଶିଖିଗଲା ।

୧୫.୧୧.୧୯୫୬

ସକାଳ ଜନତା ଏକ୍ସପ୍ରେସ୍ ଟ୍ରେନ୍‌ରେ ସର୍ବଶ୍ରୀଯୁକ୍ତ ଗୋପବାବୁ, ନବବାବୁ (ତା ୯.୧୦.୫୬ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ଓ ତା ୧୮.୧୦.୧୯୫୬ରେ ମୁକ୍ତ ହେଲେ), ରମା ଦେବୀ, ମାଳତୀ ଚୌଧୁରୀ, ମନମୋହନ ଚୌଧୁରୀ କଟକରୁ ପାଲନୀ (ମଦୁରାଇ ଜିଲା)କୁ ଗଲେ । ସର୍ବସେବା ସଂଘର ବୈଠକରେ ଯୋଗ ଦେବେ ଓ ବିନୋବାଜୀଙ୍କୁ ଦେଖା କରିବେ ।

ଦିନ ପାସେଞ୍ଜର ଟ୍ରେନ୍‌ରେ ଆଚାର୍ଯ୍ୟ ମହାଶୟ କଟକରୁ ଭଦ୍ରଖ ଗଲେ । ତା ୧୬.୧୧ରେ ଶ୍ରୀଯୁକ୍ତ ଈଶ୍ୱରଲାଲ ବ୍ୟାସଜୀଙ୍କର ଜନ୍ମଦିନ; ବାଳାଶ୍ରମରେ ସେମାନେ ସେହି ଦିନଟି କଟାଇବେ ।

ଚୁନୀ ଦେବୀଙ୍କର ପାଟି ଭିତରର ସେହି polyps ଅପରେଶନ୍ ହୋଇ ଯାଇଥିଲେ ହେଁ, ତାହାର ଉପସର୍ଗଗୁଡ଼ିକ ଦୂର ହୋଇନାହିଁ । ଭିଟାମିନ୍ 'ସି' ଓ ସାଧାରଣ ପୁଷ୍ଟିକର ଖାଦ୍ୟ, ଦୁଧ ଖାଇ ୨ ମାସ ଖଣ୍ଡେ ଫଳାଫଳ ଦେଖିବାକୁ ମୁଁ ମତ ଦେଲି । ତେଣୁ କରି, ଚୁନୀ ଦେବୀ ଓ ବନ୍ଟୁ (କର୍ମଦେବ) କଟକରୁ ରାମଚନ୍ଦ୍ରପୁର ଅଭିମୁଖେ ଆସିଲେ । ମୁଁ ସଙ୍ଗରେ ଆସିଲି । ଯାଜପୁର ଟାଉନ ନିକଟ ଖଣ୍ଡରାର ଧନୀ ବେହେରାଙ୍କର କନ୍ୟା ଶ୍ରୀମତୀ ସତ୍ୟଭାମା ପୃଷ୍ଟି (କେନ୍ଦ୍ରାପଡ଼ାର ଗୁଲନଗରରେ ତାଙ୍କର ଶାଶୁଘର ଓ ସେ କଂଗ୍ରେସ ସେବାଦଳର ମହିଳାମାନଙ୍କୁ ବ୍ୟାୟାମ ଶିକ୍ଷା ଦେଉଛନ୍ତି) ଆମମାନଙ୍କ ସହ ଆସିଲେ । ହରିଦାସପୁରରେ ଟ୍ରେନ୍‌ରେ ଓହ୍ଲାଇ, ଆମେ କଦଳାମଠରେ ପାଞ୍ଚଟା ବେଳେ ଭୋଜନ ଓ ଶୟନ କଲୁ ।

୧୬.୧୧.୧୯୫୬

ଭୋର କଦଳାମଠରୁ ହରିଦାସପୁର ଷ୍ଟେସନକୁ ଆସିଲୁ । ମୁଁ ସାଇକେଲରେ କାୟମା (୭ ମାଇଲ ପ୍ରାୟ) ଆସିଲି । ଚୁନୀ ଦେବୀ, ବନ୍ଟୁ ବସ୍‌ରେ ଆସିଲେ । କାୟମାରୁ ଚାଲିକରି ବନ୍ଧଡ଼ିହ ଉଚ୍ଚ ପ୍ରାଥମିକ ସ୍କୁଲକୁ ଆସି ୧୧ଟାରେ ପହଞ୍ଚିଲୁ । ପ୍ରଧାନ ଶିକ୍ଷକ ଶ୍ରୀ ଲକ୍ଷ୍ମୀଧର ରାୟ ହରିଚନ୍ଦନ ଓ ଆମର ରାମଚନ୍ଦ୍ରପୁରର ଗୁରୁଜୀ ବିକ୍ରମକେଶରୀ ବିଶ୍ୱାଳ ଆମ୍ଭମାନଙ୍କ ପାଇଁ ମଧ୍ୟାହ୍ନଭୋଜନର ଓ ଖଣ୍ଡିଏ ବଳଦଗାଡ଼ିର ବ୍ୟବସ୍ଥା ସେଠାରେ କରିଦେଲେ । ସ୍କୁଲର ପରିଚାଳନା ସମିତିର ସଂପାଦକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ସେନ୍‌ବାବୁ ଆସି ମୋତେ ଦେଖା କଲେ । ଏ ଅଞ୍ଚଳରେ ରାସ୍ତା ଓ ଏହି ସ୍କୁଲକୁ ଉଚ୍ଚ ସୋପାନଯୁକ୍ତ ମୌଳିକ ସ୍କୁଲରେ ପରିଣତ କରିବା କଥା କହିଲେ ।

ମୁଁ ବନ୍ଟୁକୁ ସାଇକେଲ ପଛରେ ବସାଇ କାୟମାରୁ ଆଣିଥିଲି; ଏଠାରୁ ମଧ୍ୟ ସେହିପରି ରାମଚନ୍ଦ୍ରପୁରକୁ ଗଲୁ । ଚୁନୀଦେବୀ ଓ ସତ୍ୟଭାମା ଦେବୀ ଶଗଡ଼ରେ ଗଲେ । ଶଗଡ଼ ହଳଦୀବସନ୍ତର ଗଉଡ଼ ସାହି ବାହାରେ ବନ୍ଧ ଉପରୁ ଓଲଟି ପଡ଼ିଲା । ଦୈବାତ୍ ସେମିତି କାହାରି ଗୁରୁତର ଆଘାତ ହେଲା ନାହିଁ ।

୧୭.୧୧.୧୯୫୬

ରାମଚନ୍ଦ୍ରପୁରରେ । ସକାଳେ ଡାକ୍ତର କାଳୀପଦ ଚୌଧୁରୀଙ୍କୁ ତାଙ୍କର ଏକ ଘରୋଇ କାର୍ଯ୍ୟରେ ଦେଖା କଲି । ଉତ୍ତର ମୌଳିକର ଗୁରୁଜୀଙ୍କୁ ଦେଖାକଲି । ୮ମ ସୋପାନ ଛାତ୍ରମାନଙ୍କୁ ମୁଁ କିଛି କହିଲି ।

୧୮.୧୧.୧୯୫୬

ସକାଳେ ଜଳଖିଆ ନ କରି ଟିକିଏ ସରବତ୍ ପିଇଲି । ଚାଲିକରି ବରୀ ଗଲି ଓ ପ୍ରାୟ ୧ ୨ଟାରେ ରାମଚନ୍ଦ୍ରପୁରକୁ ଫେରିଲି । ବରୀରେ ୮/୧୦ ମିନିଟ୍ ବୁଲୁବାବୁଙ୍କର ଘରବାଡ଼ି ଦେଖିଲି । ଅଳ୍ପଦିନ ପୂର୍ବେ ଶ୍ରୀଯୁକ୍ତ ଗୋପବାବୁ ଏଠାକୁ ଆସିଥିଲେ ଏବଂ ବାଉଁଶ କଣ୍ଟା, ବେତ, ଆଦି ନିଜେ ହାଣି ଜମି ସଫାସୁତୁରା କରି ପୋଟଳ, କଖାରୁ, କପା, ଆଦି ନିଜେ ଲଗାଇ ଯାଇଛନ୍ତି । ମାତ୍ର ଏଠାରେ ସୁମିତ୍ରା ଦେବୀ ରହୁ ନ ଥିବାରୁ, ସେପରି ଯତ୍ନ ଘର, ବଗିଚା, ଆଦିର ହୋଇପାରୁନାହିଁ । ଜଣେ ମୂଲିଆ ଦେଖାଚାହାଁ କରୁଛି ।

ବୃନ୍ଦାବନଚନ୍ଦ୍ର ଜେନାଙ୍କର ପିଲାମାନେ ଆର୍ତ୍ତବାବୁଙ୍କର ଘରକୁ ଯାଇଥିଲେ କାର୍ତ୍ତିକ ପୂର୍ଣ୍ଣିମା ଯୋଗୁଁ । "ସେବାଘର'' ବର୍ତ୍ତମାନ ମାତୃମଙ୍ଗଳ କେନ୍ଦ୍ରରେ ଶ୍ରୀମତୀ କୁନ୍ତକୁ ଦେଖା କରି ଶୁଣିଲି ଯେ ଶ୍ରୀଯୁକ୍ତ ଗୋବର୍ଦ୍ଧନ ପୁହାଣଙ୍କର ଦେହ ଭଲ ନାହିଁ । ତେଣୁ, ଗୋବଦ୍ଧନ ବାବୁଙ୍କ ପାଖକୁ ଗଲି । ସେ ଅଳ୍ପାହାର ଓ ପରିପୁଷ୍ଟିହୀନ ଖାଦ୍ୟ ଗତ ୪/୫ ବର୍ଷ ହେଲା କରି, ନିଜ ଦେହକୁ କ୍ଷୀଣ କରି ଦେଇଛନ୍ତି । ପାଦ, ମୁହଁ ପୁରା ଫୁଲିଗଲାଣି; ଜିଭ, ଆଖି ଭିତର, ହାତ ପାପୁଲି ପୂରା ଶେତା ଦିଶିଲାଣି । ଖଟ ଉପରୁ ଓହ୍ଲାଇବାକୁ ଆଉ ବଳ ପାଉନାହିଁ । ତଥାପି, ମୋ ସହିତ ବେଶ୍ ପୂର୍ଣ୍ଣ ସଂଜ୍ଞା ଥାଇ ଓ ବେଶ୍ ସଂଲଗ୍ନ ଭାବରେ କଥାବାର୍ତ୍ତା କଲେ । "ଗୋପବାବୁ, ରମାଦେବୀଙ୍କ ସହ କଅଣ ଦେଖା ହେବ ନାହିଁ ? ଆଚାର୍ଯ୍ୟ ମହାଶୟ ଆସିବେ ନାହିଁ ?'' (ମୁଁ ଉତ୍ତର ଦେଲି ପ୍ରଥମୋକ୍ତ ୨ ଜଣ ବିନୋବାଜୀଙ୍କ ପାଖକୁ ଯାଇଛନ୍ତି, ଫେରିବାକୁ ୫/୭ ଦିନ ଲାଗିବ । ଆଚାର୍ଯ୍ୟ ମହାଶୟ କଟକରେ ଅଛନ୍ତି । ଆପଣ ପଥ୍ୟ ଖାଆନ୍ତୁ, ଔଷଧ ସେବନ କରନ୍ତୁ, ଭଲ ହୋଇଯିବେ ଏବଂ ସେମାନଙ୍କ ସହ ଦେଖା ହେବ, କାରଣ ସେମାନେ ଏବେ ମାସେ ବା ଦେଢ଼ ମାସରେ ଏଠାକୁ ଏବେ ଆସୁଛନ୍ତି । ) ସେ କହିଲେ "ମୋର କିଏ ଅଛି କି ? ମୁଁ କାହିଁକି ବଞ୍ଚି ରହିବି ?'' (ମୁଁ କହିଲି – ଆପଣଙ୍କର ଝିଅମାନେ ଅଛନ୍ତି, ଜ୍ୱାଇଁ (ମହେଶ୍ୱର ଜେନା, ଏଠାରେ ଅଂରଗାବାଦ ମୌଳିକ ସ୍କୁଲରେ ଶିକ୍ଷକ) ଅଛନ୍ତି, ଝିଅର ପିଲା ଅଛି । ବିନୋବାଙ୍କର ତ କେହି ନାହିଁ, ସେ ବହୁ ଲୋକଙ୍କର ହିତ ପାଇଁ ତ ବଞ୍ଚି ରହିଛନ୍ତି, ଆପଣ ଅଳ୍ପ କେତେକଙ୍କର ପାଇଁ ତ ବଞ୍ଚିବା ଦରକାର ।

ସେ ପୁଣି କହିଲେ "ମୁଁ ତ ଠିକ୍ ନୀତିରେ, ନିୟମରେ ଚଳିଲି । ତଥାପି ମୋର ରୋଗ ହେଲା !''

ମୁଁ ଉତ୍ତର ଦେଲି – ବିନୋବାଜୀ ଏତେ ନିୟମ, ନିଷ୍ଠା ମାନନ୍ତି, ତଥାପି ତାଙ୍କର ଜ୍ୱର ହୋଇଥିଲା ଏବଂ ସେ ଔଷଧ ବ୍ୟବହାର କଲେ । ଆପଣ ମଧ୍ୟ ପଥ୍ୟ ଓ ଔଷଧ ଖାନ୍ତୁ ।

ସେ ବେଶ୍ ଶାନ୍ତ, ସଂଯତ ଥାନ୍ତି । ମୋର କଥାମାନ ତାଙ୍କର ଗ୍ରହଣ ହେଲା ନାହିଁ

ବୋଲି ମୋର ଧାରଣା । ତଥାପି, ସେ ପ୍ରତିବାଦ କରୁ ନଥାନ୍ତି । ସେ ତାଙ୍କର କୌଣସି ସାଂସାରିକ ଦୁଃଖ, ଶୋକ, ବାସନା, ଅନୁତାପ ମୋଠାରେ ଆଦୌ ପ୍ରକାଶ କରି ନଥିଲେ । ବେଳ ବହୁତ ହୋଇଗଲାଣି ଓ ମୁଁ ଖାଇନାହିଁ ଜାଣି, ସେ ମୋତେ ତାଙ୍କଠାରୁ ଯିବାକୁ ଅନୁମତି ଦେଲେ । ଔଷଧ ଓ ଇଞ୍ଜେକ୍‌ସନ୍ ରତ୍ନଗିରିରୁ ଶୀଘ୍ର ଆଣିବାକୁ ମୁଁ ତାଙ୍କ ଜୁଆଇଁଙ୍କୁ କହି, ଚାଲିଆସିଲି ।

୨୧-୨୨.୧୧.୧୯୫୬

ବାବୁଲିକୁ ୨୧ରେ ଲଳିତଗିରି ଯିବାକୁ ମୁଁ ବାରଣ କଲି । କାରଣ ଆଜିକାଲି ଅନେକ ଜାଗାରେ ହଇଜା ବା ପେଟଖରାପର ରୋଗ । ସେଠାରେ ଏତେ ପିଲା କେଉଁଠି ଏ ଶୀତ ଦିନେ ରହିବେ, ତାହାର ବ୍ୟବସ୍ଥା ଆଗରୁ ହୋଇନାହିଁ । ଆଗରୁ ଟିକିଏ ଯୋଜନା ନ କରି, ଅଗ୍ରଗାମୀ ଦଳରେ କେହି ଜଣେ ବା ୨ ଜଣ ନ ଯାଇ, ଏପରି ପର୍ଯ୍ୟଟନ ଠିକ୍ ନୁହେଁ । ସେ ବଡ଼ ଦୁଃଖିତ ହୋଇ, ରୁଷି, କାନ୍ଦି, ଶେଷରେ ମୋ କଥାରେ ଅଟକି ରହିଲା । ସେ ତାହାର "ଗାଗା"କୁ କହିଲା ଯେ ମୁଁ ଏଣିକି ନ କହି ଚାଲିଯିବି । ମୁଁ ତାକୁ ଏପରି କହିବାର ଅନୌଚିତ୍ୟ ବୁଝାଇଲି । ରାତିରେ ତାକୁ ଅଧଘଣ୍ଟାଏ ଖଣ୍ଡେ ତାହାର ବହିରୁ ପଢ଼ାଇଲି ।

ତା ୨୨ ସକାଳେ ବାବୁଲି ଓ ବନ୍ନୁ ଅରଟରେ ସୂତା କାଟିଲେ । ବାବୁଲିକୁ ୪ ବର୍ଷ ୮ ମାସ ହୋଇଥିବା ବେଳେ ଅରଟରେ ସୂତା କାଟି ଶିଖିଥିଲା ଏବଂ ବନ୍ନୁକୁ ୫ ବର୍ଷ ୮ ମାସ ହେବାରେ ବାକ୍ସ ଅରଟରେ ସୂତା କାଟି ଶିଖିଲା । ସେ ବେଶ୍ ସୂତା କାଟିପାରୁଛି ।

ବାବୁଲି ପ୍ରଥମେ କାଟିଥିବା ସୂତାଗୁଡ଼ିକ ତାହାର ଜେଠାବା (ଶ୍ରୀଯୁକ୍ତ ଲୋକନାଥ ମହାରଣା)ଙ୍କ ପାଇଁ ବୁଣା ହୋଇଥିବା ଲୁଗାରେ ମିଶିଥିଲା । ବାବୁଲି ପ୍ରଥମେ ସେହି ୪ ବର୍ଷ ୮ ମାସ ସମୟରେ ଏକ ଛୋଟ ତନ୍ତରେ ଖଣ୍ଡିଏ ସାନ ସାଦା ତଉଲିଆ ବୁଣିଥିଲା । ଶ୍ରୀ ବୁଲୁବାବୁ ତାନୀ କରି ଦେଇଥିଲେ । ସେହି ତଉଲିଆଟି ସେ ବିନୋବାଜୀଙ୍କୁ ଚାନ୍ଦିଲରେ ଭକ୍ତିରେ ଦେଇଥିଲା । ବିନୋବାଜୀ ତାହା ରଖୁ ନଥିଲେ, ବିଚିତ୍ରାନନ୍ଦ ମହାନ୍ତି ତାହା ବାବୁଲିର ହାତବୁଣା କହିବାରୁ, ରଖିବାକୁ ଆଦେଶ ଦେଲେ ।

ତା ୨୨/୧୧/୫୬ ସନ୍ଧ୍ୟା ପରେ ବନ୍ନୁ ଅରଟରେ ସୂତା କାଟୁଥିଲା । ତାହାର ସୂତାଗୁଣ୍ଡିଟା କେବେ ପୂରଣ ହେବ ପଚାରିବାରୁ, ସେ ହଠାତ୍ କହିଲା ତାହା ପୂରଣ ହେବାବେଳକୁ ବିନୋବାଜୀ ବଞ୍ଚି ନ ଥିବେ । ସେ ଏମିତି କଥା କାହିଁକି କହୁଛି ଆମେ (ଚୁନୀ ଓ ମୁଁ ) ବ୍ୟସ୍ତ ହୋଇ ପଚାରିବାରୁ ବନ୍ନୁ କହିଲା ତାହାର ଗୁଣ୍ଡିଟା ୨୦ ବର୍ଷରେ ପୂରଣ ହେବ ।

ସେହି ଗୁଣ୍ଡି ଅପୂର୍ଣ୍ଣ ଥାଉ । ସେ ଆଉ ସୂତା କାଟିଲେ ନୂଆ କରି ଗୁଣ୍ଡି କରୁ । ତାହାହିଁ ହେଲା ବନ୍ନୁ ପୁଣି ସୂତା କାଟି, ୧ ଘେରା ଠାରୁ ଆରମ୍ଭ କରି ମାସ ଖଣ୍ଡେ ପରେ ଏକ ଗୁଣ୍ଡି କରିଦେଲା ।

ସର୍ବ ସେବା ସଂଘର 'ପ୍ରବନ୍ଧ' (କାର୍ଯ୍ୟକାରୀ) ସମିତିର ବୈଠକ ବିନୋବାଜୀଙ୍କର ଉପସ୍ଥିତିରେ କୋଇମ୍ବାଟୋର ଜିଲ୍ଲାର ପାଲନୀଠାରେ ତା ୧୯ରୁ ୨୧ ପର୍ଯ୍ୟନ୍ତ ଥିଲା । କାଲି ତାହା ସରିଥିବ ।

୨୩.୧୧.୧୯୫୬

୨୦ ତାରିଖ ଅପରାହ୍ଣରେ ଗୋବର୍ଦ୍ଧନ ପୁଆଣ ପ୍ରାଣତ୍ୟାଗ କଲେ । ଗୋବର୍ଦ୍ଧନ ପୁଆଣଙ୍କର ସ୍ମୃତିରେ ଏକ ସଭାରେ ମୁଁ ବରୀ ମାଉଣ୍ଡଠାରେ ଯୋଗ ଦେଲି । ସର୍ବଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତି, ଭଗୀରଥ ଦାସ, ବୀରବର ରଥ, ହରିଶଚନ୍ଦ୍ର ଦାସ, ହରିପ୍ରିୟା ଦେବୀ, ଶ୍ରୀଧର ମହାନ୍ତି, ହାଜୀ ମିଆଁ, ତୁଙ୍ଗବିଦ୍ୟା ଦେବୀ, ଆକୁଳାନନ୍ଦ ମେକାପ୍, ରାମଚନ୍ଦ୍ରପୁରର କସ୍ତୁରବା କେନ୍ଦ୍ରର ଶିକ୍ଷାର୍ଥିନୀମାନେ, ମଙ୍ଗଳାସେନ୍‌ଗୁପ୍ତା, ଅନ୍ନପୂର୍ଣ୍ଣା ଦାସ, ଉତ୍ତର ମୌଳିକର ଗୁରୁଜୀ ପଦ୍ମନାଭ ଜେନା ଏବଂ ରାମଚନ୍ଦ୍ରପୁର ମୌଳିକ୍ ଶିକ୍ଷା କେନ୍ଦ୍ରର ବଡ଼ ବଡ଼ ପିଲା ପ୍ରଭୃତି ଏହି ସଭାରେ ଯୋଗ ଦେଇଥିଲେ । ମୋତେ ସଭାପତି କରିଦେଲେ । ଆର୍ତ୍ତବନ୍ଧୁ ମହାନ୍ତି ବାଷ୍ପରୁଦ୍ଧ କଣ୍ଠରେ କେତେ ପଦ ଗୋବର୍ଦ୍ଧନ ବାବୁଙ୍କର ନୀରବ ସେବା, ଦେଶାତ୍ମବୋଧ, ସ୍ୱଦେଶୀବ୍ରତ, ଗଠନମୂଳକ କାର୍ଯ୍ୟରେ ନିଷ୍ଠା, ଆଦି ବିଷୟରେ କହିଲେ । ଡାକ୍ତର ତୁଙ୍ଗବିଦ୍ୟା ଦେବୀ ଗତ ୫ ବର୍ଷ ମଧ୍ୟରେ ଗୋବର୍ଦ୍ଧନ ବାବୁଙ୍କର ମହତ୍ତ୍ୱ ଓ ଅନ୍ତିମ ଦଶାରେ ତାଙ୍କର ଅସୀମ ମନର ବଳ ଓ ସଂସାର ପ୍ରତି ଅନାସକ୍ତି ବିଷୟରେ କିଛି କହିଲେ । ମୁଁ କିଛି କହିବାକୁ ଇଚ୍ଛା କଲି ନାହିଁ ।

ଆର୍ତ୍ତବାବୁ କହିଲେ ଯେ ଏଗାର ଶତଟଙ୍କା ଗୋଟିଏ ପାସ୍‌ବୁକ୍‌ରେ ଗୋବର୍ଦ୍ଧନ ବାବୁଙ୍କର ନାମରେ ଜମା ଅଛି ଓ ସେହି ପାସ୍‌ବୁକ୍ ଆର୍ତ୍ତବାବୁଙ୍କଠାରେ ଅଛି । ମୋ ନାମରେ ଆସିଥିବା ଟ. ୫୦୦/- ମୁଁ ବରୀକଟକ ପୋଷ୍ଟଅଫିସ୍‌ରୁ ନେଇ, ରାମଚନ୍ଦ୍ରପୁରକୁ ରାତି ୭ଟାରେ ଫେରିଲି । ଏହି ଟଙ୍କା ପାଞ୍ଚଶତ ତା ୨୪.୧୧.୫୬ରେ ଶ୍ରୀ ଭୁବନାନନ୍ଦ ସ୍ୱାଇଁ (ପ୍ରଧାନ ଗୁରୁଜୀ)ଙ୍କୁ ମୁଁ ଦେଲି । ଅଭାବଗ୍ରସ୍ତ ତନ୍ତୀମାନଙ୍କୁ ସାଧନସାମଗ୍ରୀ ଦାନ କରିବାକୁ ସେହି ଟଙ୍କା ଭୁବନେଶ୍ୱରର ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତି ଭୂଦାନ ସମିତି ଜରିଯାରେ ଦେଇଛନ୍ତି ।

୨୫.୧୧.୧୯୫୬

ସକାଳେ ବନ୍ଧ ଓ ପାଇଖାନା ପାଖ ଘାସ ଆଦି ୧ ଘଣ୍ଟା ମୁଁ ସଫା କଲି । ଚାଳ ସନ୍ଧିରୁ ମରି ଖସିପଡ଼ିବା ଏକ ବଡ଼ ମୂଷାକୁ ପୋତି ଦେଲି । ମୂଷାଟା ମରିଯିବାର କାରଣ ଜଣାଗଲା ନାହିଁ ।

ଭାତ ଖାଇ, ମୁଁ ଘ ୧୦.୩୦ ମିନିଟ୍‌ରେ ସାଇକେଲରେ ରାମଚନ୍ଦ୍ରପୁରରୁ ବାହାରି, ଖରାପ ରାସ୍ତା ହେତୁରୁ ଘ ୧୨.୩୦ରେ ବନ୍ଧଡିହ ଗ୍ରାମରେ ପହଞ୍ଚିଲି । ମୁଁ ଗୋବିନ୍ଦଚନ୍ଦ୍ର

ସେନ୍‌କୁ ଦେଖା କଲି ଏବଂ ଆଜି 'ପ୍ରଥମାଷ୍ଟମୀ' ରେ ହଳଦୀପତ୍ରରେ ସିଦ୍ଧ ପିଠା (ମୋ ପେଟ ପୂର୍ବେ ଖରାପ ଥିବାରୁ ନାମ ମାତ୍ର) ଖାଇଲି । ତାଙ୍କ ସହ ରାସ୍ତା ଓ ମୌଳିକ ଶିକ୍ଷାର ସଫଳତା ପାଇଁ ମୂଳ ଉପାଦାନ କଅଣ ସବୁ ଆବଶ୍ୟକ ତାହା କଥାବାର୍ତ୍ତା କଲି ।

ଆଜି ମୋଟରେ ପ୍ରାୟ ୬ ଘଣ୍ଟାରେ ମୁଁ ପୂରା ୩୬ ମାଇଲ ବାଟ ସାଇକେଲରେ ଆସିଲି ।

୨୭.୧୧.୧୯୫୬

ସକାଳେ ହାଉଡ଼ା-ବେଜବାଡ଼ା ଜନତା ଏକ୍ସପ୍ରେସ୍‌ରେ ମୁଁ କଟକରୁ ବ୍ରହ୍ମପୁର ଗଲି । ଜୟପ୍ରକାଶ ନାରାୟଣ ତା ୧୮.୧୧ରେ ଏଠାରେ ଭୂଦାନ ବିଷୟରେ ବକ୍ତୃତା ଦେବେ ବୋଲି ଶ୍ରୀ ଜୟକୃଷ୍ଣ ବିଶ୍ୱାଳ ଓ ରାଧାଶ୍ୟାମ ମହାରାଜ ବ୍ରହ୍ମପୁରରେ ଆଗରୁ ବ୍ୟବସ୍ଥା କରୁଛନ୍ତି ।

୨୮.୧୧.୧୯୫୬

ସକାଳେ ସରକାରୀ ସର୍ଭିସ-ବସ୍‌ରେ ବିଶ୍ୱନାଥ ପଟ୍ଟନାୟକ, ମହମ୍ମଦ ବାଜୀ, ଆଦିଙ୍କ ସହ ମୁଁ ବ୍ରହ୍ମପୁରରୁ ଆକିଲି ଅଭିମୁଖେ ଗଲି । ବାଟରେ "ତପ୍ତପାଣି'' ଉଷ୍ଣ ଜଳପ୍ରପାତ ଓ ଡାକବଙ୍ଗଳା ବସ୍‌ରେ ଥାଇ ମୁଁ ଦେଖିଲି । ବଙ୍ଗଳାଟିର ଅବସ୍ଥିତି ଏକପ୍ରକାରେ ମନୋରମ; ଚାରିପାଖରେ ପାହାଡ଼ର ଗଡ଼ାଣିଆ ଶ୍ୟାମଳ ଅଂଶ ଓ ଶିଖର ଦେଖାଯାଉଛି । ବ୍ରହ୍ମପୁରରୁ ଏହା ୩୧ ମାଇଲି । ବାଟରେ ବସ୍ ଖରାପ ହୋଇଯିବାରୁ, ଆମେ ଶ୍ରୀଯୁକ୍ତା ପ୍ରଭାବତୀ ନାରାୟଣ ( J.P ଙ୍କର ସହଧର୍ମିଣୀ), ଜଣେ କାନାଡ଼ାଦେଶୀୟ ମହିଳା (ଭାରତୀୟା ବେଶ ପିନ୍ଧିଛନ୍ତି, ନାମ ଧରିଛନ୍ତି ସାଧନା ଦେବୀ), ଶ୍ରୀଯୁକ୍ତା ରମା ଦେବୀ ଓ Mrs. Riazuddin (Forest Conservator Mr. Riazuddinଙ୍କ ପତ୍ନୀ )ସହ ଆକିଲିକୁ ଗଲୁ । ଏହା "ଗ୍ରାମଦାନ'' ଗାଁ ଅଟେ । ଶ୍ରୀ ଧରମୁ ନାୟକ ଏଠାର ଯୁବକ ଲେଖକ ବଡ଼ ଜମିମାଲିକ ଥିଲେ । ତାଙ୍କରି ଦାନ ଓ ପ୍ରେରଣାରେ ଏହା ସମଗ୍ରଦାନ ହୋଇଛି । "ନବଜୀବନ ମଣ୍ଡଳ''ର ଗଠନମୂଳକ କାର୍ଯ୍ୟର କେନ୍ଦ୍ର ଅଛି । ଶ୍ରୀ ଇନ୍ଦ୍ରମଣି ଜେନା, ପ୍ରାକୃତିକ ଚିକିତ୍ସାର କର୍ମୀ ଯୁବକ ଶ୍ରୀ ନୀଳମଣି ଏମାନଙ୍କର ସହଧର୍ମିଣୀମାନେ ଏଠାରେ ଥାନ୍ତି । ଅନ୍ୟ କେତେକ "ନବନିର୍ମାଣ'' କର୍ମୀ ଏଠାକୁ ଆସିଥିଲେ ।

ସର୍ବଶ୍ରୀ ଜୟପ୍ରକାଶ ନାରାୟଣ, ନବକୃଷ୍ଣ ଚୌଧୁରୀ, ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ, ବୁଲୁବାବୁ ଆଜି ଏଠାକୁ ଆସିଲେ । ଗତ ବର୍ଷ ବିନୋବାଜୀ ଏଠାରେ ରହିଥିଲେ । ଶ୍ରୀଯୁକ୍ତ ମାଳତୀ ଚୌଧୁରୀ ଓ ଗୁଣନିଧି ମହାନ୍ତି, ଗଣେଶଚନ୍ଦ୍ର ମହାନ୍ତି ୨ ଦିନ ଆଗରୁ ମଧ୍ୟ ଏଠାକୁ ଆସିଥିଲେ ।

ଖରାବେଳେ ଜୟପ୍ରକାଶ ନାରାୟଣ ଏଠା ନବନିର୍ମାଣ କାର୍ଯ୍ୟର ଓ ଭୂଦାନ କାର୍ଯ୍ୟର

ରିପୋର୍ଟ ଇନ୍ଦ୍ରମଣି ଜେନାଙ୍କଠାରୁ ସଭାରେ ଶୁଣିଲେ, ଏବଂ ନିଜର ସଂକ୍ଷିପ୍ତ ବକ୍ତୃତା ହିନ୍ଦୀରେ ଦେଲେ । ଶେଷରେ ଶ୍ରୀ ବୁଲୁବାବୁ ତାହାକୁ ଓଡ଼ିଆରେ ଅନୁବାଦ କରି କହିଦେଲେ ।

ଜୟପ୍ରକାଶ ଜୀ କହିଲେ ଯେ ଏ ସବୁ ମାଳଅଞ୍ଚଳ ଓ କୋରାପୁଟ ଜିଲ୍ଲାର ଅଞ୍ଚଳ – ଯେଉଁଠାରେ ଭୂଦାନକୁ "ଗ୍ରାମଦାନ'' ମିଳିଛି – "ପଶ୍ଚାତ୍‌ପ୍ରଦ'' ଅଞ୍ଚଳ ଅନ୍ୟ ଲୋକେ କହନ୍ତି । ଏହା ଭୁଲ ଅଟେ । ପ୍ରକୃତରେ ଏଗୁଡ଼ିକ ଆଗୁଆ ଅଞ୍ଚଳ । ଭବିଷ୍ୟତରେ ସର୍ବୋଦୟ ସମାଜରେ, "ରାମରାଜ୍ୟ''ରେ ଏ ସବୁ ଆଗରେ ରହିବ ଏବଂ ତଥାକଥିତ ସଭ୍ୟ ବା ଆଗୁଆ ଅଞ୍ଚଳ ପଛରେ ପଡ଼ିଯିବ ।

ସନ୍ଧ୍ୟାରେ ସେହି ଜୀପ୍‌ରେ ଆମ୍ଭେମାନେ ବ୍ରହ୍ମପୁର ଟାଉନ୍‌ରେ ପହଞ୍ଚି ଜୟପ୍ରକାଶଜୀଙ୍କର ବକ୍ତୃତା ଶୁଣିଲୁ । ସେ ମାଦ୍ରାସ-ହାଉଡ଼ା ଡାକଗାଡ଼ିରେ କଲିକତା ଗଲେ ।

୨୯.୧୧.୧୯୫୬

ମୋର ଉଠିବାକୁ ଡ଼େରି ହୋଇଗଲା, ସକାଳ ଘ ୬.୫. ମିନିଟ । ମୋର ନିତ୍ୟକର୍ମ ଓ ଚୂଡ଼ା-ପାଚିଲା କଦଳୀ ଜଳଖିଆ ସାରି, ବସ୍‌ଷ୍ଟାଣ୍ଡକୁ ଯିବାବେଳକୁ ରିଜର୍ଭ-ବସ୍ ଛାଡ଼ି ଚାଲିଯାଇଥିଲା ତାଳଗୁଡ଼ ବିଭାଗର ସଂଗଠକ-ସେକ୍ରେଟାରୀ ଜୟକୃଷ୍ଣ ଦାସଙ୍କ ସହ ମୁଁ ସର୍ଭିସ୍-ବସ୍‌ରେ ଆକିଲି ଗଲି ।

ମୋର ୨ ବା ୩ ମିନିଟ୍ ମାତ୍ର ବିଳମ୍ବ ହେତୁରୁ ରିଜର୍ଭ ବସ୍‌କୁ ଖୁଡ଼ୀ ଚାଲିଯିବାକୁ ଆଦେଶ ଦେଇଥିଲେ ବୋଲି ଖୁଡ଼ୀ ମୋତେ ସନ୍ଧ୍ୟା ବେଳେ ପଚାରିଲେ ଯେ ମୁଁ କଅଣ ଖରାପ ଭାବିଲି କି ? ମୁଁ ମୋର ବିଳମ୍ବ ହେତୁ ରହିଗଲି, ସେଥିରେ ଅନ୍ୟର କଅଣ ଦୋଷ ଅଛି ? ଉତ୍ତର ଦେଲି ।

୧.୧୨.୧୯୫୬

ଗତ ୪ ଦିନର ଡାଏରୀ (ବାସରୀ) ଏହି ଖାତାରେ ଲେଖିଲି । ଭତ୍ତାପ୍ରାପ୍ତ ଭୂଦାନ କର୍ମୀମାନଙ୍କୁ ନୋଟିସ୍ ଦେଲି ଯେ ତା ୧ ଜାନୁଆରୀ, ୧୯୫୭ ଖ୍ରୀଷ୍ଟାବ୍ଦ ଠାରୁ ସେମାନଙ୍କୁ ଆଉ ଭତ୍ତା ଭୂଦାନ ସମିତିରୁ ମିଳିବ ନାହିଁ । କାରଣ ସର୍ବସେବା ସଂଘର ସିଦ୍ଧାନ୍ତ ଅନୁସାରେ ୧.୧.୧୯୫୭ ଠାରୁ ଗାଂଧୀ ସ୍ମାରକ ନିଧିରୁ ଆଉ ଗ୍ରାଣ୍ଟ ମିଳିବ ନାହିଁ ଏବଂ ପ୍ରାଦେଶିକ ଭୂଦାନ ସମିତିମାନ ବିସର୍ଜନ କରିଦିଆଯିବ ।

ପାଲନୀରେ ସର୍ବସେବା ସଂଘର ସିଦ୍ଧାନ୍ତମାନ ଆଜି କଟକ ସହରର ପ୍ରଧାନ ଭୂଦାନ ପ୍ରେମୀମାନଙ୍କୁ (ଲକ୍ଷ୍ମୀନାରାୟଣ ସାହୁ, ବିମଳକୃଷ୍ଣ ପାଲ, ହରମୋହନ ପଟ୍ଟନାୟକ, ଢେମା, ବସନ୍ତକୁମାରୀ ମହାନ୍ତି, ନିଶାମଣି ଖୁଣ୍ଟିଆ, ଆଦିଙ୍କୁ ଏକ ବୈଠକରେ ଜଣାଇ ଦିଆଗଲା ।

୨.୧୨.୧୯୫୬

ସକାଳେ ନଭେମ୍ବର ମାସର ମୋର କାର୍ଯ୍ୟ-ବିବରଣୀ ଲେଖିଲି । ଏହି ନଭେମ୍ବର ମାସରେ ମୁଁ ୧୩ ଦିନ ଅଫିସ କାର୍ଯ୍ୟରେ, ୪ ଦିନ ସଭାସମିତିର ବୈଠକରେ, ୨ ଦିନ ଦୂରସ୍ଥାନକୁ ଯାତ୍ରାରେ, ୧ ଦିନ ଜୟପ୍ରକାଶଜୀଙ୍କ ସଭାରେ, ୫ ଦିନ ମୋର ଅସୁସ୍ଥତାରେ, ୫ଦିନ ମୋର ବ୍ୟକ୍ତିଗତ କାର୍ଯ୍ୟରେ କଟାଇଛି = ୩୦ ଦିନ ।

ଅନୁଗୋଳ-ବାସିନ୍ଦା କବି ଶ୍ରୀ ରାଧାମୋହନ ଗଡ଼ନାୟକ ଆଧୁନିକ ଓଡ଼ିଆ ସାହିତ୍ୟିକମାନଙ୍କର ଜୀବନୀ ଓ ଲେଖାର ସଂକ୍ଷିପ୍ତ ପରିଚୟ ଦେଇ ଏକ ବହି ପ୍ରକାଶ କରିବେ । ସେଥିରେ ସେ ବାପାଙ୍କର (ଚନ୍ଦ୍ରମୋହନ ମହାରଣାଙ୍କର) ପରିଚୟ ଦେଇ ଗୋଟିଏ ଲେଖା ମଧ୍ୟ ଦେବେ । ସେଥିପାଇଁ ସେ ବର୍ଷେ ହେଲା ମୋତେ ବାବାଙ୍କର ସଂକ୍ଷିପ୍ତ ଜୀବନୀ ଲେଖି ଦେବାପାଇଁ ଅନୁରୋଧ କରିଥିଲେ । ମୁଁ ଯାହା ଅଳ୍ପ ଜାଣିଥିଲି ତାହା ଆଜି ଲେଖିଦେଲି ।

୩.୧୨.୧୯୫୬

ଶ୍ରୀଯୁକ୍ତା ରମାଦେବୀ ଚୌଧୁରୀଙ୍କର (ବୋଉଙ୍କର) ଆଜି ଜନ୍ମଦିନ – ଇଂରାଜୀ ତାରିଖ ଅନୁସାରେ । ଆଜି ତାଙ୍କର ୫୮ ବର୍ଷ ପୂର୍ଣ୍ଣ ହେଲା । ଆଗରୁ ଆମ୍ଭେମାନେ ଜାଣିଥିଲେ, ସମସ୍ତଙ୍କୁ ଜଣାଇ, ଟିକିଏ ଭଲ କରି କାର୍ଯ୍ୟକ୍ରମ କରିଥାନ୍ତୁ । ମାତ୍ର ଗତ କାଲି ସନ୍ଧ୍ୟାରେ ଆଚାର୍ଯ୍ୟ ମହାଶୟଙ୍କ ଠାରୁ ଏହା ଆମ୍ଭେମାନେ ଜାଣି, ଖରାବେଳେ ଘଣ୍ଟାଏ ସୂତ୍ରଯଜ୍ଞ କଲୁ ଏବଂ ତାଙ୍କର ଜନ୍ମଦିନଟି ମନେ ପକାଇଲୁ ସିନା । ମିଠା ଭାତ ଓ ସୁଜୀର ପାୟସ କରି ସମସ୍ତେ ଖାଇଲେ ।

ସକାଳେ ମେସ୍‌ର ବାସନଗୁଡ଼ିକ ମାଜିଲି ଓ ପାଇଖାନାର ଉପର ସଫା କଲି । ଶ୍ରୀଯୁକ୍ତ ଗୋପବାବୁ ଭୂଦାନ କାର୍ଯ୍ୟ କିପରି ନିଧିମୁକ୍ତ ହେବ ଓ ତନ୍ତ୍ର (ସଂଗଠନ)ମୁକ୍ତ ହେବ ଏବଂ ତାହା ପରିବର୍ତ୍ତରେ ନୂତନ ବ୍ୟବସ୍ଥା କଅଣ ହେବ, ମୋ ସହ କଥାବାର୍ତ୍ତା କଲେ ଏବଂ ସାମାନ୍ୟ ସୂଚନା ଦେଲେ । ଗାନ୍ଧୀ ନିଧିକୁ ଓ ସର୍ବସେବା ସଂଘକୁ ତା ୩.୧୨.୫୬ର ନ. ୪୮୮୫ ନମ୍ବର ପତ୍ର ଲେଖିଲି ।

୫.୧୨.୧୯୫୬

ତନ୍ତ୍ର-ମୁକ୍ତି ଓ ନିଧି-ମୁକ୍ତି ବିଷୟରେ ଏହି ପ୍ରଦେଶରେ ଜିଲ୍ଲା ଭୂଦାନ ସଂଯୋଜକ ଓ ମୁଖ୍ୟ କର୍ମୀମାନଙ୍କର ଏକ ବୈଠକ ଥୋଡ଼ିଆ ସାହିରେ ଭୂଦାନ ଅଫିସରେ ସକାଳ ୮ଟା ଠାରୁ ହେଲା । ମୋଟରେ ୫୪ ଜଣ ଯୋଗ ଦେଲେ । ବିନୋବାଜୀ ପାଲନୀଠାରେ ଯାହା ସବୁ କହିଥିଲେ ଏବଂ ସର୍ବସେବା ସଂଘ ସିଦ୍ଧାନ୍ତ କରିଥିଲେ, ସେ ସବୁ ଶ୍ରୀଯୁକ୍ତ ଗୋପବାବୁ ଓ ବୁଲୁବାବୁ ସମସ୍ତଙ୍କୁ ବୁଝାଇ ଦେଇଥିଲେ ଏବଂ ବିନୋବାଜୀଙ୍କର କେତେକ ମୂଳ ଲେଖା ସେ

ବିଷୟରେ ପଢ଼ାଯାଇଥିଲା । କାହାର କଅଣ କହିବାକୁ ଅଛି ଓ କିଏ କେଉଁ ଜିଲ୍ଲାର "ବିନମ୍ର ଭୂଦାନ ସେବକ'' ହେବେ ନିଜେ କହନ୍ତୁ ବୋଲି ପଚରାଯିବାରୁ ଏବଂ ଶ୍ରୀଯୁକ୍ତା ରମାଦେବୀ ମୋତେ ଏ ବିଷୟରେ କହିବାକୁ ୨/୩ ଥର ଡାକିବାରୁ, ମୁଁ କହିଲି ଯେ ମୁଁ ବର୍ତ୍ତମାନ କିଛି କହିପାରିବି ନାହିଁ, କାରଣ ବିନୋବାଜୀ ସରକାରୀ ପ୍ରାଦେଶିକ ଭୂଦାନ ଯଜ୍ଞ ସମିତିକୁ ଭାଙ୍ଗି ଦେଇନାହାନ୍ତି (ଏବଂ ମୁଁ ସେହି ସମିତିର ସଂପାଦକ ଥିବାରୁ) ମୁଁ ପୂରା ତନ୍ତ୍ର-ମୁକ୍ତ ହୋଇନାହିଁ। ସରକାରୀ ଗ୍ରାଣ୍ଟ ଟ.୨,୯୦,୦୦୦/- ଖର୍ଚ୍ଚ ହେବାର - ଯଦିଚ ମୁଁ ବ୍ୟକ୍ତିଗତ ଭାବରେ ଅନୁମାନ କରୁଅଛି ଯେ ସେ ଟଙ୍କା ଆମେ ଖର୍ଚ୍ଚ କରିବାକୁ ସମର୍ଥ ହେବୁ ନାହିଁ ଏବଂ ସେ ବିଷୟରେ ତଥ୍ୟମାନ ମଗାଇବା ଆଦି "ପାଣି ବାଡ଼େଇବା'' କାର୍ଯ୍ୟ ମୁଁ କରୁଅଛି - ଦାୟିତ୍ୱ ଥିବାରୁ, ମୁଁ ପୂରା ନିଧିମୁକ୍ତ ମଧ୍ୟ ହୋଇନାହିଁ ।

ମୁଁ ତା ୩୧.୧.୧୯୫୬ ମଧ୍ୟରେ ସଂଯୋଜକ-ଦାୟିତ୍ୱରୁ ମୁକ୍ତ ହେବାକୁ ଚାହେଁ ଏବଂ ସେ ବିଷୟରେ ଆବଶ୍ୟକ ପତ୍ର ଗାଂଧୀ ସ୍ମାରକ ନିଧିକୁ ଓ ସର୍ବ ସେବା ସଂଘକୁ ଲେଖି ଦେଇଅଛି । (ପରେ ଜାଣିଲି ଯେ ବୃନ୍ଦାବନ ଚନ୍ଦ୍ର ଜେନା ତା ୩.୧୨.୧୯୫୬ରେ ଏହି ନକଲ ଖଦୀମଣ୍ଡଳକୁ ନେଇ ନ ଥିଲେ ଏବଂ ୭.୧୨ରେ ମୁଁ ନିଜେ ଶ୍ରୀଯୁକ୍ତ ବିଶ୍ୱନାଥ ପରିଡ଼ାଙ୍କୁ, ଖଦୀ ମଣ୍ଡଳର ସଂପାଦକଙ୍କୁ ଦେଲି) । ମୋର "ବଡ଼ଦିନ ଛୁଟି'' ହେଲା । ମୁଁ ମାସେ ଖଣ୍ଡେ ପରେ ଅର୍ଥାତ୍ ଫେବୃଆରୀ ଶେଷକୁ ମୋର ମତ ଦେବି ।

ଆଲୋଚନାରେ ମୁଁ କୌଣସି ଅଂଶ ଗ୍ରହଣ କରି ନଥିଲି । ଅବଶ୍ୟ, ସର୍ବଦା ଉପସ୍ଥିତ ଥାଇ ସମସ୍ତଙ୍କର ଆଲୋଚନା ଶୁଣୁଥିଲି । ସମସ୍ତେ ଖୁବ୍ ଆଶାର କଥା, ଉତ୍ସାହର ବାଣୀ ଶୁଣାଉଥିଲେ । ପ୍ରାଦେଶିକ "ପ୍ରକାଶନ ସମିତି'' ଆଜି ଗଢ଼ା ହେଲା ନାହିଁ । ସର୍ବ ସେବା ସଂଘରୁ ଅଧିକ ସୂଚନା ଆସିଲେ, ପରେ ତାହା ଗଢ଼ାଯିବ । ଏଥିରେ ମୋଟ ୫୪ ଜଣ ଯୋଗ ଦେଇଥିଲେ ।

ରାତିରେ ଶ୍ରୀ ରମାକାନ୍ତ ଅଧିକାରୀ ନଭେମ୍ବର ମାସର ପାରିଶ୍ରମିକ ମାଗିଲେ । ବହି ବିକ୍ରି ବାବତ୍ ପୂର୍ବର କେତେକ ଟଙ୍କା ମଜୁରା କରି ଦେବାକୁ - ତାଙ୍କର ସହକର୍ମୀମାନଙ୍କର ଦେୟ - ବିରକ୍ତି ସେ ପ୍ରକାଶ କଲେ । ମୁଁ କଅଣ "ଜୁଆଚୋରୀ'' କଥା କହୁଛି ? Unparliamentary ଏପରି ବିରକ୍ତି ସେ ପ୍ରକାଶ କରିବାକୁ ଓ Unparliamentary ଭାଷା କହିବାରୁ, ମୁଁ ପ୍ରତିବାଦ କଲି ।

୧୦.୧୨.୧୯୫୬

ସକାଳେ ବାସନ ମାଜିଲି, ଜୟକୃଷ୍ଣ ବାବୁ ସାହାଯ୍ୟ କଲେ । ଜୋବରାର ପି.ଡ଼ବ୍ଲ୍ୟୁ.ଡ଼ିର ଏସ୍.ଡ଼ି.ଓ (ରେମୁଣା ବଙ୍ଗାଳୀସାହିରେ ଘର) ହରିଚରଣ ସିଂହଙ୍କୁ ତାଙ୍କ ବସାରେ ଦେଖା କରିବାକୁ ଗଲି । ସେ ଘରକୁ ଯାଇଥିବାରୁ, ମୁଁ ଫେରି ଆସିଲି ।

ଶ୍ରୀଯୁକ୍ତ ଗୁଣନିଧି ମହାନ୍ତି ସୂତାଞ୍ଜଳି କାର୍ଯ୍ୟରେ କଟକରୁ ସମ୍ବଲପୁର ଅଭିମୁଖେ ଗଲେ । ତାଳଚେର ଟ୍ରେନ୍‌ରେ ସେ ମେରାମଣ୍ଡଳୀ ଗଲେ । କୁଶଧ୍ୱଜ ଓ ନିର୍ମଳ କେଉଁଝରେ ଗଲେ । ଗତ କାଲି ରାତିରେ ଦାଦା (ନବକୃଷ୍ଣ ଚୌଧୁରୀ) ଅନୁଗୋଳରୁ କଟକ ଆସିଲେ । ତାଙ୍କ ସହିତ ହରମୋହନ ପଟ୍ଟନାୟକ ଓ ପ୍ରଫୁଲ୍ଲଚନ୍ଦ୍ର ସାହୁ ଆସିଥିଲେ । କଥା ପ୍ରସଙ୍ଗରେ ମୁଁ ଏମାନଙ୍କ ଆଗରେ କହିଲି ଯେ ଓଡ଼ିଶାରେ ଭୂଦାନ କାର୍ଯ୍ୟ କିଛି ହୋଇଥିଲେ ହେଁ, ଆମର କୌଣସି ସଂଗଠନ ଗାଁ ଗଣ୍ଡାରେ ବା ସହରରେ ନାହିଁ - ଯଦ୍ୱାରା ଆମେ କୌଣସି ସମ୍ବାଦ, ତଥ୍ୟ, ଅତି ଶୀଘ୍ର ୨/୩ ଦିନରେ ସର୍ବତ୍ର ଜଣାଇ ଦେଇପାରିବୁ । ଆମର କାର୍ଯ୍ୟ ଏକ "Personality Cult" ଉପରେ ଚାଲିଛି । ସକାଳେ ମୋର ବ୍ୟକ୍ତିଗତ ହିସାବପତ୍ର upto date ଲେଖିଲି । ଗତ ୭ ଦିନର ବାସରୀ (diary) ଲେଖିଲି । ଅଫିସର ମାମୁଲି କାର୍ଯ୍ୟ କଲି । ତକଲୀରେ ସୂତା କାଟିଲି ।

୧୩.୧୨.୧୯୫୬

କଟକ ହସପିଟାଲର ଆଉଟ୍‌ଡ଼ୋରକୁ ଯାଇ, ଡାକ୍ତର ଜର୍ଜ ପଟ୍ଟନାୟକ (ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଯେ ମୁନସଫ୍ ଥିଲେ ଓ ଓଡ଼ିଶା ଦେଶ ମିଶ୍ରଣରେ, ପ୍ରାଚୀ ସାହିତ୍ୟ ପ୍ରକାଶନରେ ଉତ୍ସାହୀ ଥିଲେ ତାଙ୍କର ପୁତ୍ର) ...ଙ୍କ ଦ୍ୱାରା ମୋର ତଳପାଟିର ସାମନା ଡାହାଣ ପାଖର ହଲୁଥିବା ଦାନ୍ତଟା ଉପାଡ଼ିଲି । ରକ୍ତସ୍ରାବ ସେମିତି କିଛି ଆଦୌ ହେଲା ନାହିଁ । ତୂଳା plug କରିଦେଲେ । ଘଣ୍ଟାକ ପରେ ମୁଁ ବସାରେ ଫିଟିକିରି ପାଣି କୁଳି କଲି । ଦୁଧ ପିଇଲି । ଭାତ ଖାଇବାକୁ ସେ ଏ ଓଳି ମନା କରିଥିଲେ ।

ଦିନ ପାସେଞ୍ଜର ଟ୍ରେନ୍‌ରେ ବୋଉ (ଶ୍ରୀଯୁକ୍ତା ରମା ଦେବୀ) ମାସୀ (ମଙ୍ଗଳା ସେନ୍‌ଗୁପ୍ତା)ଙ୍କ ସହ ମୁଁ କଟକରୁ ଖୋର୍ଦ୍ଧା ରୋଡ୍ ଓ ସେଠାରୁ ବିଜୟନଗରମ୍ ଅଭିମୁଖେ ଆସିଲି ।

୧୪.୧୨.୧୯୫୬

- ସକାଳେ ଆମ୍ଭେମାନେ ବିଜୟନଗରମ୍ ଷ୍ଟେସନ୍‌ରୁ ସର୍ଭିସବସ୍‌ରେ କୋରାପୁଟ ଜିଲ୍ଲାର ଜୟପୁରକୁ ଆସି ଦିନ ୨ଟାରେ ପହଞ୍ଚିଲୁ । ଜୟପୁର "ଦେବାନ କୋଠି"ରେ ସର୍ବସେବା ସଂଘର ଅଫିସରେ ରହିଲୁ । ଶ୍ରୀଯୁକ୍ତ ଅର୍ଣ୍ଣା ସାହେବ, ବିଶ୍ୱନାଥ ପଟ୍ଟନାୟକ, ରାଧାରତନ ଦାସ, ବାଜୀ ମହମ୍ମଦଙ୍କ ସହ ବୋଉ (ରମା ଦେବୀ) ଆଗକୁ ଏ ଜିଲ୍ଲାରେ ଭୂଦାନ କାର୍ଯ୍ୟ ବିଷୟରେ - ତନ୍ତ୍ର ମୁକ୍ତି ଓ ନିଧିମୁକ୍ତି ଉପରେ - କଥାବାର୍ତ୍ତା କଲେ । ମୁଁ ଥିଲି ।

୧୫.୧୨.୧୯୫୬

ଜୟପୁରରେ । ସକାଳ ୮ଟା ଠାରୁ ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ କୋରାପୁଟ ଜିଲ୍ଲାର ଭୂଦାନ

କର୍ମୀ ଓ ଆଗ୍ରହୀ ଗ୍ରାମବାସୀମାନଙ୍କ (ମୋଟ ୭୦ ଜଣଙ୍କ) ସହ ତନ୍ତ୍ର ମୁକ୍ତି ଓ ନିଧିମୁକ୍ତି ବିଷୟରେ ଚର୍ଚ୍ଚା ଶୁଣିଲି । ଉପରଓଲି ଏ ବିଷୟରେ ମୋର ଆନନ୍ଦ ଜଣାଇଲି । ଆଗକୁ କାର୍ଯ୍ୟ ହୋଇଯିବ ମାତ୍ର ଧନୀଲୋକଙ୍କର ସାହାଯ୍ୟ ସହଯୋଗ କିମିତି ମିଳିବ, ନୂଆ ଗ୍ରାମରାଜ୍ୟରେ ସେମାନଙ୍କର ସନ୍ଦେହ, ଭୟ ଦୂର ହେବ, ସୌମ୍ୟତମ ଆମେ କିମିତି ହେବୁଁ – ଏ ସବୁ ଚିନ୍ତା କରିବାର କଥା ।

୧୬.୧୨.୧୯୫୬

ଜୟପୁରରୁ ନବରଙ୍ଗପୁରକୁ ଯାତ୍ରା । ସର୍ବସେବା ସଂଘର ଭୋଜନାଳୟରେ ଦେବାନ କୋଠିରେ ଜଳଖିଆ ଓ ମଧ୍ୟାହ୍ନଭୋଜନ କଲି । ଉପରଓଲି ବାଜୀ ମହମ୍ମଦଙ୍କ ସହ ବସ୍‌ରେ ମୁଁ ଜୟପୁରରୁ ନବରଙ୍ଗପୁର ଟାଉନକୁ ବାଜୀବାବୁଙ୍କ ସହ ଘରକୁ ଆସିଲି । ସନ୍ଧ୍ୟାରେ ନବରଙ୍ଗପୁର ମୌଳିକ ଟ୍ରେନିଂ ସ୍କୁଲରେ ଉପାସନାରେ ଯୋଗ ଦେଲି । ପ୍ରଧାନ ଶିକ୍ଷକ ଶ୍ରୀ ବାଇଧର ପାଠୀଙ୍କର ଅନୁରୋଧ କ୍ରମେ ଗୁରୁଛାତ୍ରମାନଙ୍କୁ କିଛି (ସର୍ବୋଦୟ ବିଚାର, ଭୂଦାନ କାର୍ଯ୍ୟ, ବିଶ୍ୱଶାନ୍ତି ବିଷୟରେ ଛାତ୍ରମାନଙ୍କର ପ୍ରଶ୍ନର ସାମାନ୍ୟ ଉତ୍ତର – ଯାହା ମୋତେ ଆସିଲା) କହିଲି । ସୂତାଞ୍ଜଳି ଓ ସୂତ୍ରଦାନ ପାଇଁ ୮ ଖଣ୍ଡ ରସିଦ ଖାତା ବାଇଧର ବାବୁଙ୍କୁ ଦେଲି ଏବଂ ଛାତ୍ରମାନଙ୍କୁ ନିବେଦନ କରିଆସିଲି ।

ରାତିରେ ବାଜୀବାବୁଙ୍କ ଘରେ ଅଟାର ପରଟା, loaf, ତରକାରୀ, ପାଚିଲା କଦଳୀ, ଖୁବ୍ ପେଟେ ଖାଇଲି । ତାଙ୍କର ଭାଇ ବଡ଼ ଆଦର ଓ ଅତିଥି ସତ୍‌କାର ଦେଖାଇଲା । ପୁତୁରା ଅହମ୍ମଦ(ଦଶମ ଶ୍ରେଣୀରେ ପଢ଼େ, ବୟସ ୧୩ ବା ୧୪ ବର୍ଷ) ବଡ଼ ଆନନ୍ଦରେ ଆମକୁ ଏ ସବୁ ଖାଦ୍ୟ ପରଶିଲା । ବାଜୀବାବୁଙ୍କର ଘରେ ଶୋଇଲି ।

୧୭.୧୨.୧୯୫୬

ବାଜୀବାବୁଙ୍କ ଘରେ ଜଳଖିଆ କରି, ନବରଙ୍ଗପୁରରୁ ବସ୍‌ରେ ଜୟପୁରକୁ ଆସିଲି । ଜୟପୁର ମୋଟର ଷ୍ଟାଣ୍ଡରେ ବିଲାୟତ ହୋସେନ୍ (ନବନିର୍ମାଣ-କର୍ମୀ ଓ ବାଜୀ ମହମ୍ମଦଙ୍କର ଭଣଜା)ଙ୍କୁ ଭୂମି ଅଦାତାମାନଙ୍କୁ କିପରି ବୁଝାଇବା, ଆସନ୍ତା ଭୋଟରେ ରାଜନୈତିତ ଦଳର ଲୋକେ ବ୍ୟସ୍ତ ରହିବା, ଆଦି ବିଷୟରେ ମୁଁ ତାଙ୍କ ପ୍ରଶ୍ନର ଉତ୍ତର ଦେଲି । ମୋର "ସମନ୍ୱୟ", ଶାନ୍ତିପୂର୍ଣ୍ଣ ବାଟ, ସୌମ୍ୟତମ ପନ୍ଥା ଉପରେ ଜୋର ଦେବାକୁ ସେ ବଡ଼ ପସନ୍ଦ କଲେ । ଶ୍ରୀ କୃଷ୍ଣଚନ୍ଦ୍ର ଜେନା ଓ ମୁଁ ବସ୍‌ରେ କୋରାପୁଟ ଟାଉନ୍‌କୁ ଆସିଲୁ । କୋରାପୁଟ ଟାଉନରେ "ଗାନ୍ଧୀ ସୂତାକଟା କେନ୍ଦ୍ର" ଘରଟିର ଜୀର୍ଣ୍ଣ ସଂସ୍କାର ହୋଇ ସେଠାରେ ସର୍ବସେବା ସଂଘର ଅଫିସ ହେଉଛି । ନବଜୀବନ ମଣ୍ଡଳ(ଉତ୍କଳ) ଏହି ଟାଉନରେ ଏକ ବଗିଚା-ଘର ନର୍ସରୀ କିଣିଛନ୍ତି । ସେଠାରେ ଶ୍ରୀ ନିମାଇଁ ଚରଣ ସାହୁ ଜ୍ୱର ଓ ମିଳିମିଳାରେ ପୀଡ଼ିତ ହୋଇଅଛନ୍ତି । ତାଙ୍କୁ ଦେଖିବାକୁ ଗଲୁ ।

ଉପରଓଲି ବସ୍‌ରେ ଅଲେଖ ପାତ୍ର, ଗୋପାଳଚରଣ (ଭୂଦାନ ଅମୀନ)ଙ୍କ ସହିତ କୋରାପୁଟରୁ ଆସିଲି । ମୁଁ ବୁର୍ଜାରେ ଓହ୍ଲାଇ ସେଠା କୃଷି ତାଲୀମ କେନ୍ଦ୍ରରେ ରହିଲି । ରାମଚନ୍ଦ୍ର ମିଶ୍ରଙ୍କର ପୁଅ ଚନ୍ଦ୍ରମଣି, ମହାରାଷ୍ଟ୍ରରୁ ଆସିଥିବା କୃଷି-ଶିକ୍ଷକ ଆପ୍ଟେ, ଉତ୍ତର ପ୍ରଦେଶରୁ ଆଗତ ମିତ୍ତଲଜୀ (ବିନୋବାଜୀଙ୍କର ପଦଯାତ୍ରାରେ ଓଡ଼ିଶାରେ ଥିଲେ), ଧାରପୁରର କ୍ଷୀରୋଦ ଚନ୍ଦ୍ର ରଥ, ଫକୀର ମିଶ୍ରଙ୍କର ଭାଇ ଉମା ପ୍ରସାଦ ଆଦି ମୋର ଖୁବ୍ ଆଦର କଲେ ।

ମୁଁ "ତନ୍ତ୍ର-ମୁକ୍ତ" ହେଲେ ଅର୍ଥାତ୍ ଭୂଦାନ ସମିତିର ସଂଯୋଜକ ଦାୟିତ୍ୱରୁ ମୁକ୍ତ ହେଲେ, ମୁଁ କଅଣ କରିବାକୁ ମିତ୍ତଲ ଜୀ ଠିକ୍ ଭାବୁଛନ୍ତି ? ମୁଁ ଏହା ପଚାରିଲି । ସେ କହିଲେ -କଳକବ୍ଜାରେ ତେଲ ଦେବା ଦରକାର ! ଆପଣ ସେହି ( friction ) oiling କାମ କରନ୍ତୁ - ଏହି ପ୍ରଦେଶରେ ଥିବା ବଡ଼ ବଡ଼ ଭୂଦାନ ଓ ନବନିର୍ମାଣ ସେବକମାନଙ୍କ ମଧ୍ୟରେ ସେହି ମିଳନ ରକ୍ଷି କାମ ହେବା ଦରକାର । ଏହା କରିପାରିଲେ ଭଲ ହୁଅନ୍ତା ।

୧୮.୧୨.୧୯୫୬

ବୁର୍ଜାରୁ ରାୟଗଡ଼ାକୁ । ଭୋର ୫ଟାରେ ଉଠି, ବୁର୍ଜା କୃଷିତାଲୀମ ଶିବିରରେ ପ୍ରାତଃ-ଉପାସନାରେ ଯୋଗଦେଲି । ଉପାସନା ପରେ, ବ୍ରଜବାବୁ ଓ ଆପ୍ଟେଜୀଙ୍କ ଅନୁରୋଧ କ୍ରମେ, ମୁଁ ଛାତ୍ରମାନଙ୍କୁ କିଛି କହିଲି । ସାର କଥା - ଭୂଦାନ ପ୍ରଚାର ଓ ନବନିର୍ମାଣ କାର୍ଯ୍ୟ ଭିନ୍ନ ଭିନ୍ନ ନୁହେଁ, ଏକା କାର୍ଯ୍ୟର ଦୁଇଟି ଶାଖା । ଗୋଟିଏ ଶାଖାର କର୍ମୀ ଅନ୍ୟ ଶାଖାର କର୍ମୀଙ୍କଠାରୁ ବଡ଼ ବା ସାନ ନୁହନ୍ତି । ନବନିର୍ମାଣର କର୍ମୀଙ୍କ ଉପରେ ଗୁରୁ ଦାୟିତ୍ୱ ଅଛି ଯେ ସେମାନେ ଗ୍ରାମଦାନର ଗ୍ରାମବାସୀମାନଙ୍କର ପୂରା ସହଯୋଗରେ "ଗ୍ରାମରାଜ୍ୟ"ର ନମୁନା ଦେଖାଇବେ । Experiment goes further than science, ବିନୋବାଜୀଙ୍କର ଏହି ମହାନ୍ Experiment ପୂର୍ବର ଅନେକ ପୁରୁଣା, ପ୍ରତିପାଦିତ ପ୍ରଥାକୁ ଅତିକ୍ରମ କରି ଏକ ନୂଆ ସମାଜ-ରଚନା ଦେଖାଇବ । ଏହି ପ୍ରୟୋଗର ଭାର ଆମ ସମସ୍ତ ଦେଶବାସୀଙ୍କ ଉପରେ ପଡ଼ିଛି; ଖାସ୍ କରି "ନବନିର୍ମାଣ"ର କର୍ମୀଙ୍କର ଦାୟିତ୍ୱ ବେଶୀ ।

ଶ୍ରୀଯୁକ୍ତ ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ ବୁର୍ଜାରେ ସକାଳ ୯ଟାରେ ପହଞ୍ଚିଲେ । ବ୍ରଜବାବୁ ଓ ମୁଁ ବନ୍ଦୀକାର ଗ୍ରାମକୁ (ଏଠାରୁ ୨ ମାଇଲ ମଧ୍ୟରେ) ଯାଇ, ଟିକିଏ ବୁଲିଆସିଲୁ । "ଗାନ୍ଧୀଘର"ର ମୂଳଦୁଆ ଓ ନାଳ ବନ୍ଧାଇବା କାମ ଆରମ୍ଭ ହୋଇଛି ।

୧୯.୧୨.୧୯୫୬

ସକାଳେ ନଦୀକୁ ଯାଇ, ଲୁଗାପଟା ସାବୁନ ଦ୍ୱାରା ସଫା କଲି । କାଲି ପରି, ଆଜି ଗୋପାଳ ବାବୁ ଆଦିଙ୍କର ମେସ୍‌ରେ ଜଳଖିଆ ଓ ଭାତ ଖାଇଲି । ଡିସେମ୍ବର ମାସର ଇଂରାଜୀ

"ସର୍ବୋଦୟ'' ପତ୍ରିକା ପଢ଼ିଲି । ଚୁନୀ ଓ ପିଲାଙ୍କର ଖର୍ଚ୍ଚ ପାଇଁ ନାମ ମାତ୍ର ଟ. ୩୦ ମନିଅର୍ଡ଼ର ରାୟଗଡ଼ା ଡାକଘରକୁ ଯାଇ କଲି । ସର୍ବସେବା ସଂଘର ପରିଚାଳିତ "ଉଦ୍ୟୋଗ ଭବନ''କୁ ଯାଇ ଅଲେଖ ବାବୁଙ୍କ ସାନ ଭାଇ ଗୋଲକଚନ୍ଦ୍ର ପାତ୍ର, ଅନୁଗୋଳରୁ ଆସିଥିବା ଶ୍ରୀମାନ୍ ଚକ୍ର, ମହାରାଷ୍ଟ୍ରରୁ ଆସିଥିବା ଘଣାବିଭାଗର ଶ୍ରୀ ମଲ୍ଲିକ ଜୀ, ଆଦିଙ୍କୁ ଦେଖା କଲି । ପ୍ରାରମ୍ଭିକ ଅସୁବିଧା (ଘର, ପାଣି, ଯଥେଷ୍ଟ ସାହାଯ୍ୟକାରୀଙ୍କର ଅଭାବ) ସତ୍ତ୍ୱେ କାର୍ଯ୍ୟ କିଛି ହୋଇଛି । ସୋରିଷ, ରାଶି ଆଦି ଛୋଟ ଛୋଟ ଦାନା (ତୈଳବୀଜ) ଚଲାଇବାର ଗୋଟିଏ ସରଳ ଯନ୍ତ୍ର ଦେଖିଲି । କିସାନ ଅରଟ, ତେଲଘଣା, ଭିଣା, ପ୍ରଧାନ ଭାବରେ ତିଆରି ହେଉଛି ।

ଶ୍ରୀଯୁକ୍ତ ଈଶ୍ୱରଲାଲ ବ୍ୟାସଜୀଙ୍କୁ "ଜୀବରାମ ଆଶ୍ରମ'' ଗରଦପୁର, ପୋ.ଅ.ଭଦ୍ରକ) ଠିକଣାରେ ଆଜି ପତ୍ର ଲେଖିଲି ଯେ ସେ ଭାଇ, ଭୂଦେବ (ମୋର ପୁତୁରା)ଙ୍କର ଭୂଦାନକୁ ୧/୬ ଅଂଶ ଦତ୍ତ ଜମି (ପ୍ରାୟ ୬ ଏକର ହେବ) କେମିତି ଚଞ୍ଚଳ, ଆସନ୍ତା ଜାନୁଆରୀ ମାସ ଭିତରେ, ବାଣ୍ଟି ଦିଅନ୍ତୁ ।

ରାୟଗଡ଼ାରେ ପାଣିର ଅଭାବ ପୂର୍ବପରି ଅଛି । ଠକ୍କର ବାପାଙ୍କର ଆଶ୍ରମ ପାଖରେ ଭୂଦାନ ଅଫିସ ଘର ଓ ୪ଟି କ୍ୱାଟର୍ସ ଏବେ ତିଆରି ହୋଇଛି ।

୨୧.୧୨.୧୯୫୬

ସକାଳ ୬ଟାରେ ବ୍ରହ୍ମପୁରରୁ "ଫୁଲବାଣୀ ଏକ୍ସପ୍ରେସ୍'' ନାମକ ସରକାରୀ ମୋଟର-ସର୍ଭିସ୍-ବସ୍‌ରେ ମୁଁ ଆସିକା, ଭଞ୍ଜନଗର, ମୁଜାଗଡ଼, କଳିଙ୍ଗାଘାଟି, ଟିକାବାଲି ବାଟେ ଉପରଓଳି ପ୍ରାୟ ୧ଟା ବେଳେ ଫୁଲବାଣୀ ସହରରେ ପହଞ୍ଚିଲି । କଳିଙ୍ଗାଘାଟି ପ୍ରାୟ ୬ ମାଇଲ ଲମ୍ବ ଓ ଦୁଇହଜାର ଫୁଟ ଉଚ୍ଚ ହେବ । ଦୃଶ୍ୟ ସୁନ୍ଦର । ସେଠାରୁ ସଡ଼କର ଦୁଇ ପାଖରେ ଅଧ ମାଇଲ ବା ଏକ ମାଇଲ ଅନ୍ତରରେ ସାନ ସାନ ଗାଁଗୁଡ଼ିକ ପଡ଼ିଲା । ଏ ସବୁ କନ୍ଧ ବସ୍ତି । ଘରବାଡ଼ିରେ ଓ ପାଖର କ୍ଷେତ୍ରରେ ବହୁତ ସୋରିଷ ଚାଷ ହୋଇଅଛି । ଏ ସବୁ ବୌଦ-ଫୁଲବାଣୀ ଜିଲ୍ଲାର ମାଳ ଅଞ୍ଚଳ ।

ଲକ୍ଷ୍ମୀନାରାୟଣ ନାମକ ଜଣେ ୩୦/୩୨ ବର୍ଷ ବୟସର ଯୁବକ (ଘର ଭଞ୍ଜନଗରରେ) ଏଠାରେ ହୋଟେଲ କରିଛନ୍ତି । ପ୍ରାୟ ୧୦/୧୧ ବର୍ଷର ଦୁଇଟି ପିଲା ପରଶିଲେ । ବ୍ୟବସ୍ଥା ଭଲ । ନିରାମିଷ ଆହାର ମୁଁ ତ ଖାଏ । ଦଶ ଅଣା ଚାର୍ଯ୍ୟ ଦେଲି ।

ଫୁଲବାଣୀ ସହର ଅତି ସାନ, ଲୋକସଂଖ୍ୟା ପ୍ରାୟ ୧୫୦୦ ମାତ୍ର ହେବ । ଲମ୍ବ ଓ ସରୁ ହୋଇ ବସ୍ତି ଓ ଅଫିସ, ଏବଂ ଅଫିସରମାନଙ୍କର ଘର । Public Relations Officeର ପାଠାଗାରରେ ମୁଁ ବସି ୨ ଘଣ୍ଟା ଖଣ୍ଡେ ପତ୍ରପତ୍ରିକାମାନ ପଢ଼ିଲି ।

୨୨.୧୨.୧୯୫୬

ବୌଦରୁ ସାଇକେଲରେ ପ୍ରାୟ ୧୨ ମାଇଲ ଦୂର କମ୍ପରା ଗ୍ରାମକୁ ମୁରମୁଣ୍ଡି, ଜୁନାପଙ୍କ, ମିଙ୍ଗଲପୁର, ତଲିବନ୍ଧ ବାଟେ ଗଲୁ । ଶ୍ରୀ ସାଧୁଚରଣଙ୍କ ଘରେ ରହିଲୁ । ସେ ପ୍ରାଇମେରୀ ଶିକ୍ଷକ ପୂର୍ବେ ଥିଲେ । ସନ୍ଧ୍ୟା ପରେ ଗାଁ ଲୋକଙ୍କ ସହ ଗାଁର ଦଳାଦଳି ଓ ଭୂଦାନ ବିଷୟରେ କଥାବାର୍ତ୍ତା ହେଲୁ । ଶ୍ରୀ କୌଶିକ ବାରିକ ବହି କିଣିଲେ ।

୨୩.୧୨.୧୯୫୬

କମ୍ପରାରୁ ସାହାଜପାଇ ହାଟ ବାଟେ ସଂଗ୍ରାମପୁର, ତାଳସରଡ଼ା, ବହିରା ଦେଇ ଝାରମୁଣ୍ଡା ଗଲୁ । ଶ୍ରୀ ସଂସାର ମହାକୁଳ (ଜାତିରେ ତୁମାଳ ବା ଗଉଡ଼) ଙ୍କ ଘରେ ତାଙ୍କର ଜୁଆଇଁ, ପୁତ୍ରମାନଙ୍କ ଶ୍ୟାଳକ ବହିରାଗ୍ରାମର ସର୍ବରାକାର ଶଙ୍କର ଦେହୁରିଙ୍କ ସହ ତନ୍ତ୍ରମୁକ୍ତି ଓ ନିଧିମୁକ୍ତି ବିଷୟରେ କଥାବାର୍ତ୍ତା ହେଲୁ । ଶଙ୍କରବାବୁ ୧୫ ଏକର ଜମି ଦେଇଥିଲେ ।

ବୌଦ୍ଧ ସନ୍ଧ୍ୟା ପୂର୍ବରୁ ଫେରି ଆସି "ଗୋଦାବରୀଶ" ପାଠଚକ୍ରରେ "ସର୍ବୋଦୟ ଓ ଲୋକନୀତି'' ବିଷୟରେ ମୁଁ କିଛି କହିଲି । ଶ୍ରୀ ଗରୁଡ଼ଧ୍ୱଜ ପୁରୋହିତ "ପର୍ଯ୍ୟବେକ୍ଷକ'' (ସଭାପତିଙ୍କ ବଦଳରେ ଏ ପଦ) ଥିଲେ ।

୨୫.୧୨.୧୯୫୬

ମୁଁ ଦେଖୁଛି ଅନେକ ପତ୍ରିକାରେ ବିନୋବାଜୀ ଓ ଭୂଦାନ ସମ୍ବନ୍ଧରେ ବଡ଼ ସୁନ୍ଦର ଲେଖାମାନ ବାହାରୁଛି । ମାତ୍ର ଆମ୍ଭେମାନେ ଏ ସବୁ ଦେଖୁନାହୁଁ । ମୁଁ ତ ଅଫିସର କାଗଜପତ୍ର କାର୍ଯ୍ୟରେ ଅଧିକାଂଶ ଦିନ ଓ ସମୟରେ ଏତେ ବ୍ୟସ୍ତ ରହୁଛି ଯେ ମୁଁ ଏ ସବୁ ଦେଖିବା ଅସମ୍ଭବ ହୋଇଅଛି । ସାଧାରଣ ପାଠୁଆ ଲୋକେ ତଥାପି ଭୂଦାନ-ତତ୍ତ୍ୱକୁ ନାକ ଟେକୁଛନ୍ତି, ଅର୍ଥାତ୍ ତାଚ୍ଛଲ୍ୟ ଦେଖାଉଛନ୍ତି ।।

ତା ୨୧.୧୨.୧୯୫୬ରେ ବୌଦ ଜିଲ୍ଲାର ସହକାରୀ ପବ୍ଲିକ୍ ରିଲେଶନ୍ (ଲୋକ ସଂପର୍କ) ଅଫିସର ଶ୍ରୀ ପ୍ରକାଶ ଚନ୍ଦ୍ର ପାଢ଼ୀଙ୍କ (ଘର ପାରଳାଖେମୁଣ୍ଡି ଟାଉନ୍‌ରେ) ସହ ଫୁଲବାଣୀରେ ଦୈବାତ୍ ଦେଖା ହେଲା । ସନ୍ଧ୍ୟା ୫ଟା ବେଳେ ସେ ଓ ମୁଁ ସର୍ଭିସ-ବସ୍‌ରେ ୪୩ ମାଇଲ ଦୂର ବୌଦଗଡ଼କୁ ଆସିଲୁ । "ରାଣୀପଥର'' ଘାଟି ବେଶ୍ ସର୍ପାକାର ଓ ଖୁବ୍ ଗଡ଼ାଣିଆ ଘାଟି । ରାତିଯୋଗୁଁ ଘାଟିର ଦୃଶ୍ୟ ମୁଁ ଦେଖିପାରିଲି ନାହିଁ । ବାଟରେ ସଡ଼କ ଉପରେ ବସ୍‌ଯାତ୍ରୀମାନେ (ଆମ୍ଭେମାନେ) ଦୁଇଟା ଜୀଅନ୍ତା କଲରାପତରିଆ ବାଘ ଦେଖିଲୁ । ବନ୍ନୁ ଓ ବାବୁଲି ମୋ ସହ ବସ୍‌ରେ ଯାଉଥିଲେ ବାଘ ଦେଖି ଖୁସି ହୋଇଥାନ୍ତେ । ବୌଦରାଜରେ ମୁଁ ଏଠା ସ୍କୁଲ ଡ଼େପୁଟି ଇନ୍‌ସପେକ୍ଟର ଶ୍ରୀ ବାଳମୁକୁନ୍ଦ ପଟ୍ଟନାୟକଙ୍କର ବସାରେ ରହିଲି । ପ୍ରାୟ ୯

ବର୍ଷ ପରେ ତାଙ୍କ ସହ ଦେଖା ହେବାରୁ ସେ ବହୁତ ଖୁସି ହେଲେ ଏବଂ ଘରୋଇ ଓ ଭୂଦାନ ବିଷୟରେ କଥାବାର୍ତ୍ତା କଲେ ।

୨୬.୧୨.୧୯୫୬

ଅନୁଗୋଳରେ । ଭୋର୍ ୫ଟାରେ ମୁଁ ବଡ଼କେରାରୁ ପ୍ରାୟ ୨ ମାଇଲ ଦୂର ଚମ୍ପତିମୁଣ୍ଡାକୁ ଯାଇ (ବନ୍ତଳା ସଡ଼କ ଧାରରେ ଅବସ୍ଥିତ) ସେଠାର ଉତ୍ତର ମୌଳିକ ଶିକ୍ଷାକେନ୍ଦ୍ରର ପିଲାମାନଙ୍କୁ ଏବଂ ବାଳିକା ଶ୍ରୀମତୀ ମୀରା ଓ ସରୋଜିନୀ (କୁଞ୍ଜବିହାରୀ ଦାସଙ୍କର କନ୍ୟା) ଓ ଶ୍ରୀ ରାଜେନ୍ଦ୍ର ବର୍ମା (କୁଶପୁରରେ ଘର)ଙ୍କର ସ୍ତ୍ରୀ ଶ୍ରୀମତୀ ଲବଙ୍ଗଲତା ବର୍ମାଙ୍କୁ ଦେଖା କରି, ସଂକ୍ଷେପରେ ହାଲଚାଲ ଶୁଣି, ନ୍ଦ୍ରା ଓ ଗଜାମୁଗ ଜଳଖିଆ କରି, ବଡ଼କେରା ବାଟେ ଅନୁଗୋଳର "ବାଜୀରାଉତ ଛାତ୍ରାବାସ"କୁ ସାଇକେଲରେ ଆସିଲି । ଅନ୍ୟାସୀପୁର (ବରୀ ଅଞ୍ଚଳ)ର ବାସିନ୍ଦା ଓ ଏଠା ଉତ୍ତର ମୌଳିକ ଶିକ୍ଷାର୍ଥୀ ଶ୍ରୀମାନ୍ ଚୈତନ୍ୟ (ହରିଜନ ଛାତ୍ର) ମୋ ସହ ଚାଲି ଚାଲି ବଡ଼କେରା ପର୍ଯ୍ୟନ୍ତ ଆସିଲା । ପିଲାଟିର ସେବାଭାବ ଓ ଜିଜ୍ଞାସା ପ୍ରବୃତ୍ତି ଅଛି । ମୋତେ ପଚାରିବାରୁ, ମୁଁ କହିଲି ଯେ ଆମ୍ଭମାନଙ୍କର କାର୍ଯ୍ୟ ନିଷ୍କାମ ହେବା ଉଚିତ, ମାତ୍ର ନିଷ୍ଫଳ ହେବା ଉଚିତ ନୁହେଁ । ଆମ୍ଭମାନଙ୍କର (ସେବକମାନଙ୍କର) ପରିଶ୍ରମର ଫଳ ବରଂ ଅନ୍ୟମାନେ (ଅଭାବଗ୍ରସ୍ତ ଦେଶବାସୀ) ଭୋଗ କରନ୍ତୁ ମାତ୍ର ଅନୁତ୍ପାଦକ ଶ୍ରମ କରିବୁ ନାହିଁ । ଜାଣିଶୁଣି ଅକର୍ମଣ୍ୟ ଜମିରେ ପରିଶ୍ରମ କଲେ କଅଣ ହେବ ? ଉଦାହରଣ – ରାମଚନ୍ଦ୍ରପୁର କେନ୍ଦ୍ର ।

ଆଜି ଭାରୀ କୁହୁଡ଼ି ହୋଇଥିଲା । ମୁଁ ଛାତ୍ରାବାସରେ ୧୧ଟାରେ ଗାଧୋଇ, ଭାତ ଖାଇଲି । ଉପରଓଳି ଏଠାର ପୂର୍ବତନ କଳା-ଶିକ୍ଷକ ଶ୍ରୀମାନ୍ ଜଗନ୍ନାଥ ଦାସଙ୍କର ନିର୍ମିତ "କଳା-ଭବନ"ରେ ଢେଙ୍କାନାଳ ଜିଲ୍ଲାର ଭୂଦାନକର୍ମୀ, ସହଯୋଗୀ, ଛାତ୍ରାବାସର ଗୁରୁଜୀ, ମହିଳାଶ୍ରମର ଶିକ୍ଷାର୍ଥିନୀ, ବେସିକ୍ ଟ୍ରେନିଂ କଲେଜର ଅଧ୍ୟକ୍ଷ ଶ୍ରୀ ଶତ୍ରୁଘ୍ନ ନାଥ, ଧନ୍ଦାଶିକ୍ଷକ ଫକୀର ସାହୁ ଓ ବାନାମ୍ବର ବାବୁଙ୍କ ଉପସ୍ଥିତିରେ ତନ୍ତ୍ର-ମୁକ୍ତି ଓ ନିଧି-ମୁକ୍ତି ବିଷୟରେ ଆଲୋଚନା ହେଲା ।

କମ୍ୟୁନିଷ୍ଟ ଶ୍ରୀ ହୃଷୀ ପ୍ରଧାନ ଭୂଦାନ ଆନ୍ଦୋଳନକୁ ସମର୍ଥନ ଜଣାଇବା ସଙ୍ଗେ ସଙ୍ଗେ ଏହାର କାର୍ଯ୍ୟ ପ୍ରଣାଳୀକୁ "ଅବୈଜ୍ଞାନିକ" କହିଲେ ଓ ମୋର ମୌଖିକ ରିପୋର୍ଟକୁ misquote କରି ତାଙ୍କ ଯୁକ୍ତିକୁ ସମର୍ଥନ କରିବା ପରି କହିଲେ । ମୁଁ ତାଙ୍କୁ ପୁଣି ବୁଝାଇଦେଲି ।

ଆମେ ଟିକିଏ "ସଙ୍କୁଚିତ" ହୋଇଯିବା ଉଚିତ ବୋଲି କହିଲି । ଶ୍ରୀ ସଚ୍ଚିବାବୁ ତାହାକୁ ଖଣ୍ଡନ କରି ଓ ସମସ୍ତଙ୍କୁ ଉତ୍ସାହ, ପ୍ରେରଣା ଦେବାପାଇଁ ଏକ ସୁନ୍ଦର ବକ୍ତୃତା ଦେଲେ । ରାତିରେ ମଧ୍ୟ ଘଣ୍ଟାଏ କେବଳ ଭୂଦାନକର୍ମୀମାନଙ୍କ ମଧ୍ୟରେ ଆଲୋଚନା ହେଲା ।

୨୭.୧୨.୧୯୫୬

ଅନୁଗୋଳର ବାଜୀରାଉତ ଛାତ୍ରାବାସରୁ କଟକକୁ ଯାତ୍ରା । ସକାଳେ ଆଜି ମଧ୍ୟ ଖୁବ୍ କୁହୁଡ଼ି ହେଲା । ମୁଁ ଭୋର ଭଲ କରି ଥଣ୍ଡାପାଣିରେ ଗାଧୋଇ ପଡ଼ିଲି । ଶର୍ଦ୍ଦି ଓ ନାକ ବୁଜି ଯାଉଥିଲା, ଭଲ ଫଳ ଦେଖିଲି ।

ଛାତ୍ରାବାସର ୧୦/୧୧ ଜଣ ବଡ଼ ପିଲା ଓ ୪ - ୫ ଜଣ ଗୁରୁଜୀଙ୍କୁ ମୁ (ଅବନାବାବୁ ଗୁରୁଜୀଙ୍କର ପ୍ରଶ୍ନ - ୧୯୫୭ର ବିପ୍ଳବର ରୂପ କଅଣ ହେବ ?ର ଉତ୍ତର ) କିଛି କହିଲି । ମୋ ମନକୁ ଆସୁଛି ଯେ ତାହା ହିଂସାତ୍ମକ ହେବ ନାହିଁ, ଗଣ୍ଡଗୋଳ ସୃଷ୍ଟି କରିବ ନାହିଁ, ସୌମ୍ୟ ହେବ । ବିନୋବାଜୀଙ୍କର ଲେଖାମାନ ସମସ୍ତେ ପଢ଼ନ୍ତୁ ଓ ଭାବନ୍ତୁ ।

ସକାଳେ ପୋଡ଼ାବେଲ ଖାଇଥିଲି । ମଧ୍ୟାହ୍ନଭୋଜନ ରୋଟି ଖାଇଲି । ବେସିକ୍ ଟ୍ରେନିଂ କଲେଜର ପ୍ରିନ୍ସପାଲ ଶ୍ରୀ ଶତ୍ରୁଘ୍ନନାଥଙ୍କୁ ଦେଖା କରି ଆସିଲି ।

ମେରାମଣ୍ଡଳୀ ରେଲଷ୍ଟେସନ୍‌ରେ "ନିଆଁଖୁଣ୍ଟା'' ନାମକ ଓଡ଼ିଆ ବ୍ୟଙ୍ଗ-ବିଦ୍ରୂପ ଓ ଅତି କଟୁ ସମାଲୋଚନାମୂଳକ ଏବଂ ସର୍ବଦା ସମସ୍ତଙ୍କର ମନ୍ଦ ଦିଗଟା ଦେଖୁଥିବା ପାକ୍ଷିକ ପତ୍ରିକାର ସଂପାଦକ ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ ସହ ଦେଖାହେଲା । ମୁଁ ଆଗେ ତାଙ୍କ ପାଖକୁ ଯାଇ, ତାଙ୍କର କୁଶଳ ସମାଚାର ପଚାରିଲି । ସେ କହିଲେ ଯେ "ମୁଁ ଘରୁ (ବାଣପୁରରୁ) ପଳାଇ ଆସି ଆପଣଙ୍କର ବାପାଙ୍କ ପାଖରେ ପହଞ୍ଚିଥିଲି । ପ୍ରାୟ ୧୯୧୩ରେ ଆପଣଙ୍କର ବାପା ମୋତେ କିଶୋର କବି ବୋଲି ପରିଚୟ ଦେଇ ଏକ ପ୍ରଶଂସାପତ୍ର ନିଜ ହାତରେ ଲେଖି ଦେଇଥିଲେ । ଆପଣ ଥରେ ଗୋଟିଏ ହିସାବ ସ୍ପଷ୍ଟୀକରଣ କରି, ମୋତେ ଚିଠି ଲେଖିଥିଲେ । ଭଲ ଆଳାପ କଲେ । ଭୂଦାନ ଅଫିସକୁ ସେ ବୁଲି ଆସିବେ ବୋଲି ନିଜ ମନକୁ କହିଲେ । ହୀରାକୁଦରୁ କଟକ ଟ୍ରେନିଂ କଲେଜର ଛାତ୍ର, ଛାତ୍ରୀ ଓ ପ୍ରଫେସର ଫେରୁଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀ ସତ୍ୟାନନ୍ଦ ମହାନ୍ତି ଥିଲେ । ଏ ୧୯୫୪-୫୫ ରେ ୨ ମାସ ଖଣ୍ଡେ ବାବୁଲିକୁ କଟକରେ ପଢ଼ାଉଥିଲେ । ବାବୁଲିର ଖବର ସେ ପଚାରିଲେ । ରାତିରେ ମୁଁ କଟକରେ ପୋଡ଼ାବେଲର ପଣା ଖାଇଲି ।

୨୮.୧୨.୧୯୫୬

ଭୋର ଘ ୪ ରେ ଉଠିଲି । କାଲି ବେଲପୋଡ଼ା ଓ ପଣା ଖାଇଥିବାରୁ, ମୋର ଝାଡ଼ା ସଫା ହେଲା । ପ୍ରତିଦିନ ଏପରି ବେଲପୋଡ଼ା ଓ ପଣା ମିଳିଲେ, ଖାଇବା ଉଚିତ ।

ସକାଳେ ନିତ୍ୟକର୍ମ ସାରି, ମୁଁ ଗତ ୮/୧୦ ଦିନର ଚିଠିପତ୍ର ଦେଖିଲି ଓ ସେଗୁଡ଼ିକରେ କାର୍ଯ୍ୟାନୁଷ୍ଠାନ ପାଇଁ ନୋଟ୍ ଲେଖିଲି । ସକାଳ ୯ଟାରେ ଏକାବେଳେକେ ଭାତ ଖାଇଦେଲୁ ।

ଶ୍ରୀ ବୃନ୍ଦାବନ ଚନ୍ଦ୍ର ଜେନା ଓ ଜୟକୃଷ୍ଣ ବିଶ୍ଵାଳ ସୋର ଗଲେ। ବାଲେଶ୍ଵର ଜିଲ୍ଲାର ବୈଠକରେ ଯୋଗ ଦେବେ। ଶ୍ରୀଯୁକ୍ତ ଗୋପବାବୁ ମଧୁସାଗର ବିଦ୍ୟାପୀଠ (ନେମ୍ପରା) ବୈଠକକୁ ଯାଇଛନ୍ତି। ଶ୍ରୀଯୁକ୍ତା ରମା ଦେବୀ ମୁଙ୍ଗେର ଜିଲ୍ଲାର "ଶ୍ରମଭାରତୀ'' ଖାଦୀଗ୍ରାମରେ ବୈଠକକୁ ଯାଇଛନ୍ତି। ଶ୍ରୀଯୁକ୍ତ ନବବାବୁ ମଧ ସେଠାକୁ ଯାଇଛନ୍ତି।

୨୯.୧୨.୧୯୫୬

ଭୋର ଉଠି ଉପାସନାରେ ବସିଲି – ଅନ୍ୟମାନେ ସମସ୍ତେ ଏକତ୍ର ଉପାସନା କରନ୍ତି। ମୋର ମନରେ କେବେହେଁ ଏକାଗ୍ରତା ନ ଥାଏ, ମାତ୍ର ଦଶ ଜଣଙ୍କ ସଙ୍ଗରେ ରହୁଥିବାରୁ ଓ ଦୁଇ ଓଳି ଉପାସନା "ଆଶ୍ରମ-ଜୀବନ''ର ଓ ଏଠାର ରୀତି ହୋଇଥିବାରୁ, ମୁଁ ମଧ୍ୟ ସେଥିରେ ଯୋଗ ଦିଏ।

ମେସ୍‌ରେ ବାସନଗୁଡ଼ିକ ମାଜିଲି। ସମସ୍ତେ ଏକତ୍ର ଗୋଟିଏ ମେସ୍‌ରେ ଚଳନ୍ତି। ମୁଁ ରାନ୍ଧି ଜାଣେ ନାହିଁ। କିଛି ସାହାଯ୍ୟ କରିବା ଦରକାର। ତେଣୁ ଏ ସହଜ କାର୍ଯ୍ୟରେ ମୁଁ ସାହାଯ୍ୟ କରେ। ଶ୍ରୀଯୁକ୍ତ ଗୋପବାବୁ, ବୁଲୁବାବୁ କେନ୍ଦ୍ରାପଡ଼ାର ମଧୁସାଗର ବିଦ୍ୟାପୀଠରେ ଭୂଦାନ ଆଲୋଚନା ସଭାରେ ଯୋଗ ଦେଇ, ଆଜି ଉପରଓଳି କଟକକୁ ଫେରିଲେ।

ରାତି ୨ଟା ବେଳେ ଆଚାର୍ଯ୍ୟ ମହାଶୟ ଓ ଶ୍ରୀଯୁକ୍ତ ଗୋପବାବୁ କଟକରୁ କାଳୁପଡ଼ାଘାଟ ଗଲେ। ଗୋପାଳପୁରଠାରେ ଭୂଦନା ସଭାରେ ଯୋଗ ଦେବେ।

୩୦.୧୨.୧୯୫୬

ସକାଳେ ଜନତା ଟ୍ରେନ୍‌ରେ ବୋଉ (ଶ୍ରୀଯୁକ୍ତା ରମାଦେବୀ ଓ ମାସୀ(ମଙ୍ଗଳା ଦେବୀ) କଟକରେ ବିହାରର ଖଦୀ ଗ୍ରାମରୁ କାଲି ସୋରରେ ବାଲେଶ୍ଵର ଜିଲ୍ଲାର କର୍ମୀମାନଙ୍କର ନିଧିମୁକ୍ତି ଓ ତନ୍ତ୍ରମୁକ୍ତି ବୈଠକରେ ଯୋଗ ଦେଇ ସାରି, ପହଞ୍ଚିଲେ। ଖାଦୀଗ୍ରାମରେ ବୋଉଙ୍କର ୨/୩ ଥର ମେଲେରିଆ ଜ୍ଵର ହୋଇଥିଲା।

ସକାଳେ ଭୋର ମୁଁ ମେସ୍‌ର ବାସନ ମାଜିଲି। ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତି, ସଚ୍ଚିଦାନନ୍ଦ ମହାନ୍ତି ଓ ମୁଁ (ଶରତ) ଭୂଦାନ ସମିତିର ଅର୍ଥ ଉପସମିତି ଓ କର୍ମୀ-ନିଯୁକ୍ତି ଓ ଅବ୍ୟାହତ ଉପସମିତିର ବୈଠକ କଲୁ। ଖରାବେଳ ଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ଗତ ୭/୮ ମାସର ଭତ୍ତାପ୍ରାପ୍ତ କର୍ମୀମାନଙ୍କର ଛୁଟି-ଦରଖାସ୍ତମାନ (ବାକୀ ପଡ଼ିଥିବା ଗୁଡ଼ିକ) ଦେଖି, କାର୍ଯ୍ୟାନୁଷ୍ଠାନ କଲି।

ଗତ ୫ ଦିନ ହେଲା କଟକରେ ନିଖିଳ ଭାରତ ୩୯ତମ Indian Economic Conference and 17th Agricultural Economics Conference ହେଉଛି। ମୋତେ ନିମନ୍ତ୍ରଣପତ୍ର ଆସିଥିଲା। ମାତ୍ର ମୁଁ ଅନୁଗୋଳରେ ଥିବାରୁ ଓ ଏଠା ମାମୁଲି ଅଫିସକାର୍ଯ୍ୟରେ ବ୍ୟସ୍ତ ରହି, ଯୋଗଦେଇ ନାହିଁ।

ସେହି କନ୍‌ଫ୍ରେରେନ୍ସକୁ ଆସିଥିବା Dr. Gyanchand, Dr. M.L.Dartwalla and Dr.V.K.R.V.Rao ଯଥାକ୍ରମେ

"Sarvodaya and Socialism","Economic Aspect of Bhoodan" & "Land Reform and Bhoodan" ବିଷୟରେ ପ୍ରତ୍ୟେକେ ପ୍ରାୟ ଅଧଘଣ୍ଟାଏ ଲେଖାଁଏ ଭାଷଣ "ଶହୀଦ୍ ଭବନ" କଟକରେ ଦେଇଥିଲେ । ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥ ସଭାପତି ହୋଇଥିଲେ । ମୁଁ ଏହି ଭାଷଣଗୁଡ଼ିକ ଶୁଣିବାକୁ ଯାଇଥିଲି । ବକ୍ତାମାନଙ୍କର reflections ମୋଟ ଉପରେ ଅନେକ ସାଧାରଣ ଶ୍ରୋତାଙ୍କ ଉପରେ ଭଲ ପ୍ରଭାବ ପକାଇଥିବ । ବକ୍ତାମାନେ ଇଂରାଜୀରେ ଓ ରାଧାନାଥ ବାବୁ ହିନ୍ଦୀରେ କହିଲେ । ରାତିରେ ମୁଁ ଅନ୍ୟମାନଙ୍କ ସହ ଚିନାବାଦାମ, ମୁଢ଼ି ଓ ଉଖୁଡ଼ା ଖାଇଲି ।

୩୧.୧୨.୧୯୫୬

ଭୋର ଖୁବ୍ କୁହୁଡ଼ି ହୋଇଥିଲା । ମୁଁ ବାସନ ମାଜିଲି । ଗାଧୋଇ ସାରି, ମହତାବ ରୋଡ଼ରେ ଅବସ୍ଥିତ ଶଙ୍କରପୁର ପୋଲିସ ଫାଣ୍ଡି ପାଖରେ ଶ୍ରୀ ବାଳମୁକୁନ୍ଦ ପଟ୍ଟନାୟକଙ୍କୁ (ବୌଦର ସ୍କୁଲ ଡେ଼ପୁଟି ଇନ୍‌ସପେକ୍ଟରଙ୍କୁ) ଦେଖା କରି ଏବଂ ଟ. ୧୯/- ର ମୋଟରେ ୩୦ ଖଣ୍ଡ ଭୂଦାନ ଓ ସର୍ବୋଦୟ ସାହିତ୍ୟ ବିଷୟକ ବହି ଦେଇଆସିଲି । ସେ ବିଲ୍ କରି, ପରେ ଟଙ୍କା ମୋଠାକୁ ପଠାଇଦେବେ କହିଲେ । ଜଳଖିଆ ନ କରି, ସକାଳ ୯ଟା ବେଳକୁ ଏଠାରେ ଆମ୍ଭେମାନେ ଭାତ ଖାଇଦେଉଅଛୁ । ଏହା ମୋତେ ବଡ଼ ସୁବିଧାଜନକ ମନେ ହେଉଅଛି ।

୧.୧.୧୯୫୭

ଆଚାର୍ଯ୍ୟ ବିନୋବା ଭାବେ ଓ ଅଖିଳ ଭାରତ ସର୍ବସେବା ସଂଘର – ମଦୁରାଇ ଜିଲ୍ଲାର ପାଲନୀଠାରେ ତା ୨୨.୧୧.୧୯୫୬ରେ ସିଦ୍ଧାନ୍ତ ଅନୁସାରେ ସମଗ୍ର ଭାରତରେ ଭୂଦାନକାର୍ଯ୍ୟ ପ୍ରାଦେଶିକ ଭୂଦାନ ସମିତି, ସଂଯୋଜକ, ଆଦି ସଂସ୍ଥାରୁ ବା 'ତନ୍ତ୍ର'ରୁ ଏବଂ ଗାନ୍ଧୀ ସ୍ମାରକ ନିଧି ବା ଅନ୍ୟ କେନ୍ଦ୍ରୀୟ 'ନିଧି'ରୁ ମୁକ୍ତି ଆଜି (୧.୧.୧୯୫୭)ଠାରୁ ହେଲା ।

ଅବଶ୍ୟ, ତା ୩୧ ମାର୍ଚ୍ଚ, ୧୯୫୭ ପର୍ଯ୍ୟନ୍ତ ସବୁ ହିସାବପତ୍ର ନିକାଶ କରିବା ଓ ଚାର୍ଯ୍ୟ ଦେବା ପାଇଁ ପ୍ରାଦେଶିକ ସଂଯୋଜକମାନଙ୍କୁ ସମୟ ଦିଆଗଲା ।

ଭୋର ବାସନ ମାଜିବାରେ ମୁଁ ସାହାଯ୍ୟ କଲି । ଗାଧୋଇସାରି, ମୁଁ ଶ୍ରୀ ବାଳମୁକୁନ୍ଦ ପଟ୍ଟନାୟକ (ବୌଦ୍ଧର ସ୍କୁଲ ଡେ଼ପୁଟି ଇନ୍‌ସପେକ୍ଟର)ଙ୍କର ବସାକୁ ଗଲି । ଶ୍ରୀ ବାଳମୁକୁନ୍ଦ ବାବୁଙ୍କର ବଡ଼ ପୁଅ ସତ୍ୟନାରାୟଣ ପଟ୍ଟନାୟକ, ଏମ୍.ଏସ୍.ସି ( in Botany), ସାନ ଭବାନୀଶଙ୍କର ଓ ୭/୮ ବର୍ଷର ଝିଅ ଗୀତାଙ୍କୁ ଦେଖିଲି । ପିଲାମାନେ ଉତ୍ତମ ସ୍ୱଭାବର ଅଟନ୍ତି ।

ଶାନ୍ତ ଓ ନମ୍ର । ବାଳମୁକୁନ୍ଦବାବୁ ମୋତେ ଜଳଖିଆ ଖାଇବାକୁ ଦେଲେ । ପ୍ରାୟ ୯ଟାରେ ତାଙ୍କଠାରୁ ଫେରି, ରେଭେନ୍ସା କଲେଜର ରସାୟନ ଅଧ୍ୟାପକ ଡକ୍ଟର ଦୟାନିଧି ପଟ୍ଟନାୟକଙ୍କୁ ବସାରେ ଦେଖା କଲି । ସେଠାରେ ଶ୍ରୀ ବୁଲୁବାବୁ ବସିଥିଲେ । ଦୟାନିଧିବାବୁ "ତନ୍ତ୍ରମୁକ୍ତି'' ଓ "ନିଧିମୁକ୍ତି'' ସିଦ୍ଧାନ୍ତକୁ ବଡ଼ ପସନ୍ଦ କଲେ ଏବଂ ଆମକୁ କହିଲେ ଯେ ତାଙ୍କର ବସା(ଘର) ଯେ କୌଣସି ଭୂଦାନକର୍ମୀଙ୍କ ପାଇଁ ସର୍ବଦା ଉନ୍ମୁକ୍ତ ରହିବ, ଅର୍ଥାତ୍ କର୍ମୀ ଆସି ତାଙ୍କ ବସାରେ ଖାଇପାରିବେ ଓ ବିଶ୍ରାମ କରିପାରିବେ । ତାଙ୍କର ଅନୁରୋଧରେ ଗୋଟିଏ କଦଳୀ ମୁଁ ଖାଇଲି । ସେଠାରୁ ଆସି ମୁଁ ଜୋବରାରେ ଶ୍ରୀ ବିରଜାପ୍ରସାଦ ରାୟଙ୍କ ବସାରେ ପହଞ୍ଚିଲି । ତାଙ୍କର ପୁଅ ପଢୁଥିଲେ ଏବଂ ତାଙ୍କର ସହଧର୍ମିଣୀଙ୍କୁ ନୂଆ ବର୍ଷର ଆମର ନୂଆ ପରିବର୍ତ୍ତନ କଥା ପଦେ ମାତ୍ର ଶୁଣାଇଆସିଲି ।

ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ମୋତେ ଏକାକୀ କହିଲେ ଯେ ଆଜିଠାରୁ ଏଠାରେ ମେସ୍‌ରେ ଯେ ଭୂଦାନକର୍ମୀ ଆସିବେ, ସେ ଫ୍ରି ଖାଇବାକୁ ପା'ନ୍ତେ - ଏହି ବ୍ୟବସ୍ଥା ହୁଅନ୍ତା କି, ସୁନ୍ଦର ଦିଶନ୍ତା । ମେସ୍‌ରେ ପଇସା ଦେଇ, ମିଲ୍ ପକାଇ ଖାଇବାକୁ କାହାର ସାମର୍ଥ୍ୟ ଥିବ କି ନାହିଁ । ସେ ପଡ଼ିଶା ଲୋକଙ୍କ (Sri G. Simachalamଙ୍କ) ଘରେ ଖାଇଲେ । ମୁଁ ମେସ୍‌ରେ ଖାଇଲି । ଖାଇସାରି ରାଷ୍ଟ୍ରଭାଷା ପ୍ରେସ୍‌ରୁ ଆସିଥିବା ପୋଷ୍ଟର ମୁଁ ରଖି, ରସିଦ ଦେଲି । ଗଣି ନାହିଁ । ପ୍ରକାଶ ଯେ ୩୦ ହଜାର ପୋଷ୍ଟର ୧୨ଟି ବିଡ଼ାରେ ଅଛି । ଗୋଟିଏ ବିଡ଼ା ଗଣି ୨,୫୩୮ ଖଣ୍ଡ "ସାଧନ ଦାନ'' ପୋଷ୍ଟର ଥିବା ଦେଖିଲୁ । ଶ୍ରୀଯୁକ୍ତ ଗୋପବାବୁ ମଧ୍ୟ ଆମ ସହ ଏହା ଗଣିଲେ । ବାଲୁବଜାର ପର୍ଯ୍ୟନ୍ତ ମୁଁ ଖଦୀ ମଣ୍ଡଳର ସାଇକେଲରେ ଯାଇ, ଗହଣା-ଦୋକାନୀ ଶ୍ରୀ ଦୁଃଖୀଶ୍ୟାମ ମହାନ୍ତିଙ୍କର ଭାଇ (ଘର ହୁଗୁଳୀରେ), ଷ୍ଟାର ସ୍ଟାର ଟ୍ରଙ୍କ ଫ୍ୟାକ୍‌ଟାରୀ ଦୋକାନର ବିକ୍ରୟୟକାରୀ ଶ୍ରୀ ନିମାଇଁଚରଣ ମହାନ୍ତି, ବହିଦୋକାନୀ ଶ୍ରୀ ପ୍ରାଣନାଥ ମିଶ୍ରଙ୍କୁ ଦେଖା କଲି । ମୋର ହିସାବ ଓ ଦୈନିକ ବାସରୀ ଲେଖିଲି । ଆସନ୍ତା କାଲିପାଇଁ କାର୍ଯ୍ୟର ତାଲିକା କରି ରଖିଲି ।

୨.୧.୧୯୫୭

ଭୋର ଅନ୍ୟମାନେ ମେସ୍‌ର ବାସନ ମାଜି ସାରିଥିଲେ; ମୋର କର୍ତ୍ତବ୍ୟରେ ମୁଁ ହେଳା କଲି ।

ଶ୍ରୀଯୁକ୍ତ ବ୍ୟାସଜୀଙ୍କର ଇଚ୍ଛାରେ ସୋର ଓ ବୈଶିଙ୍ଗାରେ ଭୂଦାନ ବୈଠକର ସମ୍ବାଦ ଖବରକାଗଜ ପାଇଁ ମୁଁ ଲେଖିଦେଲି । ପ୍ରୀତିପୁର ପାଖ ବାଲିଚନ୍ଦ୍ରପୁରର ଶ୍ରୀ ନିରଞ୍ଜନ ସାହୁ ଆଜି ପୁଣି ମୋତେ ଦେଖା କଲେ । ଓଡ଼ିଶାର କମ୍ୟୁନିଷ୍ଟମାନେ (ଗୁରୁଚରଣ ପଟ୍ଟନାୟକ) ତାଙ୍କଠାରୁ ପ୍ରାୟ ୫ ହଜାର ଟଙ୍କା ଗତ ୪ ବର୍ଷ ହେଲା ନେଇ ତାଙ୍କୁ ପରିଶୋଧ କରୁନାହାନ୍ତି ବୋଲି

ନିରଞ୍ଜନ ସାହୁବାବୁ ମୋଠାରେ ଜଣାଇଲେ ଏବଂ ମୁଁ ତାହା ସେ ଅଞ୍ଚଳର ଲୋକଙ୍କଠାରୁ ଭୂଦାନ କାର୍ଯ୍ୟରେ ବୁଲିବାବେଳେ ଶୁଣିଛି ବୋଲି ମୁଁ ଲେଖିଦେବାକୁ ସେ ଅନୁରୋଧ କଲେ । ଟଙ୍କା ଦେବାନେବା ତ ମୁଁ ଦେଖିନାହିଁ । ତେଣୁ କରି, ମୁଁ ତାହା ଲେଖିଦେଇ ପାରିବି ନାହିଁ ବୋଲି ତାଙ୍କୁ କହିଲି । ସେ ନୀରବରେ ମୋତେ ମୁଣ୍ଡ ଲଗାଇ ୨ ଥର ଦଣ୍ଡବତ କଲେ ଏବଂ ମୁଁ ଲେଖିଦେବାକୁ ଅନିଚ୍ଛୁକ ହେବାରୁ, ନୀରବରେ ଚାଲିଗଲେ । ଏହାଙ୍କର ଟଙ୍କା ହେତୁରୁ ମନରେ ତାଙ୍କର ଘୋର କଷ୍ଟ ଓ ମ୍ରିୟମାଣତା ଆସିଛି । ଏହିପରି ଅସତ୍ ଆଚରଣ କରି ବଡ଼ ବଡ଼ ରାଜନୈତିକ ନେତା ଦେଶରେ ବଡ଼ ବୋଲାଉଛନ୍ତି !! ଧିକ୍ ଏ ରାଜନୀତିକୁ !! ଏହିପରି ଫାଙ୍କିଦେବା ସତ୍ୟ ହୋଇଥିଲେ, ଏ ରାଜନୈତିକ ନେତାଙ୍କର ସୀମା ମାଡ଼ିବାର ମୋର କଥା ନୁହେଁ ।

ଡିସେମ୍ବର, ୧୯୫୬ର ମୋର ମାସିକ କାର୍ଯ୍ୟ-ବିବରଣୀ ଲେଖିଲି । ଗତ ମାସରେ ମୁଁ କୌଣସି ନିଦା ଓ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ତ କରିନାହିଁ; କେବଳ ଲମ୍ବ ଗସ୍ତ କରିଛି ମାତ୍ର ।

ତା ୨୯.୫.୫୨ ଠାରୁ ୩୦.୧୧.୫୬ ପର୍ଯ୍ୟନ୍ତ ଅଫିସ କାର୍ଯ୍ୟ ୬୩୯ ଦିନ , (୨) ପ୍ରଚାର, ଭୂମି ସଂଗ୍ରହ ଓ ବିତରଣ ୩୯୪ ଦିନ (୩) ସଭା ସମ୍ମିଳନୀ ୩୩୫ ଦିନ, (୪) ଦୂରସ୍ଥାନକୁ ଯାତ୍ରାରେ ୨୨୯ ଦିନ (୫) ଅସୁସ୍ଥତା ବା ଘରୋଇ କାର୍ଯ୍ୟରେ ଛୁଟି ୮୧ ଦିନ । ମୋଟ ୧୬୭୮ ଦିନ ।

(କ) ପାଦରେ ବା ନିଜେ ସାଇକେଲ ଚଲାଇ ୫୦୦୩ ମାଇଲ, (ଖ) ମୋଟର-ବସ୍, ଅନ୍ୟ ଦ୍ୱାରା ଚାଳିତ ରିକ୍ସା, ଟାଙ୍ଗା ଆଦିରେ ୯,୮୬୫ ମାଇଲି (ଗ) ରେଳଗାଡ଼ିରେ ୨୫,୦୫୮ ମାଇଲି (ଘ) ନୌକାରେ ୧୭୭ ମାଇଲି । (ଙ) ମୋଟରେ ୪୦,୧୦୩ ମାଇଲ ।

ମୋଟରେ ମୁଁ ୪୧ଟି ପ୍ରାର୍ଥନା-ପ୍ରବଚନ ଓ ଅନ୍ୟ ଭାଷଣ ମୁଁ ପୂଜ୍ୟ ବିନୋବା ଭାବେଙ୍କ ଠାରୁ ଏ ପର୍ଯ୍ୟନ୍ତ ଭୂଦାନ ସମ୍ବନ୍ଧରେ ଶୁଣିଛି । ଅବଶ୍ୟ ୧୯୩୮-୩୯ରେ ଉଆର୍ଦ୍ଧାରେ ମୁଁ ଥିବାବେଳେ ୪ ମାସ ମଧ୍ୟରେ ମୁଁ ତାଙ୍କଠାରୁ ଅନେକ ଥର ବକ୍ତୃତା ଓ ଶ୍ରେଣୀରେ ଆଲୋଚନା ଶୁଣିଛି । ମୁଁ ଓ ଅନ୍ୟ ୬ ଜଣ ସେତେବେଳେ ମୌଳିକ ଶିକ୍ଷାର ଟ୍ରେନିଂ ନେଇଥିଲୁ ।

ମୋର ଭୂଦାନ କାର୍ଯ୍ୟର କେତେକ ତଥ୍ୟ: ଭୂଦାନ ଯଜ୍ଞ ବିଷୟରେ ତା ୨୯.୫.୧୯୫୨ ଠାରୁ ତା ୩୧.୧୨.୧୯୫୬ ପର୍ଯ୍ୟନ୍ତ ମୁଁ ମୋଟରେ ୩୧୭ ଗ୍ରାମ ଓ ସହରରେ ଏବଂ ଶିକ୍ଷାନୁଷ୍ଠାନରେ ୨୫୫ ସାଧାରଣ ସଭାରେ, ପ୍ରାୟ ୩୫,୯୭୪ ବ୍ୟକ୍ତିଙ୍କୁ ଭୂଦାନ କଥା ସାଧ୍ୟମତେ ଶୁଣାଇଅଛି । ସର୍ବୋଦୟ ଓ ଭୂଦାନ ସାହିତ୍ୟ ବିକ୍ରୟର ଠିକ୍ ହିସାବ ମୁଁ ରଖିନାହିଁ । ତେବେ, ମୋଟ ଉପରେ ବଙ୍ଗଳା ଗୀତା ପ୍ରବଚନ ୨ ଖଣ୍ଡ, ହିନ୍ଦୀ ୩ ଖଣ୍ଡ,

ଉର୍ଦ୍ଦୁ ୧ ଖଣ୍ଡ, ଓଡ଼ିଆ ଗୀତା-ପ୍ରବଚନ ୧୭୧ ଖଣ୍ଡ ଟ ୧୯୪/-ର ଏବଂ ୯୭୧ ଖଣ୍ଡ ଅନ୍ୟ ସର୍ବୋଦୟ ଓ ଭୂଦାନ ସାହିତ୍ୟ ଟ. ୪୩୮ ଟଙ୍କାର ବିକ୍ରୟ କରିଛି ଏବଂ ୩୫ ରୁ ୪୦ ଖଣ୍ଡ ରେଜା "ଗ୍ରାମସେବକ'' ବିକ୍ରୟ କରିଛି ଓ ୩୧ଟି "ଗ୍ରାମ-ସେବକ'' ପତ୍ରିକାର ଗ୍ରାହକ କରାଇଅଛି । ୧୧.୭.୫୨ ଠାରୁ ୩୧.୧୦.୫୬ ପର୍ଯ୍ୟନ୍ତ ଏହି ସମୟ ମଧ୍ୟରେ ମୋର ପାରିଶ୍ରମିକ ରୂପେ ୧,୮୧୫.୦୦ ଟଙ୍କା ଓ ଗସ୍ତଖର୍ଚ୍ଚ ରୂପେ ପ୍ରାୟ ୧,୪୦୫ ଟଙ୍କା ନେଇଛି ।

ମୁଁ ଭୂଦାନ ସମିତିରୁ ନେଇଛି ଏବଂ ଅଧିକାଂଶ ଦିନ ଗସ୍ତରେ ଥିବାବେଳେ ଲୋକ ସାଧାରଣଙ୍କଠାରୁ ଓ ପରିଚିତ ବ୍ୟକ୍ତିମାନଙ୍କଠାରୁ ଅଥବା କେତେବେଳେ ସେଠାର ଶିକ୍ଷାନୁଷ୍ଠାନରୁ ମାଗଣା (ବିନା ଚାର୍ଯ୍ୟରେ) ମୁଁ ଖାଇବାକୁ ପାଇଅଛି । ଲିଖନ,ପଠନ ଉପକରଣ ଭୂଦାନ ସମିତିରୁ ମୁଁ ପାଇଅଛି । ଏସବୁ ମୋ ପ୍ରତି ସାହାଯ୍ୟ ଓ ସହାନୁଭୂତି ନିମିତ୍ତ ମୁଁ ସେହି ବ୍ୟକ୍ତିମାନଙ୍କଠାରେ ଋଣୀ ଅଟେ । ଅବଶ୍ୟ, ମୁଁ ପରିଶ୍ରମ କରିଅଛି ଏବଂ ଆଦୌ ପରିଶ୍ରମରେ ଓ ଧ୍ୟାନରେ ହେଳା କରିନାହିଁ ।

୩.୧.୧୯୫୭

ଭୋର ବାସନ ମାଜିଲି । ଗାଧୋଇ ସାରି ପଖାଳ ଖାଇଲି । 'ପ୍ରାଦେଶିକ ସଂଯୋଜକ'ଙ୍କର ଫାଇଲ ନମ୍ବର ୩୮ ଓ ୩୮(ବି) ସଜାଡ଼ିଲି । ମେ, ୧୯୫୪ ଠାରୁ ତା ୩୧.୧୨.୫୬ ପର୍ଯ୍ୟନ୍ତ ସବୁ ଚିଠିପତ୍ର ତାରିଖ କ୍ରମରେ ସଜାଡ଼ି ଦେଲି ।

ସେହି ଫାଇଲ ମଧ୍ୟରୁ ସଂଯୋଜକ ଶରତ୍‌ଚନ୍ଦ୍ର ମହାରଣାଙ୍କର (ମୋର) ପ୍ରତି ମାସର କାର୍ଯ୍ୟ ବିବରଣୀ କାଗଜଗୁଡ଼ିକ ବାହାର କରି ଏକତ୍ର ମାସକ୍ରମରେ ସଜାଡ଼ି ଦେଲି ।

ଶରତ୍ ମହାରଣା ତା ୨୯.୫.୧୯୫୨ରୁ (ଖଣ୍ଡ ସାହିରେ ଓଡ଼ିଶା ପ୍ରଦେଶର ପ୍ରଥମ ବେସରକାରୀ ଭୂଦାନ ଯଜ୍ଞ ସମିତି ଗଢ଼ାହେବା ତାରିଖଠାରୁ) ତା ୩୧.୧୨.୧୯୫୭ ପର୍ଯ୍ୟନ୍ତ କେତେ ସ୍ଥାନରେ ଭୂଦାନ ସଭାରେ ଯୋଗ ଦେଇଛି, ସଭାରେ ଆନୁମାନିକ କେତେ ଲୋକଙ୍କୁ କିଛି ଭୂଦାନ-ବାର୍ତ୍ତା ଶୁଣାଇଛି, ଇତ୍ୟାଦି ତଥ୍ୟ ଏବଂ ସେ ପ୍ରଥମେ ଭତ୍ତା ନେବା ତାରିଖ ୧୧.୭.୫୨ ଠାରୁ ତା ୩୧.୧୦.୫୬ ପର୍ଯ୍ୟନ୍ତ କେତେ ପାରିଶ୍ରମିକ ଓ ତା ୩୧ ଡିସେମ୍ବର, ୫୬ ପର୍ଯ୍ୟନ୍ତ କେତେ ଟଙ୍କା ଗସ୍ତଖର୍ଚ୍ଚ ନେଇଛି, କେତେ ବହି ବିକ୍ରୟ କରିଛି, ଆଦି ସେ ସବୁ ଡାଏରୀ ଓ ଶରତ୍ ମହାରଣାର ଖତୀୟାନ-ଖାତା ଦେଖି ବାହାରକଲି । ସକାଳ ଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ପ୍ରାୟ ୮ ଘଣ୍ଟା ଏଥିରେ ସମୟ ଲାଗିଗଲା ।

୫.୧.୧୯୫୭

ଦିନଯାକ ଫାଇଲଗୁଡ଼ିକ ସଜାଡ଼ିଲି ଓ ବାକୀ କାର୍ଯ୍ୟର ତାଲିକା କଲି । ଶ୍ରୀ ଶୁକଦେବ

ପ୍ରଧାନ ମୋତେ ସାହାଯ୍ୟ କଲେ । ଡାକ୍ତର ଜର୍ଜ ପଟ୍ଟନାୟକ ଏଠାକୁ ଆସିଥିଲେ । ଆଜିକାଲି ମେଡ଼ିକ୍ୟାଲ କଲେଜରେ ଛାତ୍ରମାନେ କେଡ଼େ ଶ୍ରମକାତର ଓ ନିଜ ହାତରେ କିଛି କରିବାକୁ (pulse, respiration record କରିବାକୁ ସୁଦ୍ଧା) କୁଣ୍ଠିତ, ଆଦି ନିଜ ମନକୁ କହିଲେ । ମୁଁ ତାଙ୍କୁ ୧୪.୧୨.୫୬ରେ କୃତଜ୍ଞତା ଜଣାଇ ଚିଠି ଲେଖିବା କହିଲେ ।

୬.୧.୧୯୫୭

ଶ୍ରୀଯୁକ୍ତ ନବବାବୁ ରାୟଗଡ଼ା ଗଲେ । ତାଙ୍କ ହାତରେ "ଉତ୍କଳ ନବଜୀବନ ମଣ୍ଡଳ"ର ପୁରୁଣା constitution ଓ କାଗଜପତ୍ର ପଠାଇଦେଲି । ରାମଚନ୍ଦ୍ରପୁରରୁ ମୁଁ ସେଗୁଡ଼ିକ ଆଣିଥିଲି ।

ଭୂଦାନ ଅଫିସର ଫାଇଲମାନ ସଜାଡ଼ିଲି । ଶୁକଦେବ ସାହାଯ୍ୟ କଲେ । ପ୍ରତ୍ୟେକ ଜିନିଷ, କାଗଜପତ୍ର ସଜାଡ଼ି ଯଥାସ୍ଥାନରେ ରଖିବାଦ୍ୱାରା କାର୍ଯ୍ୟ କେତେ ଆରାମରେ କରାଯାଇପାରେ ଏବଂ ଏହା, ମୋ ମତରେ, ଏକପ୍ରକାରେ ଚରିତ୍ର-ଗଠନରେ ସାହାଯ୍ୟ କରେ ବୋଲି ଶୁକଦେବ ପ୍ରଧାନଙ୍କୁ ବୁଝାଇକହିଲି ।

୭.୧.୧୯୫୭

ଧାମନଗର ..ପାଖରେ ଘର ଥିବା ଶ୍ରୀ ରାଧାଶ୍ୟାମ ମହାପାତ୍ର, ଡ଼ି.ଏ.ଏମ୍.ଏସ୍ (ପୁରୀ ଆୟୁର୍ବେଦ କଲେଜରୁ ଉତ୍ତୀର୍ଣ୍ଣ) ମୋତେ ଦେଖା କଲେ । ସେ କୋରାପୁଟରେ ନବନିର୍ମାଣ କାର୍ଯ୍ୟ ପାଇଁ ପ୍ରାର୍ଥୀ । ଏ ଯୁବକ ବଡ଼ ନିରୀହ,ନମ୍ର ଓ ଦବିଯାଇଥିବା ପରି ଜଣାଗଲେ ।

ଭୋର ୫ଟା ଠାରୁ ୯ଟା ପର୍ଯ୍ୟନ୍ତ ମୁଁ ଡିସେମ୍ବର, ୧୯୫୬ର ଅନେକଗୁଡ଼ିଏ ଭାଉଚର ଯାଞ୍ଚ ଓ ଦସ୍ତଖତ କଲି । ବେଲ(ପୋଡ଼ା)ର ପଣା ଖାଇଲି । ପରେ ଭାତ ଖାଇ, ଘଣ୍ଟାଏ ବିଶ୍ରାମ ନେଇ, ସାଇକେଲରେ ମୁଁ କଟକରୁ ପଟାମୁଣ୍ଡାଇ କେନାଲ ବନ୍ଧରେ ଖଡଗପୁର ଘାଟ ପର୍ଯ୍ୟନ୍ତ ଆସିଲି । ସେଠାରେ ବିରୂପାନଦୀ ପାରି ହୋଇ, ଅନ୍ଧାର ହୋଇଯିବାରୁ, ମୂଷାଟିକିରୀ ଗ୍ରାମର ଶ୍ରୀ ବ୍ରହ୍ମାନନ୍ଦ ପାତ୍ରଙ୍କ ଘରେ ରହିଲି ।

୮.୧.୧୯୫୭

ଭୋର ମୂଷାଟିକିରୀରୁ ପଣସିଆ (ଡ଼ିହ) ଓ ମାଳ ଗାଁ ବାଟେ ସାଇକେଲ ଗଡ଼ାଇ ଗଡ଼ାଇ, ରାମଚନ୍ଦ୍ରପୁରକୁ ଆସିଲି । ଦେଢ଼ ଘଣ୍ଟା ଲାଗିଲା । ଏଠାରେ ବୋଉ, ଶ୍ରୀ ବୁଲୁବାବୁ, ଶ୍ରୀଯୁକ୍ତ ଗୋପବାବୁ ଅଛନ୍ତି । ଶ୍ରୀମତୀ ସୁମିତ୍ରା ଦେବୀ (ଚୌଧୁରୀ) ରାମଚନ୍ଦ୍ରପୁର ମୌଳିକ ସ୍କୁଲରେ ଶିକ୍ଷାଦାନ କାର୍ଯ୍ୟ ଏବେ କରୁଅଛନ୍ତି ।

ସନ୍ଧ୍ୟାବେଳେ ମୁଁ ଉତ୍ତର ମୌଳିକ ଛାତ୍ରମାନଙ୍କ ସହ ଭୂଦାନ ସମ୍ବନ୍ଧରେ କଥାବାର୍ତ୍ତା କଲି । ସେମାନେ ସୁଜନପୁର-ଆଦମପୁର ଆଡ଼େ ଯିବେ ।

୧୦.୧.୧୯୫୭

ରାମଚନ୍ଦ୍ରପୁରରେ । ବୋଉ (ଶ୍ରୀଯୁକ୍ତ ରମା ଦେବୀ) ଭୋର କେନ୍ଦ୍ରାପଡ଼ା ଗଲେ, ସେ କଟକ ଯିବେ । ମୁଁ ପାଇଖାନା ସଫା କଲି । କିଛି ତୂଳା ସୁଆଁରିଲି । ବନ୍ନୁ (ବାବୁଲି ମଧ୍ୟ) ଶ୍ରୀ ଅମରନାଥ ଚଟୋପାଧ୍ୟାୟଙ୍କର ପତ୍ନୀ ଶ୍ରୀମତୀ ଇନ୍ଦିରା ଦେବୀଙ୍କର ଯତ୍ନରେ ମାସେ ରହିବ ଓ ଚୂନୀ କେଉଁଝର ଜିଲ୍ଲାରେ ବୁଲି ଭୂଦାନ କାର୍ଯ୍ୟ ବୋଉଙ୍କ ସହ କରିବ ବୋଲି ଆଜି କଥା ହେଲା । ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତି ଶ୍ରୀ ଫକୀର ମିଶ୍ରଙ୍କୁ ଆର୍ଥିକ ସାହାଯ୍ୟ ଦେବାକୁ କୁଣ୍ଠିତ ପରି ମୋତେ ତା ୩୦.୧୨.୧୯୫୬ରେ ତାଙ୍କର କଥାବାର୍ତ୍ତାରୁ ବୋଧ ହେଲା ବୋଲି ମୁଁ କାଲି ବୋଉଙ୍କୁ କହିଦେଲି ।

୧୧.୧.୧୯୫୭

ରାମଚନ୍ଦ୍ରପୁରରେ । ସକାଳେ ୨ ଉଠା-ପାଇଖାନା ସଫା କଲି । ଶ୍ରୀଯୁକ୍ତ ଗୋପବାବୁ ତା ୪.୧. ଠାରୁ ପ୍ରତିଦିନ ରାମଚନ୍ଦ୍ରପୁରରୁ ଚାଲି କରି ବରୀ ଯାଇ, ସେଠରେ ବାଡ଼ି-ବଗିଚା କାର୍ଯ୍ୟ ନିଜେ କରୁଛନ୍ତି । ଏ କେତେମାସ ହେଲା - ଶୀତ ଦିନେ ସୁଦ୍ଧା - ସେ ଭୋର ପୂର୍ବ ରାତିରେ ରନ୍ଧା ହୋଇ ପଖଳା ହୋଇଥିବା ପଖାଳ, କୋରା ନଡ଼ିଆ ଓ ତଟକା ରନ୍ଧା ତରକାରୀ ବା ଶାଗ ଖାଉଛନ୍ତି । ରାମଚନ୍ଦ୍ରପୁର କସ୍ତୁରବା କେନ୍ଦ୍ରରୁ ସେ ସେହିପରି ଖାଉଛନ୍ତି ଓ ବରୀରେ ମଧ୍ୟାହ୍ନରେ ଉଖୁଡ଼ା, ଦୁଧର ଛେନା ଖାଉଛନ୍ତି । ଗାନ୍ଧୀଜୀଙ୍କର ମୃତ୍ୟୁ ପରଠାରୁ ସେ ଦହି, ଛେନା ଖାଇବା ଛାଡ଼ି ଦେଇଥିଲେ । ଘିଅ କେବେ କେବେ ଭାତରେ ଖାଉଥିଲେ । ବିନୋବାଜୀଙ୍କର ଅନୁରୋଧରେ ସେ ୧୯୫୫ ମସିହାରେ ଛେନା ଖାଇଲେ । ଆଜି ମୁଁ କାମ୍ବୋଡ଼ିଆ କପାର ତୂଳା କିଛି ସୁଆଁରିଲି । ବୁଢ଼ୀମା'ଙ୍କର ଘର ପଛରେ ଥିବା ବନ୍ଧରୁ ଅନାବନା ଘାସ ସଫା କଲି ।

୧୨.୧.୧୯୫୭

ରାମଚନ୍ଦ୍ରପୁରରେ । ସକାଳେ ୨ଟା ପାଇଖାନା ସଫା କଲି । କଲମୀ ଆମ୍ବଗଛରେ ପାଣି ଦେଲି । ବନ୍ଧରୁ ଅନାବନା ଗଛ ସଫା କଲି । କିଛି ତୂଳା ବାଛିଲି । ସ୍କୁଲର ପାଠାଗାରରେ ବଙ୍ଗଳା "ଆୟୁର୍ବେଦ-ସଂଗ୍ରହ" ବହି ଖୋଜିଲି, ପାଇଲି ନାହିଁ; କିଏ ଧାର ନେଇ ଅଛନ୍ତି, ତ୍ରିଲୋଚନ ଜେନା (ଗୁରୁଜୀ) କହିପାରିଲେ ନାହିଁ । ଚନ୍ଦ୍ରଶେଖରପୁରରେ ଚାଟଶାଳୀର ଅଭିବୃଦ୍ଧି ବିଷୟରେ ତ୍ରିଲୋଚନାଙ୍କୁ ସତର୍କ କରିଦେଲି । ହାଟସାହିର ଜଣେ ପରିଚିତ ଲୋକ ମୋତେ କହିଲେ - "ଆପଣ ମୋଟରଗାଡ଼ି ଚଢ଼ିବାକୁ, ଶାସନଗାଦିର କୌଣସି ପଦପଦବୀକୁ ନ ଯାଇ ଯେମିତିକି ସେମିତି ସରଳଭାବରେ ଅଛନ୍ତି । ଅହିଂସା ବାଟରେ ଅଛନ୍ତି ।" ଆଉ କେତେ ଲୋକ ଅନ୍ୟ ବାଟରେ ଗଲେଣି ।

ସଞ୍ଜବେଳେ ଡାକ୍ତରବାବୁଙ୍କୁ ଦେଖା କରି ଆସିଲି । ପଣ୍ଡିଚେରୀର ଅରବିନ୍ଦ ଆଶ୍ରମ ବିଷୟ ମୁଁ କହିଲି । ଚୁନୀସହ ପରାମର୍ଶ କଲି । ରେମୁଣାରେ ଥିବା ଜମିରେ ମୋର (ଶରତ୍‌ର) ବ୍ୟକ୍ତିଗତ ମାଲିକାନା ଆଉ ନାହିଁ ବୋଲି ଧରି ନିଆଯାଉ ଓ ତଦନୁସାରେ କାର୍ଯ୍ୟ କରାଯାଉ । କାରଣ, ଭାଗଚାଷ ଆଇନ ଭୂଦେବ ଓ ଲୋକନାଥ ଭାଇ ପାଳନ କରୁନାହାନ୍ତି । (ଏବଂ ଭୂଦାନ ଯଜ୍ଞକୁ ସମଗ୍ରଦାନ କରିବାକୁ ସେମାନେ ଅନିଚ୍ଛୁକ ଅଟନ୍ତି । )

୧୩.୧.୧୯୫୭

ମକର ସଂକ୍ରାନ୍ତି । ସକାଳ ୭ ଟା ବେଳେ ରାମଚନ୍ଦ୍ରପୁରରୁ ମୁଁ ଓ ହଳଦୀବସନ୍ତ ନିବାସୀ ରାମଚନ୍ଦ୍ରପୁର ଉତ୍ତର ମୌଳିକ ବିଭାଗର ଛାତ୍ର ଅଚ୍ୟୁତାନନ୍ଦ ଚାଲିକରି ସିଧା କଦଳାମଠକୁ ଆସିଲୁ । ବାଲିଆର ବ୍ରହ୍ମପୁର ନିବାସୀ ଶ୍ରୀ ଶଙ୍କର ବାରିକ ମୋତେ ବିନା ପଇସାରେ କ୍ଷିଅର କରିଦେଲେ । ପଇସା ମୁଁ ଯାଚିବାରୁ ସେ ମନା କଲେ ଏବଂ କହିଲେ "ମୋର ଭାଗ୍ୟ ଯେ ଆପଣଙ୍କୁ ଆମେ (ତାଙ୍କର ପୁଅ ବା ଆତ୍ମୀୟ) କ୍ଷିଅର କରିଦେଲୁ । ଗ୍ରାମବାସୀ ଲୋକେ କି ସରଳ !!

୧୪.୧.୧୯୫୭

ଭୋର ଉପାସନାର ଆରମ୍ଭ ବେଳକୁ ମୋର ନିଦ ଭାଙ୍ଗି ନ ଥିଲା । ପରେ ଭାଙ୍ଗିବାରୁ, ମୋର ବିଛଣାରେ ବସି, ମନେ ମନେ ଉପାସନାରେ ଯୋଗ ଦେଲି ।

କବି ଶ୍ରୀଯୁକ୍ତ କାଳିନ୍ଦୀ ପାଣିଗ୍ରାହୀ ଶ୍ରୀଯୁକ୍ତ ଗୋପବାବୁଙ୍କୁ ଦେଖା କରିବାକୁ ଆସିଥିଲେ । "ଗାନ୍ଧୀ ଓ ଉତ୍କଳ'' ବହିରୁ ଏକ ଉପାଖ୍ୟାନ ତାଙ୍କର ଏକ ସଂକଳନ ବହିରେ ଛାପିବାର ଅନୁମତି ନେଇଗଲେ । ଶ୍ରୀଯୁକ୍ତ କାଳିନ୍ଦୀବାବୁ ମୋତେ କହିଲେ ଯେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ କହିଛନ୍ତି ଯେ ଏ ଭୂଦାନ movement ସମଗ୍ର ଭାରତରେ ଏକ " immoral movement ''। ଭୂଦାନ କର୍ମୀମାନେ ଲୋକଙ୍କ ଠାରୁ ଜମି ମାଗୁଛନ୍ତି, ମାତ୍ର ଏଣେ ନିଜେ ବେତନ ନେଉଛନ୍ତି (ବା ନେଉଥିଲେ) । ଓଡ଼ିଶାରେ ଏ କର୍ମୀ ଜଣକା ଟ. ୨୦୦/- ଦୁଇଶହ ଟଙ୍କା ମାସିକ ବେତନ ନେଉଛନ୍ତି ।''

ଶରତ୍ (ମୁଁ ) ଏହା ଶୁଣି କହିଲି ଯେ ଶ୍ରୀଯୁକ୍ତ ମହତାବ ବାବୁଙ୍କର କଥାରେ ଯାହା ସତ୍ୟ ଥିବ, ଆମର ଯାହା ଭୁଲ ହୋଇଥିବ ଆମେ ଜାଣି ନିଜକୁ ସଂଶୋଧନ କରିବା ଉଚିତ, ଏବଂ ସେ ଯାହା ଅସତ୍ୟ ପ୍ରଚାର କରୁଥିବେ ତାହା ଉଭେଇଯିବ ବା ମିଳେଇଯିବ ।

୧୬.୧.୧୯୫୭

ସକାଳେ ମେସ୍‌ର ବାସନ ଆଦି ମାଜିଲି । ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ ଓ

ପ୍ରଚାରିତ " Kurukshetra" ନାମକ ମାସିକ ପତ୍ରିକାରୁ କେତେକାଂଶ ପଢ଼ିଲି । Community Projects ବିଷୟରେ ଏହି ପତ୍ରିକା ବାହାରୁଛି ।

ଗତ କାଲି ବୈଠକରେ ବିବରଣୀ ଲେଖିଲି ଓ ଟାଇପ୍ କରାଇଲି ।

୧୮.୧.୧୯୫୭

ପୂର୍ବଦିନ ପରି ମେସ୍‌ର ବାସନ ମାଜିଲି । ସତରଞ୍ଜି ଓ ମଶାରି (ମୋର ବିଛଣା) ଧୋଇଲି । ଏ ସବୁ କରୁ କରୁ ପ୍ରାୟ ୮ଟା ହୋଇଗଲା । ଦୈନିକ ସମାଜ ଖବରକାଗଜ ପଢ଼ିଲି ।

ସଂପତ୍ତି-ଦାନ ଫାଇଲର ବାକୀ ଚିଠିପତ୍ର ୪ ମାସ ପୂର୍ବର ଦେଖି, ସର୍ବଶ୍ରୀ ଭୁବନାନନ୍ଦ ରାୟ, ପ୍ରଫେସର ଜି.ବି.ଘୋଷ, ନନ୍ଦ କିଶୋର ଦାସ, ପ୍ରଭୃତିଙ୍କୁ ଚିଠି ଲେଖିଲି । ବୋଡ଼ାସମ୍ବର ଜମିଦାର ଲାଲା ସଦାନନ୍ଦ ସିଂହ ବରିହାଙ୍କୁ "ବାଗବାଞ୍ଚ"ର ଜମି ଦେବା ବିଷୟରେ ତାଙ୍କର ତା ୭.୧.୧୯୫୭ର ପତ୍ରର ଉତ୍ତର ଦେଲି । ଶ୍ରୀ ମଦନମୋହନ ସାହୁଙ୍କୁ ମଧ୍ୟ ତାହା ଜଣାଇଲି ।

ନୟାଗଡ଼ର ଗତ ବର୍ଷରେ ଭୂଦାନ କାମ କରୁଥିବା ଶ୍ରୀ ଚକ୍ରଧର ଜେନାଙ୍କର ଦେଢ଼ ବର୍ଷ ପୂର୍ବର ଭତ୍ତା ନେବାକୁ ସେ ଆସିଥିଲେ । ଠିକ୍ ଧାରାରେ ହିସାବପତ୍ର ସମସ୍ତେ କରୁ ନଥିବାରୁ, ତତ୍ପର ଭାବରେ ଉତ୍ତର ଦେଉ ନ ଥିବାରୁ ଯେ ସାନ ବଡ଼ କର୍ମୀ ସମସ୍ତେ ହଇରାଣ ହେଉଛନ୍ତି ଓ ମୋତେ ଅନର୍ଥକ ହଇରାଣ କରୁଛନ୍ତି - ତାହା ମୁଁ ତାଙ୍କୁ ସଫା ସଫା କହିଲି । ଶ୍ରୀଯୁକ୍ତ ନବବାବୁ ମଧ୍ୟ ଶୁଣିଛନ୍ତି ।

୧୯.୧.୧୯୫୭

ସକାଳ ଓଳି ଛୁଟି-ଦରଖାସ୍ତର ବାକୀଗୁଡ଼ିକ ଦେଖି, ଯାଞ୍ଚ କରି ମଞ୍ଜୁରି ଲେଖିଦେଲି । ଅନ୍ୟ ଫାଇଲଗୁଡ଼ିକର ବାକୀ କାର୍ଯ୍ୟାନୁଷ୍ଠାନ କଲି । ଗତ କାଲି ରାତି ଶେଷରେ ମୁଁ ସ୍ୱପ୍ନ ଦେଖିଲି ଯେ କେହି ଜଣେ ସାଧୁ ପୁରୁଷ ମୋତେ କହୁଛନ୍ତି ଯେ ଅମୃତଭଣ୍ଡାର କ୍ଷୀର ଲଗାଇଲେ ଚୂନୀର ପାଟି ଭିତର ସେ polyps ଭଲ ହୋଇଯିବ ଏବଂ ମୋର ହାତ ଭିତରର (ପାପୁଲିର ) ଫୁଲି ଉଠିଥିବା ମାଂସପେଶୀ ମଝି ଚିରି ରକ୍ତ ବାହାରିବା ପାଖ ଚିରା ଦାଗରେ ଅମୃତଭଣ୍ଡା କ୍ଷୀର ନେଇ ମୁଁ ଲଗାଇବାକୁ ବସିଛି ।

ଏ ସ୍ୱପ୍ନର ତାତ୍ପର୍ଯ୍ୟ କଅଣ ? ବୋଧହୁଏ ଚୁନୀର ପାଟିର ସେହି ରୋଗ ପାଇଁ ମୁଁ ବୈଶା ଭାବୁଥିବାରୁ, ଏହି ସ୍ୱପ୍ନ ଦେଖିଲି । ସ୍ୱପ୍ନରେ ସାଧୁଙ୍କର ଏ ଉପଦେଶ ପାଳିବା ?

୨୦.୧.୧୯୫୭

ସକାଳେ ବାସନ ମାଜି ନାହିଁ, କାରଣ ଉପାସନା ପରଠାରୁ ପ୍ରାୟ ୫ଟା (ଭୋର)ରୁ

ରାତି ୧୦ଟା ୨୦ ମିନିଟ୍ ପର୍ଯ୍ୟନ୍ତ ମୁଁ ବାକୀ ଭାଉଚରଗୁଡ଼ିକ ଯାଞ୍ଚ ଓ ଦସ୍ତଖତ କରିବାରେ ଲାଗିଲି । ମଝିରେ ନିତ୍ୟକର୍ମ, ଓ ଖାଇବାରେ ମୋଟ ପ୍ରାୟ ୧ ଘଣ୍ଟା ସମୟ ବାଦ୍ ଯାଇଛି । ରାତିରେ ଚାମଚରେ ମୁଢ଼ି ଖାଉଁ ଖାଉଁ, ଏ ଲେଖା କାମ ମଧ୍ୟ କରୁଥିଲି ।

୨୨.୧.୧୯୫୭

ପୁରୁଣା ଜିଲ୍ଲା ସଂଯୋଜକମାନେ ନୂତନ ଜିଲ୍ଲା "ଭୂଦାନ ସେବକ'' ମାନଙ୍କୁ ରେକର୍ଡ଼ ଓ ଆସବାବପତ୍ର ତା ୩୧.୧.୧୯୫୭ ପୂର୍ବରୁ ଚାର୍ଯ୍ୟ ବୁଝାଇଦେବେ, ଅନୁରୋଧ କରି ସର୍କୁଲାର ଦେଲି । ସରକାରୀ ଭୂଦାନ ସମିତି "ନିର୍ମାଣ କାର୍ଯ୍ୟ'' ପାଇଁ ଓଡ଼ିଶା ସରକାରଙ୍କ ଠାରୁ ୨ ଲକ୍ଷ ୯୦ ହଜାର ଟଙ୍କା ଗ୍ରାଣ୍ଟ ନେବ ନାହିଁ ବୋଲି ଖବରକାଗଜଗୁଡ଼ିକୁ ଲେଖି ପଠାଇଲି ।

୨୫.୧.୧୯୫୭

ସକାଳେ ରାମକୃଷ୍ଣ ରାୟଙ୍କୁ ବାସନ-ମଜାରେ ସାହାଯ୍ୟ କଲି । ବିକ୍ରମ କେଶରୀ ବିଶ୍ୱାଳଠାରୁ ତା ୨୬.୫.୫୫ରେ ପ୍ରାପ୍ୟ ଟ. ୬ ବିଷୟରେ ତାହାର ତା ୨୭.୭.୧୯୫୫ ର ପତ୍ର ଓ ହିସାବ ବାହାର କରି ମୁଁ ତାକୁ ଚିଠି ଲେଖିଲି । ବାବୁଲି ଦାୟିତ୍ୱପୂର୍ଣ୍ଣ ଗୁରୁଜୀଙ୍କ ସହିତ କୋଣାର୍କ ବୁଲିଯାଇପାରେ ବୋଲି ମୋର ମତ ଦେଇ, ତାହାର ତା ୨୪.୧.୧୯୫୭ର କାର୍ଡ଼ର ଉତ୍ତର ଦେଲି ଏବଂ କେତେଗୁଡ଼ିଏ ପଏଣ୍ଟ ପର୍ଯ୍ୟଟନ ବିଷୟରେ ବିଚାର କରି ଆଗରୁ ପ୍ରସ୍ତୁତ ହେବାକୁ ଲେଖିଲି । ଚୁନୀକୁ ଚିଠି ଦେଲି । ମୁଁ ଏଠାରେ ତା ୫.୨.୧୯୫୭ରେ ଚାର୍ଯ୍ୟ ବୁଝାଇ ଦେଇପାରିଲେ ତା ୧୦.୨.୧୯୫୭କୁ ରାମଚନ୍ଦ୍ରପୁର ଯାଇପାରିବି । କେଉଁଝରେ ଜିଲ୍ଲାରେ ବୁଲି ଭୂଦାନ କାର୍ଯ୍ୟ ଫେବୃଆରୀ ମାସରେ କରିପାରନ୍ତି । ସରକାରୀ ଭୂଦାନ ସମିତିରେ ମୁଁ ଆଉ ରହିବାକୁ ଚାହେଁ ନାହିଁ ବୋଲି ମୋର ଅନିଚ୍ଛା ଓ ବିରକ୍ତି ରାମକୃଷ୍ଣ ରାୟ, ବୃନ୍ଦାବନ ଜେନାଙ୍କ ଆଗରେ ବ୍ୟକ୍ତ କଲି । ସରକାରଙ୍କ ଠାରୁ ଯେଉଁ ୮ ହଜାର ଗ୍ରାମ-ନକ୍ସା ଆସିଛି (କଟକ ଜିଲ୍ଲାର) ତାହାର ହିସାବ ଓ ଚାର୍ଯ୍ୟ ଜିଲ୍ଲା ସଂଯୋଜକ ଦ୍ୱାରା ଶ୍ରୀ ବୁଲୁବାବୁ ବୁଝୁନାହାନ୍ତି । ସବୁ କିରାଣୀ-କାମ ମୁଁ କରିବି !! ବିନୋବାଜୀଙ୍କ ଆଗରେ ଏ ସବୁ difficulty କେହି ବଡ଼ବଡ଼ିଆ କହନ୍ତି ନାହିଁ । ଏହା ଢ଼େଙ୍କି ଗିଳିବା ପରି କଥା ଅଟେ ।

ରାତି ୧୦ଟାରେ ମୁଁ ରେଲଷ୍ଟେସନରେ ଆର୍.ଏମ୍.ଏସ୍.ରେ ଭୂଦାନ ଅଫିସର ଡାକ ପକାଇଆସିଲି । ଜୋବରା ଆନିକଟ ବାଟେ ଫେରିଲି । ସେଠାରେ ମହାନଦୀ ଉପରେ ଅସ୍ଥାୟୀ ଖରାଦିନିଆ କାଠପୋଲ ଉପରକୁ ଗଲି । ନଦୀ କେଡ଼େ ଗମ୍ଭୀର ଭାବରେ ବହୁଥିଲା, ଆନିକଟର ପାଣି ଝରଝର ହୋଇ ଓ ପ୍ରଖର ବେଗରେ ଖୋଲାଥିବା ଫୁକାରଗୁଡ଼ିକ ଦେଇ ତଳେ ବହୁଥିଲା । ମୁଁ ଭାବିଲି ମୋର ମନର ମାଳିନ୍ୟ, ଅସ୍ଥିରତା, କ୍ଷୁଦ୍ରତା ଏହି ଜଳରାଶିରେ ଭସାଇଦେଲି । ରାତି ଏଗାରଟାରେ ଭୂଦାନ ଅଫିସ (ଥୋଡ଼ିଆ ସାହି)କୁ ଫେରିଲି ।

୨୬.୦୧.୧୯୫୭

ଆଜି ଭାରତର ସାଧାରଣତନ୍ତ୍ର ଦିବସ । ୧୯୫୦ ମସିହାର ତା ୨୬ ଜାନୁଆରୀରେ ନୂତନ ଭାରତ-ସଂବିଧାନ କାର୍ଯ୍ୟକାରୀ ହେବା ଆରମ୍ଭ ହୋଇଥିଲା ଏବଂ ଭାରତ ସାର୍ବଭୌମ କ୍ଷମତାସଂପନ୍ନ ଗୋଟିଏ ସାଧାରଣତନ୍ତ୍ରରେ ପରିଣତ ହୋଇଥିଲା । ଅତଏବ, ଆଜି ସାତବର୍ଷ ପୂରଣ ହୋଇଗଲା ।

ଆଜି ତାରିଖରେ ୧୯୫୧ ମସିହାରେ ବନ୍ଟୁ (କର୍ମଦେବ ମହାରଣା) ବିରୀର "ସେବାଘରେ'' (ମାତୃମଙ୍ଗଳ କେନ୍ଦ୍ରରେ) ଜାତ ହୋଇଥିଲା । ତାହାକୁ ଛଅବର୍ଷ ପୂରଣ ହେଲା ।

ଏ କେତେ ବର୍ଷରେ ପୃଥିବୀରେ ନାନା ଜଟିଳ ସମସ୍ୟା ଓ ସଂଘର୍ଷ ଦେଖାଦେଇଛି । ଏବେ ମଧ୍ୟ ସେଗୁଡ଼ିକ ବଢ଼ି ଚାଲିଛି । ଭାରତବର୍ଷରେ ଭିତରେ ଓ ବାହାରୁ କମ୍ ଗୁରୁତର ଧକ୍କାର ସମ୍ଭବନା ନାହିଁ । ମୋ ମନରେ ଆସିଲା ଯେ ଆଗକୁ କଠିନ ସମସ୍ୟାମାନ ଦେଖାଦେବ । ଦେଶବାସୀ ଓ ସାରା ମନୁଷ୍ୟସମାଜ କେମିତି ସେଗୁଡ଼ିକ ଧୀରସ୍ଥିର ଭାବରେ ଓ ଶାନ୍ତିର ବାଟରେ ସମାଧାନ କରନ୍ତୁ । ମୁଁ ତାହା ହିଁ ମନେ ମନେ ଚିନ୍ତା କଲି । ଗାନ୍ଧୀଜୀଙ୍କର ୨/୪ଟି ଉକ୍ତି ଗାନ୍ଧୀ-ଡ଼ାଏରୀରୁ ପଢ଼ିଲି ।

୨୭.୧.୧୯୫୭

ବୀରେନ୍ଦ୍ରକୁ ନେଇ ବୃନ୍ଦାବନବାବୁ ଆଦିବାସୀ ପ୍ରଦର୍ଶନୀ ଦେଖିବାକୁ ଭୁବନେଶ୍ୱର ଗଲେ । ମୋର ବ୍ୟକ୍ତିଗତ ହିସାବ (ପୁରୁଣା) ଯାଞ୍ଚ କଲି । ତା ୧୯ରୁ ୨୧ ସେପ୍ଟେମ୍ବର, ୧୯୫୫ରେ କୁଜେନ୍ଦ୍ରୀ (କୋରାପୁଟ ଜିଲ୍ଲାରେ) ମୁଁ ୩୬ ଟଙ୍କା ଅନ୍ୟମାନଙ୍କୁ ଦେଇଥିଲି । ଏହାର ମୋର ଜମାଖର୍ଚ୍ଚ-ଖାତାରେ ତନ୍ନ ତନ୍ନ ଲେଖାଥିଲା । ଭୂଦାନ ସମିତିର ଖାତା ଓ ଭାଉଚରଗୁଡ଼ିକ ଦେଖି, ଶ୍ରୀ ଅଦ୍ୱୈତଚରଣ ଦାସ ମିଳାଇଲେ । ତଥାପି ୧୫ ଟଙ୍କାର details ଠିକ୍ ଜଣାପଡ଼ିଲା ନାହିଁ । କୌଣସି ଉଚିତ ଧାରାରେ ଏହି ବେସରକାରୀ ଅନୁଷ୍ଠାନଗୁଡ଼ିକର ହିସାବ ଓ ଖର୍ଚ୍ଚ ହେଉନଥିବାରୁ – ଏବଂ ଏଠାର ବିଶିଷ୍ଟ ସେବକମାନେ ମନଇଚ୍ଛା ଧାରା ଚଳାଇଥିବାରୁ – ମୁଁ ଓ ସହକାରୀମାନେ ବହୁତ ଘାଣ୍ଟି ହେଉଅଛୁ । ଆଜି ଆମର ୨ ଘଣ୍ଟା ସମୟ ଏଥିରେ ନଷ୍ଟ ହେଲା । ଏହି ବିଶିଷ୍ଟ ବ୍ୟକ୍ତିମାନଙ୍କର ଓ ସାଧାରଣ କର୍ମୀଙ୍କର ମଧ୍ୟ ତଦ୍ରୂପ ବହୁତ ସମୟ ନଷ୍ଟ ହୋଇଅଛି ।

ଶ୍ରୀ ହରମୋହନ ପଟ୍ଟନାୟକ ମୋତେ କଟକ ଟାଉନରେ ବୁଲିବାକୁ କିଛି କିଛି ସମୟ ଦେବାକୁ କହିବାରୁ, "ମୁଁ ମୋର ପୂର୍ବୋକ୍ତ disgust ତାଙ୍କଠାରେ ପ୍ରକାଶ କଲି ଓ ମୁଁ

ଏହି ବିଶିଷ୍ଟ ବ୍ୟକ୍ତିମାନଙ୍କଠାରୁ aloof ରହିବାକୁ ଚାହେଁ । ମାସେ ଖଣ୍ଡେ ବିନୋବାଜୀଙ୍କର କେତେକ ଲେଖା ପଢ଼ିବି, ବାହାରେ ତତ୍‌ପରେ ବୁଲିବି ।''

୨୯.୧.୧୯୫୭

ସକାଳେ ଆଚାର୍ଯ୍ୟ ମହାଶୟଙ୍କ ସହ ଡାକ୍ତର B.Rajaguru ଚକ୍ଷୁରୋଗର ବିଶେଷଜ୍ଞ, M.B.B.S, D.O.,M.S.ଙ୍କ ବସାକୁ ଗଲି । ମୁଁ ବାହାରେ ରହିଲି । ସେ season flowers ଆଦି ବଡ଼ ଯତ୍ନରେ ଲଗାଇଛନ୍ତି । ଆଗରେ କ୍ଷୁଦ୍ର ବଗିଚାଟି, ମାତ୍ର ବେଶ୍ ଯତ୍ନ ନେଉଛନ୍ତି । ଉତ୍ତମ ରୁଚିର ଓ ସୌନ୍ଦର୍ଯ୍ୟଜ୍ଞାନର ପରିଚାୟକ ଅଟେ । ଆଚାର୍ଯ୍ୟ ମହାଶୟଙ୍କର ଆଖିର tension ପରୀକ୍ଷା ହେଲା । ମୋର ମଧ୍ୟ ଆଖିର refraction ପରୀକ୍ଷା କରାଇଲି ।

ରେଭେନ୍ସା କଲେଜର ଅବସରପ୍ରାପ୍ତ ପଦାର୍ଥବିଜ୍ଞାନ ପ୍ରଫେସର ଶ୍ରୀଯୁକ୍ତ ନାରାୟଣ ମିଶ୍ର ଦୈବାତ୍ ହସପିଟାଲରେ ଦେଖା ହେଲେ । ସେ ୧୯୨୬ ଓ ୨୭ରେ ମୋର ପ୍ରଫେସର ଥିଲେ । ସେ ଖାଲି ଗୋଡ଼ରେ ଯାଇଥିଲେ ଓ ବାରନ୍ଦାରେ ସାଧାରଣ ଗାଉଁଲୀ ଗରୀବ ଲୋକଙ୍କ ପରି ତଳେ ବସିଥିଲେ । ମୁଁ ବେଞ୍ଚରେ ବସିବାକୁ ଜାଗା ଦେଖିବି କି, ପଚାରିବାରୁ କହିଲେ ସେଥିରେ ରୋଗୀମାନେ ବସିବେ, ମୋର ବସିବା ଅନୁଚିତ । କି ସରଳତା, ଅଭିମାନ, ବୃଥା ପଦମର୍ଯ୍ୟାଦାଶୂନ୍ୟତା !! ମୋର ନାମ ସେ ଭୁଲିଯାଇଥିଲେ, ପଚାରିବାରୁ ମୁଁ କହିଲି । ଭୂଦାନ କଥା ୨ ପଦ ପଚାରିଲେ, ମାତ୍ର ସେଥିରେ ଭଲ ଦିଗ ପ୍ରତି ତାଙ୍କର ଧ୍ୟାନ ଆସିନାହିଁ, କଥାରୁ ଅନୁମାନ ମୁଁ କଲି ।

ସକାଳ ଓଳିଟା ମୋର ଆଖି-ପରୀକ୍ଷା ପାଇଁ ଅପେକ୍ଷାରେ ଗଲା । ଦଶ ମିନିଟ୍‌ର କାର୍ଯ୍ୟ ମାତ୍ର ଓଳିଏ ଲାଗିଲା । ଖାଇସାରି, ରାତି ୮ଟା ପର୍ଯ୍ୟନ୍ତ ମାମୁଲି ଅଫିସ କାର୍ଯ୍ୟ କଲି । ୧୯୫୭-୫୮ ବର୍ଷ ପାଇଁ ନିର୍ମାଣକାର୍ଯ୍ୟର ଟଙ୍କା ସରକାର ନିଜେ ଖର୍ଚ୍ଚ କରିବେ, ଚିଠି ଦେଲି । ଆଚାର୍ଯ୍ୟ ମହାଶୟ କଟକରୁ ଢ଼େଙ୍କାନାଳ ଗଲେ । ଆଜି ଭୋର ଟ୍ରେନ୍‌ରେ ଶ୍ରୀଯୁକ୍ତ ଗୋପବାବୁ କଟକରୁ ହରିଦାସପୁର ଗଲେ, ସେଠାରୁ ରାମଚନ୍ଦ୍ରପୁର ଯିବେ । ଶ୍ରୀ ବୁଲୁବାବୁ ସାଇକେଲରେ କଟକରୁ ରାମଚନ୍ଦ୍ରପୁର ଗଲେ ।

୩୦.୧.୧୯୫୭

ସର୍ବୋଦୟ ଦିବସ - ଗାଂଧୀଜୀଙ୍କର ତିରୋଧାନ ଦିନ । ଏହି ତାରିଖରେ ଶୁକ୍ରବାର ଦିନ ଉପରଓଳି ୫ଟା ବେଳେ ଗାଂଧୀଜୀ ଦିଲ୍ଲୀରେ ଗୁଳିଚୋଟରେ ପ୍ରାଣତ୍ୟାଗ କରିଥିଲେ । ନଅବର୍ଷ ପୂରିଗଲା ।

କଟକ "ସ୍ୱରାଜ୍ୟ ଆଶ୍ରମ'' କୁ (କଂଗ୍ରେସ ଅଫିସକୁ) ଯାଇ, ଗାଂଧୀ-ସାହିତ୍ୟ ପାଠରେ ଯୋଗଦେଲି । ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ଦଶପଲ୍ଲାର ଶ୍ରୀଯୁକ୍ତ ଗୋବିନ୍ଦ ମିଶ୍ର (ଯେ ଗାନ୍ଧୀଜୀଙ୍କ

ପାଖରେ ବହୁବର୍ଷ ଥିଲେ), କବି ବୀରକିଶୋର ଦାସ, ଆୟୁର୍ବେଦ ଟୋଲର ପଣ୍ଡିତ ରଘୁନାଥ ମିଶ୍ର, ଓକିଲ ଦିବ୍ୟସିଂହ ଦାସ ଓ ଆଉ ୨ /୩ ଜଣ ମାତ୍ର ଏହି ଗାନ୍ଧୀ-ସାହିତ୍ୟ ପାଠ ବେଳେ ଉପସ୍ଥିତ ଥିଲେ । କଂଗ୍ରେସ ଅଫିସର ସବୁ କର୍ମୀ ଅନ୍ୟ କାର୍ଯ୍ୟରେ ଘରଗୁଡ଼ିକ ଭିତରେ ଥିଲେ । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ୫/୧୦ ମିନିଟ୍ ପାଇଁ ଆସି ଆମ୍ଭମାନଙ୍କ ପାଖରେ ବସି, ଅନ୍ୟ କାର୍ଯ୍ୟରେ ଚାଲିଗଲେ ।

ଆଜି ସ୍ୱରାଜ ଆଶ୍ରମରେ ସକାଳେ ସୂତ୍ରଯଜ୍ଞରେ ମଧ୍ୟ ଏହିପରି ୮/୯ ଜଣ ମାତ୍ର, ଏବଂ ନଦୀବାଲିରେ ସନ୍ଧ୍ୟାପୂର୍ବରୁ ପ୍ରାର୍ଥନା ଓ ସାଧାରଣ ସଭାରେ ୮/୯ ଜଣ ମାତ୍ର ଯୋଗଦେଇ ଥିଲେ ।

ଦେଶବାସୀଙ୍କର କି ଅଧୋଗତି ! ଗାନ୍ଧୀଜୀଙ୍କର ଦେହତ୍ୟାଗ ଦିନରେ ତାଙ୍କ ସ୍ମୃତିରେ ଲୋକେ ଏକତ୍ର ହେଉନାହାନ୍ତି ! କି ବିସ୍ମୟର ଓ ଦୁଃଖର କଥା ! ଏହାର ମୂଳ କାରଣମାନ କଅଣ ? ଏ ବର୍ଷ ମୁଁ ମୋଟରେ ୧୧ ଗୁଣ୍ଡି "ସୂତାଞ୍ଜଳି ଓ ସୂତ୍ରଦାନ" ଦେଲି ।

୩୧.୧.୧୯୫୭

ସକାଳେ ବାସନ ମାଜିଲି । ନିତ୍ୟକର୍ମ ସାରି ତକଲୀରେ ପ୍ରାୟ ୧୫୦ ଘେରା ସୂତା କାଟିଲି । ବଳଣା ଭଲ ହୋଇଥିବାରୁ, ସୂତା ବେଶ୍ ସମାନ, ସରୁ ଓ ତାର ପରି ହେଲା । ଶ୍ରୀ ରଘୁନାଥ ମହାନ୍ତି (ବାଖରାବାଦ-ବାସୀ) ଆସିଲେ । ସର୍ବୋଦୟ ବିଚାରକୁ ଲୋକେ, ନିଜର "conditioned mind", ପୂର୍ବରୁ କେତେ ବିଷୟରେ ବଦ୍ଧମୂଳ ଧାରଣା ହେତୁ, dispassionate view of things ନେବାର ଅସାମର୍ଥ୍ୟ ଓ ଅନିଚ୍ଛା ହେତୁରୁ ବୁଝୁନାହାନ୍ତି । ଅଥଚ, ନିଜେ ପ୍ରତ୍ୟେକ ଚିନ୍ତାଶୀଳ ଲୋକ ଯୁକ୍ତି କରି କରି, ସେହି ସର୍ବୋଦୟ ବିଚାର, ଅହିଂସାଠାରେ ଶେଷରେ ସ୍ୱତଃ ପହଞ୍ଚୁଯାଉଛି ।

୪.୨.୧୯୫୭

ମୁଁ ବୋଉଙ୍କ ଠାରେ ଅଭିଯୋଗ କରି କହିଲି ଯେ ଖଦୀମଣ୍ଡଳର କୌଣସି କର୍ମୀ ଭୂଦାନ ସମିତିର ଜିନିଷପତ୍ରର ଚାର୍ଯ୍ୟ ନେଉନାହାନ୍ତି ଓ ସର୍ବସେବା ସଂଘର ଅଡ଼ିଟର୍ ଆସୁନାହାନ୍ତି - ଏପରି ଅବସ୍ଥାରେ ମୁଁ କେବଳ କଟକରେ ବସି ନ ରହି, ତା ୧୦.୨ରୁ ଅନ୍ୟତ୍ର ଚାଲିଯିବି ।

ମୁଁ ସରକାରୀ ଭୂଦାନ ସମିତିରେ ରହିବାକୁ ଚାହେଁ ନାହିଁ । ବିନୋବାଜୀଙ୍କର ସବୁକଥା ମୁଁ ଶିରୋଧାର୍ଯ୍ୟ କରିପାରିବି ନାହିଁ । କାରଣ, ମୁଁ ଅନୁମାନ କରୁଛି ଯେ ଅନେକ ଜିଲ୍ଲା ଭୂଦାନ ସେବକ ସରକାର ଯେତେବେଳେ ଯେଉଁ ତଥ୍ୟ ଚାହିଁବେ, ତାହା ସରକାରୀ ଭୂଦାନ ସମିତିକୁ ଯୋଗାଇବେ ନାହିଁ । ମୁଁ ସେଥିରେ ସେକ୍ରେଟାରୀ ଥାଇ, କାହିଁକି ମଝିରେ ଅଯୋଗ୍ୟତା ଦେଖାଇବି ?

୯.୨.୧୯୫୭

ସାମାନ୍ୟ ତୂଳା ଭିଣିଲି । ତକଲିରେ ପ୍ରାୟ ୨୦୦ ଗଜ ସୂତା କାଟିଲି । ଇଂରାଜୀ "ଭୂଦାନ'' ସାପ୍ତାହିକ ପତ୍ରିକାକୁ ଅଳ୍ପ ପଢ଼ିଲି । ସକାଳେ ଅର୍ଣ୍ଣାସାହେବ ମୋତେ କହିଲେ ଯେ (କୋରାପୁଟରେ ଓ ଅନ୍ୟତ୍ର ମଧ୍ୟ) ବହୁତ "ଗ୍ରାମଦାନ'' ଭୂଦାନଯଜ୍ଞରେ ହେଲାଣି, ମାତ୍ର ସେଠାରେ ଗ୍ରାମବାସୀମାନଙ୍କୁ ଜମିବାଡ଼ିର ଉନ୍ନତି ପାଇଁ, ସାହୁ ମହାଜନଙ୍କ ଦାଉରୁ ରକ୍ଷା ପାଇବାକୁ ସହଜରେ ଋଣ ନ ମିଳିଲେ, କୋଅପରେଟିଭ୍ ସୋସାଇଟି ଗଠିତ ହୋଇ, ସେମାନଙ୍କର କ୍ରୟବିକ୍ରୟ ବ୍ୟବସ୍ଥା ନ ହେଲେ,... "ନିର୍ମାଣ'' କାର୍ଯ୍ୟ ଦ୍ୱାରା ଗ୍ରାମବାସୀମାନଙ୍କର ପ୍ରକୃତରେ ସୁଖସ୍ୱାଚ୍ଛନ୍ଦ୍ୟ ନ ବଢ଼ିଲେ, ଏହି ଗ୍ରାମଦାନରୁ ନ୍ୟସ୍ତସ୍ୱାର୍ଥ (ପ୍ରତିକ୍ରିୟାଶୀଳ ଲୋକେ) ଲାଭ ଉଠାଇବେ ଏବଂ ବିପ୍ଳବର (ଭୂଦାନଦ୍ୱାରା ସମାଜରେ "ମୂଲ୍ୟ-ପରିବର୍ତ୍ତନ''ର (change of valuesର) କୌଣସି ଚିହ୍ନ ରହିବ ନାହିଁ । G.C.Kumarappa ଏହା ୧୯୫୩ ଠାରୁ ବିନୋବାଜୀଙ୍କୁ ଓ ସମସ୍ତଙ୍କୁ କହି ଆସୁଛନ୍ତି ମାତ୍ର ତାଙ୍କ କଥା ଅନୁସାରେ କିଛି ହୋଇ ନାହିଁ । ଏହା ଚିନ୍ତାର କଥା । ଆମର ପ୍ରଦେଶରେ ଏଥିପାଇଁ କର୍ମୀ ନାହାନ୍ତି । ମୁଁ ଏହା ଶୁଣିଲି ମାତ୍ର ମୁଁ କଅଣ କରିବି ?

ସନ୍ଧ୍ୟା ୬ ଟା ଠାରୁ ରାତି ୯ଟା ପର୍ଯ୍ୟନ୍ତ ରେଭେନ୍ସା କଲେଜର ରସାୟନ ଅଧ୍ୟାପକ ଡକ୍ଟର ଦୟାନିଧି ପଟ୍ଟନାୟକଙ୍କର ବସାରେ ଅର୍ଣ୍ଣାସାହେବଙ୍କ ସହ କେତେକ ପ୍ରଫେସର, ମତ୍ସ୍ୟବିଭାଗର କର୍ମଚାରୀ ଗଜେନ୍ଦ୍ରନାଥ ମିତ୍ର, କଲେଜର ୨/୪ ଜଣ ଛାତ୍ର, ଆଦି ମୋଟ ୧୬ ଜଣ କୋରାପୁଟରେ ନିର୍ମାଣ କାର୍ଯ୍ୟ ପାଇଁ ସରକାରଙ୍କ ଠାରୁ ସାହାଯ୍ୟ, କର୍ମୀର ଅଭାବ, କୋଅପରେଟିଭ୍ ସମିତିମାନ ଗଠନ, ଆଦି କଥା ଚର୍ଚ୍ଚା କଲେ । ଶ୍ରୀଯୁକ୍ତ ଗୋପବାବୁ, ଗୁଣନିଧିବାବୁ ମଧ୍ୟ ଥିଲେ । ମୁଁ ମଧ୍ୟ ଉପସ୍ଥିତ ଥିଲି । ରାତି ୧୧ଟାରେ ମୁଁ, ବୁଲୁବାବୁ ଦୟାନିଧି ବାବୁଙ୍କର ବସାରେ ରୋଟି ଖାଇଲୁ । ଭୂଦାନ ଅଫିସକୁ ଫେରିଲି । ଏତେ ରାତିରେ, ଭୋକ ମାରି ମାରି, ଖାଇବା ଠିକ୍ ନ ଥିଲା ।

୧୩.୨.୧୯୫୭

ଶ୍ରୀ ବୁଲୁବାବୁଙ୍କର ଲିଖିତ The Gramdan Movement ବହିର ପ୍ରୁଫ୍ ମୁଁ ସଂଶୋଧନ କଲି । ଉପରଓଳି କସ୍ତୁରବା ଶିକ୍ଷାର୍ଥିନୀ ଶିବିରର ଘରଗୁଡ଼ିକର ନକ୍ସା (୧୯୫୫ ବନ୍ୟାରେ କ୍ଷତି ଯୋଗୁଁ ସରକାରୀ ସାହାଯ୍ୟ ପାଇବା ପାଇଁ ) ଅଙ୍କନ କଲି । ପଣ୍ଡିତ ଜବାହାରଲାଲ ନେହ୍ରୁ (ଭାରତର ପ୍ରଧାନମନ୍ତ୍ରୀ) କଟକକୁ ଆସି, ଆଜି ମଧୁସୂଦନ ଦାସଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ କଲେ ଏବଂ କିଲ୍ଲା ପାଖ "ବାଲିଯାତ୍ରା ପଡ଼ିଆ''ରେ ସର୍ବସାଧାରଣ ସଭାରେ ଭାଷଣ ଦେଲେ । ମୁଁ ଅବଶ୍ୟ ଯାଇ ନ ଥିଲି ।

୧୬.୨.୧୯୫୭

ସକାଳେ ଥୋଡ଼ିଆସାହିର ମ୍ୟୁନିସିପାଲିଟି ଗାଡ଼ିଖାନାଠାରେ ବୋଉ (ରମାଦେବୀ)ଙ୍କର ଦେହରେ ଏକ ସାଇକେଲ-ରିକ୍ସାବାଲା ରିକ୍ସା ଧକ୍କା ଲଗାଇଦେବାରୁ, ବୋଉ ଛିଟିକି ଯାଇ, ଇଲେକ୍‌ଟ୍ରିକ୍ ଖୁଣ୍ଟ ଉପରେ ପଡ଼ିଲେ ଏବଂ ବୋଉଙ୍କର ଚିତାରେ ଖୁଣ୍ଟବାଜି ରକ୍ତ ବୋହିଲା - ଖପୁରି ଫାଟି ନ ଥିଲା ମାତ୍ର ଉପର ଚମଡ଼ା ଛେଚି ହୋଇଗଲା । ଡାକ୍ତରଖାନାକୁ ଯାଇ, ଡ୍ରେସିଙ୍ଗ କରାଇ, ଟିଙ୍କଚର୍ ବେଞ୍ଜିନ୍ ଲଗାଇ ଆସିଲେ । "ଦୈନିକ ସମାଜ"ରେ ଏହି ଖବର ପ୍ରକାଶ ପାଇଛି ମଧ୍ୟ ।

ଏ ତେଲେଙ୍ଗା ରିକ୍ସାବାଲା ବଡ଼ ଅସାବଧାନତାରେ ରିକ୍ସା ଚଲାଉଛନ୍ତି ଏବଂ ନାନା ବିପଦ ଘଟାଉଛନ୍ତି । ତା ୧ ମେ, ୧୯୫୬ ଠାରୁ ତା ୩୦ ଏପ୍ରିଲ, ୧୯୫୭ ପର୍ଯ୍ୟନ୍ତ ଅଡ଼ିଟ୍ ଷ୍ଟେଟମେଣ୍ଟଗୁଡ଼ିକ ମୁଁ ଯାଞ୍ଚ କଲି । କାଲି ବ୍ୟାଙ୍କ ପାସ୍‌ବୁକ୍‌ରୁ entries ଏକ ଖାତାକୁ ମୁଁ ଉତାରିଥିଲି, ଆଜି ତାହା ବିଚିତ୍ରାନନ୍ଦ ସାହାଯ୍ୟରେ ମିଳାଇଲି ।

୧୯.୨.୧୯୫୭

ସକାଳେ ବାସନ ମାଜିଲି । ପୁରୀ ସର୍ବୋଦୟ ସମ୍ମିଳନୀ (ମାର୍ଚ୍ଚ, ୧୯୫୫ ମସିହା)ରୁ ବଳକା ଥିବା ଘିଅରେ ଗତ କାଲି ସନ୍ଧ୍ୟାରେ ବିଶ୍ୱଦା କାକରାପିଠା ଛାଣିଥିଲେ । ଆମ୍ଭେମାନେ ୭/୮ ଜଣ ତାହା ଖାଇଲୁ । ମୁଁ ୬/୭ଟା ପିଠା ଖାଇଲି । ଦୁଇ ବର୍ଷର ପୁରୁଣା ଘିଅ ହେଲେହେଁ ସ୍ୱାଦ ତ ଖରାପ ଲାଗୁ ନ ଥିଲା । ବାୟା ସୁବୁଦ୍ଧିଙ୍କ ବିରୋଧରେ ଅମ୍ବାଦୋଳାରେ ହୋଇଥିବା ମକଦ୍ଦମା ଶ୍ରୀ ରତନର ଜିଦ୍‌ରେ ଖରାପ ହେବ ବୋଲି ଶ୍ରୀଯୁକ୍ତା ରମା ଦେବୀଙ୍କୁ ମୁଁ କହିଲି । ଶ୍ରୀଯୁକ୍ତ ଅର୍ଣ୍ଣାସାହେବଙ୍କର ଉପଦେଶ ଅନୁସାରେ ରତନ ଓ ଅନ୍ୟ କର୍ମୀମାନେ କାର୍ଯ୍ୟ କରିବା ଉଚିତ ।

ଶ୍ରୀ ଅଦ୍ୱୈତଚରଣ ଦାସଙ୍କ ସହିତ ଲାଇବ୍ରେରୀ ବହି ଓ ସେ ବାବଦ୍ ଖର୍ଚ୍ଚ ହୋଇଥିବା ଟଙ୍କା ମିଳାଇଲି । ସକାଳ ଓଳିଟା ସେଥିରେ ଗଲା । ଭାତ ଖାଇ, ଅଧ ଘଣ୍ଟାଏ ବିଶ୍ରାମ କରି, ଭୂଦାନ ସମିତି ଉପରନ୍ତୁ, ଶ୍ରୀଯୁକ୍ତ ଗୋପବାବୁଙ୍କର, ନବବାବୁଙ୍କର ଖଦୀମଣ୍ଡଳର ଯେଉଁ ବହିପତ୍ର ଲାଇବ୍ରେରୀରେ ମିଶିଥିଲା, ସେଗୁଡ଼ିକ ବାହାର କରି ଅଲଗା କରିଦେଲୁ ।

ଭୂଦାନ ସମିତିର ପଇସାରେ କଣଣା ହୋଇଥିବା ସର୍ଭେ ଅଫ୍ ଇଣ୍ଡିଆର ମ୍ୟାପ୍‌ଗୁଡ଼ିକର ତାଲିକା ଓ ମୋଟ ମୂଲ୍ୟ ମିଳାଇଲୁ । ପୂର୍ବରୁ ଏ ସବୁର ପୂରା ତାଲିକା stock-list ରେ ନ ଥିବାରୁ, cash memo ବା invoice ନ ଥିବାରୁ ଏବଂ ଯେ ଯେଉଁ maps ନେଇଛନ୍ତି, ସମସ୍ତେ ରସିଦ ଦେଇ ନ ଥିବାରୁ, ବଡ଼ ଧନ୍ଦି ହୋଇ, ଏହା ମିଶାଇବାକୁ ଯତ୍ନ କଲୁ । ମୋ

ମତରେ, ଅନେକ ସମୟରେ ବଡ଼ ବଡ଼ କର୍ମୀଙ୍କର ବ୍ୟଗ୍ରତା, ଅନ୍ୟମାନଙ୍କ ତରବରିଆ କରାଇବାରେ, ପ୍ରାଦେଶିକ ଅଫିସରେ ଖଟି କରି ଶୃଙ୍ଖଳାସହକାରେ କାର୍ଯ୍ୟ କରିବାର ଲୋକ ନ ଥିବାରୁ, "ଘଡ଼ିକେ ଘୋଡ଼ା ଛୁଟୁଥିବା'' ଢ଼ଙ୍ଗରେ କାମ ହୋଇଥିବାରୁ, ଏପରି ଧନ୍ଦି ହେବାକୁ ଆମକୁ (ଅଦ୍ୱୈତ, ବୃନ୍ଦାବନ, ଶରତ୍‌ଙ୍କୁ) ପଡ଼ିଛି । ଏହି ଧରଣର କାର୍ଯ୍ୟ କରି ଅଯଥା ମୋର ବହୁତ ସମୟ ଗତ ୪ ବର୍ଷରେ ନଷ୍ଟ ହୋଇଛି । ନୀତି, ତତ୍ତ୍ୱ ବୟାନ କରିବା ସହଜ; ମାତ୍ର ଟିକିନିଖି କାମକୁ ଠିକ୍ ଧାରାରେ କରି ମୁଣ୍ଡ ଲଗାଇବା ବଡ଼ କଠିନ । ଏପରି ଧନ୍ଦି ହେବା, ବିଶୃଙ୍ଖଳାକୁ ଶୃଙ୍ଖଳାରେ ପକାଇବାକୁ ଏମିତି ବ୍ୟର୍ଥ ପ୍ରୟାସ କରିବା ପରିବର୍ତ୍ତରେ, ମୁଁ ମଧ୍ୟ ଏଣିକି ନୀତି ଓ ତତ୍ତ୍ୱ କଥା କହିବାରେ ଲାଗିଲେ ସହଜ ହେବ । ମୁଁ ଏହା ଆଜି ସମସ୍ତଙ୍କୁ ଶୁଣାଇ କହିଲି ।

୨୪.୨.୧୯୫୭

ସକାଳେ ଉପାସନା ପରେ, ମୁଁ ଦିନ ୬ଟା ପର୍ଯ୍ୟନ୍ତ ଶୋଇଲି – ନିଦ ଭୋଗ ହୋଇ ନଥିଲା । ସୂତ୍ରଦାନ ଓ ସୂତାଞ୍ଜଳି ସୂତାର ହିସାବ ଠିକ୍ କରି ଚଞ୍ଚଳ ବାହାର କରିଦେଇ ନ ଥିବାରୁ, ଶ୍ରୀ ରାଧାନାଥ ମହାନ୍ତି ଓ ଶ୍ରୀ ରାଧାଶ୍ୟାମ ମହାରାଜଙ୍କ ଉପରେ ଶ୍ରୀଯୁକ୍ତ ଗୋପବାବୁ ବିରକ୍ତ ହେଲେ ଏବଂ ନିଜେ କିଛି ନ ଖାଇ, ଦିନ ୧୦ଟା ପର୍ଯ୍ୟନ୍ତ ସେମାନଙ୍କ ସହ ଲାଗି, ଏହି ହିସାବ ଠିକ୍ କଲେ । କୌଣସି କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ କର୍ମୀଙ୍କୁ ନିର୍ଦ୍ଦିଷ୍ଟ ଉପଦେଶ ଓ କାର୍ଯ୍ୟର ଧାରା ବୁଝାଇ ଦିଆଯାଉ ନ ଥିବାରୁ ଓ ଅନେକ କର୍ମୀଙ୍କର ପୂରାମାତ୍ରାରେ initiative ନ ଥିବାରୁ, ଏପରି ଦୋହରା କାର୍ଯ୍ୟ ହେଉଛି ଏବଂ ଅଯଥା ବିରକ୍ତି ପ୍ରକାଶ ପାଉଛି । ସମୟେ ସମୟେ ଦୁଇଜଣ ଗୁରୁଜନ ବା ବିଶିଷ୍ଟ ସେବକ ଦୁଇ ବିଭିନ୍ନ ଉପଦେଶ ମଧ୍ୟ ଦେଉଛନ୍ତି । ସାଧାରଣ କର୍ମୀ କାହାର ଉପଦେଶ ମାନିବେ, ଦ୍ୱିଧାରେ ପଡୁଛନ୍ତି । ଶ୍ରୀଯୁକ୍ତ ଗୁଣନିଧି ବାବୁ ଭିନ୍ନ ପ୍ରକାରେ ହିସାବ ଚାହୁଁଥିଲେ ।

ସମିତିର ଲାଇବ୍ରେରୀରେ ଶ୍ରୀଯୁକ୍ତ ଗୋପବାବୁ ଓ ରମାଦେବୀଙ୍କର କେତେକ ବହି ଥିଲା । ସେଗୁଡ଼ିକର ତାଲିକା ଏକ ଖାତାରେ ଲେଖିଦେଲି ।

ଭାରତବର୍ଷର ତଥା ଓଡ଼ିଶାର ସାଧାରଣ ନିର୍ବାଚନ ଆଜି ଆରମ୍ଭ ହେଲା । "ସର୍ବୋଦୟ-ବିଚାର''ର ଲୋକମାନେ ନୀତି ଦୃଷ୍ଟିରୁ ଏ ପ୍ରକାରର ପ୍ରତ୍ୟକ୍ଷ ଭୋଟକୁ ପସନ୍ଦ କରୁନାହାନ୍ତି ।

୨୬.୨.୧୯୫୭

ଭାଉଚର ଗାର୍ଡ଼ ଫାଇଲ, ଜର୍ମାଖର୍ଚ୍ଚ, ଖତୀୟାନ୍ ଖାତା, ଆଦି ମିଳାଇ, ଢାବଲ ୪ଟାରେ ବନ୍ଦ କରି ପ୍ୟାକିଙ୍ଗ୍ କରିବାରେ ମୁଁ ବୃନ୍ଦାବନ ଚନ୍ଦ୍ର ଜେନାଙ୍କୁ ସାହାଯ୍ୟ କଲି ।

୨୭.୨.୧୯୫୭

ସକାଳେ ଭୂଦାନ ସମିତିର ମୂଳ ଭାଉଚରଗୁଡ଼ିକ, ଜମାଖର୍ଚ୍ଚଖାତାଗୁଡ଼ିକ, ଖତୀୟାନ ଖାତାଗୁଡ଼ିକ, ବେତନ ବିଲ୍‌ବହି, ଆଦି ୨୯.୫.୧୯୫୨ ଠାରୁ ତା ୨୬.୨.୧୯୫୭ ପର୍ଯ୍ୟନ୍ତ (୩୧.୧୨.୫୬ ପର୍ଯ୍ୟନ୍ତ ହିସାବ ନିକାଶ କରିବାକୁ ଥିଲା) ତିନିଟା ଢାବଲରେ ଓ ଗୋଟିଏ ଅଖାରେ ଗୁଡ଼ା ଓ ସିଲାଇ ହୋଇଥିବା ପୁଡ଼ାରେ ପ୍ୟାକ୍ କରିଦେଲୁ । ପାସେଞ୍ଜର ଟ୍ରେନ୍ ଦ୍ୱାରା ଉଆର୍ଦ୍ଧାକୁ ସର୍ବସେବା ସଂଘ ଅଫିସକୁ ପଠାଇ ଦିଆଗଲା । ଶ୍ରୀ ବୃନ୍ଦାବନ ଚନ୍ଦ୍ର ଜେନା ପାର୍ସେଲ କରିଦେଇ ଆସିଲେ ।

୨.୦୩.୧୯୫୭

ସକାଳେ ମେସ୍‌ର ବାସନ ମାଜିବାରେ ଶ୍ରୀ ରାଧାଶ୍ୟାମ ମହାରାଜଙ୍କୁ ସାହାଯ୍ୟ କଲି । ଭୂଦାନ ସମିତିର ଅଫିସଘର ତଳିରେ ଗତ ୩ ବର୍ଷ ହେଲା ଦୁଆତରୁ କାଳି ଗଡ଼ିଯାଇ ଯେଉଁ ସବୁ ଦାଗ ମଝେ ମଝେ ଲାଗିଥିଲା, ସେଗୁଡ଼ିକୁ ଧୋଇ, ଘରତଳିଆ ଇଟାରେ ଘସି ସଫା କଲି । ଶ୍ରୀ ବୃନ୍ଦାବନ ଜେନା ମଧ୍ୟ ସାହାଯ୍ୟ କଲେ ।

ବିନୋବାଜୀଙ୍କର ଯେଉଁ କେତେଖଣ୍ଡି ଚିଠି ସମିତିର ଫାଇଲରେ ଥିଲା, ଫାଇଲ ସହିତ ସେଗୁଡ଼ିକ ମୁଁ ଶ୍ରୀ ବୁଲୁବାବୁଙ୍କୁ ନିଜେ ଦେଲି । ତାଙ୍କଠାରେ ଆଉ କେତେକ ଚିଠି (ବିନୋବାଜୀ ତାଙ୍କୁ ମଝେ ମଝେ ଲେଖିଛନ୍ତି) ଅଛି ।

ଥୋଡ଼ିଆସାହି ମେସ୍‌କୁ ମୋର, ଚୁନୀ ଦେବୀଙ୍କର ଆଜି ସୁଦ୍ଧା ସମସ୍ତ ଦେୟ ହିସାବ କରି ପରିଶୋଧ କରିଦେଲି ।

ଦିନ ଟ୍ରେନ୍‌ରେ ହରିଦାସପୁରକୁ ଆସି, କଦଳାମଠରେ ମୋର ୨ଟା ସୁଟ୍‌କେଶରେ ବହି, ହିସାବ କାଗଜପତ୍ର, ଡ଼ାଏରୀଖାତା ଆଦି ରଖିଲି । ଚାଲି କରି ସେଠାରୁ ୩ଟା ୫ ମିନିଟରେ ବାହାରି ସନ୍ଧ୍ୟା ୭ଟାରେ ବାଲିଆ ମୌଳିକ ସ୍କୁଲରେ ପହଞ୍ଚିଲି । ଅନ୍ଧାର ରାତି ଓ ମେଘ ଯୋଗୁଁ ସେଠାରେ ରହିଲି ଓ ରାତିରେ ଗୁରୁଜୀ (ଶ୍ରୀ ସୁରେନ୍ଦ୍ର ମହାନ୍ତି, ଗୋବିନ୍ଦଚନ୍ଦ୍ର ପଣ୍ଡା,...ଶତପଥି)ଙ୍କର ଆତିଥ୍ୟ ଗ୍ରହଣ କଲି ।

୬.୦୩.୧୯୫୭

ସକାଳେ କଦଳୀଗଛକୁ ବାଉଁଶପେଲା ତିଆରି କରି ଲଗାଇଦେଲି । ଶ୍ରୀଯୁକ୍ତ ଗୁଣନିଧିବାବୁଙ୍କୁ, ଆଚାର୍ଯ୍ୟ ମହାଶୟଙ୍କୁ, ଅଦ୍ୱୈତଚରଣ ଦାସଙ୍କୁ ଚିଠି ଲେଖିଲି ।

ବିନୋବାଜୀଙ୍କର ପ୍ରାର୍ଥନା-ପ୍ରବଚନ (ତା ୩୦.୧୨.୫୭ର) ପଢ଼ିଲି । ଶ୍ରୀ ଫକୀର ମିଶ୍ର ଆସିଲେ । ମୁଁ କିପରି ଅସନ୍ତୁଷ୍ଟ ଥାଇ, ଗତ ୪ ବର୍ଷ ହେଲା ଭୂଦାନ ସମିତିର ସଂଯୋଜକ

କାର୍ଯ୍ୟ ଚଳାଉଥିଲି ଏବଂ ଅନେକ (ସାନ ଠାରୁ ବଡ଼ ପର୍ଯ୍ୟନ୍ତ) କର୍ମୀ କୌଣସି ଧାରାରେ, ଠିକ୍ procedure ରେ କାମ ନ କରି, ନିଜ ନିଜ ଖିଆଲ ରେ ଅନେକ ସମୟରେ କାମ କରିବାରୁ, ମୁଁ କିପରି ଘାଣ୍ଟି ହୋଇ "ମରୁଥିଲି", ତାହା ସଫା ସଫା କହିଦେଲି । ଅନ୍ୟର ଇଚ୍ଛା, suggestion, view-pointପ୍ରତି scant courtsey, personal ego ଯୋଗୁଁ କେତେଜଣ ମାଟି କାମୁଡ଼ି ପଡ଼ିଥିବା କର୍ମୀ ଅତ୍ୟଧିକ ଘାଣ୍ଟି ହେଉଅଛନ୍ତି । ମୁଁ ଆଉ କୌଣସି କାମର ଦାୟିତ୍ୱ ନେବାକୁ ଚାହେଁ ନାହିଁ । - ଏ ସବୁ କହିଲି ।

୧୧.୩.୧୯୫୭

ଆଜି ସନ୍ଧ୍ୟାରେ "ମଣ୍ଡପୋଖରୀ" ବାଡ଼ିରେ "ଚନ୍ଦ୍ରଶେଖର" ମହାଦେବଙ୍କ ମନ୍ଦିର ଆଗରେ ଭୂଦାନ-ଜମି ବଣ୍ଟନ ହେଲା । ଶ୍ରୀ ଲୋକନାଥ ମହାରଣା, ଭୂଦେବ ମହାରଣା, ଶରତ୍‌ଚନ୍ଦ୍ର ମହାରଣା ଓଗେରଙ୍କର ୧/୬ ଅଂଶ ଦାନ (ମୋଟରେ ୬ ଏକର ୧୧ ଡ଼େସିମିଲ ମଧ୍ୟରୁ ଗୋପାଳପୁର (ମହାନ୍ତିପଡ଼ା)ର ୦.୯୮ ଏକର, ଚଣ୍ଡିଆପୋତାପୋଖରୀ ୧.୦୪ ଡ଼େସିମିଲକୁ ଛାଡ଼ି ଆଉ ସବୁ ଚାଷଜମି ବିତରିତ ହେଲା । ମାଧିପୁର, ରୁଦ୍ରପୁରର ହରିଜନ, ଚୌଧୁରୀବଜାର ଧ୍ରୁବ ମାଝି ଓ ରାଜମାଝୀ କେଉଟ, ଶାଳବଣିର କୃଶଦାସ, ଭକ୍ତ ମାଝି, ରବି ସିଂ ଆଦିବାସୀ ଲୋକେ ଏହା ପାଇଲେ । ଜୟଦେବ କମିଲାଙ୍କର ୦.୩୦ ଡ଼େସିମିଲ ଜମି ମିଟୁ ଜେନା ପାଇଲେ । ସିଙ୍ଗଲାର ଶ୍ରୀ କମ୍ବୁନାରାୟଣ ପଣ୍ଡାଙ୍କର ୧ ଏକର ୦୧ ଡିହଜମି ୬ ଜଣ ଆଦିବାସୀ ଲୋକ ଘର କରିବାକୁ ପାଇଲେ । ଆଚାର୍ଯ୍ୟ ମହାଶୟ ବଣ୍ଟନ ସଭାର ସଭାପତି ହୋଇଥିଲେ ।

ଭୂମି-ବିତରଣର ନିୟମମାନ ପୂରା ପାଳନ କରାଯାଇଥିଲା ।

୧୭.୩.୧୯୫୭

ବାଜୀରାଉତ ଛାତ୍ରାବାସର "କଳାଭବନ"ରେ ସର୍ବଶ୍ରୀ ଆଶାଦେବୀ, ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ, ରମାଦେବୀ, ମାଳତୀଦେବୀ, ଅନ୍ନପୂର୍ଣ୍ଣା ଦାସ, ମନମୋହନ ଚୌଧୁରୀ, ଚିତ୍ତରଞ୍ଜନ ଦାସ, ସର୍ବେଶ୍ୱର ଦାସ, ଭୁବନାନନ୍ଦ ସ୍ୱାଇଁ, ତ୍ରିଲୋଚନ ଜେନା, ଯତୀନ୍ଦ୍ର ମିଶ୍ର, ଦିବାକର ପ୍ରଧାନ, ଈଶ୍ୱରଲାଲ ବ୍ୟାସ, ନିମାଇଁଚରଣ ସାହୁ, ଶ୍ୟାମସୁନ୍ଦର ଦାସ, ଅଲେଖ ପାତ୍ର, ରାଧାରତନ ଦାସ, ଫକୀର ମିଶ୍ର, ସଚ୍ଚିଦାନନ୍ଦ ମହାନ୍ତି, ପବିତ୍ରା ଦେବୀ, ଆଦି ଥାଇ ଓଡ଼ିଶାରେ ବହୁ ଶତ "ଗ୍ରାମଦାନ" ଏବଂ ନୂତନ ପରିସ୍ଥିତିରେ ମୌଳିକ ଶିକ୍ଷାର ଆଗକୁ କାର୍ଯ୍ୟ ସମ୍ବନ୍ଧରେ ମୂଳ ଆଲୋଚନା ହେଲା । ଶ୍ରୀ ଚିତ୍ତବାବୁ ନିଃସଙ୍କୋଚରେ ତାଙ୍କର ମନର କଥା କହିଲେ - indoctrination ଛାତ୍ରମାନଙ୍କୁ ପୂରା ସ୍ୱାଧୀନ ଭାବରେ ଛାଡ଼ିଦେବାର ଔଚିତ୍ୟ, ଆଦି ସେ ସୂଚାଇଲେ । ଓଡ଼ିଶା ସରକାର ୫ମ ସୋପାନ ଶେଷରେ ଓ ୮ମ ସୋପାନ ଶେଷରେ ପୁରୁଣା

ଢ଼ଙ୍ଗର ଧରାବନ୍ଧା ପିଲାଙ୍କର ପରୀକ୍ଷା ଉପରେ ଅତ୍ୟଧିକ ଜୋର ଦେବାର ଅପକାରିତା, ଏ ଅବସ୍ଥାରେ ଓଡ଼ିଶାରେ ବେସରକାରୀ ମୌଳିକ ଶିକ୍ଷାନୁଷ୍ଠାନର (ସୁଷୁଡ଼ା, ରାମଚନ୍ଦ୍ରପୁର ଓ ତୁଡ଼ିଗଡ଼ିଆ) କର୍ତ୍ତବ୍ୟ, ଏ ସବୁ ଶିକ୍ଷାନୁଷ୍ଠାନ ସରକାରୀ ଗ୍ରାଣ୍ଟ ନ ନେଇ ନିଜ ଗୋଡ଼ରେ ଠିଆ ହେବାର ଆବଶ୍ୟକତା, ପ୍ରକୃତ ମୌଳିକ ଶିକ୍ଷାରେ ଲୋକଙ୍କର ଆଗ୍ରହ ଅଣାଇବା, ଆଦି କଥା ପଡ଼ିଲା । ଚମ୍ପଭିମୁଣ୍ଡାରେ, ରାମଚନ୍ଦ୍ରପୁରରେ ଜମିର ଉନ୍ନତି କରିବା, ଉତ୍ତରମୌଳିକ ବିଭାଗର ଛାତ୍ର ଓ ଗୁରୁଜୀମାନେ କୋରାପୁଟକୁ ଯିବାକଥା ଅର୍ଣ୍ଣାସାହେବ ସୂଚାଇଲେ ।

୧୮.୩.୧୯୫୭

ଶ୍ରୀଯୁକ୍ତ ଅର୍ଣ୍ଣାସାହେବ ଓ ଶ୍ରୀଯୁକ୍ତ ରମାଦେବୀ ଜୀପ୍‌କାରରେ ଚମ୍ପଭିମୁଣ୍ଡା ଉତ୍ତର ମୌଳିକ କେନ୍ଦ୍ର ଦେଖି ଅନୁଗୁଳକୁ ଫେରି ଆସିଲେ । କାଲି ପରି ଆଜି ମଧ୍ୟ ବାକି ବିଷୟଗୁଡ଼ିକ ଆଲୋଚିତ ହେଲା । ସୁଷୁଡ଼ା ଗାଁ ଭିତରେ ସନ୍ଧ୍ୟା ଉପାସନାରେ ଆମ୍ଭେମାନେ ଯୋଗ ଦେଲୁ । ଅର୍ଣ୍ଣାସାହେବ ତାଙ୍କର ଯୁବକ ବୟସରେ କିପରି ଗୋଟିଏ ଗାଁରେ ଅପରିଚିତ ରହି, ଦୈନିକ ଚାରିଅଣା ମଜୁରିରେ ମୂଲିଆରୂପେ ଦିନ କଟାଉଥିଲେ ଏବଂ ଦିନେ ସେ ଖବରକାଗଜ ପଢୁଥିବା ଦେଖି ଗ୍ରାମବାସୀମାନେ ତାଙ୍କୁ ଆଉ ସେପରି ମୂଲିଆ ରଖିଦେଲେ ନାହିଁ – ଅର୍ଣ୍ଣାସାହେବ ଉପାସନା ପରେ ଭାଷଣରେ କହିଲେ ।

ଶ୍ରୀ ଭୁବନାନନ୍ଦ ସ୍ୱାଇଁ ଓ ଫକୀର ମିଶ୍ରଙ୍କୁ ମୁଁ ଆଜି ଜୋର ଦେଇ କହିଲି ଯେ ରାମଚନ୍ଦ୍ରପୁରରେ ଉତ୍ତର ମୌଳିକ ହଠାତ୍ ଖୋଲିବା, ବୁଢ଼ା (ସଚ୍ଚି ଦାସ) ଗୁରୁଜୀ ରହିବା ଓ ଏହିପରି କେତେକ କାର୍ଯ୍ୟର ପରବର୍ତ୍ତୀ ଅବସ୍ଥାକୁ ନ ଭାବି ହଠାତ୍ କରିବାରେ ମୁଁ ଆଦୌ ଏକମତ ନୁହେଁ ।

୧୯.୩.୧୯୫୭

ସକାଳେ ସଚ୍ଚିଦାନନ୍ଦ ମହାନ୍ତି ଓ ମୁଁ ସାଇକେଲରେ ବଡ଼କେରା ଯାଇ, ଶ୍ରୀ ଦୁର୍ଗାଚରଣ ଦାସଙ୍କ ଘରେ ଭାତ ଖାଇଲୁ । ଚମ୍ପଭିମୁଣ୍ଡା ଯାଇ, ପୁଣି ବଡ଼କେରା ସନ୍ଧ୍ୟାରେ ଚିତ୍ତ ସହ ଆସି, ସେଠାରେ ଜମିବଣ୍ଟନରେ ଯୋଗ ଦେଲୁ । ରାତିରେ ଚମ୍ପଭିମୁଣ୍ଡା ବିଦ୍ୟାଳୟରେ ଶୋଇଲୁ ।

୨୦.୩.୧୯୫୭

ସଚ୍ଚିବାବୁ, ଚିତ୍ତ ଓ ମୁଁ ସକାଳେ ବଡ଼କେରାକୁ ଆସି, ଦୁର୍ଗାବାବୁଙ୍କ ଘରେ ପିଠା ଖାଇ, ଦୁର୍ଗାବାବୁଙ୍କ ସହ ଚମ୍ପଭିମୁଣ୍ଡା ନୂଆ ଗ୍ରାମ ଭିତର ଦେଇ, ମାତଲୀ ନାଳବନ୍ଧା ହୋଇ କେନାଲ ଆସୁଥିବା ସ୍ଥାନ ଦେଖିଲୁ । ଚମ୍ପଭିମୁଣ୍ଡା ଉତ୍ତର ମୌଳିକ ଶିକ୍ଷାକେନ୍ଦ୍ର ପାଇଁ ଚାଷଜମି ଓ ଜଳଭଣ୍ଡାର ତିଆରି କରିବାର ତତ୍ତ୍ୱାବଧାନ-ଭାର ଦୁର୍ଗାବାବୁ ନେବାକୁ ରାଜି ହେଲେ ।

୧.୪.୧୯୫୭

ଏପ୍ରିଲ୍ ପହିଲାଠାରୁ ସମଗ୍ର ଭାରତରେ ଦଶମିକ ପ୍ରଥାରେ ମୁଦ୍ରା ଚଳିଲା । ପୁରୁଣା ଟଙ୍କା ପୂର୍ବପରି ରହିଲା ଏବଂ ଟଙ୍କାକୁ ୧୦୦ ନୂଆ ପଇସା ଧରାଗଲା ।

ସକାଳେ ସଫାଇ ସାରି, ଜଳଖିଆ କରି ମୁଁ ଶ୍ରୀମାନ୍ ମହେନ୍ଦ୍ର ଧଳ (ଗଙ୍ଗାଧରର ପୁଅ)କୁ କପାବାଡ଼ି ହଳ କରିବାରେ, ଘାସ ବାଛିବାରେ ସାହାଯ୍ୟ କଲି । ସକାଳ ଓଳିଟା ଏଥିରେ ଗଲା । ଉପରଓଳି ପୂର୍ବଦିନଗୁଡ଼ିକ ପରି କସ୍ତୁରବା କେନ୍ଦ୍ରରେ ଶିଶୁ-ମନୋବିଜ୍ଞାନ ପଢ଼ାଇଲି । ବାବୁଲିର ସାଇକେଲ ଅଇଲିଂ କରିବାରେ ଏ ୩ ଦିନ ହେଲା ମୁଁ ଘଣ୍ଟାଏ ସମୟ ଦେଉଛି ।

ସେପ୍ଟେମ୍ବର, ୧୯୫୬ ର "ପ୍ରାର୍ଥନା-ପ୍ରବଚନ'' - ବିନୋବାଜୀଙ୍କର ଭାଷଣମାନ - ମୁଁ ଏ ୪/୫ ଦିନ ହେଲା ପଢୁଛି । ପ୍ରତ୍ୟେକ ଭାଷଣରେ ଈଶ୍ୱରଙ୍କ ଠାରେ ଆତ୍ମନିବେଦନ, ଦରିଦ୍ର ନାରାୟଣଙ୍କର ସେବା, ଗ୍ରାମରେ ସମୂହଭାବନା, ସର୍ବୋଦୟ ବିଚାରର ସ୍ପଷ୍ଟୀକରଣ, ସର୍ବତ୍ର ସମନ୍ୱୟ-ସାଧନା, ଶାନ୍ତି-ମୈତ୍ରୀର ଦୀକ୍ଷା, ... ଦେଖିଲି । ଯେତେ ପଢ଼ିଲେ ହେଁ ନୂଆ ଲାଗୁଛି । ବନ୍ଧୁ ତାହାର ଗାଗାକୁ ନ ଖୋଜି ରହୁଛି ।

୫.୪.୧୯୫୭

ମହୀନ୍ଦ୍ର ସହିତ ସକାଳଓଳିଟା ଅତିଥିଶାଳା (ଜିଜୀଙ୍କର ଘର) ପାଖ ସଫା କଲି । ଶ୍ରୀ ବୁଲୁବାବୁ ଯାଜପୁର ଟାଉନ୍‌ରୁ ରାମଚନ୍ଦ୍ରପୁରକୁ ୧୨ଟାରେ ପହଞ୍ଚିଲେ । ଉପରଓଳି ସ୍ଥାନୀୟ ଲୋକଙ୍କର ବୈଠକ ହେଲା । ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣ ତା ୨୩.୪.୫୭ରେ ରାମଚନ୍ଦ୍ରପୁର ଆସିବା ବିଷୟରେ ଏବଂ ଏ ଅଞ୍ଚଳରେ ଭୂଦାନ କାର୍ଯ୍ୟ କିପରି ଚାଲିବ - ଆଲୋଚିତ ହେଲା । ମୋତେ ଏ ସଭାରେ ସଭାପତି ହେବାକୁ ପଡ଼ିଲା । ରାତିରେ ଅମର ବାବୁଙ୍କ ସହ କଥାବାର୍ତ୍ତା କଲି । ପ୍ରାର୍ଥନା କାହିଁକି ସବୁଦିନେ ଏକା ଢ଼ଙ୍ଗରେ ସେ ( ଏବଂ ଅନ୍ୟମାନେ) ମଧ୍ୟ କରିବେ - ସ୍ୱତଃ ନିଜ ନିଜର ହୃଦୟରେ ଆକାଂକ୍ଷା ଜନ୍ମୁ ନ ଥିଲେ - ସେ ପଚାରିଲେ ।

୮.୪.୧୯୫୭

ସକାଳେ ମାମୁଲି ସଫାଇ କଲି । ବନ୍ଧୁକୁ "ସରଳପାଠ'' ୨ୟ ଖଣ୍ଡରୁ ଗୋଟିଏ ପରିଚ୍ଛେଦ ପଢ଼ାଇଲି । ମୁଁ ଶିଶୁ ମନୋବିଜ୍ଞାନ ବହିରୁ କିଛି ପଢ଼ିଲି । ଖରାବେଳେ ଘଣ୍ଟାଏ ଶୋଇଲି । ବାଡ଼ ସବୁ ମେଲା ପଡ଼ିଛି । ଗୋରୁ ଘଉଡ଼ାଇଲି । ଉପରଓଳି କସ୍ତୁରବା ଶିବିରରେ ଏକ ଘଣ୍ଟା ପଢ଼ାଇଲି ।

ଆଜି ସନ୍ଧ୍ୟାରେ ରାମଚନ୍ଦ୍ରପୁରର ଉତ୍ତର ମୌଳିକ ବିଭାଗର ୧୦ମ ସୋପାନକୁ ଉଠିଥିବା ପିଲା ୧୫ ଜଣ କୋରାପୁଟରେ ନବ ନିର୍ମାଣ କାର୍ଯ୍ୟ ଜରିୟାରେ ଶିକ୍ଷା ପାଇବାକୁ

ଏଠାରୁ ବାହାରିଲେ ଏକ ବିଦାୟସଭା ହୋଇଥିଲା । ସେମାନେ ମୋତେ ସଭାପତି କରିଥିଲେ । ଶ୍ରୀ ବୁଲୁବାବୁ ଉଦ୍‌ବୋଧନ ଦେଲେ । ଗୁରୁଜୀ ମହେନ୍ଦ୍ର ସୁନ୍ଦର ଭାରତ କୃଷି ଟ୍ରେନିଂ ପାଇଁ ସେମାନଙ୍କ ସହ ମଧ୍ୟ କୋରାପୁଟ ଗଲେ ।

୧୦.୪.୧୯୫୭

ସକାଳେ ସଫାଇ କଲି । ପାଇଖାନାର ପଛପାଖ ନାଳ କରିଦେଲି । ଶିଶୁ ମନୋବିଜ୍ଞାନ ସୋପାନର ନୋଟ୍ ସଂଶୋଧନ କଲି ଏବଂ ହସ୍ତାକ୍ଷର ଲେଖାର ପ୍ରଣାଳୀ ଉଦାହରଣ ଦେଇ ଶିକ୍ଷାର୍ଥିନୀମାନଙ୍କୁ ବୁଝାଇଦେଲି ।

୧୨.୪.୧୯୫୭

ସକାଳଓଳି ସମୟ ଏପାଖସେପାଖ ହୋଇ ଚାଲିଗଲା । ଶିକ୍ଷାର୍ଥିନୀମାନଙ୍କର ଅଧ୍ୟାପନା ନାହିଁ । ପ୍ରାକ୍-ମୌଳିକ ଓ ୩ୟ ସୋପାନର ପିଲାମାନେ ଆଜି ଭୋଜୀ କରିଥିଲେ । ମୁଁ ଓ ଗୁରୁଜୀମାନେ ସେମାନଙ୍କ ସହ ମଧ୍ୟାହ୍ନଭୋଜନ କଲୁ । ଖରାବେଳେ ଘ ୧.୨୦ ମି. ଠାରୁ ଘ. ୫.୧୫ମି ଅପରାହ୍ନ ପର୍ଯ୍ୟନ୍ତ ୮ମ ସୋପାନର ବାକୀ ୭ ଜଣଙ୍କର ବାର୍ଷିକ ବିବରଣୀଖାତାଗୁଡ଼ିକ ଓ ଅନ୍ୟାନ୍ୟ ଖାତାଗୁଡ଼ିକ ମୁଁ ଦେଖିଲି ।

ଏ ସୋପାନରେ ପ୍ରଥମ ଛାତ୍ର କାଶୀନାଥ ଓ ଆଉ ୨ଟି ପିଲାଙ୍କର ସାଧାରଣ ଲେଖାଲେଖି ଏକପ୍ରକାରେ ସୋପାନ-ଉପଯୋଗୀ । ଅନ୍ୟମାନେ ବହୁତ ପଶ୍ଚାତ୍‌ପଦ ଓ କେତେକ ଅଯୋଗ୍ୟ ଜଣାଗଲେ ।

ପ୍ରାୟ ସବୁ ପିଲାଙ୍କର ବହୁତ ବନାନ ଭୁଲ ହୋଇଛି । ଯଥା – ଶିକ୍ଷା, କୃଷ୍ଣ, ଜାଗ୍ରତ, ଭୂମି, ସାହାଯ୍ୟ, ପରୀକ୍ଷା, ଶିବିର, ତ୍ରିଭୂଜ, ଇତିହାସ, ବୀଜଗଣିତ, ଶିଷ୍ଟାଚାର, ସମଦ୍ୱିବାହୁ....... । ମଧୁସୂଦନ ରାଓଙ୍କର ବର୍ଣ୍ଣବୋଧ ଧାରାବାହିକ ରୂପେ ପଢ଼ାଯାଉ ଏବଂ ବନାନ ଶୁଦ୍ଧ ହେବା ଦିଗରେ ୨ ସେପାନରୁ ସର୍ବୋଚ୍ଚ ସୌପାନ ପର୍ଯ୍ୟନ୍ତ ଖାସ୍ ଧ୍ୟାନ ଦିଆଯାଉ ।

ଅଧିକାଂଶ ପିଲା ଏ ଅଞ୍ଚଳର ଓ ନିଜର ଘରର ଖାଦ୍ୟାଭାବ, ଅଭାବ, ଅସୁବିଧା ବାର୍ଷିକ ରିପୋର୍ଟରେ ଲେଖିଛନ୍ତି । ଅନେକ ପିଲା ଦିନେ ଦିନେ ନ ଖାଇ, ବିଦ୍ୟାଳୟକୁ ଆସିଥିଲେ । ଘରେ ଗୋରୁଗାଈଙ୍କର କାମ, ବିଲରେ ଚାଷ କାମ ମଧ୍ୟ କରିଛନ୍ତି । ନଦୀ, ନାଳ ପାରିରେ ବର୍ଷାଦିନେ ପ୍ରତିବନ୍ଧକ ଯୋଗୁଁ କେତେ ପିଲାଙ୍କ ଉପସ୍ଥାନ ମନ୍ଦ ଥିଲା । ଅଧିକରୁ ବେଶୀ ସଂଖ୍ୟାର ପିଲାଙ୍କର ବୟସ ଏ ସୋପାନ ତୁଳନାରେ ବର୍ଷେ ବା ଦୁଇ ବର୍ଷ ଅଧିକ ଅଛି ।

୧) ଛାତ୍ରମାନଙ୍କର ଖାତାରେ ଲେଖାଥିବା ନୋଟ ଓ ରେକର୍ଡ଼ରୁ ଜଣାଯାଉନାହିଁ ଯେ କାର୍ଯ୍ୟରୁ (ମୌଳିକ ଧନ୍ଦାରୁ ବା ଅନ୍ୟାନ୍ୟ କାର୍ଯ୍ୟରୁ ) ଶିକ୍ଷାଗତ ବିଷୟର ଚର୍ଚ୍ଚା ସୋପାନରେ

ହୋଇଛି । ବର୍ଷର ଆରମ୍ଭରୁ ବା ଅନ୍ତତଃ ପ୍ରତି ୩ ମାସ ପୂର୍ବରୁ ଆଗାମୀ କାର୍ଯ୍ୟଗୁଡ଼ିକ କଳନା କରି, ପ୍ରୋଜେକ୍ଟ ତିଆରି କରି, କାର୍ଯ୍ୟ କରାଯାନ୍ତା କି ?

୨) ବାର୍ଷିକ ରିପୋର୍ଟରେ ପ୍ରତ୍ୟେକ ପିଲା ସାହିତ୍ୟ, ଗଣିତ, ଭୂଗୋଳ, ଆଦି ବିଷୟ ଜାଣିଲେ କଅଣ ଉପକାର ହୁଏ, ତାହା ବର୍ଣ୍ଣନା କରିଅଛନ୍ତି । ଏପରି ବର୍ଣ୍ଣନାର ଆବଶ୍ୟକତା ମୁଁ ଉପଲବ୍ଧି କରୁନାହିଁ । ଏହା ନ କରି କଅଣ କଅଣ ଶିକ୍ଷାରେ ସେ ପିଲା ଆନନ୍ଦ ପାଇଛି, କି ପ୍ରକାରେ କାର୍ଯ୍ୟରୁ ଶିକ୍ଷା ସ୍ୱତଃ ହୋଇଅଛି,... ଲେଖାରୁ ପ୍ରକାଶ ପାଇଥିଲେ ଭଲ ହୋଇଥାନ୍ତା ।

୩) ଏ ସୋପାନରେ ସୂତାକଟା ଓ ଲୁଗାବୁଣାରେ ଉଚିତ ଧ୍ୟାନ ଦିଆଯାଇନାହିଁ । ବୁଣାଇ-ଶିକ୍ଷକ ରୀତିମତ ବୁଣାଇକାର୍ଯ୍ୟ କଲେନାହିଁ; ତେଣୁ କରି ସେ ବିଦାୟ ନେବା ଦିନଠାରୁ ବୁଣାଇକାର୍ଯ୍ୟ ଛାତ୍ରମାନେ ଆଉ କରିନାହାନ୍ତି ।

୪) ଭୂଗୋଳ ନୋଟ୍‌ରୁ ଅନୁମିତ ହେଲା ଯେ "Capes and bays" ପ୍ରଣାଳୀରେ ଭୂଗୋଳ ଶିକ୍ଷା ଦିଆଯାଇଛି ।

୫) ଡ୍ରଇଂ, sketch ଆଦି ଖୁବ୍ କମ୍ ଅଛି । ବିଜ୍ଞାନ, ଧନ୍ଦା, କୃଷି, ଆଦି କାର୍ଯ୍ୟର ନୋଟ୍ ସାଙ୍ଗରେ ଆବଶ୍ୟକ sketch ଥାନ୍ତା ।

୬) କାର୍ଯ୍ୟରେ ଛାତ୍ରମାନଙ୍କର " ଲଗନ୍ " ନାହିଁ ବୋଲି ଶ୍ରୀ ପଦ୍ମନାଭ ଜେନା, ଗୁରୁଜୀ କହିଲେ । ଛାତ୍ରମାନଙ୍କର ନୋଟଖାତାରୁ କାର୍ଯ୍ୟରେ କ୍ରମୋନ୍ନତି ଜଣାପଡ଼ିଲା ନାହିଁ ।

୭) ଅନେକ ପିଲା ବହୁତ ଶୁଦ୍ଧ, ସଂସ୍କୃତମୂଳକ ଶବ୍ଦ ବ୍ୟବହାର କରିଅଛନ୍ତି, ଅଥଚ ଗୁରୁ-ଚଣ୍ଡାଳ ଦୋଷ ଲେଖାରେ ଜଣାଗଲା । କାଶୀନାଥ ତା ୨୨.୭.୫୬ରେ ଖୁବ୍ high-flown style ବାସରୀରେ ଲେଖିଛି ।

୮) ରବୀନ୍ଦ୍ର, ନୃସିଂହ, ଅନିରୁଦ୍ଧ, ରଙ୍ଗାଧର ରିପୋର୍ଟରେ ଭୂଦାନ କଥା ଲେଖିଛନ୍ତି । ଅନ୍ୟମାନେ ଉଲ୍ଲେଖ କରିନାହାନ୍ତି, ବୋଧ ହେଲା ।

୯) ହସ୍ତାକ୍ଷର ପରିଚ୍ଛନ୍ନ ଓ ସୁନ୍ଦର କରିବାକୁ ୨ୟ ସୋପାନ ଠାରୁ, ସର୍ବୋଚ୍ଚ ସୋପନ ପର୍ଯ୍ୟନ୍ତ ଯତ୍ନ କରାଯାଉ ।

୧୦) ଏହି ସ୍କୁଲର ଅଧିକାଂଶ ପିଲା ପ୍ରତି ଅକ୍ଷରର ଲାଙ୍ଗୁଡ଼ ଅଯଥା ଲମ୍ବାଇ ଲେଖୁଛନ୍ତି । ଏହି ଅଭ୍ୟାସ ବନ୍ଦ କରାଯାଉ । ତାହା ପରିବର୍ତ୍ତରେ ଆଳଙ୍କାରିକ ଅକ୍ଷର ଲେଖିବାର ମଡ଼େଲ ଦେଖାଇ ଦିଆଯାଉ । ଆମେ ଗୁରୁଜୀମାନେ ଏହି ଏହି ବିଷୟପ୍ରତି ଧ୍ୟାନ ଦେବା ଦରକାର ।

୧୧) ରାଷ୍ଟ୍ରଭାଷା, ସଂଗୀତ ମଧ୍ୟ ଆଦୌ ଶିକ୍ଷା ଦିଆଯାଇନାହିଁ ।

୧୨) ଏପ୍ରିଲ, ମେ, ଜୁନ୍, ୧୯୫୬ରେ ଏ ସୋପାନ ପାଇଁ ଖାସ୍ କେହି ଗୁରୁଜୀ ନ ଥିବାରୁ, କାର୍ଯ୍ୟରେ ବହୁତ ବାଧା ଘଟିଛି ।

୧୩) ଅଙ୍କ ଶିକ୍ଷା ଦୈନନ୍ଦୀନ କାର୍ଯ୍ୟରୁ ହେବା ଭଲ । "ଗୋଟିଏ ମାଙ୍କଡ଼ ପ୍ରତିଦିନ ଏକ ବାଉଁଶରେ ଏତେ ଫୁଟ ଚଢ଼େ ଓ ଏତେ ଫୁଟ ଓହ୍ଲାଏ'' - ଏପରି unreal problem ଦେବା ଅନୁଚିତ ।

୧୪) ଗୁରୁଜୀ ରୀତିମତେ ନୋଟ ଦେଖୁନାହାନ୍ତି ଓ ସାଧାରଣ ଭୁଲଗୁଡ଼ିକ ସୋପାନରେ ଚର୍ଚ୍ଚା କରି ସଂଶୋଧନ କରିନାହାନ୍ତି ବୋଲି ମନେ ହୁଏ । ଏହା ହୋଇଥାନ୍ତା ।

୧୫) ପ୍ରତ୍ୟେକ ପିଲା ନିଜର ମାସିକ ବିବରଣୀରେ ମଧ୍ୟ ପଢ଼ା ହୋଇଥିବା ବିଷୟଗୁଡ଼ିକର ଏକ ତାଲିକା ଲେଖୁଛନ୍ତି । ଏହା ଅନାବଶ୍ୟକ ଅଟେ ।

ରଙ୍ଗାଧର ତା ୧୫.୧୨.୫୬ରେ ଚରନାର ମୋର ଗୋଟିଏ ଖରାପ କଥା ହୋଇଥିଲା - ବାସରୀରେ ଲେଖିଲି । ଗୁରୁଜୀ ଏହା ବୁଝିଥିଲେ ଓ ପ୍ରତିକାର କରିଥିଲେ କି ? ଏ ପିଲା ବାସରୀରେ ନୂଆ ନୂଆ କଥା ଅନେକ ଦିନ ଲେଖିଛି । ଅନ୍ୟମାନେ ଧରାବନ୍ଧା ଗତରେ ଲେଖୁଛନ୍ତି ।

ରାତିରେ ବିଶ୍ୱନାଥ ପଟ୍ଟନାୟକ ଓ ପଦ୍ମନାଭ ସହ ୮ମ ସୋପାନର ଏହି ପିଲାଙ୍କର ସୋପାନ-ଉନ୍ନତି ବିଷୟରେ ଆଲୋଚନା କଲି ।

୧୩.୪.୧୯୫୭

ସକାଳେ ଗୁରୁଜୀମାନଙ୍କର ବୈଠକରେ ବିଭିନ୍ନ ସୋପାନର ଛାତ୍ରମାନଙ୍କର ସୋପାନ-ଉନ୍ନତି ସମ୍ବନ୍ଧୀୟ କଥାବାର୍ତ୍ତାବେଳେ ମୁଁ ଉପସ୍ଥିତ ଥିଲି । ରାତିରେ ଶ୍ରୀ ଅମରବାବୁଙ୍କ ସହ ଏଠା ଛାତ୍ରମାନଙ୍କର କେତେକ ସୁ-ଅଭ୍ୟାସ କିପରି ଗଠିତ ହେବ, ତାହା ଚର୍ଚ୍ଚା କଲି । କର୍ମୀମାନଙ୍କର, ଆମ୍ଭମାନଙ୍କର କେତେ ବିଷୟରେ ଭୁଲ ଧାରଣା, prejudices ଥାଇପାରେ ଓ ଥାଏ । ଆମ୍ଭେମାନେ detatched, scientific and objective study ଅନେକ ସମୟରେ କରିପାରୁନା; ସେଥିପାଇଁ ଭୁଲ ସିଦ୍ଧାନ୍ତ କରୁ । ପ୍ରାର୍ଥନା-ପ୍ରବଚନ ଆଦି ପଢ଼ିଥିଲି ।

୧୬.୪.୧୯୫୭

ଭୋର କସ୍ତୁରବା ଶିବିରର ଉପାସନାରେ ଓ ବିନୋବାଜୀଙ୍କର ଗୀତା-ପ୍ରବଚନ-ପାଠ ଏବଂ ବାଇବେଲ ପାଠରେ ମୁଁ ଯୋଗ ଦେଲି । ତତ୍‌ପରେ ୫ଟା ଠାରୁ ପ୍ରାୟ ଦଶଟା ପର୍ଯ୍ୟନ୍ତ

ଏକ କମ୍ପୋଷ୍ଟ-ଖାତ ଖୋଳିଲି, ବନ୍ଧୁ ଲଗାଇଥିବା (୧୯୫୨ରେ) ଏକ କଲମୀ ଆମ୍ବଗଛମୂଳ ସଫା କରି ମଳା କରିବା, କମ୍ପୋଷ୍ଟ ଖାତରେ ଶୁଖିଲାପତ୍ର ଆଦି ପକାଇବାରେ ସମୟ କଟାଇଲି । ଶ୍ରୀ ଗୋବିନ୍ଦ ସାମଲ ଓ ଶଶୀଭୂଷଣ ପତିଙ୍କ ସହ ଏ ଅଞ୍ଚଳରେ ଭୂଦାନପ୍ରଚାରରେ ମୁଁ ଯିବାର କଥାବାର୍ତ୍ତା କଲି ।

୧୮.୪.୫୭

ନୀଳପଦା ଦେଇ ମହାକାଳପଡ଼ାକୁ ଆସି ଧନୁ ନାୟକଙ୍କର ଓ ତାଙ୍କ ପୁଅ ଠୁକଙ୍କର ଆତିଥ୍ୟରେ ମଧ୍ୟାହ୍ନଭୋଜନ କଲୁ । ନୀଳପଦାରେ ବଡ଼ ଜମିମାଲିକ ସୂର୍ଯ୍ୟମଣି ନାୟକଙ୍କର ପୁତୁରା ପାର୍ବତୀ ଚରଣ ନାୟକଙ୍କର ତାଚ୍ଛଲ୍ୟଭାବ, ଅହଙ୍କାର ଶ୍ରୀ ଗୋବିନ୍ଦ ସାମଲ ସହି ପାରୁ ନ ଥିଲେ । ମୁଁ ଧୀରସ୍ଥିର ଭାବରେ ଏହି ଯୁବକରଙ୍କର ଉତ୍ତର ଦେଲି ।

ସନ୍ଧ୍ୟାରେ ରାଉତ ସାହିରେ ପହଞ୍ଚିଲୁ । ଗୋଟାଏ ଉଧ ସାହି ଭିତରେ ଲୋକଙ୍କର ଦାଣ୍ଡଦୁଆର ଦେଇ ଯାଉଥିଲା । ପୋଷା ଉଧ ଭାବି ମୁଁ ଗୋବିନ୍ଦବାବୁଙ୍କର ଦୃଷ୍ଟି ଆକର୍ଷଣ କଲି । ତାହା ଶୁଣି ପାଖର ଘରବାଲାଙ୍କର ଟୋକା ଲୋକେ ବାଡ଼ି ନେଇ ଗୋଡ଼ାଇ, ଉଧଟାକୁ ମାରି ଦେଲେ । ଉଧକୁ ନ ଗୋଡ଼ାଇବାକୁ ଓ ଆଘାତ ନ କରିବାକୁ ମୁଁ ମାମୁଲି ଅନୁରୋଧ କଲେ ହେଁ, ସେମାନେ ମାନିଲେ ନାହିଁ । ମୁଁ ଏହି ପ୍ରାଣୀଟିର ବଧ ପାଇଁ ଏକପ୍ରକାରେ ଦାୟୀ ହେଲି ।

୨୩.୪.୧୯୫୭

ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣଜୀ, ତାଙ୍କର ସହଧର୍ମିଣୀ ପ୍ରଭାବତୀ ଦେବୀ କଟକରୁ ଜୀପ୍‌କାରରେ ରାମଚନ୍ଦ୍ରପୁରକୁ ଆସିଲେ । ବରୀରେ "ସେବାଘରେ'' (ଏବର ମାତୃମଙ୍ଗଳ କେନ୍ଦ୍ରରେ) ଘଣ୍ଟାଏ ରହିଲେ । ଖରାବେଳେ ରାମଚନ୍ଦ୍ରପୁରରେ କସ୍ତୁରବା ଶିକ୍ଷାର୍ଥିନୀ, ମୌଳିକ ବିଦ୍ୟାଳୟଗୁଡ଼ିକର ଗୁରୁଜୀ, ଏ ଅଞ୍ଚଳର ଭୂଦାନ କର୍ମୀଙ୍କୁ ଜୟପ୍ରକାଶଜୀ କିଛି କହିଲେ । ସନ୍ଧ୍ୟାରେ ସାଧାରଣ ସଭାରେ ମଧ୍ୟ ସେ ବକ୍ତୃତା ଦେଲେ ।

୧.୫.୧୯୫୭

ଅନୁଗୁଳର "ବାଜୀରାଉତ'' ଛାତ୍ରବାସ ତା ୧୧.୫.୧୯୪୬ ମସିହାରେ ପ୍ରଥମେ ଆରମ୍ଭ ହୋଇଥିଲା । ସେହି ତାରିଖରେ ତାହାର "ଜନ୍ମଦିନ'' ଏଠାରେ ପାଳିତ ହୁଏ । ଏ ବର୍ଷ ସେ ସମୟରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ କଲାଡ଼ୀଠାରେ ପଡୁଥିବାରୁ, ଆଜି (ତା ୧.୫.୫୭ରେ) ସେହି ଜନ୍ମଦିନ ଏଠାରେ ପାଳିତ ହେଉଛି । ଏଠା ଛାତ୍ରଙ୍କର ଅଭିଭାବକ ମଧ୍ୟରେ ସର୍ବଶ୍ରୀ ଘନଶ୍ୟାମ ପାଣିଗ୍ରାହୀ (ମାନପୁର, ସମ୍ବଲପୁର ଜିଲ୍ଲା), ବାସୁଦେବ ମହାନ୍ତି(ଯକ୍ଷପୁରା, ଯାଜପୁର), ନବଘନ ବେହେରା(ତାଳଚେର) ପ୍ରଭୃତି ଆସିଥିଲେ ।

ଉତ୍ତରମୌଳିକ ବିଭାଗର ୪/୫ ଜଣ ପିଲା ଶିକ୍ଷା ବିଷୟରେ ନିଜର କଥା କହିଲେ । ସଭାପତି ଘନଶ୍ୟାମ ବାବୁ ଅନୁରୋଧ କରିବାକୁ ମୁଁ ୨/୪ ପଦ କହିଲି – ମୌଳିକ ଶିକ୍ଷାକୁ ଲୋକଙ୍କୁ ଠିକ୍ ଠିକ୍ ବୁଝାଇବା ଆମ ସମସ୍ତଙ୍କର କର୍ତ୍ତବ୍ୟ ଅଟେ ।

୨.୫.୧୯୫୭

ସକାଳେ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ସହିତ ଅନୁଗୁଳରୁ ଚମ୍ପତିମୁଣ୍ଡା ଉତ୍ତର ମୌଳିକ ଶିକ୍ଷାକେନ୍ଦ୍ରକୁ ଗଲି । ସେଠାରେ ଏକାଦଶ ଓ ନବମ ସୋପାନର ୮/୧୦ ଜଣ ଛାତ୍ରଙ୍କର ପ୍ରଶ୍ନୋତ୍ତର ଖାତାମାନ ଖୁସିରେ ଦେଖିଲି । ଏକାଦଶ ସୋପାନର ପିଲାଙ୍କର ଏହି ଖାତା ଅନୁଗୁଳ ବେସିକ୍ ଟ୍ରେନିଂ କଲେଜର ଅଧ୍ୟକ୍ଷ ଶ୍ରୀ ଶତ୍ରୁଘ୍ନ ନାଥ, ଏମ୍.ଏ.(ଲଣ୍ଡନ) ଓ ପୂର୍ବେ ୧୯୫୦ ରୁ ୧୯୫୬ ପର୍ଯ୍ୟନ୍ତ ଓଡ଼ିଶାର ମୌଳିକ ଶିକ୍ଷାର ସଂଗଠକ – ଦେଖିଥିଲେ । ଛାତ୍ରମାନେ ଏକପ୍ରକାର ଭଲଭାବରେ ସେମାନଙ୍କର ଧାରଣା ବ୍ୟକ୍ତ କରିପାରିଛନ୍ତି । ଆଜି ଶ୍ରୀ ଶତ୍ରୁଘ୍ନବାବୁ ମଧ୍ୟ ଏହା କହି ତାଙ୍କର ଉତ୍ତମ ମତ ବ୍ୟକ୍ତ କରିଥିଲେ । ଚିତ୍ତବାବୁ ଓ ବାସୁବାବୁଙ୍କ ସହ ଏଠା ଅନୁଷ୍ଠାନ ସମ୍ବନ୍ଧରେ କଥାବାର୍ତ୍ତା କଲି

୩.୫.୧୯୫୭

ବାସୁବାବୁ ଓ ମୁଁ ଚାଲି କରି ଚମ୍ପତିମୁଣ୍ଡାରୁ ଅନୁଗୁଳକୁ ଆସିଲୁ । ବଡ଼କେରାରେ ଶ୍ରୀ ଦୁର୍ଗାଚରଣ ଦାସଙ୍କ ଘରେ ପ୍ରାତଃକୃତ୍ୟ ସାରି ଚୂଡ଼ା, ନଡ଼ିଆ ଓ ମହୁ ଖାଇଲୁ । ମୁଁ ଅନୁଗୁଳରେ ମୌଳିକ ଶିକ୍ଷାର ସଂଗଠକ ଶ୍ରୀ ଗୌରଚନ୍ଦ୍ର ପାଢ଼ୀ, ସହକାରୀ ଆଦିକନ୍ଦ ନାୟକ ଓ ଅନୁଗୁଳ ମୌଳିକ ଟ୍ରେନିଂ ସ୍କୁଲର ହେଡ଼ମାଷ୍ଟରଙ୍କ ସହ ୨ ଘଣ୍ଟା କଥାବାର୍ତ୍ତା କଲି । ମୁଁ ବାହାରେ ବାହାରେ ଥାଇ, ଲୋକମତ ଗଠନ ଦିଗରେ ମୌଳିକ ଶିକ୍ଷାରେ ସାହାଯ୍ୟ କରୁଅଛି, ଗୁରୁଜୀମାନେ ଓ ସଂଗଠକ ଓ ଉଦ୍ୟୋକ୍ତାମାନେ ନିଜ ନିଜର କର୍ତ୍ତବ୍ୟ ଠିକ୍‌ରୂପେ କରନ୍ତୁ, ଆମ୍ଭମାନଙ୍କର ସମସ୍ତଙ୍କର ଗଠନମୂଳକ ସୂଚନା (suggestions) ସରକାରଙ୍କୁ ଜଣାଉଁ, ପରୀକ୍ଷା ସମ୍ବନ୍ଧରେ ଉତ୍ତମ ନମୁନା(assessmentର models) ଗୁରୁଜୀମାନେ ଦିଅନ୍ତୁ, ଆଦି ମୁଁ ଏମାନଙ୍କୁ ବୁଝାଇ କହିଲି । ବେସିକ୍ ଟ୍ରେନିଂ କଲେଜକୁ ଯାଇ ଓଭରସିଅର୍ ବୃଦ୍ଧ ଶ୍ରୀ ଶ୍ରୀପତି ତ୍ରିପାଠୀଙ୍କୁ ଓ ଶତ୍ରୁଘ୍ନବାବୁଙ୍କୁ ଦେଖାକଲି । ଶତ୍ରୁଘ୍ନବାବୁଙ୍କ ବସାରେ ପଖାଳ ଖାଇଲି । ସରଞ୍ଜାମ-ଶିକ୍ଷକ ଫକୀର ବାବୁଙ୍କ ସହ ମଧ୍ୟ ଦେଖା ହେଲା ।

୪.୫.୧୯୫୭

ଭୋର ୫ଟାରେ ମୁଁ ବାଜୀରାଉତ ଛାତ୍ରାବାସରୁ ସାଇକେଲରେ ଆସି, ହିନ୍ଦୋଳରୋଡ଼ ପାଖ ହାଟରେ ୧୦/୧୫ ମିନିଟ୍ ରହି, ସିଧା ଗଦାଶୀଳା ମୌଳିକ ସ୍କୁଲକୁ ଆସି ଦିନ ୧୦ଟାରେ ପହଞ୍ଚିଲି । ମୋଟ ୩୦ ମାଇଲ ୪ ଫର୍ଲଙ୍ଗ । ଏଠାରେ ମଧ୍ୟାହ୍ନଭୋଜନ କରି, ୩ଟା ପର୍ଯ୍ୟନ୍ତ

ବିଶ୍ରାମ କଲି । ସାଇକେଲରେ ଢ଼େଙ୍କାନାଳ ଟାଉନ୍ ଦେଇ ସନ୍ଧ୍ୟାରେ ଦେଓଗାଁକୁ ଆସିଲି । ଢ଼େଙ୍କାନାଳଠାରୁ ବାଟରେ ଭଗବାନପୁର, କାଇମାଟି (ଏଠାରୁ ମହିମାଗାଦୀ ଜୋରନ୍ଦାକୁ ବାମ ଦିଗରେ ସଡ଼କ ବାହାରିଛି), ବିରାଡ଼ିଆ ଗ୍ରାମମାନ ପଡ଼ିଲା । ତତ୍‌ପରେ ୨ ମାଇଲ ରିଜର୍ଭ ଜଙ୍ଗଲ, ମାତ୍ର ବାଘଭାଲୁର ଭୟ ଆଜିକାଲି ନାହିଁ । ମୁଁ ଠିକ୍ ଅନ୍ଧାର ହେବାବେଳେ କପିଳାଶ ପାହାଡ଼ର ପାଦଦେଶରେ ପହଞ୍ଚିଲି । ଦେଓଗାଁକୁ ବାଟ ନ ପାଇ, ପାହାଡ଼ ଉପରକୁ ୧ ଫର୍ଲଙ୍ଗ ସାଇକେଲକୁ ଗଡ଼ାଇ ଗଡ଼ାଇ ଚଢ଼ିଲି । ୩ ମାଇଲ ଏପରି ଗଲେ କପିଳାଶ ମହାଦେବଙ୍କର ମନ୍ଦିରଠାରେ ପହଞ୍ଚିବି, ତଳେ ମାଇଲଖୁଣ୍ଟରୁ ଦେଖିଥିଲି । ସାହସ ନ ହେବାରୁ, ଫେରିଲି । ଅନ୍ଧକାର ରାତି, ମୁଁ ଏକାକୀ ଏ ଜଙ୍ଗଲମଧ୍ୟରେ ଟିକିଏ ଭୟ କଲି, nervous ବୋଧ କଲି । ମାତ୍ର ସାହାସ କରି ବିରାଡ଼ିଆ ଗ୍ରାମ ଅଭିମୁଖରେ ସାଇକେଲ ଛାଡ଼ିଲି । ଅଧମାଇଲ ପରେ ଦେଓଗାଁ ଯାଉଥିବା ୨ ଜଣ ଙ୍କୁ ଭେଟିଲି ଓ ସେମାନଙ୍କ ସହ ଦେଓଗାଁକୁ ଆସିଲି । ରାତିରେ ପାଏ କଞ୍ଚାଚୁଡ଼ା ଓ ଲୁଣ ବତୁରାଇ ଖାଇ, ଦେଓଗାଁ ନି.ପ୍ରା.ସ୍କୁଲର ପିଣ୍ଡାରେ ଶୋଇଲି । ଖୋର୍ଦ୍ଧାର ମେଣ୍ଢାଶାଳବାସୀ ଶ୍ରୀ ରାଜକିଶୋର ରାୟ କାଠବ୍ୟବସାୟରେ ଏଠାରେ ଥିଲେ । ସକାଳେ ସେ ମୋତେ ଚିହ୍ନିଲେ ଓ ଆତିଥ୍ୟ ଦେଖାଇଲେ । ଏଠାର ଶିକ୍ଷକ ମୋର କୌଣସି ପରିଚୟ ପଚାରି ନ ଥିଲେ କିମ୍ବା ମୁଁ ନିଜେ ନିଜେ ପରିଚୟ ଦେଇ ନଥିଲି । କି ଦରକାର ? ରାତିରେ ଭଲ ଦିନ ହେଲା ନାହିଁ । ସାଇକେଲଟା ବାହାରେ ଥାଏ, ଦକା ଥାଏ ।

୫.୫.୧୯୫୭

ସକାଳ ଘ ୬ଟାରେ ମୁଁ ଚାଲିକରି ଏକାକୀ କପିଳାଶ ପାହାଡ଼ ଉପରକୁ ଉଠିଲି । ବଣର ନାନା ଜାତି ଫୁଲର ବଡ଼ ମଧୁର ସୁଗନ୍ଧରେ ସ୍ଥାନ ମହକୁଥାଏ । କାଲି ସନ୍ଧ୍ୟାରେ ମୁଁ ଏକାକୀ ଏହି ବାଟରେ ଫେରିବାବେଳେ ମଧ୍ୟ ଏହିପରି ବାସନା ହେଉଥିଲା । ପୂରା ଏକ ଘଣ୍ଟା ଲାଗିଲା, କପିଳାଶ ମହାଦେବଙ୍କର ମନ୍ଦିରଠାରେ ପହଞ୍ଚିବାକୁ । ବାଟରେ ମୁଁ କେଉଁଠି ବସିନାହିଁ ବା ଧଇଁସଇଁ ଆଦୌ ଲାଗିନାହିଁ । ଜୀପ୍ ମୋଟର ଏହି ସର୍ପାକାର ବାଟରେ ମଧ୍ୟ ଯାଉଛି ।

ଏ ପାହାଡ଼ର ଶିଖର ସମୁଦ୍ରଜଳ ପତ୍ତନରୁ ୨୨୮୦ ଫୁଟ । ମହାଦେବଙ୍କର ମନ୍ଦିର ୧୫୦୦ ଫୁଟ , ପାହାଡ଼ ପାଦଦେଶ ସମୁଦ୍ର ଜଳ ପତ୍ତନ ଠାରୁ ୫୦୦ ଫୁଟ । ମୋଟରେ ୩ ମାଇଲରେ ୧୪ଟି ବାଙ୍କ ଅଛି । କଳାମାଙ୍କଡ଼ ଓ ପାତି ମାଙ୍କଡ଼ ଓ ନାଲିକେଶରୀ କଳା ରଙ୍ଗର ଗୁଣ୍ଡୁଚିମୂଷା ଅନେକ ଅଛନ୍ତି । ମହାଦେବଙ୍କର ସ୍ଥାନଟି ଶୀତଳ, ଝରଣା ଅଛି । ଏ ପାଣି କୁଆଡ଼େ ଭାରୀ ଜୀର୍ଣ୍ଣକାରକ । ଏଠାରେ ଝରଣାରେ ମୁଁ ଗାଧୋଇଲି । ପୂଜକ ଶ୍ରୀ ଅର୍ଜୁନ ମହାପାତ୍ର (ଘର ଦେଓଗାଁ) ମହାଦେବ, ପାର୍ବତୀ ମୂର୍ତ୍ତି ମୋତେ ଦର୍ଶନ କରାଇଦେଲେ । ଦୁଇଅଣାର ଉଖୁଡ଼ା ମୁଁ ଭୋଗ କଲି । ଅନ୍ୟ ସବୁ ଭୋଗ 'ଦାଲଦା'' ରେ ତିଆରି । ତେଣୁ କରି

ମୁଁ ତାହା କିଣିଲି ନାହିଁ । ପଣ୍ଡା, ପୂଜକଙ୍କର ଦୌରାତ୍ମ୍ୟ ଏଠାରେ ଦେଖିଲି ନାହିଁ । ଯାତ୍ରୀ ଆଜି ସେମିତି ନ ଥିଲେ । ଉପରେ ଧର୍ମଶାଳା ଅଛି । ନଡ଼ିଆ, କଦଳୀ, ଆମ୍ବ ଗଛ ଆଦି ଅଛି । ଦିନ ୯ଟାରେ ମୁଁ ଦେଓଗାଁ ସ୍କୁଲରେ ଫେରି ପହଞ୍ଚିଲି । ପ୍ରାୟ ୬ ପଇସାର କଞ୍ଚାଚୁଡ଼ା ଖାଇ, ମୁଁ ସାଇକେଲରେ ଏଠାରୁ ୧୦ ମାଇଲ ଦୂର ଷଡ଼ଙ୍ଗୀ ଗ୍ରାମରେ – ବିଶ୍ୱାନଥପୁର, ଝିଲି, ବିଧାରପୁର, ସାପୁଆଝର ଗ୍ରାମ, ଗଦିଆ ଥାନା, ପରପଦା, ଇଲେଇଜଙ୍ଗ, ଷଡ଼ଙ୍ଗୀ ମି.ଇ.ସ୍କୁଲରେ ବାକୀ ୪ ବା ୫ ପଇସାର ଚୁଡ଼ା ଖାଇ, ୩ ଘଣ୍ଟା ବିଶ୍ରାମ କରି ଦିନ ୨ଟା ରେ ସାଇକେଲରେ ମୁଁ ହରିଦାସପୁର ରେଲଷ୍ଟେସନ ଅଭିମୁଖେ ବାହାରିଲି ।

୬.୫.୧୯୫୭

ମୁଁ ସାଇକେଲରେ ରାମଚନ୍ଦ୍ରପୁର ଆସି, ବାଟରେ ପରିଚିତ ଲୋକମାନଙ୍କ ସହ ୩ ଜାଗାରେ କଥାବାର୍ତ୍ତା କରି, ସରବତ୍ ଓ ପାଣି ପିଇ, ୧୨ଟା ବେଳେ ପହଞ୍ଚିଲି । ଖରାବେଳେ ୩ ଘଣ୍ଟା ବିଶ୍ରାମ କଲି । ଏ ୮ ଦିନରେ ଖରାରେ ମୋଟରେ ପ୍ରାୟ ୨୨୫ ମାଇଲ ଯାଆସ କରିଥିଲି, ବିଶେଷ କ୍ଲାନ୍ତି ଲାଗିନାହିଁ ।

ବାବୁଲି ତା ୪ରେ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସ ଆଦିଙ୍କ ସହ କଟକ ଯାଇଛି ଏବଂ ସେଠାରୁ ତା ୫ରେ କଲାଡ଼ି ସର୍ବୋଦୟ ସମ୍ମିଳନୀକୁ ଯାଇଛି । ଚୁନୀ "ସେବାଘରେ'' କୁନର ଅନୁରୋଧ କ୍ରମେ ରହିଛି ।

ମୁଁ ଇଚ୍ଛାକରି ସର୍ବୋଦୟ ସମ୍ମିଳନୀକୁ ଗଲିନାହିଁ । ଅନେକ ଭୂଦାନ କର୍ମୀ ଟଙ୍କାର ଅଭାବରୁ ଯାଇପାରିନାହାନ୍ତି । ଗତ ବର୍ଷକ ମଧ୍ୟରେ ମୁଁ ଭୂଦାନରେ କି କାର୍ଯ୍ୟ କରିଛି ଯେ ବିନୋବାଜୀଙ୍କ ପାଖକୁ ଯିବି ? ସେ ଗତ ୬ ବର୍ଷ ମଧ୍ୟରେ ବହୁତ କଥା ବଡ଼ ପ୍ରାଞ୍ଜଳ ଭାବରେ, ସୁନ୍ଦରରୂପେ ବୁଝାଇ କହିଲେଣି । ଆମେ ସେଥିରୁ କଅଣ କାର୍ଯ୍ୟରେ କରିଛୁ ? ଖାଲି ହାତରେ (ଅର୍ଥାତ୍ ଲୋକେ ତାଙ୍କ ବିଚାରକୁ ଗ୍ରହଣ କରି କାର୍ଯ୍ୟ କରି ନ ଥିବା ଅବସ୍ଥାରେ) ତାଙ୍କଠାକୁ ଯାଇ ଲାଭ କଅଣ ? ତାଙ୍କୁ ଦେଖିବା ଓ ତାଙ୍କ ବକ୍ତୃତା ଶୁଣିବାର ସୁଖରୁ ମୁଁ ଜାଣିଶୁଣି ନିଜକୁ ବଞ୍ଚିତ କଲି । ଏ ଲୋକକୁ ସମ୍ବରଣ କଲି । ଅନ୍ୟମାନେ ଯାହା ଭାବନ୍ତୁ ପଛକେ ଏହି self-denial ମୋତେ ବଡ଼ ଭଲ ଲାଗିଲା ।

୭.୫.୧୯୫୭

ସକାଳେ ଚୂନୀ ଦେବୀ ବରୀରୁ ରାମଚନ୍ଦ୍ରପୁରକୁ ଆସି, ଘଣ୍ଟାଏ ରହି, ଫେରିଗଲେ । ବାଲେଶ୍ୱର ଟାଉନ ପାଖରେ ଭାସ୍କରଗଞ୍ଜବାସୀ ଶ୍ରୀ ଅଗଣି ନାୟକ ତାଙ୍କର ଝିଅକୁ ଦେଖିବାକୁ ଏଠାକୁ ଆସିଥିଲେ । ତାଙ୍କ ସହ ଭୂଦାନ-ବିଚାର, ବର୍ତ୍ତମାନ ଶିକ୍ଷାର ଦୁରବସ୍ଥା, ଆମ୍ଭମାନଙ୍କର କର୍ତ୍ତବ୍ୟ ବିଷୟରେ ମୋର ମତ ବ୍ୟକ୍ତ କରି, ଆଲୋଚନା କଲି ।

ଅପରାହ୍ନରେ ପଦ୍ମଲାଭ ଜେନାଙ୍କୁ ଉତ୍ତର ମୌଳିକ ଶିକ୍ଷାକେନ୍ଦ୍ର ଦ୍ୱୟର (ଚମ୍ପତିମୁଣ୍ଡାର ଓ ଏଠାକାର) ମୂଳ ଅଭାବ, ଅସୁବିଧା ଓ ସୀମିତ କର୍ମୀ, ଅର୍ଥ ଓ ଶକ୍ତିର ପୂରା ସଦ୍‌ବ୍ୟବହାର ଦିଗରେ ମୋର ମତ ଜଣାଇଲି ।

ସନ୍ଧ୍ୟା ଉପାସନାରେ ଅଗଣିବାବୁ, ବାଇବେଲ ପାଠ ପରେ, ପଠିତ ଅଂଶକୁ ଶିକ୍ଷାର୍ଥିନୀମାନଙ୍କୁ ବୁଝାଇ ଦେଲେ ।

୮- ୯.୫.୫୭

ସକାଳେ କମ୍ପୋଷ୍ଟ-ଖାତ ଖୋଳି ଅଳିଆ ପକାଇଲି । ଭୋର ଗଛପତ୍ରରେ ଅଳ୍ପ ପାଣି ଦେଲି । 'ଶିକ୍ଷଣ ବିଚାର'ର ଅନୁବାଦ (ପାଣ୍ଡୁଲିପି) ପଢ଼ିଲି । ଖରାବେଳେ ଆଜିଠାରୁ ପୁଣି କସ୍ତୁରବା ଶିବିରରେ ଘଣ୍ଟାଏ ପଢ଼ାଇଲି ।

ଆଜି କେରଳ ପ୍ରଦେଶର କଲାଡ଼ି ଗ୍ରାମରେ (ଶଙ୍କରାଚାର୍ଯ୍ୟଙ୍କର ଜନ୍ମସ୍ଥାନରେ) ଅଖିଳ ଭାରତ ନବମ ସର୍ବୋଦୟ ସମ୍ମିଳନୀ ଆରମ୍ଭ ହେଉଛି । ମୁଁ ଇଚ୍ଛା କରି ସମ୍ମିଳନୀକୁ ଗଲି ନାହିଁ ।

ସନ୍ଧ୍ୟା ପ୍ରାର୍ଥନା ପରେ ଶିକ୍ଷାର୍ଥିନୀମାନଙ୍କୁ "ସର୍ବୋଦୟ'' ବିଷୟରେ କିଛି କହିଲି । ତାହା ଏ ପର୍ଯ୍ୟନ୍ତ ଏକ ଉଚ୍ଚ କଳ୍ପନାର ଓ ବିଚାରର ବସ୍ତୁ ଅଟେ । ପରେ, ପଦ୍ମନାଭ ସହିତ ସ୍କୁଲ ବିଷୟରେ ମୁଁ କଡ଼ା କଡ଼ା ସୂଚନା ଦେଲି - ଶିକ୍ଷଣ ବିଚାର ବହିରୁ । ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀରେ ଥିବା ଶ୍ରୀ କାଙ୍ଗାଳିଚରଣ ପତିଙ୍କୁ ଚିଠି ଲେଖିଲି ।

୧୩.୫.୧୯୫୭

ସକାଳେ ନିତ୍ୟକର୍ମ ସାରି, ଶ୍ରୀ କୈଳାଶନାଥଙ୍କ ସହିତ ଚାଲିକରି, ଭୂଦାନଗସ୍ତରେ ବାହାରିଲି । ଅନ୍ୟାସୀପୁର ମୌଳିକ ସ୍କୁଲରେ ମଧ୍ୟାହ୍ନଭୋଜନ କଲୁ । ଗାଁ ଭିତରେ ଗଦାଧର ପାଲିତ, ଚୈତନ୍ୟଚରଣ ଚକ୍ରବର୍ତ୍ତୀ, ଆଦିଙ୍କ ସହ ଭୂଦାନ, ଗ୍ରାମଦାନ, ବର୍ତ୍ତମାନ ଅବସ୍ଥା ଆଦି ବିଷୟରେ ୧ ଘଣ୍ଟା ଗପ କଲି । ସେଠାରେ ନୈଶ ବିଦ୍ୟାଳୟର ଛାତ୍ର ଓ ଶିକ୍ଷକ ଏବଂ ଶହୀଦ ପାଠାଗାରର ଉଦ୍ୟୋକ୍ତାମାନଙ୍କ ସହ ଆମ୍ଭେମାନେ ସନ୍ଧ୍ୟା ଉପାସନାରେ ଯୋଗ ଦେଲୁ । ମୁଁ ନୈଶ ବିଦ୍ୟାଳୟର ପ୍ରକୃତ ଲକ୍ଷ୍ୟ - ବିନୋବାଜୀଙ୍କର ସୂଚନା ଅନୁସାରେ - କଅଣ ହେବା ଉଚିତ ତାହା ବୁଝାଇ କହିଲି ।

୧୭.୫.୧୯୫୭

ବଳଭଦ୍ରପୁରରେ ଶ୍ରୀମତୀ ଭରମା ଦେବୀ ଓ ବଂଶୀଧର ନାୟକଙ୍କ ଘରେ ଆମ୍ଭେମାନେ କଟାଇଲୁ । ବଂଶୀବାବୁ ଜଳେଶ୍ୱରରୁ ଏଠାକୁ ଆସିଥିଲେ, ଦେଖା ହେଲା । ସନ୍ଧ୍ୟାରେ ଡାକ୍ତର ଦିବାକର ନାଥଙ୍କ ବସାକୁ ଯାଇ, ଭୂଦାନ ନିଧିମୁକ୍ତ କଥା ଚର୍ଚ୍ଚା କଲୁ । ସେ ଯେଉଁ ନୂଆ ପକ୍କା

ଘର କରିଛନ୍ତି, ବିନୋବାଜୀ ସେଥିରେ ପଦଯାତ୍ରାବେଳେ ଦିନଟାଏ କଟାଇଥିଲେ । ଦିବାକର ବାବୁ ଏବେ ବିବାହ (ଅସବର୍ଣ୍ଣ) କରିଛନ୍ତି । ରାତିରେ ଏହାଙ୍କ ଘରେ ଭାତ ଖାଇ, ବଂଶୀବାବୁଙ୍କ ଘରକୁ ଆସି ଶୋଇଲୁ ।

୧୯.୫.୧୯୫୭

ସକାଳେ ଆରଡ଼ିରେ ଆଖଣ୍ଡଳମଣି ମହାଦେବଙ୍କୁ ଦର୍ଶନ କରି, ଆମେ ୩ ଜଣ ଧାନଖଣିଆ ଘାଟରେ ସାଳନ୍ଦୀ ପାରି ହୋଇ, ରାମପୁର ଗଲୁ । ଉପରଓଳି ରାମପୁରରେ ପୋଖରୀ ଖୋଳାରେ ଘଣ୍ଟାଏ ସାହାଯ୍ୟ କଲୁ । ସନ୍ଧ୍ୟାରେ ପ୍ରାର୍ଥନାରେ ଯୋଗ ଦେଲୁ । ବୁଢ଼ା ଶ୍ରୀ ଗଙ୍ଗାଧର ପାତ୍ର ମୋତେ ତାଙ୍କର ଅନେକ ଅନୁଭୂତି ଶୁଣାଇଲେ ।

୨୪-୨୭.୫.୧୯୫୭

ସକାଳେ "ପ୍ରାର୍ଥନା-ପ୍ରବଚନ'' ମାନ ପଢ଼ିଲି । ସୂତା କାଟିଲି । ଉପରଓଳି ୨ଟାରୁ ୩ଟା ପର୍ଯ୍ୟନ୍ତ କସ୍ତୁରବା ଶିବିରରେ ଶିଶୁ ମନୋବିଜ୍ଞାନ ପଢ଼ାଇଲି । ତା ୨୪ ଉପରଓଳି "ସେବାଘର(ବରୀ)କୁ ଯାଇ ବିକ୍ରିପାଇଁ ପୂର୍ବେ ମୁଁ ଆଣିଥିବା ଟ. ୧୪/- ର ବହିର ହିସାବ ଓ ପାଉଣା କୁନକୁ ଦେଇଆସିଲି ।

୨୭.୫. ୫୭ ସୋମବାର ସନ୍ଧ୍ୟାରେ ବୋଉ, ବାବୁଲି, ଅନ୍ନପୂର୍ଣ୍ଣା ଦାସ, ମାସୀ, ନନ୍ଦିନୀ ଶତପଥି ଓ ତାଙ୍କର ଦୁଇପୁଅ, ପାର୍ବତୀ ଗିରି ଓ ଶ୍ରୀଯୁକ୍ତ ଗୋପବାବୁ କଟକରୁ ରାମଚନ୍ଦ୍ରପୁରରେ (ଇନ୍ଦୁପରବାଟେ ଆସି) ପହଞ୍ଚିଲେ । ବାବୁଲି କାଳାଡ଼ି ସର୍ବୋଦୟ ସମ୍ମିଳନୀ ଦେଖି ଓ ଦକ୍ଷିଣ ଭାରତର ମଦୁରା(ମୀନାକ୍ଷୀ ଦେଉଳ), ରାମେଶ୍ୱର, କନ୍ୟାକୁମାରୀ, ଧନୁଷ୍କୋଟି, ପଣ୍ଡିଚେରୀରେ ଅରବିନ୍ଦ ଆଶ୍ରମ, ସ୍ଥାନଗୁଡ଼ିକ ଦେଖି ଆଜି ଫେରିଲା । ମୁଁ ରାତିରେ ଉତ୍ତର ମୌଳିକ ଭବନ ଆଡ଼େ ଶୋଇଲି । ଗୁରୁଜୀ ମହେନ୍ଦ୍ର ସୁନ୍ଦର ରାଉତଙ୍କୁ କେତେକ ପରାମର୍ଶ ଦେଲି । ବୃନ୍ଦାବନ ଚନ୍ଦ୍ର ଜେନା ଆସିଥିଲେ, କୋରାପୁଟ ଜିଲ୍ଲାରେ ନିର୍ମାଣକାର୍ଯ୍ୟ ଓ ଭୂଦାନ କାର୍ଯ୍ୟ କଥା କହିଲେ ।

ପ୍ରାଦେଶିକ ଭୂଦାନ ସମିତିର କାର୍ଯ୍ୟ ଶେଷ କରିବାପରେ (ପ୍ରାୟ ତା ୧.୩.୧୯୫୭ଠାରୁ) ମୁଁ ରାତିରେ କୌଣସି ଲେଖାପଢ଼ା କରୁନାହିଁ । ମୋର ଏହି ଚଷମାରେ (+ .75 power ଯୁକ୍ତ glasses )ରାତିରେ ଲେଖାପଢ଼ା ସହଜ ହେଉନାହିଁ ।

୨୯.୫.୧୯୫୭

ସକାଳେ "ଗୁପ୍ତଗଙ୍ଗା'' tubewell ମରାମତିରେ ସାହାଯ୍ୟ କଲି । ନଦୀର ପଟୁମାଟି ୬ଟା ଗାତଖୋଳି ସେଥିରେ ଭର୍ତ୍ତିକଲି । କସ୍ତୁରବା କେନ୍ଦ୍ରର ଘର ମରାମତି କଥଣ ହୋଇନାହିଁ, ଏସ୍‌ଟିମେଟ ଦେଖି ମୁଁ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସଙ୍କୁ କହିଦେଲି । ଶିବିରରେ ପଢ଼ାଇଲି ।

ଭୂଦେବଠାରୁ ତା ୨୭.୫.ର ଚିଠିରୁ ଆଜି ଜାଣିଲି ଯେ "ଗ୍ରାମଦାନ'' ସେମାନେ ଆଗେ କରିବାକୁ ସାହସ କରୁନାହାନ୍ତି । ରେମୁଣା ଅଞ୍ଚଳଟା ଏକାବେଳକେ ହେଲେ, ସେମାନେ ଚୌଧୁରୀବାଗକୁ ଗ୍ରାମଦାନ କରିବେ । ଅନ୍ୟମାନେ କଲେ, ଏମାନେ କରିବେ – ଏହା ପୁରୁଷକାରର, କୌଣସି ନୂଆ କାର୍ଯ୍ୟ କରିବାର ଚିହ୍ନ ନୁହେଁ ।

୨.୬.୧୯୫୭

କାଲାଡ଼ି ସର୍ବୋଦୟ(ନବମ) ସମ୍ମିଳନୀର କଥା କାଲି ଓ ଆଜି ସକାଳେ ଫକୀରବାବୁଙ୍କଠାରୁ ଆମ୍ଭେମାନେ ଶୁଣିଲୁ । ମୁଁ ଗତ ଦେଢ଼ ମାସ ଖଣ୍ଡେ ରାମଚନ୍ଦ୍ରପୁରରେ ରହି, ରାମଚନ୍ଦ୍ରପୁର ମୌଳିକ ସ୍କୁଲର ୮ମ ସୋପାନର ପିଲାଙ୍କର ଖାତା ଦେଖି, ମୋର ଯାହା ଧାରଣା ହେଲା (ଶିକ୍ଷାଦାନ ଧନ୍ଦାରୁ, ଅନ୍ୟ କାର୍ଯ୍ୟରୁ ହେଉନାହିଁ ତାହା) ଏବଂ ଉତ୍ତମ ମୌଳିକ ବିଭାଗ ଏପରି ଅବସ୍ଥାରେ (ସ୍ୱାବଲମ୍ବନର ସାଧନସାମଗ୍ରୀ ନ ଥିବା ଅବସ୍ଥାରେ) ଖୋଲିବାର ଅବାଞ୍ଛନୀୟତା ମୁଁ ତୀବ୍ର ଭାବରେ ପ୍ରକାଶ କଲି । ମୋ ବିଚାରରେ ସେ (ଫକୀରବାବୁ) ଓ ମା (ରମାଦେବୀ ) ଆଗ୍ରହର ଆତିଶଯ୍ୟରେ ଓ ଅନ୍ଧ ଶ୍ରଦ୍ଧାରେ କାର୍ଯ୍ୟ ବଢ଼ାଇବାକୁ ଲାଗିଛନ୍ତି । ଏ ଅବସ୍ଥାର ସଂଶୋଧନ ହୋବ ମୁଁ ଦେଖୁନାହିଁ । ଏପରି ଅବସ୍ଥାରେ ବାବୁଲି ଓ ବନ୍ଟୁକୁ କିପରି କେତେ ମାସ ମଧ୍ୟରେ ସେଠାରେ ମୁଁ ଉଠାଇ ଆଣିବି, ତାହା ଭାବୁଛି ।

ଆଜି ବିନୋବାଜୀଙ୍କର ପ୍ରାର୍ଥନା-ପ୍ରବଚନ ପଢ଼ିଥିଲୁ ଓ ତକଲିରେ ମୁଁ ପ୍ରାୟ ୪୫୦ ଘେରା ସୂତା କାଟିଥିଲି । ଉପରଓଳି ଭଲ ଅସରାଏ ବର୍ଷା ହେଲା । ଏ ୩ ମାସ ମଧ୍ୟରେ ଏହା ହିଁ ପ୍ରଥମ ଭଲ ବର୍ଷା ।

୫- ୬.୬.୧୯୫୭

ଦିନ ପାସେଞ୍ଜର ଟ୍ରେନ୍‌ରେ ଯାଜପୁର-କେଉଁଝରେ ରୋଡ଼୍ ଗଲି । ଦେଓଗାଁକୁ ବସ୍‌ରେ ଆସି ମୁଁ ଖପରାଖାଇଠାରେ ଓହ୍ଲାଇ, ପରମାନନ୍ଦ ପଟ୍ଟନାୟକଙ୍କ ଘରକୁ ଗଲି ।

୬ ରିଖ ସକାଳେ ଅତି ସାମାନ୍ୟ ସଫେଇ ପରମାନନ୍ଦବାବୁଙ୍କର ବାହାର ଅଗଣାରେ ମୁଁ କଲି । ତାଙ୍କର ପତ୍ନୀ ଗଙ୍ଗା ଦେବୀ ମୋତେ ବାରମ୍ବାର ମନା କଲେ । ମୋର ହିସାବ ଲେଖି, ଜମାଖର୍ଚ୍ଚ ମିଳାଇଦେଲି ।

୧୦.୬.୧୯୫୭

ସକାଳ ଘ ୫.୧୫ ଢ଼େଙ୍କିକୋଟରୁ ଚାଲି ଟିକିରା, ମୁଦୁରାବେଡ଼ା, ବାଜାନାଳି, ମଲ୍ଲୀପୋଷ, ଭାଲୁଘର, କୁଆପଟି ଦେଇ ସଡ଼କେ ସଡ଼କେ ୧୨ ମାଇଲ ଦୂର ପାଟଣାରେ ପହଞ୍ଚିଲି । ଡାକ୍ତର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଦାସଙ୍କ ବସାରେ ରହିଲି । କେଉଁଝରଗଡ଼ରେ ଏ

ମହାଶୟଙ୍କର ଘର । ସେ ଆଚାର୍ଯ୍ୟ ହରିହର ଦାସଙ୍କ ୧୯୨୦ରେ ସତ୍ୟବାଦୀ ହାଇସ୍କୁଲରେ ଛାତ୍ର ଥିଲେ । ହଇଜାରେ ସେ ପଡ଼ିଥିବା ବେଳେ ଆଚାର୍ଯ୍ୟ ମହାଶୟ କିପରି ତାଙ୍କର ସେବା କରିଥିଲେ; ସେତେବେଳେ ଜଳଖିଆଖର୍ଚ୍ଚ ପ୍ରତିପିଲାର ଅଧଲାଏ ମାତ୍ର ଦିନକୁ ଥିଲା, ଛାତ୍ରାବାସରେ ୨୭୫ ପିଲା ଥିଲେ, କେବଳ ଭାତ ଓ ଡାଲମା ସମସ୍ତେ ଖାଉଥିଲେ, କେଉଁଝରଗଡ଼ରୁ ଚାଲି କରି ୩ଦିନରେ ଯାଜପୁରରୋଡ୍ ରେଲଷ୍ଟେସନରେ ପହଞ୍ଚୁଥିଲେ (ସଡ଼କ ପୂରା ତିଆରି ହୋଇନଥିଲା, ପୋଲଗୁଡ଼ିକ ହୋଇ ନ ଥିଲା), ପ୍ରାଇସ୍ ସାହେବ କେଉଁଝରର ସୁପରିଣ୍ଟେଣ୍ଡେଣ୍ଟ ତାଙ୍କ ପାଇଁ ଟ. ୫/- ବୃତ୍ତି ଆଉ ଟ. ୫/- ସାହାଯ୍ୟ ମଞ୍ଜୁର କରିଥିଲେ, କଟକ ମେଡ଼ିକ୍ୟାଲ ସ୍କୁଲରେ ଡାକ୍ତରୀ ପଢ଼ିବା, ଏହି ଷ୍ଟେଟ୍‌ର ସେ ପ୍ରଥମ ଡାକ୍ତର । ହରେନ୍ଦ୍ରନାଥ ଦାସ ଓ ସେ ୧୯୨୬ ରେ ଗାନ୍ଧୀଜୀଙ୍କୁ ଛାତ୍ରମାନଙ୍କର ଅର୍ଥ ଭେଟି ଦେଇଥିଲେ, ସେହିଠାରୁ ଏହାଙ୍କର ତ୍ୟାଗ ଓ ସେବା ମନୋଭାବ ଆଦି କହିଲେ ।

୧୨.୬.୧୯୫୭

ଭୋର ତା ୫.୩୦ ରେ ଡାକ୍ତରଖାନାର ଝାଡୁଦାର ଶ୍ରୀ...ଙ୍କ ସହ ବୈତରଣୀ ନଦୀ ପର୍ଯ୍ୟନ୍ତ ଆସିଲି । ନଦୀରେ ମୁଁ ଗାଧୋଇ, ଡାକ୍ତରବାବୁଙ୍କ ପ୍ରଦତ୍ତ ଖଣ୍ଡେ ପରଟା ଓ ପାଚିଲା ଅମୃତଭଣ୍ଡା ଖାଇ, ବେଗନା ଗ୍ରାମକୁ ଡାହାଣରେ ରଖି, ନଦୀର ବାମ କୂଳରେ ଆସି, ପ୍ରାୟ ୪ ମାଇଲରେ ଉଦୟପୁର ପହଞ୍ଚିଲି । ଗତ ତା ୧୭ ଓ ୧୮ ଏପ୍ରିଲ, ୫୭ରେ ଏହି ଗାଁରେ ଚୂନୀ ଓ ଗୁଣନିଧିବାବୁ ଭୂଦାନ-ସଭା କରି, ଏଠାର ମୁଖ୍ୟ ଧନୀ ଲୋକ ଗଣ ନାୟକଙ୍କ ଘରେ ରହି, ଯାଇଥିଲେ । ଶ୍ରୀ ଗଣ ନାୟକଙ୍କ ସହ ମୁଁ ଦେଖା କଲି । ଭୂଦାନର କୌଣସି କଥା ତାଙ୍କୁ ସ୍ପର୍ଶ କରିନାହିଁ ବୋଲି ମୋର ମନେ ହେଲା । ସେ ନିକଟରେ ଏକ ମକଦ୍ଦମାରେ ପଡ଼ିଛନ୍ତି । ଏଠାରେ ଘଣ୍ଟାଏ ରହି, ଚାଲି କରି ରାଜନଗରରେ ଘ ୧୦.୩୫ରେ ପହଞ୍ଚିଲି । ପଥର ଚଟାଣ ଓ ମୁଣ୍ଡିଆ ଉପରେ ୨/୩ ଫୁଟ ପାଣି ଥିଲା; ତାହା ଉପରେ ବୈତରଣୀ ନଦୀ ପାରି ହୋଇ, ରାଜନଗରକୁ ଆସିଲି ।

ଉପରଓଳି ୫ଟାରେ ମୁଁ ରାଜନଗରକୁ ଚାଲି କରି, କଙ୍କଡ଼ା ଗ୍ରାମଠାରେ ବୈତରଣୀ ଉପରେ ଜାତୀୟ ରାଜପଥ (କଲିକତା-ବମ୍ବେ ସଡ଼କ) ରେ ନୂଆ ପୋଲକୁ ଡାହାଣ ପାଖରେ ରଖି, ତେନ୍ତୁଳା ଗାଁରେ ୭ଟାରେ ପହଞ୍ଚିଲି । ଏଠାର ଗାଁର ପ୍ରଧାନବ୍ୟକ୍ତି ଶ୍ରୀ ମଥୁରା ନାୟକଙ୍କ ପିଣ୍ଡାରେ ଭାତ ଓ ତେନ୍ତୁଳିଖଟା ଖାଇ ଶୋଇଲି ।

୧୩.୬.୧୯୫୭

ତେନ୍ତୁଳାରୁ ପ୍ରାୟ ୨ ମାଇଲ ଦୂର ବାଉଟିଆପଦାକୁ ଯାଇ ମୁଁ ଏଠାର ପ୍ରଧାନ ଧନୀ ଓ ଜଣାଶୁଣା ଲୋକ (ଚମ୍ପୁଆ ସବ୍‌ଡ଼ିଭିଜନ୍ କଂଗ୍ରେସ କମିଟିର ସଭାପତି) ଶ୍ରୀ ଗଙ୍ଗାଧର ମିଶ୍ରଙ୍କୁ

ଦେଖାକଲି । ତାଙ୍କ ଘରେ ପିଠା ଖାଇ, ଫୁଲ କଅଁଳେଇ ଗାଁକୁ ଯାଇ ଅଧଘଣ୍ଟାଏ ସେଠା ଗ୍ରାମବାସୀଙ୍କୁ ଗ୍ରାମଦାନ କଥା କହିଲି । ମଧ୍ୟାହ୍ନଭୋଜନ ଗଙ୍ଗାଧର ବାବୁଙ୍କ ଘରେ କରି, ଗାଁ'ର ୩/୪ ଜଣଙ୍କ ସହ ଟିକିଏ ଭୂଦାନ ଚର୍ଚ୍ଚା କରି, ଗଙ୍ଗାଧରବାବୁଙ୍କ ସହ ମୁଁ ସାଇକେଲରେ ଜ୍ୟୋତିପୁର ଆସି, ଗାଁର ପ୍ରଧାନ ଓ ଜଣେ ଧନୀ ବ୍ୟକ୍ତିଙ୍କୁ ୧୫/୨୦ ମିନିଟ ଗ୍ରାମଦାନ କଥା ଶୁଣାଇ, ମୁଁ ପ୍ରାୟ ୨/୩ ମାଇଲ ଦୂର ପଦ୍ମପୁରକୁ ରାତି ୭ଟାରେ ପହଞ୍ଚିଲି ।

୧୪-୧୫.୬.୧୯୫୭

ଭୋର ୪ଟାରେ ପଦ୍ମପୁରରୁ ଚାଲିକରି ବାହାରି, କଁସରା, ଭଣ୍ଡା, କରଞ୍ଜିଆ ସଡ଼କରେ ପ୍ରାୟ ଘ ୧୦/୨୫ରେ ଚମ୍ପୁଆ ଟାଉନରେ ପହଞ୍ଚିଲି । ୧୫ରିଖରେ ଚମ୍ପୁଆ ହାଟଦିନ । ଶାସନରେ ଶ୍ରୀ ରଙ୍ଗାଧର କରଙ୍କ ସହ ଅତଙ୍ଗାପାଳ ଆଶ୍ରମ ସ୍କୁଲ, ଭୂଦାନ କଥା ଆଦି ଚର୍ଚ୍ଚା ହେଲା । ସନ୍ଧ୍ୟା ପରେ ପରମାନନ୍ଦବାବୁଙ୍କ ଭାଇ ବଂଶୀଧର ପଟ୍ଟନାୟକଙ୍କ ବସାକୁ ଯାଇ, ଭୂଦାନ ଓ ଦେଶର ବର୍ତ୍ତମାନ ହାଲଚାଲ ଚର୍ଚ୍ଚା କଲି । ପାଠୁଆ ଓ କର୍ମଚାରୀଙ୍କର ମଧ୍ୟରେ ୧୯୫୫ ଯେଉଁସବୁ ଅପପ୍ରଚାର ପଶିଥିଲା, ତାହାର ଛାପ ଏ ପର୍ଯ୍ୟନ୍ତ ଅଛି ।

୨୧.୬.୧୯୫୭

ଶ୍ରୀମତୀ ରେଣୁକା ସହ ବୋଉ ଜୟନ୍ତୀ ଗ୍ରାମକୁ ସକାଳେ ଗଲେ । ଚମ୍ପୁଆ ବ୍ଲକ ଡ଼େଭେଲପମେଣ୍ଟ ଅଫିସର ଶ୍ରୀ ଜଗନ୍ନାଥ ପଟ୍ଟନାୟକ (ଘର ବରୁଆରେ ବରୀ ପାଖ) ଙ୍କ ସହ ମୁଁ ଓ ବୋଉ ୧୧ଟା ପର୍ଯ୍ୟନ୍ତ କଥାବାର୍ତ୍ତା କଲୁ । ସେ ବଡ଼ କଷ୍ଟରେ ପିଲାଦିନରୁ ଚଳିଥିଲେ ଓ ପାଠ ପଢ଼ିଥିଲେ । ବର୍ତ୍ତମାନ ଶାସକ କଳରେ ଅନ୍ୟାୟ, ଅନୀତି ଖୁବ୍ ତୀବ୍ର ଭାବରେ ସେ ଅନୁଭବ କରୁଛନ୍ତି ବୋଲି ସେ ପ୍ରକାଶ କଲେ ଏବଂ ଉଚିତ ଓ ପ୍ରବଳ ଜନମତ ଦ୍ୱାରା ଏହା ପ୍ରତୀକାର ହେବ, ତାଙ୍କର ଆଶା । ଭୂଦାନ ଯଜ୍ଞ ଆହୁରି .. ହେଉ, ତାଙ୍କର ଆଶା । ଏକଖଣ୍ଡ "ଗ୍ରାମଦାନ" ଓ ୧ ଖଣ୍ଡ "ଗ୍ରାମସେବକ" ମୁଁ ତାଙ୍କୁ ଦେଲି ।

ଉପରଓଳି ସିରାଜଉଦ୍ଦିନ କ୍ଲବ ଆଗ ମେଲା ଜାଗାରେ ଏକ କ୍ଷୁଦ୍ର ଆଲୋଚନା ସଭା ହେଲା । ସଭାପତି ଶ୍ରୀ ସୋମନାଥ ମିଶ୍ର, ଓକିଲ । ବି.ଡ଼ି.ଓ. ଶ୍ରୀ ଜଗନ୍ନାଥ ପଟ୍ଟନାୟକ ବାବୁ ବଡ଼ ଆଗ୍ରହରେ ନିଜେ ଘର ଘର ବୁଲି ସଭାକୁ ଲୋକଙ୍କୁ ଡାକିଥିଲେ । ଆଲୋଚନା ଏକପ୍ରକାରେ ଭଲ, ସରସ ହେଲା । ଓକିଲ ଅମ୍ବିକା କର, ଡାକ୍ତର କରୁଣାକର ବେହେରା, ଆଦି ପ୍ରାୟ ୨୫ ଜଣ ଏହି ବୈଠକରେ ଯୋଗ ଦେଇଥିଲେ । ବିନୋବାଜୀ ବିଜ୍ଞାନ ସହ ଆତ୍ମଜ୍ଞାନକୁ ଯୋଡ଼ି ଦେବାକୁ, ବିଜ୍ଞାନର ଆଧୁନିକତମ ଉଦ୍ଭାବନକୁ କୋଟି କୋଟି ଲୋକଙ୍କର ଘରେ ଘରେ ବିନା କେନ୍ଦ୍ରୀୟ ନିୟନ୍ତ୍ରଣ ଥାଇ ସୁଲଭ କରିଦେବାକୁ, ପରିବାର ଭାବନା ବ୍ୟାପକ କରିଦେବାକୁ ଚାହାନ୍ତି । .... । ଗ୍ରାମଦାନ କରାଇ ଏକ ସମସ୍ୟା ସମାଧାନ ପାଇଁ ଲୋକସାଧାରଣଙ୍କୁ ଆହ୍ୱାନ

ବିନୋବାଜୀ ଦେଉଛନ୍ତି । ଲୋକେ ସମାଧାନ ବାହାର କରିବେ, Man is not only to solve problems but is to create problems ଆଦି ମୁଁ ସଂକ୍ଷେପରେ କହିଲି । ଆଜିର ଆଲୋଚନା ଭଲ ହେଲା ବୋଲି ସଭାପତି ସୋମନାଥ ବାବୁ କହିଲେ ।

୨୪.୬.୧୯୫୭

ସକାଳ ୯ଟାରେ ବାଉଟିଆପଦାରୁ ୧ ମାଇଲ ଦୂର ମୟୂରଭଞ୍ଜ ଜିଲ୍ଲାରେ ଅବସ୍ଥିତ ଇନ୍ଦୁପୁରକୁ ଗଲୁ । ଶ୍ରୀ ଗଙ୍ଗାଧର ପତିଙ୍କ ଘରେ ମଧାହ୍ନଭୋଜନ କଲୁ । ଉପରଓଳି ଇନ୍ଦୁପରରେ ୧୫/୧୬ ଜଣଙ୍କ ଉପସ୍ଥିତିରେ ବୋଉ ଗ୍ରାମଦାନ କଥାର ଆଭାସ ଦେଲେ । ମୁଁ ମଧ୍ୟ ଦୁଇପଦ କହିଲି । ଜଣେ ଗ୍ରାମବାସୀ ଥଟ୍ଟା, ବିଦ୍ରୂପ କରି ଆମକୁ କହିଲେ ଯେ ଆମକୁ ଶନିସପ୍ତା ଦଶା ପଡ଼ିଛି । ମୁଁ (ଶରତ୍) ଏମ୍.ଏ. ପାସ କରିଥିବା ମୋର ଚେହେରା ଓ ବେଶଭୂଷାରୁ ସେ ବିଶ୍ୱାସ କଲେ ନାହିଁ । ଶ୍ରୀଯୁକ୍ତା ରମା ଦେବୀଙ୍କର ଅନେକ ଟଙ୍କା ଅଛି କହି ସେ ତାଙ୍କୁ ଟଙ୍କା ମାଗିଲେ – ବିଦ୍ରୂପ କରି । ବୋଉ ତାଙ୍କୁ ଠିକ୍ ଉତ୍ତର ଦେଲେ ।

୨୫.୬.୧୯୫୭

ସକାଳ ୯ଟାରେ ଗଙ୍ଗାଧରବାବୁ, ବୋଉ ଓ ମୁଁ ଜ୍ୟୋତିପୁର ଗଲୁ । ବୋଉ ଖରାବେଳେ ସେଠା କରଣସାହିର ସ୍ତ୍ରୀଲୋକମାନଙ୍କୁ ଓ ପରେ ବ୍ରାହ୍ମଣଶାସନର ସ୍ତ୍ରୀ ଲୋକମାନଙ୍କୁ ଗ୍ରାମଦାନ କଥା ବୁଝାଇଲେ । ଉପରଓଳି ଡାକଘର ଆଗରେ ଆଲୋଚନା ସଭା ହେଲା । ଏ ପାଖର ପ୍ରାୟ ୨୦/୨୨ ଜଣ ଲୋକ ଯୋଗ ଦେଇଥିଲେ । ପଦ୍ମପୁରରୁ ରବୀନ୍ଦ୍ର ମହାପାତ୍ର ଆସିଥିଲେ । ଆଜି ସଭା ପରେ ପରେ ଖୁବ୍ ଭଲ ବର୍ଷା ହେଲା । ଆମ୍ଭେମାନେ ବାଉଟିଆପଦାକୁ ସେହି ବର୍ଷାରେ ଫେରିଲୁ ।

୨୬.୬.୧୯୫୭

ସକାଳେ ବୋଉ ଓ ମୁଁ ହୁରିଆ ଦେହୁରୀ ସହ ବାଉଟିଆପଦାରୁ କଙ୍କଡ଼ା ନୂଆଗାଁ ଦେଇ ବୈତରଣୀ ନଦୀ ଉପରେ ନୂଆ ପୋଲକୁ ବାଁ ପାଖରେ ରଖି, ତୁରୁମଙ୍ଗାକୁ ଗଲୁ । ପ୍ରାୟ ୫ ମାଇଲ । ତୁରୁମଙ୍ଗାରେ ପାଠାଗାରରେ ଲୋକଙ୍କୁ ଗ୍ରାମଦାନ କଥା ଶୁଣାଇଲୁ । ବର୍ଷା ଝିପରି ଝିପରି ହେଉଥିଲା । ଆମ୍ଭେମାନେ ୨ ମାଇଲ ଦୂର ରାଜନଗରକୁ ଗଲୁ । ସନ୍ଧ୍ୟାରେ ବର୍ଷା ହେଲା । ଆଲୋଚନା ସଭା ହୋଇପାରିଲା ।ନହିଁ । ଶ୍ରୀ ଦୁର୍ଲଭ ମିଶ୍ରଙ୍କ ସହ କଥାବାର୍ତ୍ତା କଲୁ ।

୨୭.୬.୧୯୫୭

ଗୁରୁବାର ଗୋପବନ୍ଧୁ ଦାସଙ୍କର ଶ୍ରାଦ୍ଧଦିବସ । ବୋଉଙ୍କ ସହ ଦେଖା କରିବାକୁ ଶ୍ରୀମତୀ ଇନ୍ଦିରା ଚଟୋପାଧ୍ୟାୟ (ଅମର ବାବୁଙ୍କ ସ୍ତ୍ରୀ) ଓ ଗମ୍ଭୁର ସ୍ତ୍ରୀ ଶ୍ରୀମତୀ ସାବିତ୍ରୀ କଣ୍ଡିଆପଡ଼ା ଆଡୁ ରାଜନଗରକୁ ଆସିଥିଲେ । ବୋଉ ଓ ମୁଁ ଶ୍ରୀ ଶ୍ୟାମସୁନ୍ଦର କରଙ୍କ ଘରକୁ ଗଲୁ ।

ଏ ଗ୍ରାମଦାନ କଥା ଓ ଦେଶର ହାଲଚାଲ ତାଙ୍କ ସହ ଚର୍ଚ୍ଚା ହେଲା । ଏଠାର ପ୍ରସିଦ୍ଧ ମଠକୁ ଯାଇ, ମହନ୍ତ ପଦ୍ମଲୋଚନ ଦାସଙ୍କ ଅନୁରୋଧରେ ପ୍ରସାଦ ସେବା କଲୁ । ମହନ୍ତଙ୍କ ସହ ବୋଉ ଗ୍ରାମଦାନ ସମ୍ବନ୍ଧରେ ଆଲୋଚନା କଲେ । ମଠର ସତ୍ତ୍ୱ କେଉଁଝରର ରଜାଙ୍କ ନାମରେ ଅଛି ବୋଲି ମହନ୍ତ କହିଲେ । ଗ୍ରାମଦାନ ଓ ଭୂଦାନ ଯଜ୍ଞ ବିଚାରକୁ ସେ ସମର୍ଥନ ଜଣାଇଲେ ।

ଶ୍ରୀମାନ ସିଂହ (ବୟସ ବାରବର୍ଷ ହେବ) ମୋ ସହ ବଡ଼ ସୁନ୍ଦର କଥାବାର୍ତ୍ତା କଲା । ସେ ଆଉ ପଢ଼ିପାରିବ ନାହିଁ; ଚାଷ କରିବ । ଉଦ୍ୟୋଗୀ ପୁରୁଷକୁ ସବୁ ମିଳେ କହି ସେ ତାହାର ଆତ୍ମବିଶ୍ୱାସ ଜଣାଇଲା ।

କାଲି ରାତିରେ ଗୋଟିଏ ଅନ୍ଧ ଲୋକ ଓ ତାହାର ସାନ ପିଲାଏ ଅନ୍ୟତ୍ର ରାତିରେ ଗଲେ । ସେମାନେ କଅଣ ଖାଇଲେ, କେଉଁଠି ଶୋଇଲେ ? ଦୁର୍ଲଭ ବାବୁ ସେମାନଙ୍କୁ ସଙ୍ଗରେ ନେଇଗଲେ ।

୨୮.୬.୧୯୫୭

ସକାଳେ ଦୁର୍ଲଭବାବୁଙ୍କ ବସାରେ ମୁଢ଼ି ଖାଇ, ଆମ୍ଭେମାନେ ୪ ଜଣ ସଡ଼କରେ ଭୃଙ୍ଗରାଜ ଗ୍ରାମ ଦେଇ ପ୍ରାୟ ୬ ମାଇଲ ଦୂର ଯମୁନାପଶୀ ଗ୍ରାମ ଠାରୁ ୧ ମାଇଲ ଦୂର କଣ୍ଡିଆପଡ଼ାକୁ ଗଲୁ । ସେଠାରେ ବୃଦ୍ଧ ଶ୍ରୀ ସଂକର୍ଷଣ ନାୟକଙ୍କ ଘରେ ରହିଲୁ । ବଡ଼ ଉତ୍ତମ ବିଚାରର ଲୋକ । ସେ କଳ ଲୁଗା ଆଦୌ ପିନ୍ଧିନାହାନ୍ତି । ବୈଦ୍ୟବୃତ୍ତି ଓ ଚାଷ କରନ୍ତି । କଣ୍ଡିଆପଡ଼ା ଓ ପାଖର ଗୋଡ଼ିପୋଖରୀ ଏବଂ ଯମୁନାପଶୀ ଗ୍ରାମଦାନ ହୋଇଛି । ଧନେଶ୍ୱର ବାବୁଙ୍କ ଘରେ ଆମେ ୨ ଦିନ ରହିଲୁ ଓ ଖାଇଲୁ ।

୨୯-୬-୫୭ରେ ବୋଉ ଚାଲି କରି ୧୩ ମାଇଲ ଦୂର କେଉଁଝରଗଡ଼କୁ ଗଲେ ।

୨.୭.୧୯୫୭

ପଦ୍ମପୁରରେ । ବର୍ଷାଯୋଗୁଁ ପଦ୍ମପୁରରେ ଅଟକି ରହିଲି । ଏଠାର ଅଲେଖ ଧର୍ମର ଟୁଙ୍ଗୀରେ ଶ୍ରୀ ଅବିନାଶ ବାବା (ବୟସ ପ୍ରାୟ ୩୨/୩୪) ବଡ଼ ଆଗ୍ରହରେ ଗୋପବାବୁ, ନବବାବୁ, ଆଦିଙ୍କର କଥା ପଚାରିଲେ । ଏହି ଚୌଧୁରୀ ପରିବାରର ତ୍ୟାଗ ଓ କାର୍ଯ୍ୟକୁ ସେ ବଡ଼ ପ୍ରଶଂସା କଲେ । ବୃଦ୍ଧ ଅଲେଖ ସନ୍ନ୍ୟାସୀ (ବୟସ ୯୫ ବର୍ଷ )ଙ୍କୁ ସେ ମହିମାଗାଦୀରୁ ଏହି ଗ୍ରାମରେ ଛାଡ଼ିବାକୁ ଆଣିଥିଲେ । ଦିନଯାକ ୧୦ ଘଣ୍ଟାକାଳ ଏହି ଟଙ୍ଗୀରେ ମୁଁ ତୁଳାବଛା ଓ ବଳଣା କରିବା ଓ କଥାବାର୍ତ୍ତାରେ କଟାଇଲି । ଶ୍ରୀମତୀ ନିରାଶା ଦେବୀ (ପୌଢ଼ ବିଧବା) ଘରେ ମୁଁ ଭାତ ଖାଇଲି । ଏହାଙ୍କ ଘରୁ ଅଲେଖ ବାବା ୨ ଜଣଙ୍କ ପାଇଁ ଭିକ୍ଷା (ଭୋଜନ) ଆସିଥିଲା ।

ରାତିରେ ପ୍ରଧାନ ରବୀନ୍ଦ୍ର ବାବୁଙ୍କ ଘରେ ଭାତ ଖାଇ କୁଳମଣି ମହାପାତ୍ରଙ୍କ ଘରେ ଶୋଇଲି । ଶୋଇବା ପୂର୍ବରୁ କୁଳମଣିଙ୍କ ସହ ଗ୍ରାମଦାନ ବିଷୟରେ ଘଣ୍ଟାଏ କଥାବାର୍ତ୍ତା କଲି ।

୩.୭.୧୯୫୭

ସନ୍ଧ୍ୟାରେ ଗଙ୍ଗାଧର ମିଶ୍ରଙ୍କର ବାହାର ପିଣ୍ଡାରେ ନୈଶ ବିଦ୍ୟାଳୟ ଆଜି ଆରମ୍ଭ କରିବାକୁ ସର୍ବଶ୍ରୀ ସଂକର୍ଷଣ କର, ଉପେନ୍ଦ୍ର ମହାରଣା, ତନୁ ପାତ୍ର, ସନ୍ତୋଷକୁମାର ମିଶ୍ର ଆଦି ବସିଥିଲେ । ୧୯୪୨ର ଆନ୍ଦୋଳନ ଓ ଜେଲର ଅଭିଜ୍ଞତା ମୁଁ କହିଲି । ସେମାନେ ଆଗ୍ରହରେ ଶୁଣିଲେ । ଶ୍ରୀ ଠୁନୁ ମହାରଣା ପଚାରିଲେ "ଆପଣ କଅଣ ସବୁ ଜମି ଭୂଦାନକୁ ଦେଇ ସାରିଛନ୍ତି ?" ମୁଁ ଉତ୍ତର ଦେଲି "ମୋର ଭାଗ ସବୁ ଦେଇଛି, ଭାଇ ଓ ପୁତୁରା ଦେଇନାହାନ୍ତି, ସେମାନେ କୁଣ୍ଠିତ ହେଉଛନ୍ତି ।"

ରାତିରେ ଶୋଇବା ପୂର୍ବରୁ ତନୁ ପାତ୍ର ଗ୍ରାମଦାନ ଓ ତତ୍‌ପରେ ଗ୍ରାମନିର୍ମାଣର ଅନେକ କଥା ପଚାରିଲେ । ଗତ ସପ୍ତାହେ ହେଲା ମୁଁ ପ୍ରତିଦିନ ତକଲୀରେ ସୂତା କାଟିଛି ଓ ହାତରେ କପାରୁ (ନ ଭିଣି) ବଳଣା କରିଛି । ବିନୋବାଜୀଙ୍କର ପୁରୁଣା ପ୍ରାର୍ଥନା-ପ୍ରବଚନମାନ ପଢ଼ିଅଛି ।

୪.୭.୧୯୫୭

ଆମେରିକା ଯୁକ୍ତରାଷ୍ଟ୍ରର ସ୍ୱାଧୀନତା ଦିବସ । ସକାଳେ ରାଜନଗରରୁ ଗଙ୍ଗାଧରବାବୁ ଘରକୁ ଫେରିଲେ । ତାଙ୍କସହ ଗ୍ରାମଦାନ ବିଷୟରେ ଚର୍ଚ୍ଚା । ମୁଁ ଏ ମାସେ କେଉଁଝର ଜିଲ୍ଲାର ଏ ଅଂଶରେ ବୁଲି ଦେଖୁଛି ଯେ ଗୋରୁଗୁଡ଼ିକ ଅତି ସାନ ସାନ, ଦୁର୍ବଳ; ଖାଇବାକୁ ନଡ଼ା ଆଦି ନାହିଁ । ଧାନ କାଟିଲାବେଳେ ମୂଳରୁ ନ କାଟି ଅଗ ଅଗରୁ ଲୋକେ ଧାନ କାଟନ୍ତି । ନଡ଼ା ନଷ୍ଟ ହୋଇଯାଏ । କାଲି, ଏହି ବାଉଟିଆପଦାରେ ନଡ଼ା, ଘାସ, ଗୋଖାଦ୍ୟର ଅଭାବରୁ ୬ଟି ଦୁର୍ବଳ ଗୋରୁ ମରିଗଲେ ।

ସନ୍ଧ୍ୟା ପରେ ଫୁଲ କନ୍ଦେଇ ଗ୍ରାମରେ ସଂଘ ଅଫିସରେ ଗଙ୍ଗାଧରବାବୁ ଓ ମୁଁ ଗ୍ରାମର ପ୍ରାୟ ୨୫ ଲୋକଙ୍କୁ ଗ୍ରାମଦାନର ଆବଶ୍ୟକତା ବିଷୟରେ ପ୍ରାୟ ୧ ଘଣ୍ଟା ବୁଝାଇଲୁ । ଧନୀ ଲୋକେ ଆସି ନଥିଲେ ।

୮.୭.୧୯୫୭

ଭଣ୍ଡାରେ ହାଟଦିନ । ଭୋର ଷଡ଼ଙ୍ଗୀରୁ ଜ୍ୟୋତିପୁର ଡାକଘରକୁ ପ୍ରାୟ ଅଢ଼େଇ ମାଇଲି ଆସି, ବୋଉଙ୍କୁ ଚିଠି ଲେଖିଲି ମାତ୍ର ଏଠା ଡାକ କାଲିରାତିରୁ ଚାଲି ଯାଇଥିବାରୁ, ଆଜି ଚିଠି ଗଲା ନାହିଁ । ଏ ଡାକଘର ଆଦୌ ସମୟ ମୁତାବକ ଖୋଲୁନାହିଁ । ପୋଷ୍ଟମାଷ୍ଟର ଜନ୍ମେଜୟ ମିଶ୍ର, ଘର ଜ୍ୟୋତିପୁରରେ । ସେଠାରୁ ଆସି, ନାଳରେ ଗାଧୋଇ, ପଦ୍ମପୁରର ରବୀନ୍ଦ୍ର ମହାପାତ୍ରଙ୍କ ଘରେ ଭାତ ଖାଇ, ଏହି ଗ୍ରାମର ବାସିନ୍ଦା ଓ ଭଣ୍ଡା ଉ.ପ୍ରା.ସ୍କୁଲର ଶିକ୍ଷକ ଶ୍ରୀ କେଶବ ନାୟକଙ୍କ ସହ ପ୍ରାୟ ୨ ମାଇଲ ଦୂର ଭଣ୍ଡାକୁ ଆସିଲି ।

ମୋର ଜମାଖର୍ଚ୍ଚ ଆଜିସୁଦ୍ଧା ଲେଖିଲି ଓ ମିଳାଇଲି । ନଗଦ ବଳକା ଟ. ୧୫ ଓ ୨୧ ନୂଆ ପଇସା ଅଛି । ମୁଁ ତା ୮.୬.୧୯୫୭ ଠାରୁ ଏ ପର୍ଯ୍ୟନ୍ତ ବିକ୍ରୟ ପାଇଁ ଧାରରେ ପାଇଥିବା ବହିର ହିସାବ ମୋ ଖାତାରେ ଏକାଠି ଲେଖିଲି ।

୯.୭.୧୯୫୭

ଭଣ୍ଡା ଉ.ପ୍ରା.ସ୍କୁଲରେ ଶିକ୍ଷକବର୍ଗ - ଶ୍ରୀ ଜଳଧର ମହାନ୍ତ - ଘର ନୂଆଗାଁ (କଙ୍କଡ଼ାପାଖ), ଶ୍ରୀ ନରହରି ମହାନ୍ତି (୧୮ ବା ୧୯ ବର୍ଷ ହେବ), ଶ୍ରୀ କେଶବ ନାୟକ (ବୟସ ପ୍ରାୟ ୩୦ ମଧ୍ୟରେ), ଘର ପଦ୍ମପୁର, ପୋ: ଜ୍ୟୋଜିପୁର, ଏହାଙ୍କର ଆତିଥେୟତା, ଶିଷ୍ଟାଚାର, ବିଚାର ଓ ସାଧାରଣ ଜ୍ଞାନ ଉତ୍ତମ, ଏବଂ 'ଗ୍ରାମଦାନ'ର ପୂରା ସମର୍ଥକ ଅଟନ୍ତି ।

ସକାଳ ଓଳି ଓ ଖରାବେଳେ କେଉଁଝରର ଷ୍ଟେଟ୍‌ର ଇତିହାସ ଓ ଭୂଗୋଳ ବହି ପଢ଼ିଲି, ୪/୫ ଟି ବଳଣା କରି ତକଲୀରେ ସୂତା କାଟିଲି । ତିନିଟାବେଳେ ସ୍କୁଲରେ ଛାତ୍ରମାନଙ୍କୁ ବିନୋବାଙ୍କର କାର୍ଯ୍ୟ ବିଷୟରେ ଅଧଘଣ୍ଟାଏ ସରଳ ଭାଷାରେ କହିଲି । ସନ୍ଧ୍ୟା ବେଳେ କଁସରାର ପଧାନ ଗୋବିନ୍ଦଚନ୍ଦ୍ର ମହାନ୍ତିଙ୍କ ଘରେ ଭାତ ଖାଇଲି । ଶାଗ, କୁନ୍ଦୁରିଭଜା ସହ ତୃପ୍ତିରେ ଭୋଜନ ହେଲା । ପଧାନ ମହିମାଧର୍ମୀ ଦୀକ୍ଷା ନେଇଛନ୍ତି । ଗ୍ରାମଦାନ ସମ୍ବନ୍ଧରେ ଏଠାରେ ପ୍ରାୟ ୨୫ ଜଣ ଗ୍ରାମବାସୀଙ୍କୁ ମୁଁ ୨ ଘଣ୍ଟା ବୁଝାଇଲି । ରାତିରେ ଉ.ପ୍ରା. ସ୍କୁଲ ବୋଡ଼ିଂ ଘରେ ଶୋଇଲି ।

୧୦.୭.୧୯୫୭

ଭୋର କଂସରାରେ ଶ୍ରୀ କମଳାକାନ୍ତ ବାରିକଙ୍କ ଘରକୁ ମୁଁ ଯାଇ ମୋର କେଶ କଟାଇ ଆସିଲି । ମେରମଦା ନଦୀରେ ଗାଧୋଇ, ପଦ୍ମପୁରକୁ ଆସିଲି । ଶ୍ରୀ କେଶବ ନାୟକଙ୍କ ଘରେ ସକାଳେ ୯ଟାରେ ଭାତ ଖାଇଲି । ତାଙ୍କଠାରୁ ପୁରୁଣା ଦୈନିକ ସମାଜ ଖବରକାଗଜ ନେଇ ପଢ଼ିଲି । ସେଥିରେ ୨୨.୫.୫୭ର ସଂଖ୍ୟାରେ ପ୍ରଜା ସୋସାଲିଷ୍ଟ ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଲେଖିଛନ୍ତି – (କେନ୍ଦୁପାଟଣାଠାରେ ପାର୍ଟିର ୩ୟ ବାର୍ଷିକ ସାଧାରଣ ଅଧିବେଶନରେ ଭାଷଣ) ... "ମୋ ବିଚାରରେ ଶତ ଦୋଷ ତ୍ରୁଟି ସତ୍ତ୍ୱେ ଭୂଦାନ ଆନ୍ଦୋଳନ ଦେଶରେ ସମାଜବାଦୀ ଆନ୍ଦୋଳନ ପାଇଁ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରୁଛି । ଏହାର ଗ୍ରାମଦାନ ଆନ୍ଦୋଳନ ବ୍ୟକ୍ତି-ପ୍ରାଧାନ୍ୟ ସମାଜବ୍ୟବସ୍ଥା ଉପରେ କଠୋର ଆଘାତ କରୁଛି । ଲୋକଙ୍କ ଭିତରେ ସହଯୋଗମୂଳକ ବାୟୁମଣ୍ଡଳ ସୃଷ୍ଟି କରୁଛି । ଆମ ଦେଶରେ ଏହା ଏକ ନୂତନ ଢ଼ଙ୍ଗରେ କରାଯାଉଛି । XXX । ଆମେ ସର୍ବୋଦୟ ସିଦ୍ଧାନ୍ତ ଗ୍ରହଣ କରିନାହୁଁ । ମାତ୍ର ଲୋକଙ୍କ ସ୍ତରରେ ଯେଉଁଠି ଜନହିତକର କାର୍ଯ୍ୟ ହେଉଛି, ସେଥିରେ ସମ୍ପୃକ୍ତ ରହିବା ଦ୍ୱାରା ଏହାର ତ୍ରୁଟି ଏବଂ ଆମର ଦୃଷ୍ଟିକୋଣ ଆମେ ଲୋକଙ୍କ ଭିତରେ ପୂରାଇ ପାରିବା । xxx ।" ଅନ୍ୟାନ୍ୟ

ରାଜନୈତିକ observations ପୂରା ୬ ସ୍ତମ୍ଭବ୍ୟାପୀ ଲେଖାରେ ସେ ଦେଇଛନ୍ତି । କେତେକ ବିଚାରପୂର୍ଣ୍ଣ କଥା ଅଛି ।

ସନ୍ଧ୍ୟାରେ ଅଲେଖଧର୍ମର ଟୁଙ୍ଗୀରେ ଗ୍ରାମଦାନ କଥା ଲୋକଙ୍କୁ ଶୁଣାଇଲି । ଗ୍ରାମର ବଡ଼ ଜମି-ମାଲିକ ବୈକୁଣ୍ଠ ନାୟକ ସଭାକୁ ଇଚ୍ଛା କରି ଆସି ନ ଥିଲେ ।

୧୧.୭.୧୯୫୭

ସକାଳେ ଜ୍ୟୋତିପୁରକୁ ଆସି, ମି.ଇ. ଛାତ୍ରମାନଙ୍କୁ ଗ୍ରାମଦାନ ଓ ଶିକ୍ଷା ଏବଂ କାର୍ଯ୍ୟର ସମନ୍ୱୟ କଥା ୪୦ ମିନିଟ୍ କହିଲି । ଭୂଦେବଙ୍କୁ ମୁଁ ଚିଠି ଲେଖିଲି ଯେ ମୋର ଜମିରେ ଅଧିକାର ଓ ଆସ୍ଥା ରଖୁନାହିଁ ।

ଭୂଦେବଙ୍କୁ ପତ୍ରରେ ଲେଖିଲି : x x x " ୧୯୪୩ ମସିହାରେ ମୁଁ ବ୍ରହ୍ମପୁର ଜେଲରେ ଥିବାବେଳେ ତା ୮.୫.୪୩ ରେ ଠାକୁମାଙ୍କୁ ତା ୯.୫.୧୯୪୩ରେ ଦାଦାଙ୍କୁ ଚିଠି ଲେଖିଥିଲି ଯେ ମୋର ଜମି ଉପରେ ଆସ୍ଥା ଓ ଅଧିକାର ଆଉ ରଖୁନାହିଁ । ବିନୋବାଜୀଙ୍କ ଭୂଦାନ ଯଜ୍ଞ ଓ ଗ୍ରାମଦାନ କଥା ମୁଁ ଭଲ କରି ଭାବି ଭାବି ପ୍ରାୟ ୧୯୫୪ ଠାରୁ ଦେଖୁଛି ଯେ ମୁଁ ଜମି ଉପରେ ଅଧିକାର ଓ ଆଶା ରଖିବା ମଧ୍ୟ ଅନୁଚିତ ଅଟେ । କାରଣ, ମୁଁ ନିଜେ ଜମିର ସେବା (ଚାଷୀ, ତତ୍ତ୍ୱନେବା କାର୍ଯ୍ୟ, ଆଦି ) କରୁନାହିଁ । x xx ମୁଁ ଯାହା ଗାଁ ଗାଁରେ ପ୍ରଚାର କରୁଛି (ସମସ୍ତେ ଗାଁକୁ ସବୁ ଜମି, ଚାଷ ଜମି - ଘରଡ଼ିହ ନୁହେଁ - ଦେଇ ଦିଅ ଓ ବାଣ୍ଟିକରି ଚଳ) ତାହା ମୁଁ କାର୍ଯ୍ୟରେ ନିଜେ କରିବା ଦରକାର । ସେଥିପାଇଁମୋର କିଛି ଭାଗ ଜମିରେ ଥିଲେ, ତାହା ମୁଁ ଛାଡ଼ି ଦେଇଛି । ତେଣିକି, ତୁମ୍ଭମାନଙ୍କର ଯାହା ଇଚ୍ଛା ତାହା କରିବ ।

ଏ ଚିଠିଟା ଦାଦାଙ୍କୁ ପଠାଇଦେବୁ । ଘରେ ସମସ୍ତଙ୍କୁ ପଢ଼ି ଶୁଣାଇଦେବୁ । ଜୟଦେବଙ୍କୁ ମଧ୍ୟ କହିବୁ । ଯେଉଁଠି ଦରକାର ହେଉଛି ଓ ହେବ, ମୋର ଏହି ସିଦ୍ଧାନ୍ତ ମୁଁ ଲୋକମାନଙ୍କୁ କହିଛି ଓ କହିବି । ମୁଁ ଚାଷକାମ ଜାଣେନା, ଓ କରୁନାହିଁ । ଯଦି କେତେବେଳେ କରିବାକୁ ଓ ଜାଣିବାକୁ ପଡ଼େ, ଏବଂ ବନୁ ବା ବାବୁଲି ତାହା କରନ୍ତି, ସେତେବେଳେ କୌଣସି ଗାଁ, ଲୋକେ ଏବଂ ଈଶ୍ୱର ଜମି ଜୁଟାଇଦେବେ । ସେ ତ ଭବିଷ୍ୟତର କଥା । ବର୍ତ୍ତମାନ ଜମିରେ ଅଧିକାର ଛାଡ଼ିଦେବା ମୁଁ ଉଚିତ ମନେ କଲି ।

ଇତି ।

ତୋର ଦାଦା

(ଶରତ୍ ଚନ୍ଦ୍ର ମହାରଣା)

୧୧.୭.୧୯୫୭

ଜ୍ୟୋତିପୁର

କେଉଁଝର ଜିଲ୍ଲା ।

୧୩.୭.୧୯୫୭

ଉଖୁଣ୍ଡା ହାଟପାଳି । ସକାଳେ ନାରାୟଣ ବାବୁଙ୍କୁ ଭୂଦାନ ଯଜ୍ଞରେ ଦାୟିତ୍ୱ ନେବାକୁ ମୁଁ କହିଲି । ସେ ଧରାଛୁଆଁ ଦେଲେ ନାହିଁ । ତାଙ୍କର ଲୋକଙ୍କୁ ପୁରାଣରୁ ଉପମା ଓ ଉପାଖ୍ୟାନ ଦେଇ, ବୁଝାଇବା ଶକ୍ତି ଅଛି । ଜଣେ କଂଗ୍ରେସ କର୍ମୀ ଗୋପନରେ ଗଣତନ୍ତ୍ର ପ୍ରାର୍ଥୀକୁ ଭୋଟ ଦେବାପାଇଁ ଲୋକଙ୍କୁ କହିଥିଲେ ବୋଲି ନାରାୟଣବାବୁ ପ୍ରକାଶ କଲେ । ତାଙ୍କର ସ୍ତ୍ରୀଙ୍କର ଇଚ୍ଛା ଯେ ନାରାୟଣବାବୁ ଭୂଦାନରେ କାମ ନ କରନ୍ତୁ - ଏହା ମୁଁ ଲକ୍ଷ୍ୟ କଲି । ତାଙ୍କ ଘରେ ଭାତ ଖାଇ, ସେବାଶ୍ରମର ପିଲାମାନଙ୍କୁ ଓ ଜଗନ୍ନାଥ ବାବଙ୍କୁ ମୋଟ ୨ଟଙ୍କାର ବହି ଧାରରେ ବିକ୍ରୟ କରି ଏବଂ କାଖର ଗାଁ ବାସିନ୍ଦା କୁମ୍ଭାର ଶ୍ରୀ ସନାତନ ବେହେରାଙ୍କୁ ୪ ଅଣିର ବହି ନଗଦ ବିକ୍ରୟ କରି, ମୁଁ ଚାଲି କରି ପ୍ରାୟ ୪ ମାଇଲି ଦୂର ଉଖୁଣ୍ଡାକୁ ଆସିଲି । ହାଟରେ ଛତା ମରାମତି କରାଇଲି । ଗଙ୍ଗାଧର ମିଶ୍ରଙ୍କର ବଡ଼ଭାଇ ଏଠାରେ ଚାଷଯୋଗୁଁ ଅଛନ୍ତି । ତାଙ୍କ ପ୍ରଦତ୍ତ କଞ୍ଚାଚୂଡ଼ା ଚୋବାଇ ଖାଇ, ରାତିରେ ବାରଦାରେ ଶୋଇଲି । ଷଡ଼ଙ୍ଗୀ ଗ୍ରାମରୁ ଉଠି ଆସିଥିବା ଅଖିଳଚନ୍ଦ୍ର ସାହୁ, ନାଗେଶ୍ୱର ସାହୁ ଓ କଟକ ପାଖ ଉରାଳୀ ଗାଁରୁ ଆସିଥିବା ଦରଜୀ ବେଣୁଧର ମହାନ୍ତି, ଗଙ୍ଗାଧର ବାବୁଙ୍କର ଭାଇ ଗ୍ରାମଦାନ କଥା ମୋ ଠାରୁ ୨/୪ ପଦ ଶୁଣିଲେ । ତକଲୀରେ ମୁଁ ସୂତା କାଟିଲି । ଗ୍ରାମର ସରପଞ୍ଚ (ଯୁବକ ଲୋକ) କହି କରି, ଆଲୋଚନାକୁ ଆସିଲେ ନାହିଁ । ପଧାନ ମଦ ଖାଇ ମାତାଲ ଥିଲେ ବୋଲି ଶୁଣିଲି ।

୧୬.୭.୧୯୫୭

ଶ୍ରୀ ଉପେନ୍ଦ୍ର ମହାପାତ୍ରଙ୍କ ଘରେ ରହିଲି ଓ ଖାଇଲି । ଉପରଓଳି ମହାନ୍ତିସାହିକୁ ଯାଇ ଏ ଜିଲ୍ଲାର କଂଗ୍ରେସ କମିଟିର ସଂପାଦକ ଶ୍ରୀ ବୀରକିଶୋର ପଟ୍ଟନାୟକଙ୍କ ସହିତ ଏ ଜିଲ୍ଲାରେ ଭୂଦାନକାର୍ଯ୍ୟ କିପରି ହେବ, ତାଙ୍କର ପରାମର୍ଶ ନେଲି । ସେ ଖୁବ୍ ଆଗ୍ରହରେ ସମର୍ଥନ କଲେ ଏବଂ କଂଗ୍ରେସ କାମ କରି ଭୂଦାନ କାର୍ଯ୍ୟ କରିବେ ବୋଲି ସ୍ପଷ୍ଟ ଓ ସ୍ୱତଃ ମତ ଦେଲେ । ସେ କହିଲେ "ଆମ ଭାଗ୍ୟକୁ ଏ ଜିଲ୍ଲାରେ ରମାଦେବୀ ଓ ଆପଣ ଭୂଦାନ କାର୍ଯ୍ୟରେ ବୁଲୁଛନ୍ତି । ଆମେ ଆଗେ ସାନ ସାନ ଆଲୋଚନା-ଶିବିର କରି ଭୂଦାନକଥା ବୁଝିବା । ଆପଣ ଆମର କାନ ରଗଡ଼େଇ ସେଥିରେ (ସବୁ କଥା) ଶିଖାଇବେ । +++ । ଭଲ ମନ ଖୋଲା କଥାବାର୍ତ୍ତା ସେ କଲେ । ତାଳ ଚକୁଳି ଓ ଦହି ମୋତେ ଖାଇବାକୁ ଦେଲେ । ରାତିରେ ଉପେନ୍ଦ୍ରବାବୁ ନିଜର ଘର-ଜଞ୍ଜାଳରେ ପଡ଼ି କୌଣସି ଭୂଦାନ କାମ କରିପାରୁ ନାହାନ୍ତି ବୋଲି ଦୁଃଖ ପ୍ରକାଶ କଲେ ।

୧୭.୭.୧୯୫୭

ସକାଳେ ବୀରବାବୁଙ୍କୁ (କଟକରେ ଦେବା ପାଇଁ ) ଚିଠି ଦେଇ ଆସିଲି । ଉପେନ୍ଦ୍ରବାବୁଙ୍କର ଷ୍ଟୁଡ଼ିଓର ଘର ଟିକିଏ ଝାଡୁ କରିଦେଲି । ତାଙ୍କର ବଡ଼ପୁଅ ନରେନ୍ଦ୍ର ମୋତେ ଆଉ ଖରକିବାକୁ ଦେଲା ନାହିଁ । ଶ୍ରୀଯୁକ୍ତ ଉପେନ୍ଦ୍ର ମହାପାତ୍ର କହିଲେ ଯେ ତାଙ୍କର ଗୋଟିଏ ଆଖିର ଚଷମା ପାଓ୍ୱାର +୫ ଓ ଅନ୍ୟ ଆଖିର ଚଷମା ପାଓ୍ୱାର -୫ ଥିଲା । ଦିନେ ଜଣେ ସାଧୁ

ତାଙ୍କ ମନକୁ ଆସି, ତାଙ୍କୁ ପରାମର୍ଶ ଦେଲେ । (୧) ନିଶ ଓ ଦାଢ଼ି କ୍ଷିଅର ହେବେ ନାହିଁ । (୨) କଇଁଚିଦ୍ୱାରା ତାହା କାଟିପାରନ୍ତି । (୩) ନଖଗୁଡ଼ିକ ମୂଳେଇ କରି କାଟିବେ ନାହିଁ । (୪) ମାଟି ପାତ୍ରରେ ବା ପଥୁରୀ ପାତ୍ରରେ ପରିଷ୍କୃତ ଜଳ ପ୍ରାୟ ୫/୬ ନୋଟା ରାତିରେ ମୁକ୍ତ ଆକାଶ ତଳେ ରଖିବେ । ପାତ୍ର ଉପରେ ଖଣ୍ଡିଏ ପତଳା କନା ବାନ୍ଧି ଦେବେ – ଧୂଳିମଳି ନ ପଡ଼ିବା ପାଇଁ । ଭୋର ଆଗେ ମୁହଁ, ଆଖି ଭଲ ପାଣିରେ ଧୋଇ, ଦାନ୍ତର ମାଢ଼ିକୁ ଭଲ କରି ଆଙ୍ଗୁଳିରେ ଘସି ସଫା କରିଦେବେ । ଦୁଇ ତିନିଥର ପାଟିରେ ରାତିର ସେହି ବାସୀ ପାଣି ପୁରାଇବେ, ଏବଂ ଦୁଇ ଆଖିକୁ ସେହି ଥଣ୍ଡା ପାଣିରେ ବାରମ୍ବାର ଛାଟି ଧୋଇବେ । (୫) ପ୍ରତିଦିନ ଚନ୍ଦ୍ର ଉଦୟ ସମୟରେ ଚନ୍ଦ୍ରଙ୍କୁ ୫/୧୦ ମିନିଟି ଦେଖିବେ । ସେହି ଅନୁସାରେ ଆଗରୁ – ୬ ଘଣ୍ଟା ପୂର୍ବରୁ – ଶୋଇ ପଡ଼ିଥିବେ ଯେ ସେତେବେଳକୁ ନିଦ ଭାଙ୍ଗିବ । ଏହିପରି ମାସେ କରିବା ଦ୍ୱାରା ଉପେନ୍ଦ୍ର ବାବୁଙ୍କର ଆଖି ପୂରା ଭଲ ହୋଇଗଲା । ଆଉ ଚଷମା ଦରକାର ହେଲା ନାହିଁ । ରାତିରେ ସେ ବିନା ଚଷମାରେ ଫଟୋ କାର୍ଯ୍ୟ କରୁଛନ୍ତି ।

୧୯-୨୮.୭.୧୯୫୭

ମୁଁ ବୋଉଙ୍କୁ (କେଉଁଝର ଜିଲ୍ଲାର "ନିବେଦିକା''ଙ୍କୁ) ମୋର କାର୍ଯ୍ୟର ଜୁନ୍ ମାସର ଲିଖିତ ରିପୋର୍ଟ ଦେଲି । ଯମୁନାପଶୀରେ ହାଟ ସକାଳେ ମୋର ଗୋଡ଼ଭଣ୍ଡା ଘୋଳାଇଲା ଓ ଦେହ ଟିକିଏ କସମତ୍ ଲାଗିଲା । ଶ୍ରୀ ଧନେଶ୍ୱରବାବୁ ମୋ ପାଖରେ ବସିଲେ । ବିନୋବାଜୀଙ୍କର ପୁରୁଣା ପ୍ରାର୍ଥନା-ପ୍ରବଚନ ପଢ଼ିଲୁ ଏବଂ ଏ ଅଞ୍ଚଳରେ ଗ୍ରାମଦାନ ଫଳରେ ନଈତାଲୀମ ଚଳିବା କଥା ସେ ଉଠାଇଲେ । ସେ ଅନେକ ଆଗରୁ କେତେକ କଥା ଚିନ୍ତା କରିଛନ୍ତି, ମୁଁ ଦେଖିଲି ।

ଆଜି ଭାତ ଖାଇବା ପରେ ମୋର ଜ୍ୱର ହେଲା । ତା ୨୧ରୁ ୨୫ ପର୍ଯ୍ୟନ୍ତ କମ୍ପ ସହ ମେଲେରିଆ ଜ୍ୱର ୧୦୦ ରୁ ୧୦୩ ଡିଗ୍ରୀ ମଧ୍ୟରେ ଥିଲା । ଶ୍ରୀମତୀ ପାର୍ବତୀ ଦେବୀ ଓ ଘନଭାଇ ବହୁତ ସେବା କଲେ । ଡାକ୍ତର ବୃନ୍ଦାବନ ବିଶ୍ୱାଳଙ୍କୁ ଲେଖି ପଠାଇବାରୁ ସେ ଔଷଧ ପଠାଇଦେଲେ । ବୋଉ ତା ୨୫ରେ କେଉଁଝରଗଡ଼ରୁ କଣ୍ଟିଆପଡ଼ାକୁ ଆସିଲେ । ତାଙ୍କଠାରୁ କୁଇନାଇନ୍ ଡାଇହାଇଡ୍ରୋକ୍ଲୋର୍ ବଟିକା ୧ମ ଦିନ ୪ଟା ଖାଇବା ପରେ ମୋର ଜ୍ୱର ମନ୍ଦ ହେଲା । ୨୭ରେ ଭାତ ଖାଇଲି । ୨୮ ରାତିରେ ୨ ଥର ଝାଡ଼ା ହେଲା, ପେଟରେ ପୁରୁଣା ମଳ ଥିଲା । ତା ୨୯ ଓ ୩୦ରେ ମଧ୍ୟ ଟିକିଏ ବାଇଗରମୀ ଦୋଷ ଥିଲା ।

୨୯.୭.୫୭

ସକାଳେ ଚୁଡ଼ାଭଜା ଗୁଣ୍ଡ ଓ ସନ୍ତୁଳା ତରକାରୀ ଖାଇଲି । ବୋଉ ମାନପୁର ଆଡ଼େ ଗଲେ । ଢେଙ୍କାର ନିତ୍ୟାନନ୍ଦ ପାଣିଗ୍ରାହୀ ଭୂଦାନକର୍ମୀ ଆସିଥିଲେ; ସେ ଗୋଟିଏ ଆଡ଼େ ଗଲେ । ଶ୍ରୀମତୀ ପାର୍ବତୀ ଦେବୀ ଓ ସଚି ପଣ୍ଡା ନାରୀକର୍ମୀ ଅନ୍ୟ ଆଡ଼େ ଗଲେ । ମୁଁ ଏକାକୀ

ବାର-ଡ଼ାଙ୍କୁଆ ଗାଁକୁ (ପ୍ରାୟ ୩ ମାଇଲ) ଆସି, ପଧାନ ଶ୍ରୀ ଭୋଳେଶ୍ୱର ନାୟକ ସନ୍ଧ୍ୟାରେ ଶ୍ରୀ ଲୋକନାଥ ଦାସ (ଗୃହୀ ବୈଷ୍ଣବ)ଙ୍କ ଘରେ ଗ୍ରାମବାସୀ ୭/୮ ଜଣଙ୍କ ସହ ଗ୍ରାମଦାନ କଥା ଚର୍ଚ୍ଚା କଲି । ଲୋକନାଥ ଦାସ ଭଲ ସହାନୁଭୂତି ଦେଖାଇଲେ, ଭକ୍ତିମାର୍ଗର ଲୋକ ବୋଲି । ରାତିରେ ତାଙ୍କ ଘରେ ଭାତ ଖାଇଲି ।

୩୧.୭.୧୯୫୭

ସକାଳେ ଧନୁର୍ଜୟପୁରରୁ ପ୍ରାୟ ୩ ରୁ ୪ ମାଇଲ ଦୂର କେଉଁଝରଗଡ଼-ରାଜନଗର ସଡ଼କର ଉତ୍ତର ଦିଗରେ ଅବସ୍ଥିତ ରେଙ୍ଗାଲବେଡ଼ା ଗାଁକୁ ଗଲି । ପଧାନ କାନ୍ତମଣି ମହାନ୍ତଙ୍କ ଘରେ ରହିଲି ଓ ଖାଇଲି । ସୂତା ଅଧ ଗୁଣ୍ଡିଏ ମୋଡ଼ା ଉଠାଇଲି । ଗ୍ରାମବାସୀମାନେ ବିହୁଡ଼ା କାମରେ ସକାଳଠାରୁ ସନ୍ଧ୍ୟା ୫ଟା ପର୍ଯ୍ୟନ୍ତ ବିଲରେ ରହୁଛନ୍ତି । ମୁଁ ଏକାକୀ ଗ୍ରାମରେ ବସିରହୁଛି । ପଧାନ (କାନ୍ତମଣି ମହାନ୍ତ) ଆଜି ଗ୍ରାମକୁ ଫେରିବେ ନାହିଁ ବୋଲି ମୁଁ ୪ଟା ବେଳେ ଜାଣିଲି ଏବଂ ଚିଲଦା ବାଟେ ବରଡିପଶୀକୁ (ପ୍ରାୟ ୨ ମାଇଲ ଦୂର) ସନ୍ଧ୍ୟା ୬ଟାରେ ଆସିଗଲି । ପଧାନ ଓ ତାଙ୍କ ପୁଅ ଯୁଧିଷ୍ଠିର ରାତି ୭ଟାରେ ଘରକୁ ଫେରିଲେ । ତେଣୁକରି, ସାଧାରଣ ସଭା ମୁଁ ଡକାଇ ନ ଥିଲି । ସେମାନଙ୍କର ସହ ଗ୍ରାମଦାନ କଥା ମୁଁ ପକାଇଲି । ସେମାନେ ନୀରବରେ ଶୁଣିଲେ ମାତ୍ର ସକ୍ରୀୟତା ଓ ଉତ୍ସୁକଭାବ ଦେଖାଇଲେ ନାହିଁ । ମାସକ ଆଗରୁ ଏ ସବୁ ଗାଁରେ ଶ୍ରୀମତୀ ଇନ୍ଦିରା ଦେବୀ ଓ ସାବିତ୍ରୀ ଦେବୀ ଥରେ ବୁଲିଯାଇଥିଲେ । ମୁଁ ରାତିରେ ପଧାନଙ୍କ ଆତିଥ୍ୟରେ ଭାତ ଖାଇଲି ଓ ତାଙ୍କର ବାହାର ଘରେ ଶୋଇଲି ।

୧-୨.୮.୧୯୫୭

ସକାଳ ୬ଟାରୁ ବରଡିପଶୀରୁ ଚାଲି, ବିକ୍ରିପାଇଁ ବହି ପ୍ରାୟ ୩୦ ଖଣ୍ଡ, ପୁରୁଣା ପ୍ରାର୍ଥନା ପ୍ରବଚନ ୨ ମାସର ଓ ମୋର ମଶାରି, ବିଛଣାଚାଦର, ଲୁଗା ଆଦି ମୁଣ୍ଡାଇ ଏବଂ ୨ କାନ୍ଧରେ ୨ଟା ବ୍ୟାଗ ଝୁଲାଇ, ଭୃଙ୍ଗରାଜ, ନୂଆଗାଁ, ହାତୀବାରି, ତୁରୁମଙ୍ଗା, ତୁଙ୍ଗରିଗଡ଼ା (ବୈତରିଣୀରେ ନୂଆ ପୋଲ ପାଖର ଗାଁ) ଦେଇ ଘ ୧୦.୨୦ରେ କଙ୍କା ଗ୍ରାମରେ ପହଞ୍ଚିଲି । ବାଟରେ ଚୂଡ଼ାଭଜା ଗୁଣ୍ଡ, ଚିନି ଜଳଖିଆ କରିବାରେ ୪୫ ମିନିଟ୍ ଯାଇଥିଲା । ପାଦରେ ବ୍ୟଥା ଓ ଥକା ଯୋଗୁଁ ୧୨ଟା ପର୍ଯ୍ୟନ୍ତ କଙ୍କଡ଼ାରେ ସ୍କୁଲରେ ରହି, ଗାଧୋଇ ଓ ଚୂଡ଼ାଭଜାଗୁଣ୍ଡ ଖାଇ, ବାଉଟିଆପଦାରେ ଗୋଟାକରେ ପହଞ୍ଚିଲି । ଗଙ୍ଗାଧରବାବୁ ଘରେ ଥିଲେ । ମୁଁ ୨ଟା ବେଳେ ସଜ ପଖାଳ ଖାଇଲି । ପେଟର ବାଇଗରମୀ ଦୋଷ ଅଛି । ଆଜି ୩ ଥର ପାଖଖାନା ହେଲା ଗୋଡ଼ବଥାରେ ଭାଲିଆ ଲଗାଇଲି ।

ଆଜି (୨ରିଖ) ସନ୍ଧ୍ୟାବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କର ତା ୨୨.୭.୫୭ର D.O.No. 1263 - C.M. ପତ୍ର ବାଉଟିଆପଦାରେ ପାଇଲି । ତାହା

ଗୁରୁତ୍ୱପୂର୍ଣ୍ଣ ଥିବାରୁ, ମୁଁ କଟକ ଆସିବା ସ୍ଥିର କଲି । ଗୋଡ଼ ତଳିପାରେ ବଥା ଥିବାରୁ, ଆଜି ପୁଣି ଭାଲିଆ ତତାଇ ଲଗାଇଲି । ଏ ଦୁଇଦିନରେ ବାରଅଣା ପରିମାଣରେ ଦରଜ କମିଗଲା ।

୩.୮.୧୯୫୭

କେଉଁଝରଗଡ଼କୁ ଯାତ୍ରା । ସକାଳେ ବହିପତ୍ର ସଜାଡ଼ି ସୁଟକେଶରେ ରଖିଦେଇ, ୨ଟି ଚିତଉ ପିଠା ଶ୍ରୀ ଗଙ୍ଗାଧର ବାବୁଙ୍କ ଘରେ ଖାଇ, ସକାଳ ୮ଟା ୨୦ ମିନିଟରେ ବାଉଟିଆପଦାରୁ ଚାଲି ଚାଲି କେଉଁଝରଗଡ଼ ଅଭିମୁଖେ ବାହାରିଲି । ୯.୪୦ରେ ମୁଁ ନ୍ୟାସନ୍ୟାଲ୍ ହାଇଓ୍ୱେରେ ତୁମୁରିଗୁଡ଼ାଠାରେ ପହଞ୍ଚିଲି । ସେହି ସଡ଼କରେ ତୁରୁମଙ୍ଗା, ଚିଲଦା, ତରଙ୍ଗାଇବେଢ଼ା, ଧନୁର୍ଜୟପୁର, ଖିରୀଟାଙ୍ଗରୀ, ବେଲଦା,ଶଙ୍କରପୁର ପାଖଦେଇ ସନ୍ଧ୍ୟା ୭.୩୫ ମିନିଟରେ ଶ୍ରୀ ଉପେନ୍ଦ୍ର ମହାପାତ୍ରଙ୍କର ଘରେ ମୁଁ ପହଞ୍ଚିଲି । ମୋଟରେ ପ୍ରାୟ ୨୪ ମାଇଲି ଚାଲିଲି । ମଝିରେ ସାମାନ୍ୟ ବିଶ୍ରାମ କରିବାକୁ ଓ ଖିରୀଟାଙ୍ଗରୀ ଉ.ପ୍ରା.ସ୍କୁଲର ହେଡ୍‌ପଣ୍ଡିତ ଶ୍ରୀ ଭୀମସେନ ସିଂହଙ୍କଠାରେ ଚୁଡ଼ା, ଚିନି ଓ କାଗଜୀଲେମ୍ବୁ ଜଳଖିଆ କରିବାକୁ ମୋଟରେ ପ୍ରାୟ ଦେଢ଼ ଘଣ୍ଟା ବିଶ୍ରାମ କରିଥିଲି ।

ଖିରିଟାଙ୍ଗରୀ ଭିନ୍ନ ଏ ଦୀର୍ଘ ପଥରେ ଅନ୍ୟ କୌଣସିଠାରେ ସଡ଼କ କଡ଼ରେ ଚୁଡ଼ା ବା ମୁଢ଼ୀର ଦୋକାନଟିଏ ନାହିଁ । ଦୈବାତ୍ ଜଣେ ବ୍ୟକ୍ତିଠାରୁ ୧ ଅଣାର କଞ୍ଚାଚୁଡ଼ା ପାଇଗଲି । ତାହା ଚୋବାଇ ଚୋବାଇ ବାଟ ଚାଲିଥାଏ, ଖିରୀଟାଙ୍ଗରୀ ପର୍ଯ୍ୟନ୍ତ । ପିଇବା ପାଣିର କୂଅ ମଧ୍ୟ ସେମିତି ନାହିଁ । ଗାଁ ମାନଙ୍କରେ ମଧ୍ୟ (ତୁରୁମଙ୍ଗାକୁ ଛାଡ଼ି) ଚୁଡ଼ା, ମୁଢ଼ୀ କିଣିବାକୁ ମିଳିବ ନାହିଁ । ଗାଁର ପଧାନ ଭିନ୍ନ ଅନ୍ୟ ଲୋକର ଘରେ ଭାତ ବା ପଖାଳ ଖାଇବାକୁ ସାଧାରଣତଃ ମିଳେ ନାହିଁ । ସାତ ଦିନ ମାତ୍ର ପୂର୍ବରୁ ଜ୍ୱର ଛାଡ଼ିଥିଲା, ମୋର ଦୁର୍ବଳତା ଥିଲା; ୮ ବା ୯ ମାଇଲ ଚାଲିବା ପରେ ଗୋଡ଼ ଆଗକୁ ପଡ଼ିବାକୁ କଷ୍ଟ ମନେ କରୁଥାଏ । ତଥାପି, ଧୀରେ ଧୀରେ ଏ ଦୀର୍ଘ ପଥ ଚାଲିଲି । ଶ୍ରୀ ଉପେନ୍ଦ୍ର ବାବୁଙ୍କ ଘରେ ରାତି ୯ଟାରେ ଭାତ ଖାଇ, ବାସନାଯୁକ୍ତ ଜଡ଼ାଦେଲ ଗୋଡ଼ରେ ଓ ହାତର ବାହୁରେ ମାଲିସ କରି ଶୋଇଲି । ଆଜି ଚପ୍ପଲ ପିନ୍ଧି ମୁଁ ଆସିଥିଲି ।

୭.୮.୧୯୫୭

କଟକରୁ ଦିନ ଟ୍ରେନ୍‌ରେ ମୁଁ ହରିଦାସପୁର ଗଲି । ଚନ୍ଦନପୁର ହରିଜନ ସାହିର ଶ୍ରୀମାନ୍ ନୃସିଂହ ମଲିକ ସଙ୍ଗରେ ଚାଲି କରି ରାତି ୧୦ଟାରେ ମୁଁ ରାମଚନ୍ଦ୍ରପୁରରେ ପହଞ୍ଚିଲି ।

୧୦.୮.୧୯୫୭

କଳାମାଟିଆ ଶହୀଦ୍ ସ୍ମୃତି ଦିବସ ପାଳିତ ହେଲା । ମୁଁ ଶହୀଦ ପୀଠକୁ ଯାଇ ସେହି ଶହୀଦମାନଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କଲି । ଏ ଅଞ୍ଚଳର ୪/୫ଟି ମୌଳିକ ସ୍କୁଲର ପିଲାମାନେ ଓ

ଗୁରୁଜୀ, କୃଷ୍ଣନଗରର ବୀରକିଶୋର ରାୟ, ଆଦି ଆସିଥିଲେ । ୧୯୪୨ ମସିହା ଅଗଷ୍ଟ ତା ୨୬ରେ ଗହ୍ମାପୂର୍ଣ୍ଣିମା ଦିନ ଏହି ପୀଠରେ ମାୟାଧର ଜେନା(ହାଟସାହି), ସାଉଣ୍ଟି ମଲିକ (ହରିଜନ, ଘର ସେରପୁର), ହାଡ଼ିବନ୍ଧୁ ପଣ୍ଡା ଓ ସାନନ୍ଦ ସ୍ୱାଇଁ (ଉଭୟ କୃଷ୍ଣନଗରବାସୀ) ପୋଲିସର ଗୁଳିକାଣ୍ଡରେ ପ୍ରାଣ ହରାଇଥିଲେ । କଳାମାଟିଆ ଶହୀଦ୍ ସ୍ମୃତି ସମିତିର ସଭାପତି ବୀରବର ରଥ ଓ ସଂପାଦକ ବସୁଦେବ ସାମଲ ଆଜି ଯୋଗ ଦେଇ ପାରି ନ ଥିଲେ ।

୧୨.୮ରେ ବାଲିବିଲର ଶ୍ରୀ ଦୁଃଖିଶ୍ୟାମ ପତି ମୋଠାକୁ ଆସିଥିଲେ – ପିଲାମାନଙ୍କର ଶିକ୍ଷାଦୀକ୍ଷା, ଏ ଅଞ୍ଚଳରେ ଧୋୟାରେ ଚାଷର ଅବସ୍ଥା, ଉନ୍ନତି କଥା ପଡ଼ିଲା । ୧୪ରେ ମୁଁ ବରୀ ଯାଇ ଶ୍ରୀଯୁକ୍ତ ଗୋପବାବୁଙ୍କୁ ଦେଖା କରି ଆସିଲି । ପୋଖରୀରେ ପାଣି ବାହାରୁ ପୂରାଇବାକୁ ବ୍ୟବସ୍ଥା କରୁଥିଲେ । ରାମଚନ୍ଦ୍ରପୁର ସ୍କୁଲର ଛାତ୍ରମାନଙ୍କୁ ୧୯୪୨ର କଳାମାଟିଆ ଠାରେ ଗୁଳିକାଣ୍ଡ କଥା (ମୁଁ ଯାହା ଜାଣିଥିଲି ତାହା) କହିଲି । ଛାତ୍ରମାନେ ଦେଶର କଥା ଭାବନ୍ତୁ, ଜ୍ଞାନ ଅର୍ଜନ କରନ୍ତୁ ଓ ସଂଯତ ହୁଅନ୍ତୁ – ମୁଁ ଉପଦେଶ ଦେଲି ।

୧୫.୮.୧୯୫୭

ଗୁରୁବାର ସ୍ୱାଧୀନତା ଦିବସ ସକାଳ ୯ଟାରେ ମୁଁ ରାମଚନ୍ଦ୍ରପୁରରୁ ଚାଲି କରି କଦଳାମଠକୁ ବାହାରିଲି । ଏ ବର୍ଷ ବର୍ଷା ଅତି କମ୍ ହୋଇଛି । ନଦୀମାନଙ୍କରେ ବନ୍ୟା ନାହିଁ, ନଦୀରେ ପଶି ଯାଉଅଛୁ । ବୈଷ୍ଣବ ସାମଲଙ୍କର ପୁଅ ମୋତେ ତାହାର ନିଜ ଇଚ୍ଛାରେ ମିର୍ଜାପୁରର ଟହଲୀ ନାମକ ଗଉଡ଼କୁ ଲୋକେ ହତ୍ୟା କରିଥିବାର କରୁଣ କଥା ବର୍ଣ୍ଣନା କଲା । କି ଜଘନ୍ୟ ଜାତିଆଣ ଭାବ ! ଗଉଡ଼ମାନେ ଖଣ୍ଡାଏତ ଓ ବ୍ରାହ୍ମଣମାନଙ୍କୁ ସବାରିରେ ବସାଇ କାନ୍ଧେଇବାକୁ ମନା କରିବାରୁ ଏ ହତ୍ୟାକାଣ୍ଡ ଘଟିଛି । ଏଥିରେ ଏ ଅଞ୍ଚଳର ଜଣାଶୁଣା ୨/୩ ଜଣ ଲୋକଙ୍କର ନାମ ପ୍ରକାଶ ହେଉଛି ।

୧୮-୧୯.୦୮.୧୯୫୭

କଟକରେ ଉତ୍କଳ ଖଦୀ ମଣ୍ଡଳର କାର୍ଯ୍ୟାଳୟରେ, ଓଡ଼ିଶା ସରକାରଙ୍କ ଦ୍ୱାରା ଗଠିତ ପ୍ରାଦେଶିକ ଭୂଦାନ ଯଜ୍ଞ ସମିତିର ୨୦ଶ ଅଧିବେଶନ ବସିଥିଲା । ସଭାପତି ଶ୍ରୀଯୁକ୍ତ ଗୋପବାବୁ, ମେମ୍ବର ନବବାବୁ, ସାଧୁବାବୁ, ନିଶାମଣି ଖୁଣ୍ଟିଆ, ବିଶ୍ୱନାଥ ପଟ୍ଟନାୟକ ଓ ମୁଁ ଯୋଗ ଦେଇଥିଲୁ ।

ବିଶେଷ ନିମନ୍ତଣରେ ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ (ସର୍ବସେବା ସଂଘର ସଂପାଦକ) ଓ କୋରାପୁଟର କର୍ମୀ ଶ୍ରୀ ବାବୁଲାଲ ମିତ୍ତଲ, ଏବଂ ଓଡ଼ିଶାର କେତେକ ଜିଲ୍ଲାର ଭୂଦାନ ନିବେଦକମାନେ ଯୋଗ ଦେଇଥିଲେ । ପ୍ରଧାନ ବିଷୟ ଆଲୋଚିତ ହେଲା: ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କର ସମିତିର ସଂପାଦକ ଠାକୁ ୨୨.୭.୧୯୫୭ର D.O.No. 1263 - C.M. ସମିତି ତାହାର ଉତ୍ତର ପ୍ରସ୍ତାବ ଆକାରରେ ସ୍ଥିର କଲେ ।

ଉତ୍କଳ ନବ ଜୀବନ ମଣ୍ଡଳର ବୈଠକ ମଧ୍ୟ ତା ୧୯.୮.ରେ ଏଠାରେ ହେଲା । ବିଶେଷ ଆହ୍ୱାନରେ ମୁଁ ସେଥିରେ କିଛି ସମୟ ପାଇଁ ଯୋଗ ଦେଇଥିଲି ।

୨୦.୮.୧୯୫୭

ଓଡ଼ିଶାରେ ଭୂଦାନ ସମିତିର ବିବରଣୀ ଲେଖିଲି ଏବଂ ଇଂରାଜୀରେ ତାହାକୁ ଟାଇପ କଲି । ଏଥିରୁ କେତେକ ପ୍ରଧାନ ଅଂଶ ଶ୍ରୀ ଅର୍ଣ୍ଣା ସାହେବ ଓ ନବବାବୁ ଇଂରାଜୀରେ ଚିଠି କରିଦେଇଥିଲେ ।

୨୧.୮.୧୯୫୭

ଆଉ କେତେକ କପି ଟାଇପ କଲି ଏବଂ ଶ୍ରୀଯୁକ୍ତ ମହତାବ ବାବୁଙ୍କୁ ଚିଠି ଲେଖିଲି ଓ ପଠାଇଲି ।

୨୨ - ୨୫.୮.୧୯୫୭

୨୩ ସକାଳେ ଆମ୍ଭେମାନେ ବସ୍‌ରେ କାଦୁଆପଡ଼ା ଗଲୁ ଏବଂ କଟକ, ପୁରୀ, ଢେଙ୍କାନାଳ ଓ କେଉଁଝର ଜିଲ୍ଲାର ଭୂଦାନ ସମ୍ମିଳନୀରେ ଯୋଗ ଦେଲୁ । ପଣ୍ଡିତ କୃପାସିନ୍ଧୁ ହୋତା ସଭାପତି କାର୍ଯ୍ୟ ଚଳାଇଥିଲେ । ଶେଷ ଦିନ ଭଲ ବର୍ଷା ହୋଇଥିଲା । କାଦୁଆପଡ଼ାର ମାୟାଧର ଦାସ, ବୀଣାକର ତ୍ରିପାଠୀ ଆଦି ଏ ସମ୍ମିଳନୀର ବ୍ୟବସ୍ଥା କରିଥିଲେ । ସେଠାର ଗାଦୀବ୍ରହ୍ମ ବିଦ୍ୟାପୀଠ (ହାଇସ୍କୁଲ)ର ଶିକ୍ଷକମାନେ ଓ ଛାତ୍ରମାନେ ବହୁତ କାମ କରିଥିଲେ ଏବଂ ଓଳିଏ ସେମାନଙ୍କର ଆତିଥ୍ୟ ଓ ଖର୍ଚ୍ଚରେ ଆମ୍ଭେମାନେ ଖାଇଥିଲୁ ।

ଶ୍ରୀ ଭଗବାନ ସାହୁ (ଘର ବାଲିପଡ଼ା, ପୋ: ସାକ୍ଷୀଗୋପାଳ, ଜିଲ୍ଲା:ପୁରୀ) ୧୯୫୪ ଠାରୁ ଭୂଦାନ କାର୍ଯ୍ୟ କରୁଛନ୍ତି । ସେ ସମ୍ମିଳନୀରେ କହିଲେ ଯେ ଖାଦ୍ୟ ( ଓ ଅର୍ଥ)ର ଅଭାବରୁ ଦିନେ ତାଙ୍କର ପିଲାମାନେ ସେମାନଙ୍କର ବୋଉ (ମାତା)ଙ୍କୁ ମୁନ୍ଦିଏ ମୁନ୍ଦିଏ ତୋରାଣୀ ମାଗିଲେ । ଏ ଅଭାବ ସତ୍ତ୍ୱେ ମାତା ଓ ବାପା (ଭଗବାନ ବାବୁ) ଧୈର୍ଯ୍ୟ ଧରି ରହିଛନ୍ତି ଏବଂ ଭଗବାନ ବାବୁ ନିଧିମୁକ୍ତ ପରେ ମଧ୍ୟ ଭୂଦାନ କାର୍ଯ୍ୟ କରୁଛନ୍ତି । କମ୍ ନିଷ୍ଠା ନୁହେଁ । ୨୫ ରାତିରେ ଆମ୍ଭେମାନେ ମୋଟରବସ୍‌ରେ କଟକକୁ ଫେରି ଆସିଲୁ ।

୨୬ରୁ ୩୧.୦୮.୧୯୫୭

ପ୍ରାଦେଶିକ ଭୂଦାନ ସରକାରୀ ଅଫିସର ଫାଇଲଗୁଡ଼ିକ ପୁଣି କ୍ରମିକ ସଂଖ୍ୟା ଅନୁସାରେ ଓ ବିଷୟ ଅନୁସାରେ ସଜାଡ଼ିବାକୁ ୨ ଦିନ ଲାଗିଲା । ସମିତିର ୨୦ଶ ଅଧିବେଶନ ବିବରଣୀ ଜିଲ୍ଲା ଭୂଦାନ-ନିବେଦକମାନଙ୍କୁ ପଠାଇଲି । ଆଉ କେତେକ ସାମାନ୍ୟ ଅଫିସ କାର୍ଯ୍ୟ କଲି । ବୋଉ (ରମା ଦେବୀ) ଓ ସୁଭାଗିନୀ (ଉପେନ୍ଦ୍ରବାବୁଙ୍କ ଝିଅ) ତା ୨୯.୮. ଦିନ ଟ୍ରେନ୍‌ରେ

କଟକରୁ କେଉଁଝର ଅଭିମୁଖେ ଗଲେ । ମାସୀ ଓ କଞ୍ଚନ ଦେବୀ ଜୟପୁର ଗଲେ । ୩୧.୮ରେ ଶ୍ରୀଯୁକ୍ତ ଗୋପବାବୁ କେନ୍ଦ୍ରପଡ଼ା ବାଟେ ବରୀ ଗଲେ ।

୪.୯.୧୯୫୭

କଣ୍ଡିଆପଡ଼ାରେ (କେଉଁଝର ଜିଲ୍ଲା)ରହିଲି । କପା ବାଛି ଅଳ୍ପ ବଳଣା କଲି । ସନ୍ଧ୍ୟା ପରେ ପ୍ରାୟ ୨୦ ଜଣ ଗ୍ରାମବାସୀଙ୍କ ସହ ପୁନର୍ବଣ୍ଟନ ଓ ତୁରନ୍ତ "ନବନିର୍ମାଣ'' କାର୍ଯ୍ୟ ଆରମ୍ଭ କରିବାର ଆବଶ୍ୟକତା ଚାଟୁବାବୁ, ବୋଉ (ରମାଦେବୀ) ଓ ମୁଁ ଆଲୋଚନା କଲୁ । ଗ୍ରାମବାସୀମାନେ ଶୀଘ୍ର ଏ ଦୁଇ କାର୍ଯ୍ୟ ନ କଲେ, ସେମାନେ ଅସୁବିଧାରେ ପଡ଼ିଲେ ଓ ଗ୍ରାମଦାନ ଦ୍ୱାରା ସେମାନଙ୍କର ଉପକାର ହେଲା ନାହିଁ ବୋଲି ପରେ ଆମକୁ ଦୋଷ ଦେବେ ନାହିଁ – ଏହା ଆମ୍ଭେମାନେ ସଫା କହିଲୁ ।

୫.୯.୧୯୫୭

ସକାଳ ୭ଟାରେ ମୁଁ କଣ୍ଡିଆପଡ଼ାରୁ ଚାଲିକରି ବାହାରି, ଭୃଙ୍ଗରାଜ ଗାଁ ପରେ ନୂଆଗାଁ, ହାତୀବାରି, ତୁରୁମଙ୍ଗା ମାଇନର ସ୍କୁଲ ପାଖରେ ନ୍ୟାସନ୍ୟାଲ୍ ହାଇୱେକୁ ଉଠି, ତୁମୁରିଗଡ଼ା ପଧାନଙ୍କ ଘରେ ପହଞ୍ଚିଲି । ପଧାନ (ହୀରାଧନ) ଘରେ ନ ଥିଲେ; ବଡ଼ ପୁଅ ମହେଶ୍ୱର (ବୟସ ୧୯ ବର୍ଷ)ଙ୍କ ସହ ୩ ଘଣ୍ଟା କାଳ ଗ୍ରାମଦାନ ବିଷୟ ଚର୍ଚ୍ଚା ଓ "ଗ୍ରାମରାଜ୍ୟ'' ବହି ପଢ଼ା ହେଲା । ଏ ଯୁବକ ରାଜନୈତିକ ଦଳ-ନିରପେକ୍ଷତାକୁ ପସନ୍ଦ କରନ୍ତି ।

ନଦୀକୂଳରେ କଞ୍ଚାଚୁଡ଼ା ଦିଅଟା ମୁଁ ଖାଇ, ସନ୍ଧ୍ୟା ୫ଟାରେ ବାଉଟିଆପଦାରେ ଶ୍ରୀ ଗଙ୍ଗାଧର ମିଶ୍ରଙ୍କ ଘରେ ପହଞ୍ଚିଲି ।

୮.୯.୧୯୫୭

ସକାଳ ୬ଟାରେ ମୁଁ ବାଉଟିଆପଦାରୁ ଜ୍ୟୋତିପୁର ବାଟେ ପଦ୍ମପୁର ଗଲି । ଶ୍ରୀ ପୁରିଆ ଦେହୁରୀ ମୋର ବିଛଣାପତ୍ର ମାଳପୋଷ ଗ୍ରାମର ଶ୍ରୀ ରଜତ ରାୟଙ୍କର ଘରେ ରଖି, କୁନ୍ଦପୋଶୀ ଗଲା । ମୁଁ ରବୀନ୍ଦ୍ର ମହାପାତ୍ର ଓ ନି.ପ୍ରା. ସ୍କୁଲର ଶିକ୍ଷକଙ୍କ ସହ ଗ୍ରାମଦାନ କଥା ଓ ବିନୋବାଜୀଙ୍କର କେତେକ ଅତୀତରେ ସେବାକାର୍ଯ୍ୟ କଥାବାର୍ତ୍ତା କଲି । ଶ୍ରୀ କେଶବ ନାୟକଙ୍କର ବାପା ପୁରନ୍ଦର ବାବୁଙ୍କ ସହ ତାଙ୍କ ପିଣ୍ଡାରେ କଥାବାର୍ତ୍ତା କଲି । ଡାକୁଆ ଗ୍ରାମବାସୀଙ୍କୁ ଡାକିବାର ବ୍ୟବସ୍ଥା ଏମାନେ କରି ନ ଥିବାରୁ ଆଜି ରାତିରେ ସମସ୍ତଙ୍କ ସହ କଥାବାର୍ତ୍ତା ହୋଇପାରିଲା ନାହିଁ । ରାତିରେ ପ୍ରଚଳିତ ଶିକ୍ଷାର ତ୍ରୁଟି ବିଷୟରେ ଚିନ୍ତାମଣି, ପ୍ରଭୃତିକୁ ବୁଝାଇଲି ।

୯.୯.୧୯୫୭

ସକାଳେ ପଦ୍ମପୁରର ଜଣେ ପ୍ରଧାନ ସାହୁକାର ଶ୍ରୀ ବୈକୁଣ୍ଠ ପ୍ରଧାନ (ଗଉଡ଼)ଙ୍କ

ପାଖକୁ ଯାଇ, ଗ୍ରାମଦାନ ବିଷୟରେ ତାଙ୍କୁ ନିବେଦନ କଲି । ସେ ଭାଗବତ ଓ ପୁରାଣରୁ ପଦମାନ ହାଙ୍କି ଦେଉଥାନ୍ତି ଏବଂ "ବିଷ୍ଣୁମାୟା" ତ ଛାଡୁନାହିଁ, ସମୟ ଆସିଲେ ଆମେ କଅଣ ଗ୍ରାମଦାନକୁ ସବୁ ଜମି ନ ଦେବୁ ? ଇତ୍ୟାଦି ବାରମ୍ବାର କହିଲେ । ବର୍ତ୍ତମାନ ସେ ଟାଳିବାରେ ଲାଗିଛନ୍ତି ।

ସକାଳ ପ୍ରାୟ ୮ଟା ବେଳେ ମୁଁ ଚାଲିକରି ପଦ୍ମପୁରରୁ ମାଳପୋଷ, ପାରୁଡ଼ିପଶୀ, ବର୍ଦ୍ଧନା ଦେଇ ମୋର ବିଛଣା ଓ ବିକ୍ରୟ ପାଇଁ ଭୂଦାନ ସାହିତ୍ୟ କାନ୍ଧରେ ବା ମୁଣ୍ଡରେ ବୋହି ଏକାକୀ ଚାଲିଥିବା ବେଳେ ହଠାତ୍ ମୋର ମନକୁ ଆସିଲା ଯେ ଭାରତର ଏଡ଼େ ବଡ଼ ବଡ଼ ନେତା ଓ ବୁଝିବାସୁଝିବା ଲୋକ କଅଣ ବିନୋବାଙ୍କର ଦୀର୍ଘ ୭ ବର୍ଷର ଏହି ତପସ୍ୟାର କଷ୍ଟ ବୁଝିବେ ନାହିଁ !! ଜାଲିରେ ୧୧ଟାରେ ପହଞ୍ଚିଲି । ଜାଲି ସେବାଶ୍ରମ ସ୍କୁଲର ହେଡ଼୍‌ମାଷ୍ଟର ଜଗନ୍ନାଥ ପ୍ରସାଦ ମହାନ୍ତିଙ୍କ ବସାରେ ଭାତ ଖାଇଲି । ସନ୍ଧ୍ୟାରେ ଶ୍ରୀ ନାରାୟଣ ନାୟକଙ୍କୁ ମୁଁ ବୁଝାଇଦେଲି ଯେ ନବବାବୁ ଓ ଗୋପବାବୁ ନିଜର ଜମି ଜମିଦାରୀ ବିକି ବ୍ୟାଙ୍କରେ ଟଙ୍କା ଜମା କରିଥିବା ପୂରା ମିଥ୍ୟା ପ୍ରଚାର ଅଟେ, ଏବଂ ଭାରତୀୟ ପ୍ରାଚୀନ ସଂସ୍କୃତି ଅନୁସାରେ ସଂଯମ ଆଚରଣ କରି ଜନ୍ମନିରୋଧ କରିବା (ଲୋକସଂଖ୍ୟା ଅଯଥା ନ ବଢ଼ାଇବା) ବର୍ତ୍ତମାନ ପ୍ରଚାରିତ ହେଉଥିବା ପରିବାର ନିମନ୍ତ୍ରଣ (କୃତ୍ରିମ ଉପାୟରେ) ଅପେକ୍ଷା ଉତ୍ତମ ପ୍ରଣାଳୀ ଅଟେ ।

୧୦.୯.୧୯୫୭

ଭୋର ୫ଟାରୁ ମୁଁ ଜାଲିରୁ ଚାଲି କରି ଟାଙ୍ଗରାବନ୍ତଳା ପାଖ ଦେଇ, ରାଧିକାଦେଈପୁର, ଉଖୁଣ୍ଡା, ପାହାଡ଼ପୁର, ସିଲଟିହା ଆଦି ଗ୍ରାମ ଦେଇ ଆସି ନାଉଳି ନାଳରେ ଦାନ୍ତ ଘଷି ଓ ଚୂଡ଼ା ଧୋଇ ଖାଇଲି । ବାଁସେଳି ଗ୍ରାମ ଭିତରେ ପଶି, ପ୍ରାୟ ଘ ୧୦ଟାରେ ଖୁରେଇଟାଙ୍ଗରୀ ଉ.ପ୍ରା.ସ୍କୁଲରେ ପହଞ୍ଚିଲି । ମୋଟ ୧୪ ମାଇଲ ହେବ । ସରକାରୀ ଶିକ୍ଷକ ଶ୍ରୀ ମହେଶ୍ୱର ମହାନ୍ତି (ବୟସ ପ୍ରାୟ ୨୪ ବର୍ଷ, ଘର ଏହି ଗାଁରେ)ଓ ଶ୍ରୀ ଦୟାନନ୍ଦ ସାହୁ (ବୟସ ପ୍ରାୟ ୨୨ ବର୍ଷ, ଘର ଡୁରୁମଙ୍ଗାରେ) ମୋତେ ବେଶ୍ ଆଦରସମ୍ମାନ କଲେ । ଛାତ୍ରାବାସରେ ଦିନ ଓ ରାତିରେ ସେମାନେ ମୋତେ ଭାତ ଖାଇବାକୁ ଦେଲେ ଏବଂ ବିନୋବାଜୀଙ୍କର ହିନ୍ଦୀ ପ୍ରାର୍ଥନା ପ୍ରବଚନ ବଡ଼ ଆଗ୍ରହରେ ଶୁଣିଲେ । ଶ୍ରୀସାହୁ ଓଡ଼ିଆ ଗୀତା ପ୍ରବଚନ ମୋଠାରୁ ୧ ଖଣ୍ଡ ନେଇ ବଡ଼ ଆଗ୍ରହରେ ପଢ଼ିଲେ ଓ ଆନନ୍ଦିତ ହୋଇଗଲେ । ସନ୍ଧ୍ୟା ୭ ରୁ ୯ଟା ପର୍ଯ୍ୟନ୍ତ ଛାତ୍ରମାନଙ୍କୁ ମୁଁ ସ୍ୱାଧୀନତା ଆନ୍ଦୋଳନ ଓ ଭୂଦାନ ଆନ୍ଦୋଳନ କଥା ସଂକ୍ଷେପରେ କହିଲି ।

୧୧.୯.୧୯୫୭

ଭୂମି ଜୟନ୍ତୀ । ଆଜି ବିନୋବାଜୀଙ୍କର ଜନ୍ମଦିନ । ସେ ୧୮୯୫ ମସିହାରେ ଜାତ ହୋଇଥିଲେ । ଖୁରେଇଟାଙ୍ଗରୀରୁ ମୁଁ ସକାଳ ୬ଟାରେ ଚାଲି କରି ବାହାରିଲି କେଉଁଝରଗଡ଼କୁ ।

ବାଟରେ ବେଲଦା ଆଗରୁ ଓ ଶଙ୍କରପୁରଠାରେ ବର୍ଷା ହେବାରୁ ପ୍ରାୟ ୪ ଘଣ୍ଟା ଅଟକି ଗଲି । ମୋଠାରେ ଛତା ନ ଥିଲା, ବିଛଣା ଓ କାଗଜପତ୍ର ଓଦା ସାମାନ୍ୟଭାବରେ ହୋଇଗଲା ।

ସନ୍ଧ୍ୟା ୭ ରୁ ୯ଟା ପର୍ଯ୍ୟନ୍ତ ଧନୁର୍ଜୟଦେବ ହାଇସ୍କୁଲରେ ଆଲୋଚନା ସଭା ହେଲା । ଆଚାର୍ଯ୍ୟ ହରିହର ଦାସ ପ୍ରଧାନ ଅତିଥି ହୋଇଥିଲେ । ଚନ୍ଦ୍ରଶେଖର ବାବୁ କହିଲେ "ଭୂଦାନ କର୍ମୀମାନେ ସାଧାରଣ ମନୁଷ୍ୟର ଦୋଷ-ଦୁର୍ବଳତା ନ ଦେଖି,have idealised the man" ଶ୍ରୀ କାହ୍ନୁଚରଣ ମହାପାତ୍ର କହିଲେ "ମନୁଷ୍ୟ-ପ୍ରକୃତି ପୁଣି ତାହାର ସ୍ୱାଭାବିକ ମନ୍ଦ ଗୁଣ ଆଡ଼କୁ ଗତି କରିବ, ସେତେବେଳେ କଅଣ ହେବ ?" ଆଦି । ଆଚାର୍ଯ୍ୟ ମହାଶୟ ପ୍ରଥମେ କିଛି କହିଥିଲେ । ମାନପୁରରେ କଅଣ ହେଉଛି, "ଗ୍ରାମରାଜ୍ୟ"ର କଳ୍ପନା କଅଣ ? ପ୍ରଶ୍ନ ହେବାରୁ ମୁଁ ତାହାର ସଂକ୍ଷିପ୍ତ ଓ ପ୍ରକୃତ ତଥ୍ୟ ଜଣାଇଦେଲି ।

୧୨.୯.୧୯୫୭

କେଉଁଝରଗଡ଼ରେ ରହିଲି । କଣ୍ଡିଆପଡ଼ା ଗ୍ରାମଦାନ ଗାଁର ଜମିବଣ୍ଟନର ତାଲିକା ଓ ଦାନପତ୍ରଗୁଡ଼ିକ ଯାଞ୍ଚ କଲି । ଯାହା ତ୍ରୁଟି ଦେଖିଲି, ସ୍ୱତନ୍ତ୍ର କାଗଜରେ ନୋଟ କଲି ।

୧୪ ଓ ୧୫.୯.୧୯୫୭

ଓଡ଼ିଶାର ବେସରକାରୀ ମୌଳିକ ୩ଟି ବିଦ୍ୟାଳୟର ଗୁରୁଜୀମାନଙ୍କର ଆଲୋଚନାରେ ଯୋଗ ଦେଲି । ଗୁରୁଜୀମାନେ ଏ ଶିକ୍ଷାକୁ କିପରି ଜୀବନ୍ତ କରିବେ, ଛାତ୍ରମାନଙ୍କର ବିକାଶ ହେବ, ପ୍ରୋଜେକ୍ଟ ନେଇ କାର୍ଯ୍ୟ କରିବେ, ଆଦି ଆଲୋଚନା ହେଲା ।

କୋରାପୁଟ ଜିଲ୍ଲାରେ ମୋଟ ପୋଲିସଥାନା ସଂଖ୍ୟା : ୩୩

କୋରାପୁଟ ଜିଲ୍ଲାରେ ମୋଟ ଗ୍ରାମ ସଂଖ୍ୟା : ୬୫୪୧ ତା ୩୧.୮.୧୯୫୭ ସୁଦ୍ଧା

ଗ୍ରାମଦାନ : ୧,୪୭୩, ଏଥିରେ ଦାନପତ୍ର ୧୯,୯୮୧ ଜମି ମିଳିଛି ୨,୧୬,୧୧୦.୧୫ ଏକର । ବିତରଣ : ଗ୍ରାମସଂଖ୍ୟା : ୭୨୦, ପରିବାର ସଂଖ୍ୟା : ୧୪,୪୮୯ । ଏ ସବୁ ଗାଁର ଲୋକସଂଖ୍ୟା : ୯୩,୫୭୭; ଜମି ୧,୦୦,୮୪୩.୪ ଏକର । କୋରାପୁଟ ଜିଲ୍ଲାରେ ସର୍ବମୋଟ ଦାନପାତ୍ର ସଂଖ୍ୟା: ୩୪,୬୮୬ ଏକର, ସର୍ବମୋଟ ଦତ୍ତ ଜମି ପରିମାଣ : ୨,୭୪,୨୭୬.୩୧ ଏକର ।

୧୬ ଓ ୧୭ ସେପ୍ଟେମ୍ବର, ୧୯୫୭

କଟକରେ ମୁଁ ଥିଲି । କପା ବାଛିଲି ଓ ଧୂନେଇମୁଡ଼ିଆରେ ଭିଣି ବଳଣା କଲି – ମହୀଶୂର ଭୂଦାନ ଶିବିରକୁ ସଙ୍ଗରେ ନେବାକୁ । ତା ୧୬ ସନ୍ଧ୍ୟାରେ କଟକ ଟାଉନ ହଲ୍‌ରେ ଅନୁଷ୍ଠିତ ସାଂସ୍କୃତିକ ସଭାରେ – ପ୍ରଫେସର ଡକ୍ଟର ରାଧାନାଥ ରଥଙ୍କର ଭାଷଣ – "ଭାରତୀୟ

ସମାଜ ଓ ବିଜ୍ଞାନ'' ମୁଁ ଶୁଣିଲି । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସଭାପତି ହୋଇଥିଲେ । ବିଷୟଟି ସମସ୍ତଙ୍କର ଆଗ୍ରହ ଜନ୍ମାଇଥିଲା ।

୧୮.୯.୧୯୫୭

ଶ୍ରୀଯୁକ୍ତ ଗୋପବାବୁଙ୍କର ପ୍ରାୟ ୧୫ ଦିନ ହେଲା ଜ୍ୱର ପ୍ରତିଦିନ ହେଉଛି । ୯୯ ଡିଗ୍ରୀ ପର୍ଯ୍ୟନ୍ତ ଏବଂ ସକାଳକୁ ୯୫ ଡିଗ୍ରୀରୁ ୯୭ ଡିଗ୍ରୀ ମଧ୍ୟରେ ଉତ୍ତାପ ରହୁଛି । ସେ ଡାକ୍ତର କାଳୀପଦ ଚୌଧୁରୀଙ୍କର ବ୍ୟବସ୍ଥା ଅନୁସାରେ କୁଇନାଇନ୍ ମିକ୍ସଚର୍ ଓ ପାଲୁଡ୍ରିନ୍ ବଟିକା ଖାଉଛନ୍ତି । ୯ ତାରିଖରୁ ଭାତ ବନ୍ଦ ଅଛି । ଆଜି ପିଣ୍ଡାରେ ବୁଲାବୁଲି କରୁଛନ୍ତି ଓ ରବି ଠାକୁରଙ୍କର "ଗୀତ-ବିପନ'' ବହି ପଢୁଛନ୍ତି । ମାତ୍ର ସେ ବଡ଼ ଦୁର୍ବଳ ହୋଇଗଲେଣି । ଆଜି ରାତିରେ ଶ୍ରୀଯୁକ୍ତ ସାରଙ୍ଗଧର ଦାସ କଟକ ହସପିଟାଲରେ ଇହଧାମ ତ୍ୟାଗ କଲେ ।

୨୨.୯.୧୯୫୭

ମହୀଶୂରକୁ ଯାତ୍ରା । ଶ୍ରୀଯୁକ୍ତ ଈଶ୍ୱରଲାଲ ବ୍ୟାସ, ଶ୍ରୀଯୁକ୍ତ ରମା ଦେବୀ, ସର୍ବଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି..... କଟକରୁ 'ଜନତା' ଏକ୍ସପ୍ରେସ ଟ୍ରେନ୍‌ରେ ମହୀଶୂର ଅଭିମୁଖେ ବାହାରିଲୁ । ଖୋର୍ଦ୍ଧା ରୋଡ଼୍‌ରେ ଶ୍ରୀ ବୃନ୍ଦାବନ ପାତ୍ର ଓ ବିଜୟନଗରମ୍ ଠାରୁ ଶ୍ରୀ ରାଧାରତନ ଦାସ, ବାଙ୍ଗୀ ମହମ୍ମଦ ଓ ଶ୍ୟାମସୁନ୍ଦର ଦାସ ଆମ ସହ ସଙ୍ଗୀ ହେଲେ । ଉଆଲଟେୟାର୍, ବେଜବାଡ଼ା, ମାଦ୍ରାସ, ବାଙ୍ଗାଲୋର ସିଟି ଦେଇ ଆମ୍ଭେମାନେ ୨୪.୯ ଉପରଓଳି ୫ ଟାରେ ମହୀଶୂର ସିଟିରେ ପହଞ୍ଚିଲୁ । ଅଖିଳ ଭାରତ ସର୍ବସେବା ସଂଘ ଏହି ଶିବିର କରାଇଥିଲେ । ଶ୍ରୀମାନ୍ ନାରାୟଣ ଦେସାଇ ଏହାର ବ୍ୟବସ୍ଥାଭାର ନେଇଥିଲେ । ଶ୍ରୀଯୁକ୍ତ ନବବାବୁ ଓ ମନମୋହନ ଚୌଧୁରୀ ଆଗରୁ ଆସି ଏଲଉଆଲ୍ ଠାରେ ଗ୍ରାମଦାନ ପରିଷଦରେ ନେତୃମଣ୍ଡଳୀଙ୍କର ଆଲୋଚନାରେ ଯୋଗ ଦେଇଥିଲେ । ସେମାନେ ବିନୋବାଜୀଙ୍କ ସଙ୍ଗେ ସଙ୍ଗେ ଥିଲେ । ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ, ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହୁରୁ, ଶ୍ରୀ ଜୟପ୍ରକାଶ ନାରାୟଣ, କମ୍ୟୁନିଷ୍ଟ ପାର୍ଟି ପଲିଟିବୁରୋରେ ମେମ୍ବର ଜେନ୍ ମହମ୍ମଦ, ପ୍ରଜା ସମାଜବାଦୀର ସଭାପତି ଗଙ୍ଗାଶରଣ ସିଂହ, କେରଳର ମୁଖ୍ୟମନ୍ତ୍ରୀ ନମ୍ବୁଦ୍ରିପାଦ, ପ୍ରଭୃତି ସେଠାରେ ଯୋଗ ଦେଇଥିଲେ । ଗ୍ରାମଦାନ ଆନ୍ଦୋଳନକୁ ସମର୍ଥନ କରି ଏକ ମିଳିତ ବିବୃତି ସେମାନେ ଦେଇଛନ୍ତି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ନିମନ୍ତ୍ରିତ ହୋଇ ମଧ୍ୟ ଯୋଗ ଦେଇଥିଲେ ।

୨୫ରୁ ୨୭.୦୯.୧୯୫୭

ମହୀଶୂରଠାରେ ବିନୋବାଜୀଙ୍କର ଉପସ୍ଥିତିରେ ମହୀଶୂର ବିଶ୍ୱବିଦ୍ୟାଳୟ କୋଠାର ଏକ ଅଂଶରେ "ଭୂଦାନ ନିବେଦକ ଶିବିର''ର ଆଲୋଚନାମାନ ହୋଇଥିଲା । ଓଡ଼ିଶାରୁ ଆମ୍ଭେମାନେ ମୋଟରେ ପ୍ରାୟ ୨୦ ଜଣ ଯୋଗ ଦେଇଥିଲୁ । ଭାରତର ମୋଟ ୩୧୦

ଜିଲ୍ଲାରୁ ପ୍ରାୟ ୧୬୭ ଜିଲ୍ଲାରେ "ଜିଲ୍ଲା ଭୂଦାନ ନିବେଦକ'' ଅଛନ୍ତି । ଏମାନେ ଓ ବିଶେଷ ଭାବରେ ନିମନ୍ତ୍ରିତ ବ୍ୟକ୍ତି ମିଶି, ମୋଟରେ ପ୍ରାୟ ୪୫୦ ଜଣ ଯୋଗ ଦେଇଥିଲେ । ବିନୋବାଜୀ ଏଲଉଆଲରେ ନେତୃମଣ୍ଡଳୀଙ୍କର ମିଳିତ ବିବୃତିକୁ ସ୍ୱାଗତ ଜଣାଇ,ତାଙ୍କ ଭାଷଣରେ ସୂଚନା ଦେଇଥିଲେ । "ଶାନ୍ତିସେନା'' ଗଠନର ଆବଶ୍ୟକତା ଏବଂ ସେ ନିଜେ ଏହାର Supreme Command ହେବେ ବୋଲି ଇଚ୍ଛା ପ୍ରକାଶ କରିଥିଲେ । ଭୂଦାନ ସେବକମାନଙ୍କର ଜୀବନ, ଗ୍ରାମଦାନ ଓ ଭବିଷ୍ୟତ କାର୍ଯ୍ୟକ୍ରମ ଏହି ୩ଟି ବିଷୟରେ sectional discussions ହୋଇଥିଲା ।

ପ୍ରତିଦିନ ବିନୋବାଜୀ ଉପରଓଳି ସାଧାରଣ ସଭାରେ ପ୍ରତିଦିନ ଭାଷଣ ଦେଇଥିଲେ । ବିଜ୍ଞାନ ଓ ଆଧ୍ୟାତ୍ମିକ ଜ୍ଞାନକୁ ସେ ସମନ୍ୱୟ କରି ଦେଖାଇଥିଲେ । ଭାଷଣ ଶେଷରେ ୫ ମିନିଟ୍ ନୀରବ ପ୍ରାର୍ଥନା ହେଉଥିଲା । ସତ୍ୟ, ପ୍ରେମ ଓ କରୁଣା ଆଦି ଗୁଣର ନିଜଠାରେ ଅଭିବୃଦ୍ଧି ପାଇଁ ନୀରବରେ ପ୍ରାର୍ଥନା କରିବାକୁ ସେ କହିଥିଲେ । ସାଧାରଣ ସଭାରେ ପ୍ରାୟ ୬ ରୁ ୮ ହଜାର ପର୍ଯ୍ୟନ୍ତ ସ୍ତ୍ରୀ ପୁରୁଷ ଯୋଗ ଦେଉଥିଲେ । ସମସ୍ତେ ଖୁବ୍ ଶାନ୍ତିରେ ବିନା ଗୋଳମାଳରେ ଭାଷଣ ଶୁଣୁଥିଲେ ।

୨୮ ସକାଳ ୬ ରୁ ଘ ୬.୪୦ ମିନିଟ୍ ପର୍ଯ୍ୟନ୍ତ ବିନୋବାଜୀ ଓଡ଼ିଶାର ପ୍ରତିନିଧିମାନଙ୍କ ସହ କଥାବାର୍ତ୍ତା କରିଥିଲେ । ପ୍ରଦେଶର ଚାରିଆଡ଼େ ବ୍ୟାପକ ଗ୍ରାମଦାନ କିପରି ହେବ, ସେଥି ଉପରେ ସେ ଜୋର ଦେଇଥିଲେ ।

ସରକାରୀ ଭୂଦାନ କମିଟିର ପୁନର୍ଗଠନ ପାଇଁ ଆମେ ନାମ ଦେଲେ, ସେ ଓଡ଼ିଶା ସରକାରଙ୍କୁ ନାମଗୁଡ଼ିକ ସୁପାରିଶ କରିବେ । ମାତ୍ର ଆମ୍ଭେମାନେ ନାମଗୁଡ଼ିକ ସ୍ଥିର କରି ନ ଥିଲୁ । ତା ୨୭ ରାତିରେ ଆମ୍ଭେମାନେ ଓଡ଼ିଶାର କାର୍ଯ୍ୟ ବିଷୟରେ ଆଲୋଚନା କରିଥିଲୁ ମାତ୍ର ସେମିତି କିଛି ପକ୍କା ସିଦ୍ଧାନ୍ତ ହୋଇ ନ ଥିଲା । ତେବେ, "ଗ୍ରାମଦାନ ପରିଷଦ''ର ବିବୃତିକୁ ଚାରିଆଡ଼େ ପ୍ରଚାର କରାଯିବ ଏବଂ ସମସ୍ତଙ୍କର ସହଯୋଗ କିପରି ନେଇ କାର୍ଯ୍ୟର ପ୍ରସାର ହେବ, ତାହା ଚର୍ଚ୍ଚା ହୋଇଥିଲା ।

ତା ୨୮/୯ ଉପରଓଳି ୩ଟା ବେଳେ ଟ୍ରେନ୍‌ରେ ବୋଉ, ଦାଦା, ବୁଲୁବାବୁ, ମାସୀ, ନିର୍ମଳ, ରଙ୍ଗାଧର ବାବୁ, ଶକ୍ତିବାବୁ ମହୀଶୂରରୁ ବାହାରି ଆସିଲେ । ସଚ୍ଚିବାବୁ ଓ ମୁଁ ମହୀଶୂର ଟାଉନ ମଧ୍ୟରେ ନଜରବାଗଠାରେ ବିନୋବାଜୀଙ୍କର ପ୍ରାର୍ଥନା ସଭାରେ ଯୋଗ ଦେଲୁ ଏବଂ ତାଙ୍କର ରହଣିଜାଗାରେ "ବାଣୀବିଳାସ ବାଳିକା ହାଇସ୍କୁଲ''ରେ ୮ ଖଣ୍ଡ ଓଡ଼ିଆ ଗୀତାପ୍ରବଚନ ବହିରେ ବିନୋବାଜୀଙ୍କର ଦସ୍ତଖତ କରାଇଲୁ । ଶ୍ରୀମତୀ କୁସୁମ ଦେଶପାଣ୍ଡେ ଏହା କରାଇଦେଲେ ।

୨୮.୯ ସକାଳେ ବିନୋବାଜୀ "ଗ୍ରାମଦାନ ଓ ନଈତାଲୀମ" ବିଷୟରେ ଅଧଘଣ୍ଟାଏ କହିଥିଲେ। ଶିକ୍ଷାରେ "ପାବିତ୍ର୍ୟ" ଓ "ସ୍ୱାବଲମ୍ବନ" ବିଷୟରେ ସେ ବୁଝାଇଥିଲେ। ମାସୀମା, (ଶ୍ରୀଯୁକ୍ତା ଆଶାଦେବୀ) ଏବଂ ବୋଉ, ଫକୀର ମିଶ୍ର, ସଚ୍ଚିବାବୁ, ଆଦି ଆମ୍ଭେମାନେ ୫/୬ ଜଣ ଓଡ଼ିଶାରୁ ସେଠାରେ ଥିଲୁ।

୨୯.୯.୧୯୫୭

ମହୀଶୂର ସହରଠାରୁ ପ୍ରାୟ ୧୦ ମାଇଲ ଦୂରରେ ଅବସ୍ଥିତ ଏକ ପାହାଡ଼ ଉପରେ ଚାମୁଣ୍ଡୀ ଠାକୁରାଣୀଙ୍କୁ ଦର୍ଶନ କରିବାକୁ ଆମ୍ଭେମାନେ ବସ୍‌ରେ ଯାଇଥିଲୁ। ଏଠାରେ ପଣ୍ଡା ପଡ଼ିହାରୀଙ୍କର ଉପଦ୍ରବ ଆଦୌ ନାହିଁ। ପାହାଡ଼ ଉପରେ ରାଜାଙ୍କର ଏକ କୋଠି ଅଛି। ସେଠାରୁ ମହୀଶୂର ସହର, ଲଳିତା ଭବନ, ଆଦି ଦେଖାଯାଏ। ଆମ୍ଭେମାନେ ୬ ଜଣ ଟ୍ରେନ୍‌ରେ ଶ୍ରୀରଙ୍ଗପତନକୁ ଆସି, ସେଠା ଦୁର୍ଗର ଭଗ୍ନାବଶେଷ ଦେଖିଲୁ ଏବଂ ବିନୋବାଜୀଙ୍କର ପ୍ରାର୍ଥନା ସଭାରେ ଯୋଗ ଦେଲୁ।

୩୦.୯.୧୯୫୭

ଗତ ରାତିରେ ଟ୍ରେନ୍‌ରେ ଶ୍ରୀରଙ୍ଗପତନରୁ ବାଙ୍ଗାଲୋର ସିଟିକୁ ଆସିଥିଲୁ। ଦିନ ୩ଟା ବେଳର ଟ୍ରେନ୍‌ରେ ମାଦ୍ରାସ ଅଭିମୁଖେ ଆସିଲୁ। ମୋର ଚଷମା ହଜାଇଦେଲି।

୧.୧୦.୧୯୫୭

ସକାଳ ପ୍ରାୟ ୭ଟାରେ ମାଦ୍ରାସ ସେଣ୍ଟ୍ରୋଲ ଷ୍ଟେସନରେ ଆମ୍ଭେମାନେ ପହଞ୍ଚିଲୁ। ଶ୍ରୀ ସୁଧାଂଶୁଶେଖର ଦାସ, ବୃନ୍ଦାବନ ପାତ୍ର ଓ ଜୟକୃଷ୍ଣ ବିଶ୍ୱାଳ ଓ ଆମ୍ଭେମାନେ ୩ ଜଣ – ମୋଟ ୬ ଜଣ – ମାଦ୍ରାସ-ହାଇଦରାବାଦ ଜନତା ଏକ୍ସପ୍ରେସ ଟ୍ରେନ୍‌ରେ ଦିନ ୧୧ଟା ବେଳେ ମାଦ୍ରାସରୁ ବାହାରି, ରାତି ୧୧ଟା ବେଜବାଡ଼ାରେ ପହଞ୍ଚିଲୁ। ରାତି ୨ଟା ବେଳେ ବେଜବାଡ଼ାରୁ ହାଇଦରାବାଦ– ଉଆଲ୍‌ଟେୟାର୍ ଏକ୍ସପ୍ରେସ –ହାଓଡ଼ା ଜନତା ଟ୍ରେନ୍‌ରେ ଆମେ କଟକ ଅଭିମୁଖେ ବସିଲୁ। ଓଜନ ଯନ୍ତ୍ରରେ ମୋର ଓଜନ ନେଲି। 7 stones 12 lfs ଅର୍ଥାତ୍ ୯୬ ପାଉଣ୍ଡ ମାତ୍ର ମୋର ଓଜନ ହେଲା।

ଓଡ଼ିଶାରେ ଏଣିକି ଭୂଦାନ ଓ ଗ୍ରାମଦାନ କାର୍ଯ୍ୟ କିରୂପେ ଆମ୍ଭେମାନେ କରିବୁ, ତାହା ଟ୍ରେନ୍‌ରେ ଆଲୋଚନା କଲୁ। ସହରଗୁଡ଼ିକରେ ସଭା କରି "ଗ୍ରାମଦାନ ପରିଷଦ" ଏଲବାଲର ବିବୃତିକୁ ବୁଝାଇବା ପାଇଁ ଯତ୍ନ କରାଯାଉ ବୋଲି ଅନେକଙ୍କର ମତ। କୋରାପୁଟ ଜିଲ୍ଲାରେ "ନିର୍ମାଣ-କାର୍ଯ୍ୟ" କେମିତି ସମସ୍ତଙ୍କର ସହମତରେ ହେବ, ତାହା ମଧ୍ୟ ପଡ଼ିଲା।

ମୋର ହଜିଥିବା ଚଷମା କଟକ ଠିକଣାରେ ପଠାଇ ଦେବାକୁ ମୁଁ Bangalore

Transport Serviceର ମ୍ୟାନେଜରଙ୍କୁ ଖଣ୍ଡିଏ କାର୍ଡ଼ ଲେଖିଲି । *(ପ୍ରାୟ ଏକ ମାସ ପରେ ଏ ଚଷମା ମୁଁ ଉକ୍ତ ମ୍ୟାନେଜରଙ୍କଠାରୁ ରେଜିଷ୍ଟର୍ଡ଼ ପାର୍ସେଲରେ ପାଇଲି ।)* ଅକ୍ଟୋବର ୨, ଗାନ୍ଧୀ ଜୟନ୍ତୀ ଦିବସଟି ଆମ୍ଭେମାନେ ଟ୍ରେନ୍‌ରେ କଟାଇଲୁ ।

୩.୧୦.୧୯୫୭

ସକାଳେ ମୋର ଲୁଗାପଟା, ସରଞ୍ଜାମ, ମସାରି ସଫାକଲି । ହିସାବପତ୍ର ଲେଖି, ଜମା ଖର୍ଚ୍ଚ ଓ ବଳକା ମିଳାଇଲି । ଦେଖିଲି ଯେ ତା ୨୯.୯ ରୁ ୨.୧୦ ସୁଦ୍ଧା ଯାତ୍ରା ମଧ୍ୟରେ ଟ. *୬.୬୯* ନୂଆ ପଇସା କୁଆଡ଼େ ହଜିଲା । ଯେତେ ଭାବିଲି ଏତକର ଖର୍ଚ୍ଚ ମନେ ପଡ଼ିଲା ନାହିଁ । କଟକରୁ ମହୀଶୂରକୁ ଯିବା ଓ ଫେରି ଆସିବାର ମୋଟ ଖର୍ଚ୍ଚ ୫୪ ଟଙ୍କା ୩ ପାହୁଲା + .୯୦ ନୂଆ ପଇସା ହେଲା ।

ମହୀଶୂର ରାଜ୍ୟର ୟେଲବାଲଠାରେ ତା ୨୧ ଓ ୨୨.୯.୧୯୫୭ରେ ଭାରତର ବିଭିନ୍ନ ରାଜନୈତିକ ଦଳର ନେତାମାନେ ଯେଉଁ ଗ୍ରାମଦାନ ପରିଷଦରେ ବିନୋବାଜୀଙ୍କ ପାଖରେ ଏକାଠି ହୋଇଥିଲେ, ତାହାର ବିବୃତିର ନକଲ -

"At the invitation of the Sarva Seva Sangh a Gramdan Parishad was held on September 21 and 22, 1957 at Yelwal in Mysore State. The Rashtrapati graced the conference with his presence. Other invitees, from all over India, deeply interested in this movement, were also present.

Acharya Vinobaji explained to the conference how he came to adopt the non-violent technique for the solution of socio-economic probelms, more especially, the land problem. Beginning with voluntary land gifts, the movement developed and reached the stage of gramdan. This is the gift of entire villages to the village community. More than 3000 villages have thus far been voluntarily offered as Gramdan to the village community by the people concerned, who have renounced their private ownership in land.

The participants in the Conference welcomed this Gramdan Movement and expressed their high appreciation of the objectives underlying it. This would lead to a fuller development of co-operative life and effort in the villages concerned and would also result in

the economic betterment of the people of these villages and all round progress and development. It would further create the psychological climate all over India for the solution of the land problem and furtherance of co-operative life. The essential feature of this movement was the non-violent technique adapted and its voluntary character. Thus the ethical approach was combined with practical economic advantages and the development of a social order based on cooperation and self-help. Such a movement deserves every kind of help and encouragement.

The members of the Central and State governments who were present, while expressing their full appreciation of the Gramdan movement and their desire to help it, pointed out that the governments concerned would have to proceed with their schemes of land reforms which were based on the abolition of all intermediate interests in land. The limitation of holdings, and the promotion of the cooperative movement in all its phases with the consent of the people concerned. This Governmental approach was not in conflict with the Gramdan movement and would indeed be helped by it.

It was further pointed out that the closest cooperation was desirable between the Community Development movement and the Gramdan movement.

At the conclusion of the two days deliberations, the conference expresses its high appreciation of Vinobaji's Mission and his efforts to solve national and social problems by non-violent and cooperative methods and appeals to all sections of the Indian people to give this mission their enthusiastic support."

Mysore
Sept. 22,1957.

Sd/- S.R.Dhadda
Joint Secretary
Akhil Bharat Sarva Seva Sangh.

୭.୧୦.୧୯୫୭

ମୋର ଦାନ୍ତର ମାଢ଼ୀ "ସରସ'' ହୋଇଥିବାରୁ ଜୋରରେ ଆଙ୍ଗୁଳିରେ ବା ଦାନ୍ତକାଠିରେ ଘସିଦେଲେ ରକ୍ତ ବାହାରେ । ମାଢ଼ୀରେ କୌଣସି ଘା ନ ଥିଲା ବା ନାହିଁ । କାଲି ସାଧୁବାବୁଙ୍କ ଘରେ ଭାତ ଖାଇବାବେଳେ କିଛି ରାଶିଗୁଣ୍ଡ ଓ ଟିକିଏ ଛେନା ଖାଇଥିବାରୁ କି କଅଣ, ଆଜି ଦାନ୍ତମୂଳର ମାଢ଼ୀରୁ ସେପରି ରକ୍ତ ବାହାରିଲା ନାହିଁ । ଭିଟାମିନ୍ ସି'ର ଅଭାବରୁ ତାହା ହେଉଥିଲା କି ?

ଉପରଓଳି ବାଲୁବଜାରରେ ବହି, ଖାତା ବନ୍ଧାଇ ଦୋକାନ (ପୂର୍ବେ ଲବଣ ସତ୍ୟାଗ୍ରହ ବେଳର କଂଗ୍ରେସର "ବାନର ସେନା'') ଶ୍ରୀ ପୁରୁଷୋତ୍ତମ ସିଂହ କିପରି ବ୍ୟବସାୟସୂତ୍ରରେ ସର୍ବୋଦୟ ଓ ଭୂଦାନ ବହି ସେ ବିକ୍ରି କରିପାରିବେ, ତାହା କହିଲେ ।

୮.୧୦.୧୯୫୭

ସକାଳେ ଶ୍ରୀ କାହ୍ନୁଚରଣ ଦାସ (ଘର ବାଗଲପୁର)ଙ୍କ ସହ ତାଙ୍କ ବସାରେ ଦେଖା କଲି ଏବଂ ତାଙ୍କ ବସାରେ ମୁଁ ଗାଧୋଇ ଜଳଖିଆ କଲି ।

ସରଳପାଠ – ୨ୟ ଭାଗ ବହିର ରୟାଲ୍‌ଟି ରୂପେ ଶ୍ରୀ ଉମାଚରଣ ମହାନ୍ତିଙ୍କ ଠାରୁ ମୁଁ ଟ. ୫୦/- ପାଇଲି । ଗ୍ରାମସେବକ ପ୍ରେସକୁ ଯାଇ, ୟଲବାଲ ଗ୍ରାମଦାନ ପରିଷଦର ଇଂରାଜୀରେ ବିବୃତ୍ତିର ନକଲ ଟାଇପ କଲି ।

ଦିନ ଟ୍ରେନ୍‌ରେ ବୋଉଙ୍କ ସହ କଟକରୁ ଯାଜପୁର ରୋଡ଼୍‌କୁ ଯାଇ, କେଉଁଝରଗଡ଼୍‌କୁ ଗଲି ।

୧୦.୧୦.୧୯୫୭

ସକାଳେ ମୁଁ ୭ଟାରେ କଣ୍ଡିଆପଡ଼ାରେ ପହଞ୍ଚିଲି । ବୋଉ କେଉଁଝରଗଡ଼ରୁ ଆସି କଣ୍ଡିଆପଡ଼ାରେ ୧୨ଟାରେ ପହଞ୍ଚିଲେ । କେଉଁଝର ଜିଲ୍ଲାରେ ଗ୍ରାମଦାନ ହୋଇଥିବା ଗାଁଗୁଡ଼ିକର ନାମ : ଯମୁନାପଶି ପଞ୍ଚାୟତ (୧) କଣ୍ଡିଆପଡ଼ା (୨) ଗୋଚିପୋଖରୀ (୩) ଯମୁନାପଶି (୪) ମାନପୁର (୫) ପଦ୍ମପୁର୍ (୬) ପାଟଧନୁର୍ଜୟପୁର (୭) କୋଡ଼ଖମଣ (୮) ବାରଡ଼ାଙ୍ଗୁଆ (୯) ଜାମୁନାଳିଆ (୧୦) ବରଡ଼ିପଶି (୧୧) ପଦ୍ମକେଶରପୁର । ଡିମ୍ବ ପଞ୍ଚାୟତ (୧) ବଳିଆବେଡ଼ା (୨) ତାଳପଦା (୩) ବାସୁଦେବପୁର (୪) ଦୁରିଡ଼ିପାଳ (୫) ପୋଡାଡ଼ିହ (୬) ଜଗନ୍ନାଥପୁର (୭) ଛେମୁଣ୍ଡିଗିରି (୮) ଦେଓବନ୍ଧ (୯) ବାରଖମ୍ବା ବାଁସଳି ପଞ୍ଚାୟତ (୧) ତାଳପଦା ।

୧୦.୧୦ ରାତିରେ କଣ୍ଡିଆପଡ଼ା ଗାଁ ଭିତରେ ସଭା ହେଲା । ମହୀଶୂର ନେତୃ

ସମ୍ମିଳନୀ ଓ ଭୂଦାନ ଶିବିରର ସାର କଥା ଆମ୍ଭେମାନେ ଲୋକଙ୍କୁ କହିଲୁ । ଏହି ଗାଁରେ ସୂତାକଟା ଶୀଘ୍ର ଚଳାଇବା ପାଇଁ ଗ୍ରାମବାସୀମାନେ ସ୍ଥିର କଲେ । ଜଳସେଚନର କି ବ୍ୟବସ୍ଥା ହୋଇପାରେ, ମଧ୍ୟ ଚର୍ଚ୍ଚା ହେଲା ।

୧୧.୧୦.୧୯୫୭

ସକାଳ ଓଳି କଣ୍ଟିଆପଡ଼ାର ପଧାନ ଶ୍ରୀ ରଘୁନାଥ ନାୟକ ଓ ଗ୍ରାମସଭାର ସଭାପତି, ପଞ୍ଚାୟତ ମେମ୍ବର ଶ୍ରୀ ସୁଦର୍ଶନ ନାୟକ, ଗ୍ରାମସଭାର କୋଷାଧ୍ୟକ୍ଷ, ଗ୍ରାମସଭାର ସଂପାଦକ ଶ୍ରୀ ଅନିରୁଦ୍ଧ ନାୟକ । ଶ୍ରୀଯୁକ୍ତ ଗୁଣନିଧିବାବୁ ଓ ବୋଉଙ୍କ ସଙ୍ଗରେ ଯାଇ, ଗ୍ରାମର ବନ୍ଧ, ଚୁଆମଣ୍ଡଳୀ ଝରେ, ମାହାରିଆ ନାଳ, ଆଦି ଦେଖିଲି । ବନ୍ଧ ବା ପୋଖରୀକୁ ଅଧିକ ଗହୀର କରି ଖୋଳାଯାଇପାରେ । ଚୁଆ ମଣ୍ଡଳୀ ଝରକୁ ଖୋଳି ବଡ଼ ବାମ୍ପୀ କରାଯାଇପାରେ । ନାଳକୁ ପଥରରେ ବାନ୍ଧି ଜଳଭଣ୍ଡାର କରାଯାଇପାରେ । ଏହା ୫୫୦ ଫୁଟ ଲମ୍ବ ହେବ ।

ପଧାନଙ୍କ ଘରେ ଶ୍ରୀମତୀ ସଚ୍ଚି ପଣ୍ଡା ଓ ମୁଁ ଭାତ ଖାଇଲୁ । ଅନ୍ୟମାନେ ଅନେକ ଦିନ ହେଲା ଏଠାରେ ଭାତ ଖାଇବାକୁ ନ ପାଇ ଚୂଡ଼ା, ମୁଢ଼ି, ଛତୁ ଖାଇ.ରହୁଛନ୍ତି । ସନ୍ଧ୍ୟାବେଳେ ବୋଉ, କୃଷ୍ଣଚନ୍ଦ୍ର ଜେନା, କଣ୍ଟିଆପଡ଼ାର ପଞ୍ଚାୟତ-ମେମ୍ବର ସୁଦର୍ଶନ ନାୟକ ଓ ମୁଁ ଗୋଡ଼ିପୋଖରୀ ଗ୍ରାମକୁ ଗଲୁ । ଏହି ଗୋଡ଼ିପୋଖରୀ ଗ୍ରାମଦାନ ହୋଇଛି ମାତ୍ର ଜମିର ପୁନର୍ବଣ୍ଟନ ହୋଇନାହିଁ । ଗ୍ରାମବାସୀ ଅନେକ ଲୋକ ଆସିଲେ । ଶ୍ରୀ ମୋହନ ନାୟକ ସେମାନଙ୍କର ମୁଖପାତ୍ର ହୋଇ, ଓଡ଼ିଆ ଭାଗବତ, ଆଦିରୁ ପଦ ଉଦ୍ଧାର କରି, ବେଶ୍ ବାଗେଇ କଥାବାର୍ତ୍ତା କଲେ । ସରକାରଙ୍କ ଠାରୁ ଆମ୍ଭେମାନେ ତିରିଶ ହଜାର ଟଙ୍କା "ପୁନର୍ନିର୍ମାଣ'' କାର୍ଯ୍ୟ ପାଇଁ ଏ ଗ୍ରାମକୁ ଆଣିଦେଲେ, ଗ୍ରାମବାସୀମାନେ ନିଜର ଯୋଜନା ଅନୁସାରେ ସବୁ କାମ କରିବେ ବୋଲି କହିଲେ । ଆମେ ଆଗେ ଜମିବଣ୍ଟନ ହେବ କହିବାରୁ, ସେମାନଙ୍କ ମଧ୍ୟରୁ ଜଣେ ୨ ଜଣ କହିଲେ ଯେ ଆଗ ୩୦ ହଜାର ଟଙ୍କା ଆଣିଦିଅ, ପରେ ବଣ୍ଟନ ହେବ । ଏହି ସର୍ତ୍ତର ଅନୁଚିତତା ବୋଉ ସେମାନଙ୍କୁ ବୁଝାଇବାକୁ ଯତ୍ନ କଲେ । ଏ ଲୋକେ "ଗ୍ରାମଦାନ''ର ମୂଳ ବିଚାର ବୁଝିନାହାନ୍ତି, ମୋତେ ଜଣାପଡ଼ିଲା ।

୧୩.୧୦.୧୯୫୭

ସୁଦର୍ଶନ ନାୟକଙ୍କ ବାପା କହୁଥିଲେ ଓ କାର୍ଯ୍ୟରେ ପାଳନ କରୁଥିଲେ ଯେ ସେମାନେ ମଧ୍ୟ ମୂଲିଆମାନଙ୍କ ସହ କାମ କରିବେ, ଶରୀରଶ୍ରମର କଷ୍ଟ ସେମାନଙ୍କ ସହ ଅନୁଭବ କରିବେ ଏବଂ ନିଜେ ଯାହା ଖାଇବେ ତାହା ମଧ୍ୟ ମୂଲିଆମାନଙ୍କୁ ଦେବେ । ଖାଦ୍ୟରେ ପକ୍ଷପାତ ରହିବ ନାହିଁ ।

ରାତିରେ ଗାଁରେ ଏକ ବୈଠକ ହେଲା । ସଂପୃକ୍ତ ସରକାରୀ ବିଭାଗଗୁଡ଼ିକୁ ଦରଖାସ୍ତ ଦେବା, ଡ଼ାକଘରେ ଏଠାର ଗ୍ରାମସଭା ନାମରେ ପାସବୁକ୍ ଖୋଲିବା ଆଦି କଥା ଗ୍ରାମବାସୀଙ୍କୁ ମୁଁ ବୁଝାଇଦେଲି ।

୧୬.୧୦.୧୯୫୭

ସକାଳେ ଭାରୀ କୁହୁଡ଼ି ହୋଇଥିଲା, ୫୦/୬୦ ହାତ ଦୂରରୁ ଭଲ ଦେଖାଯାଉ ନ ଥିଲା । ଦେଉଳିଆ ସିଝୁଗଛରେ ଏଠାରେ ଅନେକ କଢ଼ ହୋଇଥିଲା । ଏହି କଢ଼ ଓ ଫୁଲ ବର୍ଷାର ସୂଚନା । ବୋଉ ଓ ମୁଁ କଣ୍ଡିଆପଡ଼ାରୁ ଚାଲିକରି କେଉଁଝରଗଡ଼କୁ ଆସିଲୁ । ବାଟରେ ବେଲଦାଠାରେ ବର୍ଷା ଅଧଘଣ୍ଟାଏ ହେଲା । କଣ୍ଡିଆପଡ଼ାରେ ଆମକୁ ଏକ ଅଣାରେ ଭାତ ଖାଇବାକୁ ମିଳୁ ନ ଥିବାରୁ, ଆର ଦିନରେ ଆମେ ୨ ବେଳା ଭାତ ଖାଇଲୁ ।

୧୯.ରୁ ୨୧.୧୦.୧୯୫୭

ସର୍ବସେବା ସଂଘର ସଂପାଦକ ଶ୍ରୀ ଅନନ୍ତ ବାସୁଦେବ ସହସ୍ରବୁଦ୍ଧେ (ଅର୍ଣ୍ଣାସାହେବ) କଟକରେ ପହଞ୍ଚ ନ ଥିବାରୁ, କୋରାପୁଟ "ନିର୍ମାଣସମିତି''ର ଆଲୋଚନା .. ଆଜି ଚାଲିଲା । ଶ୍ରୀ ବାବୁଲାଲ ମିତ୍ତଲ ସଭାପତିତ୍ୱ କଲେ । ମୁଁ ବିଶେଷ ନିମନ୍ତ୍ରଣରେ ଏଠାରେ ଉପସ୍ଥିତ ଥିଲି । ଅର୍ଣ୍ଣାସାହେବଙ୍କର ରିପୋର୍ଟ (ବର୍ତ୍ତମାନ ପ୍ରାୟ ୨୫୭ ଜଣ ନିର୍ମାଣକର୍ମୀଙ୍କ ମଧ୍ୟରୁ ପ୍ରାୟ ୨୦୦ ଜଣଙ୍କର ଟ୍ରେନିଂ ବ୍ୟବସ୍ଥା କଅଣ ଓ କିପରି ହେବ) ନିମାଇଁଚରଣ ସାହୁଙ୍କର ସୂଚନାମାନ ଓ ଶ୍ରୀ ମନମୋହନ ଚୌଧୁରୀଙ୍କର ସୂଚନାମାନ ପଢ଼ାଗଲା । କୋରାପୁଟ ଜିଲ୍ଲାରେ ପ୍ରଧାନତଃ ୨ ପ୍ରକାରର ବିଚାର ମୁଖ୍ୟକର୍ମୀମାନଙ୍କ ମଧ୍ୟରେ ଗତ ଦେଢ଼ ବା ୨ ବର୍ଷ ମଧ୍ୟରେ ଦେଖାଯାଉଛି :- (୧) ଶ୍ରୀ ବିଶ୍ୱାନଥ ପଟ୍ଟନାୟକ, ଶ୍ରୀ ରାଧାରତନ ଦାସ ଓ ଶ୍ରୀ ନିମାଇଁ ଚରଣ ସାହୁଙ୍କର ମତ ଯେ ଆଦିବାସୀ ଲୋକେ ଯେପରି ଅର୍ଥନୀତିକ ଅବସ୍ଥା ଦୃଷ୍ଟିରୁ ..(ଆଦିମ) ଢ଼ଙ୍ଗରେ ଅଛନ୍ତି, ସେହିପରି ଥାଇ ଯେତିକି ସମ୍ଭବ ସେତିକି "ନିର୍ମାଣକାମ'' କରାଯାଉ । ଅବଶ୍ୟ ଏଥିରେ ଅନ୍ୟ ପ୍ରଦେଶରୁ ଆସିଥିବା କର୍ମୀଙ୍କର superiority, ସେମାନଙ୍କର ଜୀବନଯାପନରେ କେତେକ ମୂଳ ସର୍ବୋଦୟ ବିଚାରର ଅଭ୍ୟାସର ଅଭାବ ଆଦି ବିଷୟ ଯୋଡ଼ିରହିଛି । (୨) ଶ୍ରୀ ଅଲେଖ ପାତ୍ର, ବ୍ରଜସୁନ୍ଦର ଦାସ, ଶ୍ୟାମସୁନ୍ଦର ଦାସ, ଆଦି ଶ୍ରୀ ଅର୍ଣ୍ଣାସାହେବଙ୍କର ବଡ଼ ବଡ଼ ଯୋଜନା ଅନୁସାରେ "deficit economy'' area ରେ ଗୁଡ଼ାଏ ଟଙ୍କା ଖର୍ଚ୍ଚ କରି technological development ଆଦି ଦ୍ୱାରା ଶୀଘ୍ର ଶୀଘ୍ର ଆଦିବାସୀମାନଙ୍କର ଆର୍ଥିକ ଉନ୍ନତି କରିଦେବାକୁ ସମର୍ଥନ । ଅର୍ଣ୍ଣାସାହେବଙ୍କର ମତ, ସାକ୍ଷାତ ପରିସ୍ଥିତିର ତାଡ଼ନାରେ କେତେକ ବଦଳିଥିଲେ ସୁଦ୍ଧା ପ୍ରଥମୋକ୍ତ ବ୍ୟକ୍ତିମାନେ ତାଙ୍କର ମତ ଓ କାର୍ଯ୍ୟଧାରାରେ ଏକମତ ହେଉନାହାନ୍ତି । ଏହି

ଦ୍ୱନ୍ଦ୍ୱହେତୁ କୋରାପୁଟ କାର୍ଯ୍ୟ ଅଚଳ ଅବସ୍ଥାକୁ ଆସିଛି । ଏହି ନୀତିଗତ ମତର ଅନୈକ୍ୟ ଯୋଗୁଁ ପରସ୍ପର ବୈମନସ୍ୟ ବହୁତ ବଢ଼ିଗଲାଣି । ହୃଦୟରେ କପଟତା ରଖି, କଥାବାର୍ତ୍ତା ଚାଲିଥିବା ପରି ମୋତେ ବୋଧ ହେଲା ।

କୋରାପୁଟ ଜିଲ୍ଲାର ଗୋଡ଼ିବାଲି ଗ୍ରାମରେ ୬ ଜଣ ଲୋକ ଅନାହାରରେ ମରିଛନ୍ତି ବୋଲି ବିଶ୍ୱନାଥ ପଟ୍ଟନାୟକ ଖବରକାଗଜରେ ବିବୃତି ଦେଇଛନ୍ତି । ଏହି ମୃତ୍ୟୁ ପୂର୍ବରୁ ଆମ୍ଭେମାନେ, ଭୂଦାନ ସେବକମାନେ, ସେ ଅଞ୍ଚଳର ନିର୍ମାଣକର୍ମୀମାନେ ଲୋକଙ୍କୁ କାର୍ଯ୍ୟ ଯୋଗାଇ ଓ ତତ୍‌ପରିବର୍ତ୍ତରେ ମୂଲମଜୁରୀ ଦେଇ (ଧାନଚାଉଳ ଆକାରରେ) କେତେ ମାସ ବଞ୍ଚାଇବାକୁ ଯତ୍ନ କରିଛୁ କି ? ମୁଁ, ଶ୍ରୀଯୁକ୍ତ ନବବାବୁ, ଆଦି ପଚାରିଲୁ । ଏ ସବୁ ତଥ୍ୟ ଦେଇ, ବିବୃତି ଦେବା ବା ପ୍ରତିବାଦ ପ୍ରକାଶ କରିବା ବିଶ୍ୱନାଥ ବାବୁଙ୍କର ଉଚିତ ଅଟେ ।

ଅର୍ଣ୍ଣାସାହେବ ତା ୨୦ରେ ଆସିଲେ । ନିର୍ମାଣସମିତିର ବୈଠକ ତା ୨୦ ଓ ୨୧ରେ ହେଲା । ତା ୨୧ରେ ଉତ୍କଳ ନବଜୀବନ ମଣ୍ଡଳର ମଧ୍ୟ ବୈଠକ ହେଲା । ବିଶେଷ ନିମନ୍ତ୍ରଣରେ ମୁଁ ଉପସ୍ଥିତ ଥିଲି । ମାତ୍ର ଆଲୋଚନାରେ ଭାଗ ନେଇ ନ ଥିଲି ।

ଶ୍ରୀ ବୁଲୁବାବୁ ତା ୨୧ ମଧ୍ୟାହ୍ନରେ ବରୀ ଗଲେ । ଉପରଓଳି ସରକାରୀ ଭୂଦାନ ସମିତିର ପୁନର୍ଗଠନ କଥା ସର୍ବଶ୍ରୀ ନବବାବୁ, ସଚ୍ଚିବାବୁ, ବ୍ୟାସଜୀ, ରମାଦେବୀ, ମାଳତୀ ଦେବୀ, ବିଶ୍ୱନାଥ ପଟ୍ଟନାୟକ, ରାଧାରତନ ଦାସ, ନିମାଇଁ ସାହୁ, ଆଦି ଥାଇ ପଡ଼ିଲା । ମୁଁ କହିଲି ଯେ ଦାୟିତ୍ୱ ନେଇ ଜିଲ୍ଲା ନିବେଦକମାନେ ଭୂଦାନ ଆକ୍ଟ ଅନୁସାରେ କାଗଜପତ୍ର କାମ କରାଇବେ ତ ଏ ସମିତିରେ ମୁଁ ରହିପାରେ, ନୋହିଲେ ସରକାରଙ୍କଠାରେ ଅପଦସ୍ଥ ହେବାକୁ ମୁଁ ରହିବି ନାହିଁ । ଦାୟିତ୍ୱ ନେବା କଥାରେ ସମସ୍ତେ ରାଜୀ ହେବାରୁ, ମୁଁ ରହିବାକୁ ମତ ଦେଲି । ଜମିବଣ୍ଟନ ପାଇଁ କାଗଜପତ୍ର ଠିକ୍ କରିବାକୁ ସରକାରୀ ଗ୍ରାଣ୍ଟରେ ଅଫିସ-ସହକାରୀ, ଅମିନ, ଆଦି ରଖିବା ଉଚିତ ହେବ ବୋଲି ସମସ୍ତେ ମତ ବ୍ୟକ୍ତ କରିବାରୁ, ସରକାରଙ୍କୁ ବଜେଟ୍ ବିଷୟରେ ତାଗିଦ୍ କରିବା ଠିକ୍ ହେଲା ।

ଅବଶ୍ୟ, ଏ ସବୁ ବିଷୟରେ ମୁଁ ଶ୍ରୀଯୁକ୍ତ ଗୋପବାବୁଙ୍କର ମତାମତ ଆଗେ ନେବି ।

ତା ୨୧ ରାତିରେ ହରମୋହନ ପଟ୍ଟନାୟକଙ୍କ ବସାରେ କଲେଜ ଛାତ୍ର ୮/୧୦ ଜଣ ନବବାବୁଙ୍କ ସହ "ଗ୍ରାମଦାନ", ଗ୍ରାମ ଅର୍ଥନୀତି ବିଷୟରେ ଆଲୋଚନା କଲେ । କବି ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅଧ୍ୟାପକ ମନ୍ମଥନାଥ ଦାସ, ସଚ୍ଚିଦାନନ୍ଦ ମହାନ୍ତି, ରମାଦେବୀ, ମାଳତୀ ଦେବୀ, ମୁଁ ଉପସ୍ଥିତ ଥିଲୁ । ରାତିରେ ହରମୋହନ ବାବୁଙ୍କର ବସାରେ ଆମ୍ଭେମାନେ ସମସ୍ତେ ଖାଇଲୁ ।

୨୨.୧୦.୧୯୫୭

ଆଜି ମଧ୍ୟାହ୍ନଭୋଜନ ସାରି, ଶ୍ରୀଯୁକ୍ତ ନବବାବୁଙ୍କ ସହ ଜୀପ୍‌ରେ କଟକରୁ ଭୁବନେଶ୍ୱର ଗଲି । ମିତ୍ତଲଜୀ, ରତନ, ପ୍ରଫୁଲ୍ଲ ସାହୁ ମଧ୍ୟ ଆମ ସହ ଥିଲେ । ଅର୍ଣ୍ଣାସାହେବଙ୍କୁ ସରକାରଙ୍କର ଅତିଥିଶାଳାରେ ଦେଖା କଲୁ । ସେ ଚୀଫ୍ ସେକ୍ରେଟାରୀ ଆଦିଙ୍କ ସହ କଥାବାର୍ତ୍ତା ଆଗରୁ ହୋଇଥିଲେ । ଦାନପତ୍ର, ବଣ୍ଟନତାଲିକାର କାମ ସରକାର ତତ୍ପରତା ସହ କରାଇବେ ବୋଲି ଶୁଣିଲୁ । ଆମ୍ଭେମାନେ ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କୁ ନାଗେଶ୍ୱରଟାଙ୍ଗୀରେ ଦେଖା କଲୁ । ଭୂଦାନ ସମିତିର ପୁନର୍ଗଠନ କଥା ଏବଂ ଗତ ୨/୩ ଦିନର ସାର କଥା ନବବାବୁ କହିଲେ ।

୨୩.୧୦.୧୯୫୭

ସକାଳ ଓଳି ମୁଁ ସୁରେଶ ରାମଭାଇଙ୍କର ତା ୧୫ ଓ ୧୬.୧୦ର ପତ୍ର ଅନୁସାରେ ଓଡ଼ିଶାରେ ଭୂଦାନ ଓ ଗ୍ରାମଦାନର ଅଗ୍ରଗତି ସମ୍ବନ୍ଧୀୟ ତଥ୍ୟ ଏବଂ ବିନୋବାଜୀଙ୍କର ପଦଯାତ୍ରାର କେତେକ ତାରିଖ ପୁରୁଣା କାଗଜପତ୍ର ଦେଖି ଠିକ୍ କଲି ।

ତା ୨୬.୧.୧୯୫୫ ଠାରୁ ୩୦.୯.୧୯୫୫ ମସିହା ସୁଦ୍ଧା ବିନୋବାଜୀ ଓଡ଼ିଶାର ବାଲେଶ୍ୱର, ମୟୂରଭଞ୍ଜ, କଟକ, ପୁରୀ, ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ମୋଟରେ ୨୧୪ ଟି ଜାଗାରେ ରହିଥିଲେ ଏବଂ ମୋଟରେ ୧୪୬୪ ମାଇଲ ୬ ଫର୍ଲଙ୍ଗ ପଦଯାତ୍ରା କରିଥିଲେ । ତା ୧୨ରୁ ତା ୨୧ ଫେବୃଆରୀ, ୫୫ ପର୍ଯ୍ୟନ୍ତ ସେ ପେଟମରା ରୋଗରେ ବଡ଼ କଷ୍ଟ ପାଇଥିଲେ ମାତ୍ର ତାଙ୍କର ଯାତ୍ରା ବନ୍ଦ ନ ଥିଲା ।

ରାତିରେ ବିଶ୍ୱନାଥ ପଟ୍ଟନାୟକ କଟକରୁ କୋରାପୁଟ ଜିଲ୍ଲା ଅଭିମୁଖେ ଗଲେ । ସେ ସବୁ କଥା ବିଚାର କରି, ବିଜ୍ଞାନର ସାଧାରଣ ଜୀବନରେ ଆଗକୁ ପ୍ରୟୋଗ ଅନିବାର୍ଯ୍ୟ ବୋଲି ହୃଦୟଙ୍ଗମ କରି, କାର୍ଯ୍ୟରେ ଅନ୍ୟମାନଙ୍କୁ ପ୍ରେରଣା ଦିଅନ୍ତୁ - ମୁଁ କହିଲି । 'ନୋହିଲେ, କୋରାପୁଟ ଜିଲ୍ଲାର ଆଦିବାସୀ ଲୋକଙ୍କର ଖାଦ୍ୟବସ୍ତ୍ରର ଅଭାବ ମୋଚନ ହେବ ନାହିଁ । ଏହିପରି primitive ଅବସ୍ଥାରେ ସେମାନେ ଥିବେ; ସରକାର ସେମାନଙ୍କର ସ୍ଥାୟୀ ଉନ୍ନତି ଦିଗରେ ଏବଂ ଅନାଟନ, ଦୁର୍ଭିକ୍ଷ କାଳରେ କିପରି ସେମାନଙ୍କୁ ବଞ୍ଚାଇ ପାରିବେ ? ଶ୍ରୀଯୁକ୍ତ ନବବାବୁ ଏହି point ଖୁବ୍ ଜୋର ଦେଇ ବିଶ୍ୱନାଥ ବାବୁଙ୍କୁ ୨/୩ ଦିନ ପୂର୍ବେ କହିଥିଲେ । ସବୁବେଳେ relief ବ୍ୟବସ୍ଥା ପାଇଁ ସେ ମନ ନ ବଳାଇ, ଆଦିବାସୀଙ୍କର ସ୍ଥାୟୀ ଉନ୍ନତି ଓ ଉତ୍ପାଦନଶକ୍ତି ବଢ଼ାଇବାକୁ ସମସ୍ତେ ଯତ୍ନ କରିବା ଉଚିତ । କୋରାପୁଟ ଜିଲ୍ଲାରେ ନିର୍ମାଣ କର୍ମୀମାନେ କିପରି ମିଳିମିଶି କାମ କରିବେ, ତାହା ମିତ୍ତଲଜୀ ମୋତେ କହିଲେ ।

୨୫.୧୦.୧୯୫୭

ଭୋର ଦୁଇଟା ରେ ବୃନ୍ଦାବନ ଚନ୍ଦ୍ର ଜେନା ଓ ମୁଁ କଟକରୁ ହରିଦାସପୁରକୁ ଟ୍ରେନ୍‌ରେ

ଯାଇ, ସେଠାରୁ ଚାଲିକରି ବରୀ ଗଲୁ । ବନ୍ନୁ, ବାବୁଲି, ଚୁନୀ ଶ୍ରୀଯୁକ୍ତ ଗୋପବାବୁଙ୍କଠାରେ ଏ କେତେଦିନ ହେଲା ରହୁଛନ୍ତି । ମୁଁ ସେଠାରେ ରହିଲି ।

୨୬.୧୦.୧୯୫୭

ବରୀରେ ବୁଲୁବାବୁଙ୍କର ପୋଖରୀ ହୁଡ଼ା ଉପରେ ସକାଳ ୭ ରୁ ୭.୩୦ ମଧ୍ୟରେ ବନ୍ନୁ (କର୍ମଦେବ ମହାରଣା)ଙ୍କୁ ଗୋଟିଏ ସାପ ଲାଗଲାଗ ଦୁଇଥର କାମୁଡ଼ିଲା । ବନ୍ନୁ ଘାସ କାଟିବାକୁ ଯାଉଥିଲା । ଡାକ୍ତର କାଳୀପଦ ଚୌଧୁରୀ ରାମଚନ୍ଦ୍ରପୁରରୁ, ମୋ ଡାକିବା ମାତ୍ରେ, ଆସିଲେ । ବାଗଦାର ଶ୍ରୀ କୃଷ୍ଣଚନ୍ଦ୍ର ଦାସ ଆସି ଫୁଙ୍କି ଝାଡ଼ି ଦେଇଥିଲେ ଓ ଗଦ ଖୁଆଇ ଦେଇଥିଲେ । କୋରାପୁଟର ପୋଲିସି ସୁପରିଣ୍ଟେଣ୍ଡେଣ୍ଟ୍ ଶ୍ରୀ ଲକ୍ଷ୍ମଣ ମିଶ୍ରଙ୍କୁ ବୋଉ ଟେଲିଗ୍ରାଫ୍ କରି ଦେଇଥିଲେ । ସେ ସାପକାମୁଡ଼ାର ପ୍ରତିକାର ଜାଣନ୍ତି । ଚନ୍ଦ୍ରଶେଖରପୁରର ଶ୍ରୀ ଦୈତାରି ଜେନା ଓ ବରୀର ହଲୁମିଆଁ ଫୁଙ୍କାଝଡ଼ା ଜାଣନ୍ତି, ସେମାନେ ମଧ୍ୟ ଆସି ପହଞ୍ଚିଥିଲେ । କୌଣସି ଖରାପ ଲକ୍ଷଣ ଓ ଅବସ୍ଥା ଆଦୌ ଘଟି ନ ଥିଲା । ବନ୍ନୁ nervous ଓ ଅତି ଭୟଭୀତ ହୋଇ ଯାଇ ନଥିଲା । 'ସାପ କାମୁଡ଼ିଲା' ବୋଲି ସେ ପାଟି କରି ତତ୍କ୍ଷଣାତ୍ ଡାକ ପକାଇଥିଲା । ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସ ତାହାକୁ ଆଗେ କାଖେଇ ନେଇ ଆସିଥିଲେ । ଡାହାଣ ଗୋଡ଼ anklet ଉପରେ ସାପ କାମୁଡ଼ିଥିଲା, ବେଶ୍ ଦାଗ ଥିଲା ଓ ରକ୍ତ ଧୀରେ ଧୀରେ ସ୍ରବୁଥିଲା । ସର୍ବପ୍ରଥମେ ତଳ, ଉପରେ ଦୌଡ଼ିରେ ବାନ୍ଧିଦେଇ, ପାଣି ଢ଼ାଳିଥିଲେ ଓ ପୋଟାସ୍ ପର୍ମାଙ୍ଗାନେଟ୍ କ୍ଷତ ସ୍ଥାନରେ ଘସିଥିଲେ ।

୨୭.୧୦.୧୯୫୭

ରାମଚନ୍ଦ୍ରପୁରରେ ଗୁରୁଜୀମାନଙ୍କ ସହ ସ୍କୁଲ ବିଷୟରେ, ବୋଉଙ୍କର ସୂଚନାକ୍ରମେ, ମୁଁ କଥାବାର୍ତ୍ତା କରିବାକୁ ରହିଲି ମାତ୍ର ଗୁରୁଜୀମାନଙ୍କର ସମୟ ନ ଥିବାରୁ ଆଜି କଥାବାର୍ତ୍ତା ହେଲା ନାହିଁ ।

୨୮.୧୦.୧୯୫୭

ରାମଚନ୍ଦ୍ରପୁରରେ ଉପରଓଳି ଉକ୍ତ କଥାବାର୍ତ୍ତା ହେଲା । ଶ୍ରୀମାନ୍ ଶମ୍ଭୁ ବିଶ୍ୱାଳ ନିଜର ସୂଚନା ଲିଖିତ ଆକାରରେ ପଢ଼ିଲେ, ଭଲ ଲେଖିଥିଲେ । ପ୍ରତି ସୋପାନରେ ଜଣେ ଗୁରୁଜୀ ସମସ୍ତ କାର୍ଯ୍ୟ କରାଇବେ ଓ ସବୁ ବିଷୟ ପଢ଼ାଇବେ – ଏହାର ଉଦ୍ଦେଶ୍ୟ (୧ମ ରୁ ୮ମ ସୋପାନ ପର୍ଯ୍ୟନ୍ତ) ଓ ସମବାୟ ପଦ୍ଧତି ବିଷୟ ମୁଁ, ଶ୍ରୀ ମହେନ୍ଦ୍ର ରାଉତ ଗୁରୁଜୀଙ୍କର ପ୍ରଶ୍ନର ଉତ୍ତରରେ, ବୁଝାଇ କହିଲି । ଶ୍ରୀ ଅମରବାବୁ ଏକଦମ୍ ନୂଆ ଢ଼ଙ୍ଗରେ କାର୍ଯ୍ୟ କରିବାର (ଏକ ଆମୂଳଚୂଳ ପରିବର୍ତ୍ତନର) ଆଭାସ ଦେଲେ ।

୩୦.୧୦.୧୯୫୭

ସକାଳେ ବରୀ ଗଲି । ଉପରଓଳି ଶ୍ରୀଯୁକ୍ତା ସୁଶୀଳା ଦେବୀ ("ବଡ଼ ଦିଦି'')ଙ୍କ ସହ ମୁଁ ରାମଚନ୍ଦ୍ରପୁରକୁ ଆସିଲି । ତାଙ୍କର ବାପା କୃଷ୍ଣଚନ୍ଦ୍ର ସିଂହ ସ୍କୁଲ ସବ୍‌ଇନ୍ସପେକ୍ଟର ଥିଲେ । ତାଙ୍କର କେତେକ ମହତ୍‌ଗୁଣ କଥା ବଡ଼ଦିଦି କହିଲେ । ଲବଣ ସତ୍ୟାଗ୍ରହରେ ଓ ୧୯୪୨ର "ଭାରତ ଛାଡ଼ ଆନ୍ଦୋଳନ''ରେ ବଡ଼ଦିଦି ଜେଲ ଯାଇଥିଲେ । ମୁଁ ୧୯୩୯ରେ ରାମଚନ୍ଦ୍ରପୁରକୁ ଆସିବାଠାରୁ ସେ ବଡ଼ ସ୍ନେହାଦର କରି ଆସୁଛନ୍ତି । ରାତିରେ ପଦ୍ମନାଭ ସହିତ ଛାତ୍ରମାନଙ୍କର ସ୍ୱାଧ୍ୟାୟ ଓ ସ୍ୱେଚ୍ଛାରେ ଅନୁଶାସନ ପାଳନ ବିଷୟରେ କଥାବାର୍ତ୍ତା କଲି ।

୧.୧୧.୧୯୫୭

ସକାଳଓଳି ବାଖରାବାଦକୁ (ଗ୍ରାମସେବକ ଅଫିସକୁ) ଯାଇ ଶ୍ରୀ ଜୟକୃଷ୍ଣ ବିଶ୍ୱାଳଙ୍କୁ ଦେଖାକଲି । ତାଙ୍କର ଆଙ୍ଗୁଠି ଛେଚି ହୋଇଯାଇଥିବାରୁ, ସେ ରଜାବଗିଚାର ହୋମିଓପ୍ୟାଥି ଡାକ୍ତର ଶ୍ରୀ ଅଦ୍ୱୈତଚରଣ ଦାସଙ୍କର ଚିକିତ୍ସାରେ ଅଛନ୍ତି ।

ଉପରଓଳି ଟ୍ରେନ୍‌ରେ ମୁଁ ଭୁବନେଶ୍ୱର ଯାଇ, ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କୁ ଘିଅ ଦେଇଆସିଲି । ଘିଅର ଦାମ ଦେଲେ । ସେ ମୋତେ କହିଲେ ଯେ "ଖଣ୍ଡିଏ ନୂଆ ସାଇକେଲ କିଣନ୍ତୁ, ଯେତେ ଟଙ୍କା ଲାଗିବ ମୁଁ ଦେବି । ଆପଣ ଦୁଇଶହ କେତେ ଟଙ୍କା ପଡ଼ିବ, ଲେଖିଥିଲେ । ମୁଁ ତିନିଶ ଟଙ୍କା ଦେବି । I shall be glad if I can be of any service to you. ଅଧିକ ଟଙ୍କା ଲାଗିଲେ ମଧ୍ୟ ନିଅନ୍ତୁ -- ସଂକୋଚର କାରଣ ନାହିଁ ।''

ମୋର ମନେ ହେଲା ଯେ ବିନୋବାଜୀ ସଂପତ୍ତିଦାତାମାନଙ୍କର ମନରଭାବ ଯେପରି ହେବାର କଥା, ଯେପରି ବ୍ୟଗ୍ରତା ଓ ନମ୍ରତା ଦାନ କରିବାରେ ଦେଖାଇବାର କଥା, ଶ୍ରୀଯୁକ୍ତ ସାଧୁବାବୁ ସେହିପରି ଉଦାରଭାବ ଦେଖାଇଲେ । ମୁଁ ମୋଟରବସ୍‌ରେ ସନ୍ଧ୍ୟାରେ କଟକକୁ ଫେରିଲି ।

୧୪.୧୧.୧୯୫୭

ସନ୍ଧ୍ୟା ୬ ରୁ ୮ଟା ପର୍ଯ୍ୟନ୍ତ ବର୍ଦ୍ଧମାନ କୋଠିରେ (ଏବର ଉତ୍କଳ ବିଶ୍ୱବିଦ୍ୟାଳୟ ପୁସ୍ତକାଗାରରେ) ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କର ସ୍ଥାୟୀ ସଭାପତିତ୍ୱରେ Cosmopolitian Clubରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସର୍ବୋଦୟ ଦର୍ଶନର ମୂଳତତ୍ତ୍ୱ ବିଷୟରେ ବୁଝାଇ କହିଲେ । ଆଚାର୍ଯ୍ୟ ମହାଶୟ, ପଣ୍ଡିତ କୃପାସିନ୍ଧୁ ହୋତ, ରମାଦେବୀ, ଫକୀର ମିଶ୍ର, ହରମୋହନ ପଟ୍ଟନାୟକ ଓ ମୁଁ ଯୋଗ ଦେଇଥିଲୁ ।

ବିନୋବାଙ୍କ ସହ ୮ ଦିନ ବୁଲିବାବେଳର କେତେକ କଥା - ଗୀତା, ଉପନିଷଦ ଓ ବେଦରୁ ସଂଗ୍ରହ କରି ବିନୋବାଜୀ ଯେଉଁ ୧୦୮ ସୂତ୍ର କରିଛନ୍ତି ଓ "ଦୀକ୍ଷା'' ନାମରେ ମରହଟା ପୁସ୍ତକରେ ସେଗୁଡ଼ିକ ସନ୍ନିବିଷ୍ଟ ତାହା, ଧର୍ମର ନୂଆ ପ୍ରୟୋଗ, ଆଦି କହିଲେ ।

ରାତିରେ ଦାଦା, ଶ୍ରୀ ଫକୀରବାବୁ, ବୋଉ ଓ ମୋ ସହ କଥାବାର୍ତ୍ତା କରୁ କରୁ କହିଲେ ଯେ ବିନୋବାଜୀ କୃଷି, ବସ୍ତ୍ର ଆଦି ଜୀବନଧାରଣର ଯନ୍ତ୍ରପାତିରେ ଖୁବ୍ ସଂସ୍କାର କରିବାକୁ ଏବଂ ସାଧାରଣ ଲୋକ ଯେପରି ଦୈନିକ ୫ ଘଣ୍ଟା ଶରୀରଶ୍ରମ ଦ୍ୱାରା ନିଜର ଗ୍ରାସାଚ୍ଛାଦନ ଭଲରୂପେ ପାଇପାରିବ ତାହା ଉପରେ ବଡ଼ ଜୋର ଦେଉଛନ୍ତି ।

କୋରାପୁଟ ଜିଲ୍ଲାରେ କର୍ମୀମାନେ ପରସ୍ପର ସହ ମିଳିମିଶି କାମ କରିପାରୁନାହାନ୍ତି । ତେଣୁ କରି, ଦଳେ ଲୋକ ସେଠାରୁ ଚାଲିଆସିବା ମୋ (ଶରତ୍‌ର) ବିଚାରରେ ଭଲ, ନୋହିଲେ ଅ-ସର୍ବୋଦୟ ପଦ୍ଧତିରେ ସେମାନଙ୍କୁ ସ୍ଥାନ ଛାଡ଼ିଦେବାକୁ କହିବା ଉଚିତ ।

୧୮-୨୦.୧୧.୧୯୫୭

ତା ୨୦.୧୧.୧୯୫୭ରେ ରାଣୀହାଟ ହାଇସ୍କୁଲର ହେଡ୍‌ମାଷ୍ଟର ଶ୍ରୀ ବାଞ୍ଛାନିଧି ଶତପଥି (ଘର ମୟୂରଭଞ୍ଜ ଜିଲ୍ଲାରେ) ଙ୍କ ସହ କଥାବାର୍ତ୍ତା କଲି । ପ୍ରଚଳିତ ଶିକ୍ଷାରେ ଛାତ୍ରମାନଙ୍କର ଚରିତ୍ର ଗଠନ ହେଉନାହିଁ ବୋଲି ସେ ନିଜେ ଏକ ସ୍ୱାବଲମ୍ବୀ ଅନୁଷ୍ଠାନ କରିବେ, କହିଲେ । ତାଙ୍କ ବସାରେ ମଧ୍ୟାହ୍ନଭୋଜନ କଲି । ଉପରଓଳି ଗ୍ରାମସେବକ ପୁସ୍ତକାଗାର ଓ ପାଠାଗାରକୁ ଯାଇ, ଶାନ୍ତିସେନା ବିଷୟରେ ବିନୋବାଜୀଙ୍କର ଲେଖାମାନ ଦେଖିଲି । ଫେରିବା ବେଳେ ଚିତ୍ରଶିଳ୍ପୀ ଶ୍ରୀ ଗୋପାଳ କାନୁନ୍‌ଗୋ, ବି.ଏ.ଙ୍କ ସହ ଦେଖାହେଲା । ସେ ଉଚିତ ଉନ୍ନତ ଓ ସମ୍ମାନ ସରକାରଙ୍କଠାରୁ ପାଇଲେ ନାହିଁ, ଦୁଃଖ ପ୍ରକାଶ କଲେ । ଏ ଧରଣର ଅଭିଯୋଗ ସର୍ବତ୍ର ।

୨୧.୧୧.୧୯୫୭

ସକାଳେ ଶାନ୍ତିସେନା ବିଷୟରେ ଲେଖାମାନ "ବିନୋବା-ପ୍ରବଚନ"ରୁ ଖୋଜି ପଢ଼ିଲି । ଖାଇସାରି, ସାଇକେଲରେ କଟକରୁ ଭୁବନେଶ୍ୱର ରାଜଧାନୀକୁ ଯାଇ, ସରକାରୀ ଭୂଦାନ ଯଜ୍ଞ ସମିତିର ପୁନର୍ଗଠନ ବିଷୟରେ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବଙ୍କୁ ଦେଖା କଲି । ତାଙ୍କର ନିଜର ମତ ସେ କିଛି ଦେଲେ ନାହିଁ । ଶ୍ରୀ ମଦନମୋହନ ସାହୁ ଓ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ସମିତିରୁ କାହିଁକି ଇସ୍ତଫା ଦେଲେ, ମୋତେ ପଚାରିଲେ । ସମୟର ଅଭାବରୁ ମୁଁ ସାଧୁବାବୁଙ୍କୁ ଦେଖ ନ କରି, ସାଇକେଲରେ କଟକକୁ ଫେରିଆସିଲି – ରାତି ୭.୩୦ରେ ।

୨୩.୧୧.୧୯୫୭

ଭାରତବର୍ଷର ବିଖ୍ୟାତ ସମାଜବାଦୀ ନେତା ଏବଂ ଗତ ୪ ବର୍ଷ ହେଲା ଭୂଦାନଯଜ୍ଞର ଜଣେ ଅସାମାନ୍ୟ ସେବକ ଓ ବିଶ୍ଳେଷଣକାରୀ ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣ ଅଳ୍ପଦିନ ପୂର୍ବେ ସୋସାଲିଷ୍ଟ ପାର୍ଟିର ମାମୁଲି ମେମ୍ବରପଦରୁ ସୁଦ୍ଧା ଇସ୍ତଫା ଦେଇ, ଯେଉଁ ବିବୃତି ଦେଇଛନ୍ତି,

ତାହା 'ହିନ୍ଦୁ'' ଦୈନିକ ଖବରକାଗଜରୁ (ତା ୩୦ ଓ ୩୧ ଅକ୍ଟୋବର,୫୭ର ସଂଖ୍ୟାରୁ) ପଢ଼ିଲି, ଏବଂ ଓଡ଼ିଆରେ ତାହାକୁ ଅନୁବାଦ କରିବାପାଇଁ କଠିନ ଇଂରାଜୀଶବ୍ଦଗୁଡ଼ିକର ଅର୍ଥ ଅଭିଧାନରୁ ଦେଖିଲି ।

ଦିନ ଟ୍ରେନ୍‌ରେ ଶ୍ରୀଯୁକ୍ତ ଗୁଣନିଧି ମହାନ୍ତିଙ୍କ ସହ କେଉଁଝରେ ଅଭିମୁଖେ ଆସିଲି । କେଉଁଝର ବସ୍‌ରେ, କେଉଁଝରଗଡ଼ବାସୀ ଓ ପୁରୀ ସଦାଶିବ ଆୟୁର୍ବେଦ କଲେଜର ୪ର୍ଥ ବାର୍ଷିକ ଛାତ୍ର ଶ୍ରୀ କୈଳାଶଚନ୍ଦ୍ର ମିଶ୍ରଙ୍କ ସହ ଦେଖା ହେଲା । ସର୍ବୋଦୟ ବିଚାର ପ୍ରତି ସମର୍ଥନ ଓ ପଶ୍ଚାତ୍‌ପଦ ଆଦିବାସୀ ଅଞ୍ଚଳରେ ତାଙ୍କର ସେବାକାର୍ଯ୍ୟ କରିବାର ଆଗ୍ରହ କଥାବାର୍ତ୍ତାରୁ ଜଣାଗଲା । ଶ୍ରୀ ଉପେନ୍ଦ୍ର ମହାପାତ୍ର ଆନନ୍ଦପୁରଠାରୁ ସେହି ବସ୍‌ରେ ଆସିଲେ ଓ ମୁଁ ତାଙ୍କ ଘରେ ଆସି ରହିଲି ।

୨୬.୧୧.୧୯୫୭

ସକାଳେ ଚାଟୁବାବୁ, ବୋଉ ଓ ମୁଁ କଲରାଟାଙ୍ଗରୀ ଗ୍ରାମର ଚୌଧୁରୀ ନାୟକ ଓ ମଙ୍ଗଲୁ ନାୟକଙ୍କ ସହ ସେହି ଗ୍ରାମକୁ ଓ ଜହ୍ନେଇ ନାଳ ପର୍ଯ୍ୟନ୍ତ ଯାଇ, ସେ ପାଖରେ ଜଳସେଚନ କିପରି ହୋଇପାରିବ, ଦେଖିଲୁ ।

କଣ୍ଡିଆପଡ଼ା ଗ୍ରାମସଭାକୁ ଶ୍ରୀଯୁକ୍ତା ରମାଦେବୀ ଟ. ୭୬୦/- ମାତ୍ର ଋଣ ଦେଲେ - ପଧାନ ଶ୍ରୀ ରଘୁନାଥ ନାଏକଙ୍କର ବାକୀ ଖଜଣା ସରକାରଙ୍କଠାରେ ଦାଖଲ କରିବାକୁ । ରସିଦର ଫର୍ମ କଅଣ ହେବ, ମୁଁ ଲେଖିଦେଲି । ଚାଟୁବାବୁ କଣ୍ଡିଆପଡ଼ାର ୮୩ ଖଣ୍ଡ ଦାନପତ୍ର ଓ ୧୩୨ ପରିବାରକୁ ଜଏଣ୍ଟ ଭାବରେ ବିତରିତ ଜମି-ତାଲିକା ନେଇ, କେଉଁଝରଗଡ଼କୁ ଗଲେ ।

୨୭.୧୧.୧୯୫୭

କଣ୍ଡିଆପଡ଼ାରେ । ଭୋର ମୁଁ ଅଗଷ୍ଟ, ସେପ୍ଟେମ୍ବର ଓ ଅକ୍ଟୋବର, ୧୯୫୭ - ନ ମାସର ମୋର କାର୍ଯ୍ୟ ବିବରଣୀ ଲେଖିଲି ଏବଂ କେଉଁଝର ଜିଲ୍ଲାର ନିବେଦକ ଶ୍ରୀଯୁକ୍ତ ରମାଦେବୀଙ୍କୁ ଦେଲି । ସେ ଆଜି କଣ୍ଡିଆପଡ଼ାରୁ ଚାଲିକରି କେଉଁଝରଗଡ଼କୁ ଗଲେ - ବରୀ ଓ କଟକ ଯିବାପାଇଁ । ଜୟପ୍ରକାଶ ନାରାୟଣଙ୍କର ଲେଖାରୁ ମୁଁ କିଛି ଅନୁବାଦ କଲି । ମଇଦାନକେଲରୁ ଶ୍ରୀ ରଣଜିତ୍ ମହାନ୍ତ ଏଠାକୁ ଆସିଥିଲେ, ମୁଁ ଗ୍ରାମଦାନ ଫଳରେ ସହଯୋଗ ଯୋଜନା କଥା ବୁଝାଇ କହିଲି ।

୨୮.୧୧.୧୯୫୭

କଣ୍ଡିଆପଡ଼ା ଗ୍ରାମସଭାର ସଂପାଦକ ଶ୍ରୀ ଅନିରୁଦ୍ଧବାବୁ ଗ୍ରାମସଭାର ବିବରଣୀମାନ ବନ୍ଧା ଖାତାରେ ଲେଖିଲେ, ମୁଁ ଡାକିଦେଲି । ଜଗବନ୍ଧୁ ପଣ୍ଡାକୁ ଉଦାହରଣ ଦେଇ ବୁଝାଇଲି

ଯେ ଖାଣ୍ଟି ଆଚରଣ ହେଉଛି ବଡ଼ କଥା, "ସ୍ଲୋଗାନ୍" ଦେବା ବଡ଼ ନୁହେଁ । ଯେ ଯେଉଁ କ୍ଷେତ୍ରରେ କାର୍ଯ୍ୟ କରୁଛନ୍ତି, ସେ ସେଠାରେ କିପରି ସର୍ବୋଦୟ ନୀତିରେ ଚଳିବେ, ସେଥିପ୍ରତି କିପରି ଧ୍ୟାନ ଦେବା – ଏହା ଚିନ୍ତା କରିବା ଉଚିତ ।

୨୯.୧୧.୧୯୫୭

ଶ୍ରୀଯୁକ୍ତ ଗୁଣନିଧିବାବୁ ଗଡ଼ରୁ କଣ୍ଟିଆପଡ଼ାକୁ ଆସିଲେ । ଭୋର ମୁଁ ଦାଣ୍ଡ ଓଳାଇଲି । ଗ୍ରାମସଭାର ସଂପାଦକଙ୍କୁ ସଭାର ବିବରଣୀ ଲେଖାଇଲି ଓ କେଉଁଝରଗଡ଼ ଡାକଘରେ ସଭାର ଟଙ୍କା ଜମା ରଖିବାକୁ ଦରଖାସ୍ତ ଲେଖାଇଲି । ଜୟପ୍ରକାଶ ନାରାୟଣଙ୍କର ଲେଖା ଅନୁବାଦ କଲି ।

ଦୈନିକ ସମାଜ, ତା ୨୮.୧୧. ପୃ୨, ସ୍ତମ୍ଭ ୩ରେ ବାହାରିଛି : – "ଓଡ଼ିଶା ଆସେମ୍ବ୍ଲିରେ ମରୁଡ଼ି ପରିସ୍ଥିତି ଆଲୋଚନା" – ମୁଖ୍ୟମନ୍ତ୍ରୀ କହିଛନ୍ତି "କୋରାପୁଟ ଜିଲ୍ଲାରେ ଅନାହାର ମୃତ୍ୟୁ ସଂପର୍କରେ ଜଣେ ଭୂଦାନ କର୍ମୀ ଦେଇଥିବା ବିବୃତି ସମ୍ପୂର୍ଣ୍ଣ ମିଥ୍ୟା ବୋଲି ଶ୍ରୀ ସହସ୍ରବୁଦ୍ଧେଙ୍କ ସମକ୍ଷରେ ପ୍ରମାଣିତ ହୋଇଛି । ସେ କର୍ମୀ ମଧ୍ୟ ଏବେ ଭୂଦାନ ସମିତିରୁ ଇସ୍ତଫା ଦେଇଛନ୍ତି ।"

୧.୧୨.୧୯୫୭

ଭୋର ମୋର ନିତ୍ୟକର୍ମ ସାରି, ଜଳଖିଆ କରି, ପ୍ରାୟ ୮ଟା ବେଳେ ମୁଁ କଣ୍ଟିଆପଡ଼ାରୁ ଚାଲି କରି ଓ ମୋର ବିଛଣା, ଶୀତଲୁଗା, ଫାଇଲ, ନୋଟଖାତା ମୁଣ୍ଡାଇ ବା କାନ୍ଧରେ ବସାଇ, ଯମୁନା ପଶାଂ, କୋଡ଼ଖମଣ, ବରଡ଼ିପଶୀ, ପାଖ ଦେଇ ସଡ଼କରେ ଏବଂ ନୂଆଗାଁ, ହାତୀବାରି ଗ୍ରାମ ଭିତରେ ପଶି ତୁରୁମଙ୍ଗାକୁ ଆସି ଘ ୧୦.୪୫ରେ ପହଞ୍ଚିଲି । ତୁରୁମଙ୍ଗାରେ ଶ୍ରୀ ଭ୍ରମର ସାହୁଙ୍କ ସହ କଥାବାର୍ତ୍ତା କଲି, ଆଦିବାସୀ ଲୋକେ କିପରି ମଦ ଓ ଅନ୍ୟ ନିଶାଦ୍ରବ୍ୟ ଖାଇ ସର୍ବସ୍ୱ ହରାଉଛନ୍ତି ସେ ବର୍ଣ୍ଣନା କଲେ । ସେ ମାମୁଲି ବେପାର ବଣିଜ କରିବାକୁ ଭୂୟାଁପୀଢ଼କୁ ଯାନ୍ତି ।

୧୦.୧୨.୧୯୫୭

ସକାଳ ୭ଟାରୁ, କଟକ ସହରରେ ଶାନ୍ତିସେନା ଶିବିର ସଂପର୍କରେ (ନିମନ୍ତ୍ରଣ) ନିବେଦନ ପତ୍ର ସହକର୍ମୀମାନଙ୍କ ଦ୍ୱାରା ପଠାଇବାର ତାଲିକା କଲୁ – ରାମଚନ୍ଦ୍ର ମିଶ୍ର ଓ ଗଙ୍ଗାଧର ସାହାଯ୍ୟ କଲେ । ସରକାରୀ ଭୂଦାନ ସମିତିର ପତ୍ର ନମ୍ବର ୨୯୧–୩୦୦ ପତ୍ରମାନ ଲେଖିଲି – ସମିତିର ପୁରୁଣା ମେମ୍ବର ଓ ନୂଆ ପ୍ରସ୍ତାବିତ ମେମ୍ବରଙ୍କୁ ନିମନ୍ତ୍ରଣ ପତ୍ର ଦେଲି ।

୨୯୯ ନମ୍ବର ତା ୧୦.୧୨.୧୯୫୭ରେ ବଜେଟ୍ କଥା ଓ ୧୯୫୮–୫୯ର ବଜେଟ୍ କଥା ସତ୍ୟପ୍ରିୟ ମହାନ୍ତିଙ୍କୁ ଲେଖିଲି ।

ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କର ଦସ୍ତଖତରେ ଡ଼ି.ଓ. ନମ୍ବର ୨୦୭୫୬ ତା ୧୦.୧୨.୧୯୫୭ରେ ଆଚାର୍ଯ୍ୟ ହରିହର ଦାସଙ୍କୁ LL.D. "honories causa" ଦେବାକୁ ଚିଠି ଆସିଲା ।

ଏହିପରି ପତ୍ର ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ପାଖକୁ Sacrifice and Service ପାଇଁ LL.D. ଉପାଧି ଦେବାକୁ ଆସିଥିଲା । ସେ (ଗୋପବାବୁ) ତାହା ପ୍ରତ୍ୟାହାର କରିଛନ୍ତି ।

କଟକ

ତା୧୧.୧୨.୧୯୫୭

ଶ୍ରଦ୍ଧେୟ ପରିଜା,

ଆପଣଙ୍କର ତା ୧୦.୧୨.୧୯୫୭ର ଡ଼ି.ଓ.ନମ୍ବର .ଭି.ସି. ୨୦୭୫୬ ପତ୍ର ଆଜି ସକାଳେ ମୁଁ ପାଇଲି ।

ଉତ୍କଳ ବିଶ୍ୱବିଦ୍ୟାଳୟ ମୋତେ ଯେଉଁ LL.D.ଉପାଧି ଦେବାକୁ ପ୍ରସ୍ତାବ କରିଅଛନ୍ତି, ସେଥିପାଇଁ ବିଶ୍ୱବିଦ୍ୟାଳୟକୁ କୃତଜ୍ଞତା ଜଣାଉଅଛି ।

ଦେଶର ସେବା ଓ ଦେଶପାଇଁ ତ୍ୟାଗ କରିଥିବା ବିଚାରରେ ଆପଣମାନେ ଉକ୍ତ ଉପାଧି ପ୍ରଦାନ କରିବାକୁ ବାହାରିଛନ୍ତି । ପ୍ରତ୍ୟେକ ମାତା ନିଜର ସନ୍ତାନ ସନ୍ତତିଙ୍କ ପାଇଁ ଯେଉଁ ତ୍ୟାଗ କରେ ଓ ସେମାନଙ୍କର ଯେଉଁ ସେବା କରେ, ତାହା ବିଚାରିଲେ ମୋ ମତରେ ଆଗେ ପ୍ରତ୍ୟେକ ମାତା ଉକ୍ତ ଉପାଧି ପାଇବାକୁ ହକଦାର ଅଟେ । ଦେଶର ଯତ୍‌କିଞ୍ଚିତ୍ ମୋଦ୍ୱାରା ହୋଇଛି, ତାହା ନିସ୍ପୃହ ଭାବନାରେ ହୋଇଛି । ଏହି ଭାବନାର ଧାରା ଓ ପବିତ୍ରତା ଜୀବନରେ ଅବ୍ୟାହତ ରଖିବାକୁ ଚେଷ୍ଟା କରି, ମୁଁ ଉକ୍ତ LL.D. ଉପାଧି ଗ୍ରହଣ କରିବାକୁ ଅସମର୍ଥ ହେଉଅଛି ।

ଆପଣଙ୍କର

ସ୍ୱାକ୍ଷର - (ଆଚାର୍ଯ୍ୟ) ହରିହର ଦାସ

ତା ୧୧.୧୨.୧୯୫୭

ଡକ୍ଟର ପ୍ରାଣକୃଷ୍ଣ ପରିଜା

କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ, କଟକ ।

୧୫.୧୨.୧୯୫୭

ଭୂଦାନ ସମିତିର ପତ୍ର ନମ୍ବର ୩୦୧-୩୦୪ ପର୍ଯ୍ୟନ୍ତ ଲେଖିଲି । ଶ୍ରୀଯୁକ୍ତ ବିନୟ କୁମାର ରାୟ ଓକିଲ ଥୋଡ଼ିଆସାହିକୁ ଆସିଥିଲେ । ମୋ ସହ ୮/୧୦ ମିନିଟ କଥାବାର୍ତ୍ତା ହେଲେ । ସେ କହିଲେ ତାଙ୍କର ହେଡ୍‌ମାଷ୍ଟର ହେଣ୍ଡାରସନ୍ ସାହେବ କହୁଥିଲେ, " Boys, we must all leave this world, but let us try to leave a mark on this earth. Vinobaji, you are trying to leave a mark on this earth." German General Himner ଙ୍କର ମୃତ୍ୟୁପ୍ରତି ନିର୍ଭୟତା କଥା କହିଲେ । ସେ ଆହୁରି ମଧ୍ୟ କହିଲେ ଯେ ଚୀନର ଯେ ସବୁଠାରୁ ଧନୀ ଲୋକ ସେ ଚୀନର ସମସ୍ତ କଲ୍ୟାଣକର ସାମାଜିକ ଓ ଶିକ୍ଷାନୁଷ୍ଠାନଗୁଡ଼ିକର ମୋଟ ଖର୍ଚ୍ଚର ୩/୪ ଦାନ କରନ୍ତି ଅଥଚ ନିଜେ ଅତି ଦରିଦ୍ରଭାବରେ ଛିଣ୍ଡା ମଇଳା ଲୁଗା ପରିଧାନ ପିନ୍ଧି ଥାନ୍ତି । ଆଜି ସନ୍ଧ୍ୟାରେ ଆମର ଶିବିରରେ "ଦାନ ଓ ନୂଆ ସମାଜ'' ବିଷୟରେ ଦେଢ଼ ଘଣ୍ଟା ଖଣ୍ଡେ କହିଲି । ମୋର ନିଜର ମୌଳିକ ବିଚାର ତ କିଛି ନାହିଁ, ବିନୋବାଜୀଙ୍କର ଲେଖାରୁ ସ୍ଥୂଳଭାବରେ ୨/୪ କଥା କହିଲି ।

୧୮.୧୨.୧୯୫୭

କୋରାପୁଟରୁ ଶ୍ରୀ ଅଲେଖ ପାତ୍ର କଟକ ଆସିଛନ୍ତି । ସେଠାର କାର୍ଯ୍ୟ ବିଷୟରେ ଓ ଶ୍ରୀ କାଳୀକିଙ୍କର ସାନ୍ୟାଲ (ଜିଲ୍ଲା କଲେକ୍ଟର) କିପରି ସାହାଯ୍ୟ କରୁଛନ୍ତି, ମୁଁ ପଚାରି ବୁଝିଲି । ଶହୀଦଭବନରେ ଶ୍ର ଚାରୁଚନ୍ଦ୍ର ଭଣ୍ଡାରିଙ୍କ ସହ ଆମ୍ଭେମାନେ ସହରରେ କାର୍ଯ୍ୟ (ଭୂଦାନ ବିଚାର ଠାରୁ ଶାନ୍ତିସେନା ଗଠନ ପର୍ଯ୍ୟନ୍ତ) ବିଷୟରେ କଥାବାର୍ତ୍ତା କଲୁ । ଶ୍ରୀ ଅର୍ଣ୍ଣାସାହେବ ବୋଉଙ୍କଠାକୁ ପଠାଇଥିବା ଚିଠି (ଉତ୍ତର ମୌଳିକ ଛାତ୍ରମାନଙ୍କର ପାଠ୍ୟ ଓ କାର୍ଯ୍ୟ ବିଷୟରେ ) ପଢ଼ାଗଲା ଓ ଚର୍ଚ୍ଚା ହେଲା ।

ମଠସାହି ହରିଜନ ସାହିର ହରିଜନମାନେ ଆମ୍ଭମାନଙ୍କୁ (ପ୍ରାୟ ୮୦ ଜଣ ଶିବିରାର୍ଥୀ ସେବକଙ୍କୁ) ନିମନ୍ତ୍ରଣ କରି, ନିଜ ନିଜର ଘରେ ମଧ୍ୟାହ୍ନଭୋଜନ (ଭାତ, ଡାଲି, ତରକାରୀ ଆଦି) ଖାଇବାକୁ ଦେଲେ । ଶ୍ରୀ ମଦନମୋହନ ସାହୁ ଓ ମୁଁ ଶ୍ରୀ ଗୁରୁବାରି ଗୋଛାୟତଙ୍କ ଘରେ ଖାଇଲୁ । ସେ ରେଭେନ୍ସା କଲେଜର ବୋର୍ଡ଼ିଂରେ ଝାଡୁଦାର କାମ କରନ୍ତି । ତାଙ୍କ ପୁଅ ଶଙ୍କର ଜାହାଜରେ ଝାଡୁଦାର ବା ମେହେନ୍ତର କାମ କରନ୍ତି ଓ ଏବେ ଜାହାଜ ସହିତ ବିଲାତ ଯାଇଛନ୍ତି ।

ପଣ୍ଡିତ ଲିଙ୍ଗରାଜ ମିଶ୍ର (ସମାଜର ସଂପାଦକ) ସନ୍ଧ୍ୟା ୭ଟାରେ କଟକ ମେଡ଼ିକ୍ୟାଲ ହସପିଟାଲରେ ପ୍ରାଣତ୍ୟାଗ କଲେ । ତାଙ୍କର ମୂତ୍ରାଶୟରେ ରୋଗ ହୋଇଥିଲା । ଜଣେ ଅତି ଅମାୟିକ, ନମ୍ର, ପଣ୍ଡିତ ଓ ତ୍ୟାଗୀ ଦେଶସେବୀ ସଂସାରରୁ ବିଦାୟ ନେଲେ ।

୧୯.୧୨.୧୯୫୭

ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କ ସହ ମୁଁ ନୂଆବଜାର କୁଷ୍ଠାଶ୍ରମକୁ ଯାଇ ସେଠାର accountant ଶ୍ରୀ ନାରାୟଣ ମିଶ୍ରଙ୍କୁ ଦେଖା କରି ମଲିଆଘାଈର ଶ୍ରୀ ଦୁଃଖି ବେହେରାଙ୍କର ପୁଅ ମୂଷାର ଚିକିତ୍ସା ବିଷୟରେ ପରାମର୍ଶ କଲି । ଉପରଓଳି ୩ଟାରୁ ୬ଟା ଶହୀଦଭବନରେ ଆଲୋଚନା ସଭାରେ ଯୋଗ ଦେଲି । ଶ୍ରୀ ଚାରୁଚନ୍ଦ୍ର ଭଣ୍ଡାରୀ ଭାଷଣ ଦେଲେ । ରାତି ୮ ରୁ ୯ ଟା ପର୍ଯ୍ୟନ୍ତ ଉତ୍ତର ମୌଳିକ ଛାତ୍ରମାନଙ୍କର (କୋରାପୁଟରେ) ପାଠ୍ୟ ଓ କାର୍ଯ୍ୟକ୍ରମ ବିଷୟରେ ମୋର ମତାମତ ବୋଉ, ଫକୀର ମିଶ୍ର, ସୁମିତ୍ରାଦେବୀ, ପଦ୍ମନାଭଙ୍କ ଆଗରେ ବ୍ୟକ୍ତ କଲି । ମୋର ମତ ଯେ ଆମେ ଅଳ୍ପ କହୁ ବା ପ୍ରତିଶ୍ରୁତି ଦେଉଁ ଏବଂ ପ୍ରକୃତ କାର୍ଯ୍ୟରେ ଅଧିକ କରୁ । ଅଳ୍ପ ହେଉ ପଛକେ ନିଦା ଓ ବ୍ୟବସ୍ଥିତ କାମ ହେଉ । ତାହାହେଲେ ଆମ୍ଭେମାନେ ନିଜେ, ଛାତ୍ରମାନେ, ଅଭିଭାବକମାନେ ଓ ସାଧାରଣ ଲୋକେ ଖୁସୀ ହେବେ । ଆମେ ବେଶୀ commit କରିବା ଉଚିତ ନୁହେଁ । ମୌଳିକ ଶିକ୍ଷା ଓ ଉତ୍ତର ମୌଳିକ ଶିକ୍ଷା ବୋଲି ନାମ ନ ନେଇ, ଆମେ ପ୍ରକୃତ ଶିକ୍ଷା ସ୍ୱତନ୍ତ୍ର ବିଚାରରେ ଚଳାଇପାରନ୍ତେ କି !

ଆଜି ସନ୍ଧ୍ୟାରେ (ଏହା ପୂର୍ବରୁ) ମୁଁ ପଦ୍ମନାଭଙ୍କୁ କହିଥିଲି ଯେ ଅନୁଗୋଳରେ ଓ ରାମଚନ୍ଦ୍ରପୁରରେ ଦୁଇଟି ଉତ୍ତର ମୌଳିକ ସ୍କୁଲ ନ କରି, ସମ୍ମିଳିତ ଭାବରେ ଗୋଟିଏ ଭଲ କରି କରିଥିଲେ ହୋଇଥାନ୍ତା । ଏହା ପ୍ରତିଦ୍ୱନ୍ଦିତାର ଚିହ୍ନ ବୋଲି ମୋର ମନେ ହୁଏ ।

୨୦.୧୨.୧୯୫୭

ସକାଳେ ୭ଟାରୁ ଆଲୋଚନା ସଭା ହେଲା । ୧୯୫୮ରେ ମୋର କାର୍ଯ୍ୟ କରିବାକୁ ଇଚ୍ଛା ବିଷୟରେ ମୁଁ କାଲି କହିଥିଲି ଯେ "ମୁଁ ୧୯୫୭ରେ ଯାହା ମନେ ମନେ ଭାବିଥିଲି, ସଫଳତା ପାଇଛି । ୧୯୫୮ରେ ମୁଁ - କେଉଁଝର ଜିଲ୍ଲାର ନିବେଦକ ଶ୍ରୀଯୁକ୍ତ ରମା ଦେବୀଙ୍କର ମତାମତ ଜାଣି - ଜାନୁଆରୀ ଓ ଫେବ୍ରୁଆରୀ ୨ ମାସ କଟକ ସହରର କାର୍ଯ୍ୟରେ ସାହାଯ୍ୟ କରିବି, ତତ୍ପରେ ଅନ୍ୟ ଆଡ଼େ ଖୁବ୍ ବୁଲିବି, ବିନୋବାଜୀଙ୍କର ମୂଳ ଲେଖାମାନ ପଢ଼ିବି ଏବଂ ଓଡ଼ିଶାରେ ବିନୋବାଜୀଙ୍କର ଏକ ଜୀବନୀ ବହି ପାଇଁ ଉପାଦାନ ସଂଗ୍ରହ କରିବି, ମୋର ଜନ୍ମସ୍ଥାନ ଓ ପରିଚିତ ଜାଗାରେ ଗ୍ରାମଦାନ ପାଇଁ ଯତ୍ନ କରିବି ।

ଓଡ଼ିଶା ପ୍ରଦେଶରେ ଭୂଦାନ ସେବକମାନଙ୍କ ମଧ୍ୟରେ ଯୋଗସୂତ୍ର ରଖିବାର କାର୍ଯ୍ୟ କରିବାରେ ମୋର ଇଚ୍ଛା (ଆଜି ସକାଳଓଳି ଆଲୋଚନା ସଭାରେ) ମୋତେ ଅନ୍ୟମାନେ ପଚାରିବାରୁ ମୁଁ କହିଲି ଯେ ମୁଁ ସେ କାର୍ଯ୍ୟ ପାଇଁ ସମର୍ଥ ନୁହେଁ ।

୨୧.୧୨.୧୯୫୭

ସକାଳୁଠାରୁ ଦିନ ୨ଟା ପର୍ଯ୍ୟନ୍ତ ମୋର ଖାତାପତ୍ର ଦେଖି, ଭୂଦାନ କାର୍ଯ୍ୟରେ ମୁଁ ତା

୨୯.୫.୫୨ ଠାରୁ ଡିସେମ୍ବର ୧୯୫୭ ସୁଦ୍ଧା କରିଥିବା କାର୍ଯ୍ୟର ସ୍ଥୁଳ ହିସାବ ବାହାର କଲି । ଏହି ଖାତାରେ ୫ ପୃଷ୍ଠା ପରେ ତାହା ଲେଖିଲି । ଆଦିବାସୀ ମଙ୍ଗଳ ବିଭାଗର ମନ୍ତ୍ରୀ ଶ୍ରୀ ପବିତ୍ରମୋହନ ପ୍ରଧାନ ଭୁବନେଶ୍ୱରରୁ ଆସି ଶ୍ରୀଯୁକ୍ତା ରମା ଦେବୀଙ୍କୁ ଦେଖାକଲେ - କେଉଁଝରର କଣ୍ଟିଆପଡ଼ା ଗ୍ରାମଦାନ ଗାଁକୁ ବଳଦ ଯୋଗାଇବା ଓ ଜଳସେଚନ ବ୍ୟବସ୍ଥା ବିଷୟରେ ସେମାନେ କଥାବାର୍ତ୍ତା କଲେ ।

୨୨.୧୨.୧୯୫୭

ସକାଳେ ଶ୍ରୀମାନ୍ ବିଚିତ୍ରାନନ୍ଦ ମହାନ୍ତିଙ୍କ ସହ ତାଙ୍କର ଭବିଷ୍ୟତ କାର୍ଯ୍ୟକ୍ରମ କଥା ପଡ଼ିଲା । ତିନୁ (କୃଷ୍ଣା)ର ପାଣିବସନ୍ତ ଦେଖି ଚିକିତ୍ସା କରିବାକୁ ଶ୍ର ହରିଶଙ୍କର ବକ୍ସି ଆସିଥିଲେ; ମନ୍ତ୍ରତନ୍ତ୍ର ଦ୍ୱାରା ସେ ଚିକିତ୍ସା କରନ୍ତି । ଡାକ୍ତର ହରିଶଚନ୍ଦ୍ର ରାୟ ପରେ ମଧ୍ୟ ଆସିଥିଲେ । ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ସାହୁଙ୍କର ରିପୋର୍ଟ (ଜୁଆଙ୍ଗ-ପୀଢ଼ର ଆଦିବାସୀଙ୍କର ଉନ୍ନତି ପାଇଁ କାର୍ଯ୍ୟ ବିଷୟରେ) ମୁଁ ପଢ଼ିଲି । ଚମ୍ପଈମୁଣ୍ଡାର ଉତ୍ତର ମୌଳିକ କେନ୍ଦ୍ରର କାର୍ଯ୍ୟରେ ଆମ୍ଭେମାନେ କିପରି ମଧ୍ୟେ ମଧ୍ୟେ ସେଠାକୁ ଯାଇ ସାହାଯ୍ୟ ସହଯୋଗ କରିପାରୁ, ତାହା ମୁଁ ଶ୍ରୀ ହରମୋହନ ପଟ୍ଟନାୟକ ଓ ବୁଲୁବାବୁଙ୍କୁ କହିଲି । ଆମ୍ଭେମାନେ ପରସ୍ପର ଯିବାଆସିବା କଲେ, ଅନେକ ନୈରାଶ୍ୟ ଦୂର ହେବ ।

୨୪.୧୨.୧୯୫୭

ଅରଟରେ ୧ ଗୁଣ୍ଡି ସୂତା କାଟିଲି । ଶ୍ରୀମତୀ ପାର୍ବତୀ ଗିରି ବଳଣା କରି ଦେଇଥିଲେ; ଅବଶ୍ୟ ବଳଣା ଭଲ ନୁହେଁ । ସନ୍ଧ୍ୟାପରେ ଶ୍ରୀ ହରମୋହନ ପଟ୍ଟନାୟକ, ବୋଉ, ଗୁଣନିଧିବାବୁ ଝାଞ୍ଜରୀମଙ୍ଗଳାରେ ଲୋକେ କିପରି ପିଲାମାନଙ୍କର ତତ୍ତ୍ୱ ନେବେ - କାହାରି ପିଲା ଭୋକିଲା ରହିବେ ନାହିଁ - କଥାବାର୍ତ୍ତା କଲେ । X X X । ମୁଁ ଆଲୋଚନାରେ କହିଲି ଯେ ଲୋକେ ଯେତିକି ଦାୟିତ୍ୱ ନିଜ ମୁଣ୍ଡକୁ ନେଲେ ହେଲା; ଭୂଦାନ ଯଜ୍ଞ ଆରୋହଣରେ ଲୋକସାଧାରଣ ଯେତେ ସାତ୍ତ୍ୱିକ ଭାବରେ କାର୍ଯ୍ୟ କରିବେ, ଦାତାମାନେ ଅଭିମନ୍ତ୍ରିତ କରି ନିଜର ଦାନ, ବିତରଣ, ଆଦି କରିବେ, ସେତିକି ଫଳ ହେବ । ନୋହିଲେ ଖାଲି ଦାତା-ସଂଖ୍ୟା ବା ସମ୍ମତିଦାତାଙ୍କର ସଂଖ୍ୟାରେ ସେତେ ମୂଲ୍ୟ ନାହିଁ । ଗାନ୍ଧୀଜୀଙ୍କର ସ୍ୱାଧୀନତା ଆନ୍ଦୋଳନରେ ସେମିତି ସାତ୍ତ୍ୱିକତା ଆମ ଆଡ୍ରୁ ନ ଥିବାରୁ, ଆମ୍ଭେମାନେ (ଦେଶବାସୀ) ତାହାର ପ୍ରକୃତ ସୁଫଳ ସ୍ୱାଧୀନତା ପରେ ପାଉନାହୁଁ । ବିନୋବାଜୀଙ୍କର ଏହି ବର୍ତ୍ତମାନ ଆନ୍ଦୋଳନ ଫଳରେ ହୁଏ ତ ଦଶଗୁଣ କ୍ଷମତା ଲୋକସାଧାରଣଙ୍କର ହାତକୁ ଆସିବ ମାତ୍ର ଲୋକେ ଶୁଦ୍ଧଭାବରେ ଆନ୍ଦୋଳନରେ ଅଂଶ ନେଇ ନ ଥିଲେ, ଦାୟିତ୍ୱ ନେଇ ନ ଥିଲେ, ଆଶାନୁରୂପ ସୁଫଳ ମିଳିବ ନାହିଁ । ତାହା ବୋଲି ମୁଁ କହୁନାହିଁ ଯେ ଆମର ଏ ପର୍ଯ୍ୟନ୍ତ କାର୍ଯ୍ୟସବୁ ଭୁଲ ବା ଅଶୁଦ୍ଧ ହୋଇଛି ବା ଆମେ ଆଉ କିଛି ନ କରି ବସିବୁ ।

୨.୧.୧୯୫୮

ବନ୍ଟୁର ଜ୍ୱର ୯୯.୨ ଡିଗ୍ରି ଥିଲା । ମୁଁ ସକାଳେ ଓ ଚାରିଟାବେଳେ ଡାକ୍ତରଙ୍କ ପାଖକୁ ଗଲି । ସନ୍ଧ୍ୟାପରେ ସେ ଏନିମା ଦେଇ, ଝାଡ଼ା କରାଇ ଦେଇଗଲେ ।

ଏ ୩ ଦିନ ହେଲା ଭାତ ବଦଳରେ ଆମେ ରୋଟି ଖାଉଛୁ । ଆଜି ସକାଳେ ଖୁଡ଼ୀ ଶ୍ରୀଯୁକ୍ତା ମାଳତୀ ଚୌଧୁରୀ ଅନ୍ୟମାନଙ୍କୁ କଥା ପ୍ରସଙ୍ଗରେ କହିଲେ ଯେ "ସେ ଏକାକୀ ଅନୁଗୋଳର ଅନୁଷ୍ଠାନ ଗଢ଼ିଛନ୍ତି, ତାଙ୍କୁ କେହି ଏପର୍ଯ୍ୟନ୍ତ ସାହାଯ୍ୟ କରିନାହାନ୍ତି । ଅଥଚ ରାମଚନ୍ଦ୍ରପୁର ଅନୁଷ୍ଠାନ ପାଇଁ ସମସ୍ତେ ଲାଗିଛନ୍ତି । ୰ ସାରଙ୍ଗଧର ଦାସ ଶରତ୍‌କୁ ବାଜୀରାଉତ ଛାତ୍ରାବାସର ଆରମ୍ଭବେଳେ ଦାନଟଙ୍କା ଅଙ୍କିତ କରି ଉତ୍କଳ ମୌଳିକ ଶିକ୍ଷା ପରିଷଦର ହିସାବରେ ଜମା ରଖିବାକୁ ଅନୁରୋଧ କଲେ ହେଁ, ଶରତ୍ ରଖିଲା ନାହିଁ ।'' ଏହାର ସ୍ପଷ୍ଟୀକରଣ ପାଇଁ ମୁଁ ତାଙ୍କୁ କହିଲି ଯେ, "ସେ ଗୋଟିଏ ଭୁଲ ଧାରଣାରେ ସର୍ବଦା ଚାଲିଛନ୍ତି । ମୋର ଇଚ୍ଛା ମୁଁ ବହୁ ଘଟଣାରେ ସମ୍ବରଣ କରିନେଇଛି, କାରଣ ସାନ ଠାରୁ ବଡ଼ ପର୍ଯ୍ୟନ୍ତ ପ୍ରତ୍ୟେକେ ନିଜର ଖିୟାଲରେ କାମ କରନ୍ତି । ଉତ୍କଳ ମୌଳିକ ଶିକ୍ଷା ପରିଷଦ ସେପରି ସିଦ୍ଧାନ୍ତ କରିଥିଲେ, ଶ୍ରୀଯୁକ୍ତ ଗୋପବାବୁ ଓ ଆଚାର୍ଯ୍ୟ ମହାଶୟ(ପରିଷଦରେ ଥାଇ) ତାହା ସ୍ଥିର କରିଲେ । ଅବଶ୍ୟ, ଉକ୍ତ ମୌଳିକ ଶିକ୍ଷା ପରିଷଦ ସମଗ୍ର ଓଡ଼ିଶାରେ ବେସରକାରୀ ମୌଳିକ ଶିକ୍ଷାନୁଷ୍ଠାନଗୁଡ଼ିକୁ ପରାମର୍ଶ ଦେବାକୁ ଗଢ଼ାଯାଇଥିଲା । ୧୯୪୬ର ରଜସଂକ୍ରାନ୍ତିରେ ପରିଷଦର ବୈଠକର ବିବରଣୀରୁ ଏହା ସ୍ପଷ୍ଟ ଜଣାପଡ଼ିବ ।'' ସେ ତୂନୀ ଓ ଶାନ୍ତ ହେଲେ ।

୫.୧.୧୯୫୮

ସକାଳେ ଚକିରେ ବୁଟ ଛତୁ ତିଆରି କଲୁଁ । ଫକୀରବାବୁ ଓ ମୁଁ ଗ୍ରାମସେବକ ପ୍ରେସକୁ ଗଲୁ । ଆମର ସହକର୍ମୀମାନେ କେମିତି କାହାର ଗୋଟିଏ ଗୋଟିଏ କଥାରେ ଗୁରୁଜନମାନଙ୍କୁ ବେଳେ ବେଳେ ଭୁଲ ବୁଝିଛନ୍ତି ଏବଂ ଆମେ ସମସ୍ତେ ଆମର ଚଳିବାକୁ ଟଙ୍କାପଇସା ପାଇଁ କିପରି ଗୁରୁଜନମାନଙ୍କ ଉପରେ (ସେମାନଙ୍କ ଦ୍ୱାରା ଚାନ୍ଦାସଂଗ୍ରହ ଉପରେ) ନିର୍ଭର କରୁଅଛୁ, ତାହା ଫକୀରବାବୁ ମନଖୋଲି କହିଲେ । ଆମେ ନିଜର ଉତ୍ପାଦନ ଶାରୀରିକ ଶ୍ରମ ଉପରେ ନିର୍ଭର କଲେ ବଡ଼ ଭଲ ହୁଅନ୍ତା ।

୯.୧.୧୯୫୮

ସକାଳେ ସେମିତି କିଛି ନିଦା କାର୍ଯ୍ୟ କରିନାହିଁ । ଶର୍ଦ୍ଦି ଯୋଗୁଁ ଡେ଼ରୀରେ ଘରୁ ବାହାରକୁ ବାହାରିଲି । ଚକି ପେଶିନାହିଁ । ବୋଉ କେନ୍ଦ୍ରାପଡ଼ା ବାଟେ ବରୀ ଗଲେ । ମୁଁ ଜଗତ୍‌ପୁର ଯାଇ, ତାଙ୍କୁ କହି ଆସିଲି ଯେ ହେମନ୍ତବାବୁ (ଓଡ଼ିଶା ସରକାରଙ୍କର କୃଷିବିଭାଗ-

ଇଞ୍ଜିନିୟର, ଉପମନ୍ତ୍ରୀ ଶ୍ରୀ ହିମାଂଶୁ ଶେଖର ପାଢ଼ୀ, ଗୁଣନିଧି ବାବୁ ତା ୧୧.୧.ରେ ରାମଚନ୍ଦ୍ରପୁର ଯିବେ ।)

ଦାଦା ଓ ଖୁଡ଼ୀ ଏବଂ ତିନୁ ଟ୍ରେନ୍‌ରେ ସକାଳେ ଅନୁଗୁଳ ଗଲେ । ଶ୍ରୀ ଚାଟୁବାବୁ (ବ୍ରଜମୋହନ ସିଂହ) କଣ୍ଟିଆପଡ଼ାରୁ କଟକରେ ପହଞ୍ଚିଲେ । ଯମୁନାପଶୀ ଅଞ୍ଚଳରୁ ମଦଭାଟି ଉଠିବାପାଇଁ ୧୯ ଖଣ୍ଡ ଗାଁର ଗ୍ରାମବାସୀମାନଙ୍କର ଦରଖାସ୍ତ ୧୯ଟି ବୋଉ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ପାଖକୁ ପଠାଇଲେ । ମୁଁ ଆଜି କୁଆଡ଼େ ବିଚାରପ୍ରଚାର କାର୍ଯ୍ୟରେ ଗଲି ନାହିଁ ।

୧୨.୧.୧୯୫୮

ସକାଳଓଳି ଅର୍ଣ୍ଣାସାହେବ ସ୍କୁଲର ଗୁରୁଜୀ, ଶ୍ରୀମୀତ ଅନ୍ନପୂର୍ଣ୍ଣା ଦାସ, ଶ୍ରୀଯୁକ୍ତା ରମାଦେବୀ, ଫକୀର ମିଶ୍ର, ଚାଟୁବାବୁ, ଗୋପବାବୁ, ବୁଲୁବାବୁ, ଆଦି ଥାଇ, କଥାବାର୍ତ୍ତା କଲେ । ଓଡ଼ିଶାର କୃଷି ବିଭାଗର ଉପମନ୍ତ୍ରୀ (ବୌଦ୍ଧବାସୀ) ଶ୍ରୀ ହିମାଂଶୁଶେଖର ପାଢ଼ୀ, ଯାଜପୁରର ଏସ୍.ଡ଼ି.ଓ, ଯାଜପୁର ଅଞ୍ଚଳ ଅଧିକାରୀ ଶ୍ରୀ ମହେଶ୍ୱର ଦାସ ( ଆଚାର୍ଯ୍ୟ ମହାଶୟଙ୍କର ଜନ୍ମସ୍ଥାନ ଶ୍ରୀ ରାମଚନ୍ଦ୍ରପୁର ଗାଁରେ ଘର) ରାମଚନ୍ଦ୍ରପୁରରେ ପହଞ୍ଚିଲେ । ସମସ୍ତେ ଏହି ହତାରେ ଓ ହତାବାହାରେ ଗ୍ରାମବାସୀମାନଙ୍କର ଜମିରେ ଜଳସେଚନ କିପରି ହୋଇପାରେ, ଅର୍ଣ୍ଣାସାହେବ ସହ ଦେଖିଲେ । ଅର୍ଣ୍ଣାସାହେବ, ହେମନ୍ତ ବାବୁ, ଗୁଣନିଧିବାବୁ, ଭୁବନାନନ୍ଦ ସ୍ୱାଇଁ, ଫକୀର ମିଶ୍ର ଓ ମୁଁ ଗମ୍ଭକୁ ଜୀପରେ ଯାଇ, ସ୍କୁଲର ସେଠା ଜମିରେ ଜଳସେଚନର ଉପାୟ କ'ଣ ହେବ, ଦେଖିଲୁ । ଚାଟୁବାବୁ ଉପରଓଳି ୩ଟାରେ ଆଚାର୍ଯ୍ୟ ମହାଶୟ, ଗୁଣନିଧିବାବୁ, ଅର୍ଣ୍ଣାସାହେବ, ଜୀପ୍‌ରେ ରାମଚନ୍ଦ୍ରପୁରରୁ କଟକ ଅଭିମୁଖେ ବିଦାୟ ନେଲେ ।

ଫକୀର ବାବୁ ମୋତେ କହିଲେ – ଅତି ସଂକୋଚରେ ଅଥଚ ନିଜ ମନ ଖୋଲି – ଯେ "ଗ୍ରାମସେବକ'' ପତ୍ରିକାର କାର୍ଯ୍ୟଟି ତାଙ୍କର ନିଜର ବୋଲି, ସେ ଯେତେ ଚେଷ୍ଟା କଲେ ସୁଦ୍ଧା, ଭାବିପାରୁନାହାନ୍ତି । କାରଣ ଶ୍ରୀ ବୁଲୁବାବୁଙ୍କର ଖିୟାଲରେ ସବୁ ହେଉଥିବାରୁ, ଅନ୍ୟମାନେ ନିଜର ଦାୟିତ୍ୱ ଉପଲବ୍ଧି କରୁନାହାନ୍ତି । ଫକୀରବାବୁ ଆଉ ମଧ୍ୟ କହିଲେ ଯେ ତାଙ୍କର ଇଚ୍ଛା ହେଉଛି ଯେ ସେ ଅନ୍ୟ କାହାରି (ଗୁରୁଜନମାନଙ୍କର) ସାହାଯ୍ୟ ନ ନେଇ ନିଜେ ଚଳନ୍ତେ ଓ ନିଜର ପୂରା ଇଚ୍ଛାରେ କାର୍ଯ୍ୟ କରନ୍ତେ । ଅନେକ ଦିନୁ ତାଙ୍କ ମନରେ ଏହି ଇଚ୍ଛା ଥିବା ମୁଁ ଜାଣୁଛି । ଆମେ ସ୍କୁଲବାଡ଼ିରୁ କପା ତୋଳି ଶ୍ରୀ ଅମରନାଥ ଚଟୋପାଧାୟଙ୍କୁ ଦେଇଦେଲୁ । ସନ୍ଧ୍ୟାବେଳେ କସ୍ତୁରବା କେନ୍ଦ୍ରରେ ଉପାସନାରେ ଆମେ ଯୋଗ ଦେଲୁ । ଶିକ୍ଷାର୍ଥିନୀ ଶ୍ରୀମତୀ ଝରଣା ଦାସ ଭଜନ ବୋଲିଲେ । ଓଡ଼ିଆ ବାଇବେଲରୁ କିଛି ପ୍ରତିଦିନ ଉପାସନାରେ ଆଲୋଚନା ହେଉଛି । ପ୍ରାର୍ଥନା ସମାପ୍ତ କରିବା ପୂର୍ବରୁ ଏହା (ବାଇବେଲ) ପଢ଼ା ହେବା ଦରକାର ।

୧୩.୧.୧୯୫୮

ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନଙ୍କର ଆଲୋଚନାରେ ମୁଁ, ଫକୀର ମିଶ୍ର, ବୁଲୁବାବୁ, ବୋଉଙ୍କ ସହ ଯୋଗ ଦେଲି । ସୋପାନର (୫ମ ଓ ୬ଷ୍ଠ, ୭ମ ସୋପାନର) ପିଲାମାନଙ୍କୁ ଇଂରାଜୀ (ନାମ, ଠିକଣା, ଆଦି) ପଢ଼ିବାକୁ (ଅଧିକ ଉତ୍ସାହିତ) ବା ଇଂରାଜୀ ପଢ଼ା (ବାସନ୍ଦ) କରା ନ ଯାଉ । ସ୍ୱାଭାବିକଭାବରେ ପିଲାମାନେ ଟିକିଏ ଟିକିଏ ଶିଖନ୍ତୁ । ଶ୍ରୀ ବୁଲୁବାବୁ କହିଲେ ଯେ ମୌଳିକ ଶିକ୍ଷା ପାଇଥିବା ପିଲାମାନେ ଯେପରି ଜ୍ଞାତବ୍ୟ ବିଷୟ ଓ ଉନ୍ନତ ଶିକ୍ଷା, ସୁଯୋଗରୁ .. (ବଞ୍ଚିତ) ନ ହୁଅନ୍ତି ଓ ହେଉଛନ୍ତି ବୋଲି ଉପଲବ୍ଧି ନ କରନ୍ତି, ସେଥିପାଇଁ ସବୁ ବ୍ୟବସ୍ଥା ହେବା ଉଚିତ ଏବଂ ସବୁ ଶିକ୍ଷା ମାତୃଭାଷାରେ ଦେବାପାଇଁ ମାତୃଭାଷାର ସାହିତ୍ୟ, ଆଦି 'ସମୃଦ୍ଧ' ହେବା ଉଚିତ । ଗୁରୁଜୀମାନେ ଭଲ କରି ଏ ଦିଗରେ ଯତ୍ନ କରନ୍ତୁ ଏବଂ ହିନ୍ଦୀ, ଇଂରାଜୀର ନିଜର ଜ୍ଞାନ ମଧ୍ୟ ବଢ଼ାନ୍ତୁ । ସ୍କୁଲର ଶିକ୍ଷାକୁ କେବଳ ସଂକୁଚିତ ସିଲାବସରେ ସୀମିତ ନ ରଖି, ବ୍ୟାପକ ଦୃଷ୍ଟିରେ କାର୍ଯ୍ୟ ଓ ଶିକ୍ଷା ହେଉ । ଅମରବାବୁ ଏକାବେଳକେ ନୂଆ ପ୍ରୟୋଗ କରିବାକୁ କହିଲେ । ଭଲ ଚର୍ଚ୍ଚା ହେଲା ।

୧୬.୧.୧୯୫୮

ସକାଳେ ବାସନ ମାଜିବାରୁ ଚକି ପେସିପାରିଲି ନାହିଁ । ଶ୍ରୀଯୁକ୍ତ ଗୋପବାବୁ ଓଡ଼ିଶାର ସବୁ ଗ୍ରାମଦାନ ଅଞ୍ଚଳ ଥରେ ବୁଲିବାକୁ ଭାବି, ଆଜି ଓଡ଼ିଶାର ମାନଚିତ୍ର ଦେଖି, ମୋଟ ପରିକ୍ରମାର ଦୂରତା ସ୍ଥୂଳ ଭାବରେ ବାହାର କଲେ । ଉତ୍ତର ଓଡ଼ିଶା ଓ ସମ୍ବଲପୁର ସହର ପର୍ଯ୍ୟନ୍ତ ପ୍ରାୟ ୪୯୫ ମାଇଲ, ଏବଂ ସେଠାରୁ ବଲାଙ୍ଗୀର, କନ୍ଧମାଳ, କୋରାପୁଟର ଗୁଡ଼ାରି, ଗଞ୍ଜାମର ନୂଆଗଡ଼, ଜଗନ୍ନାଥପ୍ରସାଦ ଏବଂ ଖୋର୍ଦ୍ଧାର ବୋଲଗଡ଼ ଦେଇ କଟକକୁ ଫେରିବାକୁ ଆଉ ପ୍ରାୟ ୩୯୫ ମାଇଲ ପଡ଼ିବ । ଗ୍ରାମଦାନ ନ ଥିବା ଅଞ୍ଚଳରେ ପଦଯାତ୍ରା ନ କରି, ମୋଟରରେ ଗଲେ ପ୍ରାୟ ୪୪୦ ମାଇଲ ମୋଟ ଉପରେ କମ୍ ପଡ଼ିବ ।

ମୟୂରଭଞ୍ଜର ଅତିରିକ୍ତ ଜିଲ୍ଲା ମ୍ୟାଜିଷ୍ଟ୍ରେଟ୍‌ଙ୍କର ତା ୮.୧.୧୯୫୮ର ୬୫ R ପତ୍ରର ଓ ବିଶ୍ୱନାଥ ପଟ୍ଟନାୟକଙ୍କର ତା ୧୫.୧ର ପତ୍ରର ଉତ୍ତର ଦେଲି । ଓଡ଼ିଶା ସରକାରଙ୍କୁ ଭୂମିବଣ୍ଟନର, ଅଫିସ ଖର୍ଚ୍ଚ ଓ ସମିତିର ମେମ୍ବରମାନଙ୍କର ଗସ୍ତଖର୍ଚ୍ଚ ଆଦିର ଏକ ବଜେଟ ୧୯୫୮-୫୯ ପାଇଁ ଦେବାକୁ ଚିଠି କଲି । ରାତି ୯ଟା ପର୍ଯ୍ୟନ୍ତ ଏଥିରେ ସମୟ ଗଲା ।

୨୧.୧.୧୯୫୮

ସକାଳ ୮ଟା ବେଳେ ଶ୍ରୀଯୁକ୍ତା ରମାଦେବୀଙ୍କ ସହ ମୁଁ ସର୍ଭିସବସ୍‌ରେ କଟକରୁ ଭୁବନେଶ୍ୱର-ନୂଆ ରାଜଧାନୀକୁ ଗଲି । ସେଠାରେବାଟରେ ସୋହେଲା (ସମ୍ବଲପୁର ଜିଲ୍ଲା)ର

ବୈଷ୍ଣବ ଗୌନ୍ତିଆଙ୍କ ସହ ଦୈବାତ୍ ଦେଖାହେଲା । ୧୯୩୨-୩୩ ମସିହାରେ ମୁଁ ସେଠାରେ ସ୍କୁଲ ସବ୍-ଇନ୍ସପେକ୍ଟର ଥିବାବେଳେ ଏହାଙ୍କ ସହ ପରିଚୟ ହୋଇଥିଲା ।

ବୋଉ ଓ ମୁଁ ରାଜସ୍ୱମନ୍ତ୍ରୀ ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କର ବସାକୁ ଯାଇ ଓ ତାଙ୍କର ଅଫିସକୁ ଯାଇ ତାଙ୍କର ସେକ୍ରେଟାରୀ ଶ୍ରୀ ଆର୍.ପି.ପାଢ଼ୀ ଓ ଡ଼େପୁଟି ସେକ୍ରେଟାରୀ ଶ୍ରୀ ଭବକୃଷ୍ଣ ମହାନ୍ତିଙ୍କ ଉପସ୍ଥିତିରେ କଥାବାର୍ତ୍ତା ହେଲୁ । ଏହି ବିଭାଗର ଡ଼େପୁଟି ସେକ୍ରେଟାରୀ (ସେତେବେଳେ ଶ୍ରୀ ବାଞ୍ଛାନିଧି ଦାସ ଥିଲେ)ଙ୍କର ପତ୍ର ନମ୍ବର ୭୫୯୪/-୧୧୬/୫୬ ତା ୨୫.୧୦.୧୯୫୬ ରେ ସରକାରୀ ସମିତିର ପରିଚାଳନା ଖର୍ଚ୍ଚ ପାଇଁ ଟ. ୩୬,୦୦୦/- ର ମଞ୍ଜୁରି ସୂଚନା ଥିଲେ ହେଁ, ବଜେଟ୍‌ରେ ଆଦୌ ନାହିଁ ବୋଲି ମନ୍ତ୍ରୀ ଓ ସେକ୍ରେଟାରୀ ଆମକୁ କହିଲେ ।

ଆମେ ଭୂମିଗ୍ରହୀତାମାନଙ୍କୁ ସାହାଯ୍ୟ କରିବାର ଆବଶ୍ୟକତା କହିବାରୁ, ସରକାରଙ୍କର ସାଧାରଣ ଜଳସେଚନ-ବଜେଟ୍‌ରୁ ସୂଚିତ ଗ୍ରାମମାନଙ୍କରେ କିଛି କରାଇଦେବେ ବୋଲି କହିଲେ । ଶ୍ରୀ ସୁଧୀରଚନ୍ଦ୍ର ଘୋଷ (ଓଡ଼ିଶା ସରକାରଙ୍କର ପ୍ରଚାର ଅଫିସର)ଙ୍କର ମୋଟରରେ ଆମେ କଟକରୁ ଫେରିଲୁ । ରାତିରେ ଫକୀର ମିଶ୍ର, ମହେଶ୍ୱର ଦାସ, ଆଚାର୍ଯ୍ୟ ମହାଶୟଙ୍କ ଆଗରେ ଆମର ଭୁବନେଶ୍ୱର ଯିବାର ବିଫଳତା କହିଲି ।

ଦିନ ୨ଟା ବେଳେ ବୋଉ ଓ ମୁଁ ସତ୍ୟପ୍ରିୟ ବାବୁଙ୍କ ବସାରେ ଭାତ ଖାଇଲୁ । ପୁଝାରୀ ଟେବୁଲ ଉପରେ ଭାତ ପରଶିଲେ । ଖାଇବାବେଳେ ସତ୍ୟପ୍ରିୟ ବାବୁ କହିଲେ ଯେ ତାଙ୍କର ସାଆନ୍ତ, ବଡ଼ବାପା, ଆଦିଙ୍କ ସହ ୰ଗୋକୁଳାନନ୍ଦ ଚୌଧୁରୀଙ୍କର ଓ ୰ ଚନ୍ଦ୍ରମୋହନ ମହାରଣାଙ୍କର ଭାରୀ ଘନିଷ୍ଠତା ଥିଲା ଓ ଭାଇଙ୍କ ସହ ସତ୍ୟପ୍ରିୟ ବାବୁଙ୍କର ମଧ୍ୟ ଘନିଷ୍ଠତା ଥିଲା ।

୨୪୧.୧୯୫୮

ରାତି ୧ଟାରେ ଫୋନ୍‌ଦ୍ୱାରା ଶୁଣିଲି ଯେ ନରସିଂହପୁର ନୂଆ ରେଲଷ୍ଟେସନଠାରେ (ଛତ୍ରପୁରର ୪ ମାଇଲି ଦକ୍ଷିଣକୁ) ପୁରୀ-ହାଇଦରାବାଦ ପାସେଞ୍ଜର ଟ୍ରେନ୍ ସହ ହାଇଦରବାଦ ଜନତା ଟ୍ରେନ୍‌ର ଧକ୍କା ଲାଗିଛି । ପ୍ରଥମ ଟ୍ରେନ୍‌ରେ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ପୁରୀରୁ ବେଜବାଡ଼ା ଯାଉଥିଲେ, ଏବଂ ଦ୍ୱିତୀୟ ଟ୍ରେନ୍‌ରେ ଶ୍ରୀଯୁକ୍ତା ମାଳତୀ ଚୌଧୁରୀ, ହରମୋହନ ପଟ୍ଟନାୟକ ଥିଲେ । ଏମାନଙ୍କର କଅଣ ଦଶା ହୋଇଥିବ, ତାହା ଜାଣିବାକୁ ଫକୀର ମିଶ୍ର, ପ୍ରଫେସର ଦୟାନିଧି ପଟ୍ଟନାୟକ, ପ୍ରଫୁଲ୍ଲଚନ୍ଦ୍ର ସାହୁ ଓ ଶରତ୍‌ଚନ୍ଦ୍ର ମହାରଣା କଟକରୁ ବ୍ରହ୍ମପୁର ଗଲେ । ଦୟାନିଧି ବାବୁ ବାଲୁଗାଁରେ ରହିଗଲେ । ବ୍ରହ୍ମପୁରରେ ଡାକ୍ତର ଫିରୋଜ ଆଲିଙ୍କଠାରୁ ଆମେ ଜାଣିଲୁ ଯେ ସେ ଘଟଣାସ୍ଥଳକୁ ରାତିରେ ଯାଇଥିଲେ ଏବଂ ଗୋପବାବୁ ଓ ମାଳତୀ

ଦେବୀ କୌଣସି ଆଘାତ ପାଇ ନ ଥିଲେ । ସେମାନେ ଆହତ ବ୍ୟକ୍ତିମାନଙ୍କର ସେବା ଓ ଚକିତ୍ସାର ଆଶୁ ବ୍ୟବସ୍ଥା ପାଇଁ ଯତ୍ନ କରିଥିଲେ ।

ଶ୍ରୀ ବୁଲୁବାବୁ ମେଦିନୀପୁର ଜିଲ୍ଲାର ଭୂଦାନ-ଶିବିରରୁ ଆଜି ସନ୍ଧ୍ୟାରେ କଟକକୁ ଏବଂ ଆଚାର୍ଯ୍ୟ ମହାଶୟ ପୁରୀରୁ କଟକକୁ ଫେରିଥିଲେ । ଶ୍ରୀଯୁକ୍ତ ନବବାବୁ ସମ୍ବଲପୁର ଯାଇଛନ୍ତି, ମେଦିନୀପୁର ଶିବିରରୁ ।

୨୫.୧.୧୯୫୮

ଗ୍ରାମସେବକ ପ୍ରେସକୁ ଗଲି । ବିନୋବାଙ୍କର "ଶିକ୍ଷଣ-ବିଚାର'' ବହିକୁ ଚୁନୀ ଓଡ଼ିଆରେ ବର୍ଷେ ହେଲା ଅନୁବାଦ କରିଥିଲା । ବର୍ତ୍ତମାନ ସେହି ଓଡ଼ିଆ ପାଣ୍ଡୁଲିପି ଛାପା ଆରମ୍ଭ ହୋଇଛି । ପ୍ରଥମ ଓ ୨ୟ ଫର୍ମାର ପ୍ରୁଫ୍ ମୁଁ ଆଜି ସଂଶୋଧନ କଲି ।

୨୬.୧.୧୯୫୮

ଭାରତର ସାଧାରଣତନ୍ତ୍ର ଦିବସ । ଆଜି ବନ୍ଟୁର (କର୍ମଦେବ ମହାରଣା)ର ଜନ୍ମଦିନ । ସେ ତା ୨୬.୧.୧୯୫୧ ମସିହାରେ ଜାତ ହୋଇଥିଲା । ସାତ ବର୍ଷ ପୂରିଗଲା ।

ଫକୀରବାବୁଙ୍କର ଅରଟ ନେଇ, ସେଥିରେ ୨ ଗୁଣ୍ଡି ସୂତା କାଟିଲି । ରାଜସୁନାଖଳାର ଶ୍ରୀ ମହେଶ୍ୱର ମିଶ୍ର ଆସିଥିଲେ । ଗ୍ରାମଦାନ ଓ ଦେଶର ଅବସ୍ଥା ବିଷୟରେ ଏବଂ ଆମର ଏଠାରେ ଦିନେ ଦିନେ ଖାଇବାକୁ ନ ଥିବା କଥା ପଡ଼ିଲା । ତିନିଟାବେଳେ ମହମ୍ମଦିଆ ବଜାର ଗଲି । ଶ୍ରୀ ମାଧବ ପାଢ଼ୀ ଓ ବୈଦ୍ୟନାଥ ଜେନା କିରାଣୀମାନଙ୍କ ସହ ଦେଖାହେଲା । ଗ୍ରାମସେବକ ପ୍ରେସରେ 'ପ୍ରୁଫ' ଦେଲି । ବିନୋଦ କାନୁନ୍‌ଗୋଙ୍କ ସହ ତାଙ୍କ ବହି କଥା ପଡ଼ିଲା । ସନ୍ଧ୍ୟା ପରେ ଥୋଡ଼ିଆ ସାହିରେ ଚର୍ଚ୍ଚା ହେଲା କିପରି ସର୍ବୋଦୟ ପକ୍ଷ ପାଳନ କରାଯିବ ।

୨୭.୧.୧୯୫୮

ସକାଳେ ଚାଉଳିଆଗଞ୍ଜ ଗଲି । ସେଠାରେ ଶ୍ରୀ ଭାସ୍କର ପୃଷ୍ଟି ମୋ ସହ କଟକ ଲେପ୍ରୋସି ହୋମ୍ ଏବଂ ହସପିଟାଲ୍‌କୁ ଗଲେ । ଶ୍ରୀମାନ୍ ମୂଷା (ଭଲନାମ ଧରଣୀଧର ବେହେରା)କୁ ଦେଖିଆସିଲି । ଡାକ୍ତର ଜଗନ୍ନାଥ ପ୍ରସାଦଙ୍କୁ ଖଣ୍ଡିଏ "ଗ୍ରାମସେବକ'' ପତ୍ରିକା ଦେଲି ।

ଉପରଓଳି ଭୂଦାନ ସମିତିର ଚିଠିପତ୍ର ଲେଖିଲି । ବିନୋଦବାବୁ ରାତିରେ ଆସିଥିଲେ । ଶିଶୁସାହିତ୍ୟ କଥା (କିପରି ଭଲ ଓଡ଼ିଆ ବହି ବାହାରିବ) ପଡ଼ିଲା ।

୨୮.୧.୧୯୫୮

ସକାଳେ ମୁଁ " "The Wheel of History" ବହିରୁ ୨/୩ ଅଧ୍ୟାୟ ପଢ଼ିଲି ।

ଏହି ବହି ଶ୍ରୀ ରାମମନୋହର ଲୋହିଆ ଲେଖିଛନ୍ତି । ଏଥିରେ Class and Caste ଅଧ୍ୟାୟଟି, (୨) Approximation of Mankind &.(୩) Internal Apprmn. ଅଧ୍ୟାୟମାନଙ୍କରେ ଯୁକ୍ତି ଏକରକମ ଠିକ୍ ବୋଧ ହେଲା ।

ଅରଟରେ ୪୦୦ ଘେରା ସୂତା କାଟିଲି । ଆଜି ବଳଣା ସରିଗଲା । ଖରାବେଳେ ଶ୍ରୀ ଉମାଚରଣ ମହାନ୍ତିଙ୍କଠାରୁ ଚେକ୍ ଭଙ୍ଗାଇ ଦେବାର ଟଙ୍କା (ମୋର ପ୍ରାପ୍ୟ) ଟ.୧୦୦/- ଆଣିଲି । ଏହି ଚେକ୍ ଶ୍ରୀ ସାଧୁବାବୁ ଦେଇଥିଲେ । ଗ୍ରାମସେବକ କାର୍ଯ୍ୟାଳୟକୁ ଯାଇ, ପତ୍ରିକାର ଗ୍ରାହକଚାନ୍ଦା ଟ.୭/- ଶ୍ରୀ ସୁରେନ୍ଦ୍ର ଦଳାଇଙ୍କୁ ଦେଇ, ସବୁ ନିକାଶ କଲି ଏବଂ ସରିଯାଇଥିବା ରସିଦଖାତା ଦୁଇଟି (ନ.୫୧ ରୁ ୭୫ ଏବଂ ନ ୩୩୭୧ ରୁ ୩୩୮୦) ତାଙ୍କୁ ଫେରାଇଲି । ସନ୍ଧ୍ୟାପରେ ଗ୍ରାମସେବକ ସମବାୟ ପ୍ରକାଶନର ଅଫିସରେ ବସି ଅଧଘଣ୍ଟାଏ ସଚ୍ଚିବାବୁ ଓ ପୁରୁଷୋତ୍ତମ ବାବୁଙ୍କର କଥା ଶୁଣିଲି । ମୂଳଧନର ଅଭାବରୁ ଓ ଅନେକଙ୍କ ଉପରେ ପାଉଣା ପଡ଼ିଥିବାରୁ ପ୍ରେସର କର୍ମୀମାନେ ହଇରାଣ ହେଉଛନ୍ତି ।

୩୦.୧.୧୯୫୭

ମୋହନଦାସ କରମଚାନ୍ଦ ଗାନ୍ଧୀ (ମହାତ୍ମା ଗାନ୍ଧୀ) ୧୯୪୮ ମସିହାର ୩୦ ଜାନୁଆରୀରେ ନୂଆ ଦିଲ୍ଲୀଠାରେ ପ୍ରାର୍ଥନାସଭାରେ ଘାତକର ଗୁଳିଚୋଟରେ ମାନବଲୀଳା ଶେଷ କରିଥିଲେ । ଆଜି ତାଙ୍କର ମହାପ୍ରୟାଣର ଦଶବର୍ଷ ପୂର୍ଣ୍ଣ ହୋଇଗଲା । ଯାହାଙ୍କର ତପସ୍ୟା ଫଳରେ ଓ ତିଳ ତିଳ କରି ଆତ୍ମବଳି ଦ୍ୱାରା ଭାରତବର୍ଷ ପରାଧୀନତାରୁ ମୁକ୍ତି ପାଇଲା, ସେହି ମହାତ୍ମାଙ୍କୁ ଓ ତାଙ୍କର ଉପଦେଶକୁ ଆମ୍ଭେମାନେ (ଭାରତବାସୀ) ଭୁଲି ଗଲୁଣି କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ଏହି ଦିନର ସ୍ମୃତିକୁ ପାଳନ କରିବାକୁ ଲୋସସାଧାରଣଙ୍କର କୌଣସି ଆଗ୍ରହ ଦେଖୁନାହିଁ । ସରକାର ବହୁତ ଟଙ୍କା ଖର୍ଚ୍ଚ କରି ଓ ଆଡ଼ମ୍ବରରେ ତା ୨୬ ଜାନୁଆରୀ (ଗଣତନ୍ତ୍ର-ଦିବସ) ପାଳନ କରିଥିଲେ । ତା ୩୦ ଜାନୁଆରୀ ସରକାରଙ୍କ ପକ୍ଷରୁ ପାଳିତ ହୁଏନାହିଁ । ଲୋକଙ୍କର ଏ ମନୋଭାବ ଅବସ୍ଥାରେ ସରକାରଙ୍କଦ୍ୱାରା ଏ ଦିବସ ପାଳିତ ନ ହେବା ହିଁ ଠିକ୍ ହୋଇଛି ।

ଆଚାର୍ଯ୍ୟ ମହାଶୟଙ୍କ ସହ ମୁଁ (ରିକ୍ସାରେ) ଝାଞ୍ଜରୀମଙ୍ଗଳା, ବଙ୍ଗାଳୀସାହି, ଗ୍ରାମସେବକ ପ୍ରେସ, କମ୍ୟୁନିଷ୍ଟ ପାର୍ଟି ଅଫିସ, ଶ୍ରୀ ରାମକୃଷ୍ଣ ପତିଙ୍କ ବସା, ଉତ୍କଳ ପ୍ରଜା ସୋସାଲିଷ୍ଟ ପାର୍ଟି ଅଫିସ, ଜଗନ୍ନାଥ ବଲ୍ଲଭକୁ ଗଲି । ଆଜି ଟାଉନହଲରେ ସମସ୍ତେ ଦଳନିର୍ବିଶେଷରେ ଏକାଠି ହୋଇ ସନ୍ଧ୍ୟା ପ୍ରାଥନା ସଭାରେ ଯୋଗ ଦେବାକୁ ସମସ୍ତଙ୍କୁ କହିଲୁ । ଉପରଓଳି ସ୍ୱରାଜ-ଆଶ୍ରମକୁ ମଧ୍ୟ ଆମେ ଗଲୁ ।

ସନ୍ଧ୍ୟାରେ ଟାଉନ୍‌ହଲ୍‌ରେ ପ୍ରାର୍ଥନା ସଭାରେ ସମସ୍ତେ ଯୋଗ ଦେଲେ । ସର୍ବଶ୍ରୀ ପ୍ରଣକୃଷ୍ଣ ପଢ଼ିଆରୀ, ଲୋକନାଥ ମିଶ୍ର (ପାଟକୁରା), ଭବାନୀଚରଣ ପଟ୍ଟନାୟକ, ସୁରେନ୍ଦ୍ରନାଥ

ଦ୍ୱିବେଦୀ, ବିଶ୍ୱନାଥ ପଣ୍ଡିତ, ପ୍ରଦୀପ୍ତ କିଶୋର ଦାସ, ରାମକୃଷ୍ଣ ପତି, ମନମୋହନ ମିଶ୍ର, ନିତ୍ୟାନନ୍ଦ ମହାପାତ୍ର, ଉଦୟନାଥ ଷଡ଼ଙ୍ଗୀ... ଆଦି ଯୋଗ ଦେଇଥିଲେ । ବକ୍ତୃତାବେଳେ ଲୋକନାଥ ମିଶ୍ର ଓ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର ଟିକିଏ ବାଦାନୁବାଦ ଲାଗିଥିଲା । ଆଚାର୍ଯ୍ୟ ମହାଶୟ ସଭାପତି ହୋଇଥିଲା । ଗୀତା, କୋରାଣ-ଶରୀଫ୍‌ରୁ ଅଂଶ ଆବୃତ୍ତି ହୋଇଥିଲା । ଶ୍ରୀ କହ୍ନାଇଲାଲ ଭଜନ ବୋଲିଥିଲେ । ଗତ ୪/୫ ବର୍ଷ ହେଲା ଏହି ସ୍ମରଣୀୟ ଦିନର ସାଧାରଣ ପ୍ରାର୍ଥନାସଭାରେ ୨୦/୨୫ ଜଣ ମାତ୍ର ଲୋକ ହେଉଥିଲେ । ନଈବାଲିରେ ପୁରୀଘାଟଠାରେ ସଭା ହେଉଥିଲା । ଏ ବର୍ଷର ଚେଷ୍ଟାରେ ମୋଟରେ ପ୍ରାୟ ୩୦୦ ଲୋକ ସଭାକୁ ଆସିଥିଲେ ।

୧.୨.୧୯୫୮

ଦାଦା (ନବବାବୁ) ଅନୁଗୋଳରୁ କଟକକୁ ଆସିଲେ । ମୁଁ ସରକାରୀ ଭୂଦାନ ସମିତିରେ ସଦସ୍ୟ ରହିବାକୁ ଆଉ ଇଚ୍ଛା କରେ ନାହିଁ ବୋଲି ତାଙ୍କୁ କହିଲି । କାରଣ, ରାଜସ୍ୱବିଭାଗର ସେକ୍ରେଟାରିଏଟ (ଯେଉଁ ବିଭାଗ ଏ ବିଷୟର ଭାର ନେଇଛନ୍ତି) ଭୂଦାନକାର୍ଯ୍ୟ ପ୍ରତି ଉଦାସୀନ, ଏବଂ ଆମର ଅଧିକାଂଶ ଜିଲ୍ଲା ଭୂଦାନ ନିବେଦକ ମୋର ଚିଠିପତ୍ରର ଉତ୍ତର ସୁଦ୍ଧା ଦେଉନାହାନ୍ତି ।

୩.୨.୧୯୫୮

ଭୂମିବଣ୍ଟନ ପରେ ଜଳସେଚନର ଯେଉଁ ଗାଁମାନଙ୍କରେ ଆବଶ୍ୟକତା ଅଛି ବୋଲି ଭୂଦାନ ଅଫିସକୁ ରିପୋର୍ଟ ଆସିଥିଲା, ସେସବୁ ଦେଖି ଗୋଟିଏ ତାଲିକା କଲି ଏବଂ ଗୋଟିଏ ଗୋଟିଏ forwarding ଚିଠି ସହ ସେହି ତାଲିକା ରାଜସ୍ୱବିଭାଗର ମନ୍ତ୍ରୀଙ୍କୁ ଓ ସେକ୍ରେଟାରୀଙ୍କୁ ପଠାଇଲି । ଭୋର ୪ଟାରୁ ଦିନ ୧୦ଟା ପର୍ଯ୍ୟନ୍ତ ଏଥିରେ ଗଲା । ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ଓ ମୁଁ କଟକରୁ ସାଇକେଲରେ ଢେଙ୍କାନାଳଗଡ଼କୁ (ପ୍ରାୟ ୩୭ ମାଇଲ - ୩ ମାଇଲି) ଗଲୁ । ୪ ଘଣ୍ଟା ଲାଗିଲା । ସେଠାର ବୈଦ୍ୟ ଶ୍ରୀ ସଚ୍ଚିଦାନନ୍ଦ ରଥଙ୍କ ଦୋକାନରେ ଚୁଡ଼ା ପାଚିଲା କଦଳୀ ଖାଇଲୁ । ଓକିଲ ଅଦ୍ୱୈତବାବୁ ଓ ଓକିଲା ବାଙ୍କବାବୁଙ୍କ ସହ ବସ୍‌ରେ ଜୋରନ୍ଦା ମହିମାଗାଦୀକୁ (୧୬ ମାଇଲ କାଇମାଟି ଦେଇ) ଗଲୁ । ମହିମାଧର୍ମୀମାନେ ଗତ ପ୍ରାୟ ୩୦ ବର୍ଷ ହେଲା "କୌପୀନଧାରୀ" ଓ "ବଲ୍କଲଧାରୀ" - ଏ ୨ ଦଳରେ ବିଭକ୍ତ ହୋଇ ପରସ୍ପର ବିରୋଧୀ ପାଲିଟିଛନ୍ତି । ବର୍ତ୍ତମାନ ପ୍ରଥମ ଦଳର ମୁଖ୍ୟ ଶ୍ରୀ ମହୀନ୍ଦ୍ର ଦାସ ଓ ୨ୟ ଦଳର ମୁଖ୍ୟ ଶ୍ରୀ ବିଶ୍ୱନାଥ ବାବା । ଏତଦ୍‌ଭିନ୍ନ ଆଉ ଉପଦଳ କେତେକ ଅଛି । କିଛି ଦିନ ପୂର୍ବେ ମହୀନ୍ଦ୍ର ବାବା ଓ ବିଶ୍ୱନାଥ ବାବୁ ଆମକୁ (ଭୂଦାନ କର୍ମୀଙ୍କୁ) କହିଥିଲେ ଯେ ସେମାନଙ୍କର ବାର୍ଷିକ ମେଳା (ମାଘ ଶୁକ୍ଳ ଚତୁର୍ଦ୍ଦଶୀ)କୁ ଆମ୍ଭେମାନେ ଜୋରନ୍ଦା ଗଲେ, ଭକ୍ତମାନଙ୍କୁ ସର୍ବୋଦୟ ବିଚାର କଥା ନିବେଦନ କରିବା । ତଦନୁସାରେ ଆମେ ଯାଇଥିଲୁ । ଓଡ଼ିଶାର ମନ୍ତ୍ରୀ ଶ୍ରୀ ପବିତ୍ରମୋହନ ପ୍ରଧାନ ସେଠାକୁ ଯାଇଥିଲେ ଏବଂ ଏହି ଦଳମାନଙ୍କୁ ମିଶାଇଦେବାକୁ ଏକ କମିଟି ଗଢ଼ିଦେଲେ ।

ଆମ୍ଭେ ୨ ଦିନ ଉପସ୍ଥିତ ଥିଲୁ ମାତ୍ର କିଛି କହି ନଥିଲୁ । ଏଠାରେ ୨ ଦଳର ଗୃହୀଭକ୍ତ ପ୍ରାୟ ୬/୭ ହଜାର ଓ ସାଧୁବାବା ପ୍ରାୟ ହଜାରେ ଆସିଥିଲେ, ମୋର ଅନୁମାନ; ତେଣୁ ଶୋଇବା ବସିବାକୁ ରାତିରେ ଜାଗା ମିଳିବା ଅସମ୍ଭବ ।

୪.୨.୧୯୫୮

ସକାଳେ ଶ୍ରୀ ଅବିନାଶ ବାବା (ବୟସ ୨୮ ହେବ) ଆମକୁ ଗୁଡ଼ିଏ ଜଳଖିଆ ଆଣି ଖାଇବାକୁ ଦେଲେ । ଅବଶ୍ୟ ଦାଲ୍‌ଦା ତେଲ ବା "ଘିଅ''ରେ ତିଆରୀ । ଏହା ତ ବିଶୁଦ୍ଧ ନୁହେଁ । ମାତ୍ର ଆମେ ଖାଇଦେଲୁ ।

ଉପରଓଳି ନାଟିମା ଗାଁର ଆଶ୍ରମରେ ବିଶ୍ୱନାଥ ବାବାଙ୍କ ସହିତ ସଚ୍ଚିବାବୁ ଓ ମୁଁ ଶିକ୍ଷା (ଭକ୍ତମାନଙ୍କର ପିଲାମାନଙ୍କର ଶିକ୍ଷା) ଓ ସମାଜର ଅବସ୍ଥା ବିଷୟରେ ଆମେ ଅଧଘଣ୍ଟାଏ କଥାବାର୍ତ୍ତା କଲୁ । ତାଙ୍କର ରୋଷେଇରେ ଆମେ "ଭିକ୍ଷା'' (ଭୋଜନ) ପାଇଲୁ । ସନ୍ଧ୍ୟାରେ ମହୀନ୍ଦ୍ରବାବା ଓ ଅବିନାଶ ବାବାଙ୍କୁ ଦେଖା କରି, ମୋଟର ବସ୍‌ରେ ଆମେ ଢେ଼ଙ୍କାନାଳ ଗଡ଼କୁ ଆସି, ଶ୍ରୀ କୃପାସିନ୍ଧୁ ରଥଙ୍କ ଘରେ ରହିଲୁ । ମୁଁ ପଢ଼ିଲି: ସିଦ୍ଧ ଗଙ୍ଗାଧର ବାବାଙ୍କ କୃତ ମହିମା ସଂହିତା ଏବଂ ସତ୍ୟ ମହିମାଧର୍ମରେ ମତଭେତ କାହିଁକି ? ଲେଖକ କାଶୀନାଥ ବାବା ।

୫.୨.୧୯୫୮

ସକାଳୁ ଉଠିବାକୁ ମୋର ତଣ୍ଟି ଦରଜ ଓ ଦେହ ଜ୍ୱରଜ୍ୱର ଲାଗିଲା । କୃପାସିନ୍ଧୁ ରଥଙ୍କ ବସାରେ ଟକିଏ ସୁଜୀହାଲୁଆ ଖାଇ, ମୁଁ ସାଇକେଲରେ ସିଧା କଟକ ଚାଲିଆସିଲି । ପ୍ରାୟ ୫ ଘଣ୍ଟା ଲାଗିଲା । ବିଚିତ୍ରାନନ୍ଦ ମଙ୍ଗଳାବାଗର ହୋମିଓଡାକ୍ତର ସତ୍ୟବାଦୀଙ୍କ ଠାରୁ ଔଷଧ ୨ ପାନ ଆଣିଦେଲା, ଖାଇଲି ।

ବନ୍ନୁ ଓ ବାବୁଲିର ଭବିଷ୍ୟତ ପଢ଼ା ଓ ଖର୍ଚ୍ଚ ପାଇଁ ଚୁନୀ ବଡ଼ ଚିନ୍ତିତ । ମୁଁ ମଧ୍ୟ ଚିଠି ପାଇଛି । ବନ୍ନୁର ଇତିମଧ୍ୟରେ ପୁଣି ଜ୍ୱର ହୋଇ ଛାଡ଼ିଗଲା ।

୧୦.୨.୧୯୫୮

ସକାଳେ ଶ୍ରୀ ଇନ୍ଦ୍ରମଣି ମହାନ୍ତି ଓ ଶ୍ରୀ ବିନୋଦ କାନୁନ୍‌ଗୋ ଆସିଥିଲେ । "ଗ୍ରାମସେବକ''ର ଗ୍ରାହକସଂଖ୍ୟା କିମତି ବଢ଼ିବ, ସେମାନେ ଚର୍ଚ୍ଚା କଲେ । ମୋର ଦେହ ଆଜି ଭଲ ବୋଧ ହେଉଛି ।

୧୩.୨.୧୯୫୮

ପୁରୀ ସହରରେ ଶାନ୍ତିସେନା ଶିବିର ଆଜିଠାରୁ ୩ ଦିନ ପାଇଁ ହେଲା । ମୋଟରେ ୧୦୭ ଜଣ ଯୋଗ ଦେଇଥିଲେ । ଏଥିମଧ୍ୟରେ ରାମଚନ୍ଦ୍ରପୁର କସ୍ତୁରବା କେନ୍ଦ୍ରର ୩୪ ଜଣ

ଶିକ୍ଷାର୍ଥିନୀ ଓ ଶ୍ରୀମତୀ ପାର୍ବତୀ ଗିରି ଥିଲେ । ଉପରଓଳି ଶ୍ରୀ ପଦ୍ମଚରଣ ସାମନ୍ତସିଂହାରଙ୍କ ସହ ମୁଁ ଗଦାଧର ହାଇସ୍କୁଲରେ ଓ ବିଶ୍ୱନ୍ଥର ବିଦ୍ୟାପୀଠ ଛାତ୍ରମାନଙ୍କୁ ସର୍ବୋଦୟର ଧାରଣା ଦେବାକୁ ଘଣ୍ଟାଏ ଲେଖାଁଏ କିଛି କହିଲି ।

୧୮.୨.୧୯୫୮

ସକାଳ ପ୍ରାୟ ୭ଟାଠାରୁ ରାତି ୧୦ଟା ପର୍ଯ୍ୟନ୍ତ ମୁଁ ଅଫିସ କାର୍ଯ୍ୟ କଲି । କେଉଁଝର ଜିଲ୍ଲାର କଣ୍ଟିଆପଡ଼ା ଗ୍ରାମଦାନ ଗାଁ ପାଇଁ ଶ୍ରୀଯୁକ୍ତ ଗୁଣନିଧି ବାବୁ ଯେଉଁ ତନ୍ତଘରର ଏଷ୍ଟିମେଟ, ତନ୍ତ ସରଞ୍ଜାମର ଏଷ୍ଟିମେଟ ଓ ପୋଖରୀର ଜୀର୍ଣ୍ଣସଂସ୍କାର ପାଇଁ ଏଷ୍ଟିମେଟ କରିଥିଲେ ସେଗୁଡ଼ିକ ମୁଁ ଇଂରାଜୀରେ ଟାଇପ୍ କରିଦେଲି ।

ମୟୂରଭଞ୍ଜ ଜିଲ୍ଲାର ଆଡ଼ିସନାଲ ମ୍ୟାଜିଷ୍ଟ୍ରେଟଙ୍କୁ, ସେ ଜିଲ୍ଲାର ଭୂଦାନ-ନିବେଦକଙ୍କୁ, ଓଡ଼ିଶାର ରାଜସ୍ୱବିଭାଗର ଅଣ୍ଡର ସେକ୍ରେଟାରୀଙ୍କୁ ଚିଠି ଲେଖିଲି । ଓଡ଼ିଶା ସରକାର ରେଭିନ୍ୟୁ ବିଭାଗରେ ତାଙ୍କର ତା ୫.୧୧.୧୯୫୪ର ନୋଟିଫିକେସନ ନମ୍ବର : ୪୯୩୧ ଇ.ଏ. / ବି.ଏଚ୍ - ୨/ ୫୪ ଅନୁସାରେ ମୋତେ ପ୍ରାଦେଶିକ ସରକାରୀ ଭୂଦାନ ଯଜ୍ଞ ସମିତିରେ ମେମ୍ବର-ସେକ୍ରେଟାରୀ କରିଥିଲେ । ମୁଁ ସେଥିରୁ ଆଜି ଇସ୍ତଫା ଦେଲି - ମୋର ପତ୍ର ନମ୍ବର ୪୧/ ୫-ଏ ଦ୍ୱାରା

ଓଡ଼ିଶା ସରକାରଙ୍କର ରାଜସ୍ୱ ବିଭାଗର ଅଣ୍ଡର-ସେକ୍ରେଟାରୀ ମହୋଦୟେଷୁ -

ମହାଶୟ,

କିପରି ଅସୁବିଧା ମଧ୍ୟରେ ମୁଁ ଓଡ଼ିଶା ଭୂଦାନ ଯଜ୍ଞ ସମିତିର ସଂପାଦକ କାର୍ଯ୍ୟ ବର୍ଷେ ହେଲା ଚଳାଇଆସିଛି, ତାହାର ଆଭାସ ମୁଁ ଆପଣଙ୍କ ନିକଟକୁ ମୋର ତା ୨୪.୧୨.୧୯୫୭ର ନମ୍ବର ୩୧୩ / ୩୬-ବି ପତ୍ରର ୩ୟ ପରିଚ୍ଛେଦରେ ଦେଇଥିଲି । ସେହି କାର୍ଯ୍ୟ ଆଉ ଚଳାଇବା ନିମିତ୍ତ ଅସମର୍ଥ ଜାଣି, ମୁଁ ତା ୨୦.୨.୧୯୫୮ ଠାରୁ ସମିତିର ସଂପାଦକ ଏବଂ ସଦସ୍ୟପଦରୁ ଏହି ପତ୍ରଦ୍ୱାରା ଇସ୍ତଫା ଦେଉଅଛି ।

୨. ମୁଁ ଅନୁଭବ କରୁଅଛି ଯେ ସମିତିର କାଯ୍ୟ ସୂଚାରୁରୂପେ ଚଳାଇବାକୁ ସଦସ୍ୟଭାବରେ ଯେଉଁ ଯୋଗ୍ୟତା ଓ ଶକ୍ତି ଦରକାର, ତାହା ମଧ୍ୟ ମୋଠାରେ ନାହିଁ । ଯେତେ ଲୋକଶକ୍ତି ଏଥିପାଇଁ ସଂଗ୍ରହ କରିବା ଆବଶ୍ୟକ, ସେ ଶକ୍ତି ମୁଁ ସଂଗ୍ରହ କରିପାରିନାହିଁ, ଏବଂ ମୋର କ୍ଷୁଦ୍ର ବିଚାରରେ ଓଡ଼ିଶା ସରକାର ସମିତିକୁ ଯେପରି ସାହାଯ୍ୟ ସହଯୋଗ କରିବେ, ମୁଁ ଆଶା କରିଥିଲି, ସେପରି ସାହାଯ୍ୟ ସହଯୋଗ ମୁଁ ପାଇପାରିଲି ନାହିଁ । ଏଣୁ କରି, ମୁଁ ସାଧାରଣ ସଦସ୍ୟଭାବରେ ମଧ୍ୟ ଆଉ ରହିବାକୁ ଚାହେଁ ନାହିଁ ।

୩. ମୋର ଇସ୍ତଫା ଅତି ଶୀଘ୍ର ଗ୍ରହଣ କରି ଓ ମୋଠାରୁ ସମିତିର ରେକର୍ଡ଼ ଆଦି ଚାର୍ଯ୍ୟ ନେବାର ଆଶୁ ବ୍ୟବସ୍ଥା କରି ମୋତେ ବାଧିତ କରିବେ, ଅନୁରୋଧ କରେ । କିଏ

କେବେ ମୋଠାରୁ ଏହି ରେକର୍ଡ଼ ଆଦି ବୁଝିନେବେ, ଦୟାକରି ମୋତେ ୧୫ ଦିନ ଆଗରୁ ଜଣାଇଲେ, ମୁଁ କଟକରେ ଉପସ୍ଥିତ ହେବି । ନୋହିଲେ, ଅପେକ୍ଷା କରି କଟକରେ ବସି ରହିବା ମୋ ପକ୍ଷରେ ଅସମ୍ଭବ ଅଟେ ।

୪. ତଳଲିଖିତ ରେକର୍ଡ଼ମାନ ଓଡ଼ିଶା ଭୂଦାନ ଯଜ୍ଞ ସମିତିଙ୍କର ଅଛି - ସମିତିଙ୍କର ସ୍ୱତନ୍ତ୍ର ଘର ନ ଥିବାରୁ, ସେଗୁଡ଼ିକ ଉତ୍କଳ ଖଦୀମଣ୍ଡଳଙ୍କର ଥୋଡ଼ିଆସାହି ଘରେ (କଟକରେ) ଅଛି । ରେକର୍ଡ଼ମାନ: -

(୧) ଓଡ଼ିଶା ଭୂଦାନ ସମିତିକୁ ଓଡ଼ିଶା ସରକାରଙ୍କର ରାଜସ୍ୱବିଭାଗରୁ, ଜିଲ୍ଲା କଲେକ୍ଟର, ପ୍ରଭୃତିଙ୍କ ଠାରୁ ଚିଠିପତ୍ର

(୨) ଉପରୋକ୍ତ ଚିଠିପତ୍ରଗୁଡ଼ିକର ଉତ୍ତରର ଏବଂ ସମିତିଠାରୁ ଅନ୍ୟମାନଙ୍କଠାକୁ ପ୍ରେରିତ କେତେକ ଚିଠିର ନକଲ ।

(୩) ସମିତିର ଡାକଖାତା

(୪) ଓଡ଼ିଶା ଭୂଦାନ ଯଜ୍ଞସମିତିର ବୈଠକଗୁଡ଼ିକର ବିବରଣୀ ଖାତା ।

(୫) ଓଡ଼ିଶା ଭୂଦାନ ଯଜ୍ଞ ଆକ୍ଟ ଓ ରୂଲସ୍ ବହି

(୬) କେତେକ ଦାନପତ୍ର ।

(୭) ଗୋଟିଏ ରବର୍-ମୋହର ।

୫. ଦୟା କରି ଏହି ପତ୍ରର ପ୍ରାପ୍ତିସ୍ୱୀକାର ଜଣାଇବେ ।

ବଶଂବଦ

କଟକ, ଶରତ୍‌ଚନ୍ଦ୍ର ମହାରଣା,

ତା ୧୮.୨.୧୯୫୮ ସଂପାଦକ ।

୨୦.୨.୧୯୫୮

ସାଲେପୁର ଅଞ୍ଚଳରେ ଜମିଦାନକାରୀମାନେ ଭୂଦାନକୁ ଦେଇଥିବା ଅନାବାଦୀ ଓ ନିଜଚାଷ ଜମିର ତାଲିକା ଶ୍ରୀ ରାଧାଶ୍ୟାମ ମହାରାଜଙ୍କ ସହ ତୁଳନା କଲି । ଅଫିସର ବାକୀ ସାମାନ୍ୟ ଚିଠିପତ୍ର କାର୍ଯ୍ୟ ସାରିଲି । ଶ୍ରୀଯୁକ୍ତ ଗୁଣନିଧିବାବୁଙ୍କର ସୂଚନାକ୍ରମେ ପୁରୁଣାପାଣିର ଗ୍ରାମସଭାର ଏକ ଦରଖାସ୍ତ ଡ୍ରାଫ୍ଟ କରିଦେଲି । କଟକ ଶାନ୍ତିଶିବିରର ଆୟବ୍ୟୟ ଖବରକାଗଜରେ ପ୍ରକାଶ ପାଇଁ ବୋଉଙ୍କୁ ଏକ ରିପୋର୍ଟ ଲେଖି ଦେଲି । ସନ୍ଧ୍ୟାରେ ଗ୍ରାମସେବକ ପ୍ରେସରେ ଏକ ବୈଠକ ହେଲା । କଟକ ସହରର କାର୍ଯ୍ୟବିଷୟ ଚର୍ଚ୍ଚା ହେଲା । ଶ୍ରୀଯୁକ୍ତ ଗୁଣନିଧି ବାବୁଙ୍କ ସହ ମୁଁ ସେଠାକୁ ଯାଇଥିଲି ।

୨୨.୨.୧୯୫୮

ରାମଚନ୍ଦ୍ରପୁରରେ । କସ୍ତୁରବା ଗାନ୍ଧୀ ଶ୍ରାଦ୍ଧ ଦିବସ । ସକାଳେ କସ୍ତୁରବା କେନ୍ଦ୍ରରେ ପତାକା ଉତ୍ତୋଳନ କରି, ଏବଂ ମୁଁ କହିଲି ଯେ ଗାନ୍ଧୀଜୀ ନିଜେ ଲେଖିଛନ୍ତି ଯେ ସେ କସ୍ତୁରବାଙ୍କ ପାଖରୁ ଅହିଂସା ଶିଖିଥିଲେ । ଉପରଓଳି କସ୍ତୁରବା କେନ୍ଦ୍ରରେ ସୂତ୍ରଯଜ୍ଞ ଓ ପ୍ରାର୍ଥନାରେ ଯୋଗ ଦେଲି ।

୨୩.୨.୧୯୫୮

ରାମଚନ୍ଦ୍ରପୁରରେ ମୌଳିକ ସ୍କୁଲଗୁଡ଼ିକର ଶିକ୍ଷାସପ୍ତାହ ପାଳିତ ହେଲା । ମୋଟରେ ପ୍ରାୟ ୭୭୦ ଜଣ ପିଲା ଆସିଥିଲେ । ଛାତ୍ରସଭାରେ ଆର୍ତ୍ତବାବୁଙ୍କ ପୁଅ ରବୀନ୍ଦ୍ର ମହାନ୍ତି ସଭାପତି ହୋଇଥିଲେ । ଗୁରୁଜୀ ଶ୍ରୀ ମଦନମୋହନ କଣ୍ଡ ଏହି ସପ୍ତାହ ପାଳନ କମିଟିର ସଂପାଦକ ଥିଲେ ଓ ଶ୍ରୀ ବାସୁଦେବ ସାମଲ ସାଧାରଣ ସଭାର ସଭାପତି ହୋଇଥିଲେ । ବୋଉ, ଶ୍ରୀ ଫକୀର ମିଶ୍ର, ଶ୍ରୀ ଚିନ୍ତାମଣି ସ୍ୱାଇଁ (ମଧୁସାଗର ବିଦ୍ୟାପୀଠର ପରିଚାଳକ) ଭାଷଣ ଦେଲେ । ମୁଁ ମଧ୍ୟ ୫/୭ ମିନିଟ୍ କହିଲି । ସରକାରଙ୍କର ପଲିସିକୁ ମୁଁ ସମାଲୋଚନା କଲି । ମାତ୍ର ସେତିକିରେ ଆମ କାମ ଶେଷ ହେଉନାହିଁ । ଆମେ, ଗୁରୁଜୀମାନେ ଭଲ କାର୍ଯ୍ୟ କରି, କେତେକ ନମୁନା ଦେଖାଇଦେବା ଉଚିତ ।

୨୬.୨.୧୯୫୮

ଉତ୍କଳ ଜାତୀୟ ଶିକ୍ଷା ସଂସଦର ବୈଠକରେ ମୁଁ ଯୋଗ ଦେଲି । ପରୀକ୍ଷା, ଇଂରାଜୀ ଶିକ୍ଷା, ଅର୍ଥନୈତିକ ସର୍ଭେ, ଆଦି ଚର୍ଚ୍ଚା ହେଲା ।

୨୭.୨.୧୯୫୮

ଉପରଓଳି ଶ୍ରୀ ଫକୀର ମିଶ୍ର ଓ ମୁଁ ମେଦୁଆକୂଳ, ଅଲିଆବାଦ ଗଲୁ । ରତ୍ନଗିରିର ବୌଦ୍ଧକୀର୍ତ୍ତିମାନ ତା ୧୫.୨.୧୯୫୮ ଠାରୁ ଖୋଲା ଆରମ୍ଭ ହୋଇଛି । ଆମେ ୧୦.୨୦ ମିନିଟ୍ ଦେଖିଆସିଲୁ ।

୨୮.୨.୧୯୫୮

ଉପରଓଳି ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନଙ୍କର ବୈଠକରେ ଯୋଗ ଦେଲି । ବୋଉ (ରମା ଦେବୀ) ମଧ୍ୟ ଥିଲେ । ପ୍ରତି ୨ ମାସରେ ଥରେ ସୋପାନଗୁଡ଼ିକର କାର୍ଯ୍ୟ ଦେଖିବାପାଇଁ ଗୁରୁଜୀମାନେ ମୋତେ ଓ ଫକୀର ବାବୁଙ୍କୁ ମନୋନୀତ କଲେ । ବାବୁଲି ଓ ବନ୍ଦୁକୁ ଅନ୍ୟତ୍ର ପଢ଼ାଇବା କଥା – ରୀତିମତ ଅଧ୍ୟାପନା ଓ କାର୍ଯ୍ୟର ତ୍ରୁଟିଯୋଗୁଁ – ମୁଁ ଭାବୁଛି

ବୋଲି ସମସ୍ତଙ୍କ ଆଗରେ କହିଲି । ଅବଶ୍ୟ, ଅଭିଭାବକ ଭାବରେ ୨/୪ ଅଣା ଦୋଷ ମଧ୍ୟ ଆମର ଅଛି ।

୨୦.୩.୧୯୫୮

ସକାଳେ ଶ୍ରୀମାନ୍ ମୁକ୍ତେଶ୍ୱର ବେଉରା (ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟର ପ୍ରଥମ ଦଳର ଛାତ୍ର) ଦେଖା କଲା । ସେ ନିକଟରେ ଜାପାନକୁ ଶିକ୍ଷା ଉଦ୍ଦେଶ୍ୟରେ ଯିବ । ସେବାଗ୍ରାମରେ ୩୨ ଖଣ୍ଡ ଗ୍ରାମକୁ ନେଇ ସ୍ୱଚ୍ଛତା, ପାନୀୟଜଳ ଓ ଖଦୀ ବିଷୟରେ କାର୍ଯ୍ୟ ଆରମ୍ଭ ହୋଇଛି, ସେ କହିଲା ।

କସ୍ତୁରବା କେନ୍ଦ୍ରର ଶିକ୍ଷାର୍ଥିନୀମାନଙ୍କର ମନୋବିଜ୍ଞାନର ନୋଟଖାତା ଦେଖିଲି ।

୨୪.୩.୧୯୫୮

ରାମଚନ୍ଦ୍ରପୁରରୁ ଚାଲିକରି ଓ ମୋର ସତରଞ୍ଜି, ମଶାରି, ମୋଟ ଘୋଡ଼ିହେବା ଚାଦର, ଲୁଗା ଧରି ବନ୍ଧଡିହ, ମୁଣ୍ଡମାଳରେ ଦେଇ ଆସିଲି । ମିର୍ଜାପୁର ଠାରେ ଶ୍ରୀ ରାମ ବେହେରା (ଜାତିରେ ଗୋପାଳ)ଙ୍କ ଘର ପିଣ୍ଡାରେ ପାଣି ପିଇଲି ଓ ମୋ ସହିତ ଥିବା ରୋଟି , ତରକାରୀ, ତରଭୂଜ ଖାଇଲି । ଦିନ ୪ଟାରେ କଦଳାମଠରେ ପହଞ୍ଚିଲି । ରାତିରେ ମଠରେ ପ୍ରାସଦ (ଅନ୍ନ) ଖାଇ ଶୋଇଲି । ଅଧିକାରୀ ମହାଶୟଙ୍କର ନିର୍ଦ୍ଦେଶକ୍ରମେ ତାଙ୍କର ମୂଲିଆ ରଙ୍କୁ(ଆ) ମୋର ଗୋଡ଼ ଘସିଦେଲେ । ପଥଶ୍ରମ ପରେ ଏହାଦ୍ୱାରା ମୋତେ ବଡ଼ ଆରାମ ଲାଗିଲା ।

ମଠରେ ଲାଳିତପାଳିତ ୬ ବର୍ଷର ଝିଅ କୁନ ଓ କଷଣୀ ନାମି ୭/୮ ବର୍ଷର ଝିଅ ବନୁକଥା ବହୁତ ପଚାରିଲେ । ଗତ ୧୮ ବା ୧୯ ବର୍ଷରେ ମୁଁ ଏହି କଦଳାମଠ ଦେଇ ଯିବାଆସିବାରେ ମଠର ଅଧିକାରୀ ମହାଶୟଙ୍କ ଠାରୁ ଓ ତାଙ୍କର ପରିଚାରକମାନଙ୍କଠାରୁ ଏବଂ ଏହି ପଡ଼ୋଶୀମାନଙ୍କଠାରୁ କେତେ ଆଦର ଓ ସେବା ପାଇଲିଣି ! ମୁଁ କଅଣ ପ୍ରତିଦାନ ଦେଇଛି ?

୨୬.୩.୧୯୫୮

କଟକରେ । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଅନୁଗୁଳରୁ କଟକକୁ ଆସିଲେ । ସକାଳେ ମୁଁ "ଲୋକନୀତି" କ୍ଲାସରେ କିଛି କହିଲି । ଜୀବନରେ ଉପଲବ୍ଧି ଟା ବଡ଼ କଥା; ଖାଲି ଶୁଣିଲେ ବା ପଢ଼ିଲେ ଯଥେଷ୍ଟ ନୁହେଁ ।

ମୁଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ମହତାବବାବୁଙ୍କୁ ତାଙ୍କର memo. Dy. No. 3041-

CM., d/12.9.58 ଟି ଫେରାଇଲି ଓ ତତ୍‌ସଙ୍ଗେ ବିଶ୍ୱନାଥ ପଟ୍ଟନାୟକଙ୍କର ଅନୁସନ୍ଧାନ ରିପୋଟ (୩.୩.୫୮ର) ପଠାଇଲି । ମୋର ପତ୍ର ନମ୍ବର ୪୫, ତା ୨୬.୩.୧୯୫୮ ସହ ।

ରେଭେନ୍ୟୁ ଡ଼ିପାର୍ଟମେଣ୍ଟର ଅଣ୍ଡର ସେକ୍ରେଟାରୀଙ୍କୁ ତାଙ୍କର ବି.ଏଚ୍. ୭/୪୮, ୮୫୪୯ ଆର୍. ୨୨.୩.୫୮ - ଶରତ୍ ମହାରଣାର ଭୂଦାନ ସମିତିରୁ ଇସ୍ତଫାର ଉତ୍ତର ଦେଲି । ରାଜସ୍ୱମନ୍ତ୍ରୀଙ୍କ ସହ ମୋର ଆଉ କିଛି ଆଲୋଚନା କରିବାକୁ ନାହିଁ । ଭୁବନେଶ୍ୱର ଯିବା ଆସିବାକୁ ମୋର ଅର୍ଥ (ପଇସା) ନାହିଁ । ଗତ ୧ ମାସର ମୋର ଜମାଖର୍ଚ୍ଚ ଖାତାରେ ଲେଖିଲି ଓ ବଳକା ମିଳାଇଲି । ଏ ୩/୪ ଦିନର ବାସରୀ ଲେଖିଲି ।

୨୮.୩.୧୯୫୮

କଟକରେ । ସକାଳେ ଫକୀର ମିଶ୍ରଙ୍କର ଅରଟରେ ମୁଁ ସୂତା କାଟିଲି । ସନ୍ଧ୍ୟାବେଳେ କଟକ ଟାଉନ୍‌ହଲରେ ଆଚାର୍ଯ୍ୟ ହରିହର ଦାସଙ୍କ ସଭାପତିତ୍ୱରେ ଶ୍ରୀଯୁକ୍ତ ଗୋପବାବୁ ତାଙ୍କର ତା ୨୨.୨. ରୁ ୨୪.୩.୧୯୫୮ ପର୍ଯ୍ୟନ୍ତ ପଦଯାତ୍ରାର ଅନୁଭୂତି ବର୍ଣ୍ଣନା କଲେ । ସହରଲୋକେ ଗ୍ରାମଦାନ ଗାଁର ଲୋକଙ୍କର ଚିନ୍ତାଧାରାର ପରିବର୍ତ୍ତନରୁ କଅଣ ଶିଖିବା ଓ ଉଭୟଙ୍କର ସଂପର୍କ କିପରି ସୁନିୟନ୍ତ୍ରିତ ହେବ, ନିଶାନିବାରଣ ନିଶ୍ଚୟ ହେବ, ଆଦି ବିଷୟରେ ସେ କହିଲେ । ସଭାରେ ପ୍ରାୟ ୪୦ ଜଣ ଆମେ ଥିଲୁ । ପ୍ରଫେସର ଦୟାନିଧି ପଟ୍ଟନାୟକ, ମୃତ୍ତିକା-ସଂରକ୍ଷଣ ଅଫିସର ଶ୍ୟାମ ପଟ୍ଟନାୟକ, ହିନ୍ଦିସେବକ ସମାଜର ସଦସ୍ୟ ଶ୍ୟାମସୁନ୍ଦର ମିଶ୍ର, ବିନୋଦ କାନୁନ୍‌ଗୋ ଆଦି ଯୋଗ ଦେଇଥିଲେ ।

୨୯.୩.୧୯୫୮

ଥୋଡ଼ିଆସାହିରେ ସକାଳେ ହରମୋହନ ପଟ୍ଟନାୟକ, ଫକୀର ମିଶ୍ର, ଗୁଣନିଧି ମହାନ୍ତି, ଚିତ୍ତରଞ୍ଜନ ଦାସ ଓ ମୁଁ ଥାଇ ଓଡ଼ିଶାରେ ଗ୍ରାମ ବିଶ୍ୱବିଦ୍ୟାଳୟ କଥା ପଡ଼ିଲା । ହରମୋହନ ବାବୁ ତାହାର ଜରୁରୀ ଆବଶ୍ୟକତା କଥା ଉଠାଇଲେ । ମୁଁ କହିଲି ଆବଶ୍ୟକତା ତ ଅଛି ମାତ୍ର ଆଗେ ଯୋଗ୍ୟ ଲୋକ ବାହାରି ନିଜକୁ ସମର୍ପଣ କରି ଲାଗିଲେ ହେବ । ଆମ ଭିତରେ ସେପରି ଲୋକ ନାହାନ୍ତି । ଫକୀରବାବୁ କହିଲେ ଆମେ (କର୍ମୀମାନେ) ସବୁବେଳେ ଗୁରୁଜନମାନଙ୍କ ଉପରେ ନିର୍ଭର କରି, ସେମାନଙ୍କର ମତାମତକୁ ଡରି ଡରି, କିଛି ନିଜର ଶକ୍ତି ଦେଖାଉନାହୁଁ । ବଡ଼ମାନେ ସାନମାନଙ୍କର କାର୍ଯ୍ୟକୁ ସର୍ବଦା ଖୁଣିଲେ କିଛି ହୁଏ ନାହିଁ । ଶ୍ରୀଯୁକ୍ତ ଗୁଣନିଧିବାବୁ ମୋ ସହ ଏକମତ ହୋଇ, ଦକ୍ଷ ଲୋକର ଅଭାବ ଦେଖାଇଲେ । ଚିତ୍ତବାବୁ ନୀରବ ଥିଲେ । ଶେଷକୁ ୨/୩ ପଦ କଥାରୁ ଆମକୁ ବୋଧହେଲା ଯେ ଶ୍ରୀଯୁକ୍ତ ମାଳତୀ ଚୌଧୁରୀ ("ନୁମା")ଙ୍କ ସହ

ତାଙ୍କର ସଂପର୍କ ବଡ଼ ତିକ୍ତ ହୋଇଗଲାଣି । ସେ ତାଙ୍କୁ ନୂମା ବୋଲି ଡାକିଲେ ହେଁ, ସେ "ମା" ହୋଇନାହାନ୍ତି, ଉତ୍ତର ମୌଳିକ ପିଲାଙ୍କର ଖର୍ଚ୍ଚ ପାଇଁ ଚମ୍ପତିମୁଣ୍ଡାକୁ ସେ ଧାର ଦେବାକୁ ବାରଣ କରିଦେଇଥିଲେ, ସେ ମୋତେ ଖାଇପାରିବେ ନାହିଁ ..... ସେ କହିଲେ । ଏହା ବଡ଼ ଦୁଃଖର କଥା । ଏଥିରେ ଅନୁଷ୍ଠାନ କିପରି ରହିବ ?

(ତା ୩୧.୩.୫୮ରେ ମୁଁ ଖୁଡ଼ୀଙ୍କୁ ବୁଝାଇ ଏକ ପତ୍ର ଲେଖିଲି ଯେ ସେ ଚିତ୍ତକୁ ଡାକି ମନଖୋଲା କଥାବାର୍ତ୍ତା ହେଉନ୍ତୁ । ଫଳରେ, ଦୁଃଖ, ଅଭିମାନ ଦୂର ହୋଇଯିବ ।)

ଲୁକୁନ ଭାଇଙ୍କୁ ୬ ପୃଷ୍ଠାର ଏକ ଚିଠି ଲେଖିଲି ଯେ (୧) ବାବୁଲି ୧୯୫୮-୫୯ ବର୍ଷଟା ସମ୍ଭବତଃ ରାମଚନ୍ଦ୍ରପୁରରେ ୮ମ ସୋପାନରେ ପଢ଼ିବ, ତାକୁ ଅନ୍ୟତ୍ର ପଠାଇବାକୁ ଆମେ ଠିକ୍ କରିପାରୁନାହୁଁ ।

(୨) ମଣ୍ଡପୋଖରୀ ବାଡ଼ିରେ ଏକ କ୍ଷୁଦ୍ର ନାରୀକର୍ମୀକେନ୍ଦ୍ର କରାଯାଇପାରେ, ତାହା ଗରୀବାନୀ ଢ଼ଙ୍ଗରେ ଚାଲିବ - ସୂତାକଟା, ଗ୍ରାମସଫାଇ, ପୂର୍ବ ମୌଳିକ ଶିକ୍ଷା ବା ମାତୃମଙ୍ଗଳ କାର୍ଯ୍ୟ - କିଛି ଗୋଟିଏ ଚାଲିବ । ମଧ୍ୟେ ମଧ୍ୟେ ଚୁନୀ ଯାଇଆସି ସାହାଯ୍ୟ କରିବ । ଘରଠାରୁ ଅଲଗା ରହି, ଚୁନୀ ସେଠାରେ ଏ କାର୍ଯ୍ୟ କରିବା ସୁନ୍ଦର ଦିଶିବ ନାହିଁ ।

(୩) ବେଢ଼ିରେ କୌଣସି ନାରୀକର୍ମୀ ବା ଚୁନୀ ରହି କାର୍ଯ୍ୟ କରିବାକୁ ଭୟ ହେବ, ଲୋକାଳୟ ପାଖରେ ନାହିଁ । ସେଠାରେ ପୁରୁଷ କର୍ମୀ (୨/୩ ଜଣ ଶିକ୍ଷକ, କୃଷି, ଗ୍ରାମୋଦ୍ୟୋଗରେ ଦକ୍ଷ ଏବଂ କିଶୋର ବୟସର ୧୦/୧୨ ଜଣ ବାଳକ ରହି ପରିଶ୍ରମାଳୟ କରି, ଶିକ୍ଷା ପାଇପାରନ୍ତି । ଏହା ପୂରା ସ୍ୱାଧୀନଭାବରେ ହେବ, ସାର୍ଟିଫିକେଟ ବା ଡିପ୍ଲୋମାର ଆଶା ନ ଥିବ । ଚରିତ୍ରଗଠନ ଓ ସ୍ୱାବଲମ୍ବନ ଲକ୍ଷ୍ୟ ହେବ ।

କଟକରୁ ମୋଟର-ବସ୍‌ରେ ଶ୍ରୀଯୁକ୍ତ ଗୋପବାବୁ ସକାଳେ ଯାଜପୁର ଗଲେ - ତା ୩୦ରେ ସେଠାରୁ ବରୀ ଯିବେ । ସେ ଘରୁ ବାହାରି ଯିବାବେଳେ ମୋର ହଠାତ୍ ମନେ ହେଲା ଯେ ତାଙ୍କ ସଙ୍ଗେ ମୋର ଆଉ ଯେପରି ଦେଖା ହେବ ନାହିଁ, ଏହା ଶେଷ ଦେଖା । ମୁଁ ଜାଣି (ମନକୁ ବୁଝାଇ) ପ୍ରଣାମ ବାକୀ ରଖିଲି ।

୧.୪.୧୯୫୮

୧୯୩୬ ମସିହା ଆଜି ତାରିଖରେ ଏପ୍ରିଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଥିଲା । ମୁଁ ସେତେବେଳେ ପାଟଣା(ବିହାର)ରେ ଏମ୍.ଇଡ଼ି. ପଢୁଥିଲି । ବାଇଶ ବର୍ଷ ବିତିଗଲାଣି । ଭାରତ ସ୍ୱାଧୀନ ହେବାର ୧୦ ବର୍ଷ ହେଲାଣି । ବାହାରିଆ କେତେ ନାମ ହୋଇଛି, ମାତ୍ର ପ୍ରକୃତରେ ସାଧାରଣ ଲୋକର, ଗରୀବ ଲୋକର କି ସ୍ୱାଚ୍ଛନ୍ଦ୍ୟ ବଢ଼ିଛି ଓ ଲୋକଙ୍କର ପ୍ରକୃତ ସୁଖ, ସନ୍ତୋଷ, ଉଚ୍ଚ ଭାବନା କ'ଣ ହୋଇଛି ?

୧୨.୪.୧୯୫୮

ଜଣ୍ଡିଆପଡ଼ାରେ । ଶ୍ରୀ କୃଷ୍ଣଚନ୍ଦ୍ର ଜେନା ଓ ମୁଁ ଜଣ୍ଡିଆପଡ଼ାରୁ ଚାଲି କରି କେଉଁଝରଗଡ଼କୁ ଆସିଲୁ । ଆଲଜେବ୍ରୋ ବିଷୟରେ ସେ ଜାଣିବାକୁ ଚାହିବାରୁ ମୁଁ ତାଙ୍କୁ ମୌଖିକ ଧାରଣା ଦେବାକୁ ଚେଷ୍ଟା କଲି । ବାଟରେ ଜଣେ ୫୦/୫୨ ବର୍ଷର ବୃଦ୍ଧା ମାତା ତାହାର ପ୍ରାୟ ୨୨ ବର୍ଷର ପୁଅକୁ କାଖେଇ କରି ଆଣୁଥିବା ଦେଖିଲୁ । ପୁଅର ଗୋଡ଼ରେ ଖୋଞ୍ଚା ପଶିଥିବାରୁ ସେ ପାଦ ପକାଇବାକୁ ଅସମର୍ଥ ଥିଲା । ମାତୃ-ସ୍ନେହର ଏ ଦୃଶ୍ୟ ମୁଁ ପାଶୋରି ପାରିଲି ନାହିଁ । କେଡ଼େ ଆୟାସରେ ମା ପୁଅକୁ କାଖେଇ କରି ଏହି ୩ ମାଇଲି ବାଟ ନେଉଥାଏ !! ମୁନିବ ଓ ସେ ଗ୍ରାମର ଲୋକେ କି ନିର୍ମମ ଓ ସହାନୁଭୂତି-ହୀନ ତାହା ମଧ୍ୟ ଏ ଦୃଶ୍ୟରୁ ଅନୁମାନ କଲୁ ।

୧୫.୪.୧୯୫୮

୬.୨.୧୯୫୮ରେ ଜାମୁନାଳିଆ (ଡାକନାମ ନେକଡ଼ାଘର) ଗ୍ରାମସଭାର ବିବରଣୀର ନକଲ ଶ୍ରୀଯୁକ୍ତ ଗୁଣନିଧି ବାବୁଙ୍କର ନିର୍ଦ୍ଦେଶକ୍ରମେ ମୁଁ ଆଜି ସକାଳେ ଲେଖିଦେଲି । କୁକୁଟୀ (ମାଟିଆରଙ୍ଗର) ସୂତା (ଯାହା ଗୁଣନିଧି ବାବୁ ମୋତେ ଦେଇଥିଲେ) ଅଡୁଆ ହୋଇ ପଡ଼ିଥିଲା । ମୁଁ ୨ ଘଣ୍ଟା ଲାଗି ସଜାଡ଼ି ଗୁଡ଼ାଇଲି । ପୁରୁଣାପାଣି ଗ୍ରାମଦାନ ଗାଁର କାଗଜପତ୍ର ଦେଖିଲି । ୰ କିଶୋରଲାଲ ମଶ୍ରୁବାଲାଙ୍କର "ସ୍ତ୍ରୀ-ପୁରୁଷ-ମର୍ଯ୍ୟାଦା'' ବହିକୁ ଚୂନୀ ଓଡ଼ିଆରେ ଅନୁବାଦ କରିଥିଲେ ଏବଂ ୧୯୫୨ ରେ ଉତ୍କଳ ଖଦୀ ମଣ୍ଡଳ ତାହାକୁ ପ୍ରଥମେ ଛପାଇଥିଲେ । ସେ ବହିର ୨ୟ ସଂସ୍କରଣ ପାଇଁ ମୁଁ ଥରେ ପଢ଼ି ନେଇଛି ଓ ଓଡ଼ିଆଭାଷାର ଶୁଦ୍ଧତା ଓ ଶୈଳୀ ଦୃଷ୍ଟିରୁ ସଂଶୋଧନ କରୁଅଛି । କେଡ଼େ ବିଚାରପୂର୍ଣ୍ଣ ଓ ଉଚ୍ଚ ଲେଖା !! ଏହି ବହି ପଢୁ ପଢୁ, ବିଶେଷରେ "ସହଶିକ୍ଷା'' ପ୍ରବନ୍ଧଟିଏ ପୃ ୬୭ ପଢୁ ପଢୁ, ବାପା ( ୰ ଚନ୍ଦ୍ରମୋହନ ମହାରଣା) କାହିଁକି କାହାରିକୁ (ଆମ୍ଭମାନଙ୍କୁ ୫/୬ ବର୍ଷର ନିଜର ପୁଅକୁ ସୁଦ୍ଧା) ଛୁଉଁ ନ ଥିଲେ, ତାହାର ତାତ୍ପର୍ଯ୍ୟ ଏତେ ଦିନେ ବୁଝିବା ପରି ମୋତେ ଜଣାଗଲା । ଅବଶ୍ୟ, ବାବାଙ୍କୁ ଆମେ କେବେ ତାଙ୍କର ଏହି ଅ-ସ୍ପର୍ଶର କାରଣ ପଚାରି ନ ଥିଲୁ ବା ସେ ନିଜେ କେବେ କାହାକୁ କହି ନ ଥିଲେ ।

ମୁଁ କେବେ ହେଁ ଅନ୍ୟ ପୁରୁଷ ପିଲା, ବା ଝିଅ ବା ସ୍ତ୍ରୀ ଲୋକଙ୍କୁ ଶୀଳତା-ଶୂନ୍ୟ ଭାବରେ ଧରିନାହିଁ । I have not taken liberty with any of them ବୋଧହୁଏ ବାବାଙ୍କର ଉଚ୍ଚ ବିଚାର ଓ ଆଚରଣର ଅଲକ୍ଷିତ ପ୍ରଭାବରୁ ଏହା ସମ୍ଭବ ହୋଇଛି ।

ଏହି "ସ୍ତ୍ରୀ-ପୁରୁଷ ମର୍ଯ୍ୟାଦା'' ବହିର ୮୨ ପୃଷ୍ଠାର ତଳ ଅଂଶରେ ଲେଖାଅଛି "ଯେଉଁ ସ୍ପର୍ଶର କୌଣସି ଆବଶ୍ୟକତା ନାହିଁ, ସେ ପ୍ରକାରର ସ୍ପର୍ଶ ସର୍ବପ୍ରକାରେ ପରିତ୍ୟାଜ୍ୟ ।

କେବଳ ସ୍ତ୍ରୀ ବା ପୁରୁଷର ନୁହେଁ, କେବଳ ପ୍ରାଣୀମାନଙ୍କର ନୁହେଁ, ମାତ୍ର ଜଡ଼ ପଦାର୍ଥକୁ ମଧ୍ୟ ଏଭଳି ସ୍ପର୍ଶ କରିବା ତ୍ୟାଜ୍ୟ ଅଟେ । XXX। ମୋର ଅନୁମାନ ଯେ ବାପା (୰ ଚନ୍ଦ୍ରମୋହନ ମହାରଣା) ଏହିପରି ଭାବନାରୁ କୌଣସି ଜିନିଷକୁ, ଲୋକକୁ ବା ନିଜର ପିଲାମାନଙ୍କୁ ସୁଦ୍ଧା ଛୁଉଁ ନ ଥିଲେ । ଅବଶ୍ୟ, ତାଙ୍କର ସେହି ଅଭ୍ୟାସର କାରଣ ତାଙ୍କୁ କେବେ ଆମେ ବା ଅନ୍ୟ କେହି ପଚାରି ନ ଥିଲୁ ।

୧୬.୪.୧୯୫୮

ସକାଳେ କୃଷ୍ଣବାବୁ ଓ ମୁଁ ଜାମୁନାଳିଆରୁ ଚାଲିକରି ଗ୍ରାମ ବାଟେ ଚକ ଗାଁକୁ ଗଲୁ । ସେଠାର ପ୍ରଧାନ ଶ୍ରୀ ଦୈତାରି ମହାନ୍ତିଙ୍କୁ ଗ୍ରାମଦାନ ସମ୍ବନ୍ଧୀୟ ବାଣେଶ୍ୱର ମହାକୁଡ଼ଙ୍କ ସହ କଥା ହେଲୁ । ସେ ବର୍ତ୍ତମାନ ଗ୍ରାମଦାନକୁ କର୍ତ୍ତବ୍ୟ ଭାବୁଛନ୍ତି ବୋଲି କହିଲେ । ତାଙ୍କଘରେ ଭାତ ଓ ଆମ୍ବଛୋଚା ଖାଇଲୁ । ମେଘ ଆସିବାରୁ, ତାଙ୍କର ମହୁଲ ଗୋଟାଇ ରଖିବାରେ ସାହାଯ୍ୟ କଲୁ ।

ଆମେ ଡୁମୁରିଆରେ ଶ୍ରୀ ପାଣ୍ଡବ ମହାକୁଡ଼ଙ୍କ ଘରେ ପହଞ୍ଚି ରାତିରେ ରହିଲୁ ଓ ପଖାଳ ଖାଇଲୁ । ତାଙ୍କର ବଡ଼ବାପ ପୁଅ ଭାଇ ଶ୍ରୀ ଭଗବାନ ମହାକୁଡ଼ (ବେକରେ ମାଳି ଓ ରୁଦ୍ରାକ୍ଷ ପିନ୍ଧନ୍ତି)ଙ୍କ ସହ ଗ୍ରାମଦାନ ଓ ନିଶାନିବାରଣ କଥା ଆଲୋଚନା କଲୁ । ସେ "ଗ୍ରାମଦାନ କଅଣ ?'' ଓ "ଗ୍ରାମରାଜ୍ୟ'' ବହି ପଢ଼ିଛନ୍ତି । ଗ୍ରାମର ପଧାନ ଆଦି ଅନ୍ୟତ୍ର ଯାଇଥିଲେ ।

୧୮.୪.୧୯୫୮

ବିନୋବାଜୀଙ୍କର ଭୂଦାନ ଯଜ୍ଞ କାର୍ଯ୍ୟ ଆଜି ୭ ବର୍ଷ ପୂରଣ ହେଲା । ଶ୍ରୀ କୃଷ୍ଣଚନ୍ଦ୍ର ଜେନା, ଶ୍ରୀ ଜଗବନ୍ଧୁ ପଣ୍ଡା (ଅମ୍ବରଚରଖା ଶିକ୍ଷକ) ଓ ମୁଁ କଣ୍ଟିଆପଡ଼ାରୁ ବେଲଦା ପାଖଦେଇ ଓ ମଥୁରାମୁଣ୍ଡେଇ କେନ୍ଦୁଆ, କାଶୀପଦା ଗାଁ ଭିତର ଦେଇ, ମନୋହରପୁରକୁ (ମୋଟ ୧୨ ମାଇଲ) ଆସିଲୁ । ଧନେଶ୍ୱର ନାୟକ କେଉଁଝରଗଡ଼ରୁ ଉପରଓଳି ମଧ୍ୟ ଆସିଲେ । ଆମ୍ଭେମାନେ ମନୋହରପୁରର ପଧାନ ଶ୍ରୀ ବୈକୁଣ୍ଠ ଦେହୁରୀଙ୍କ ଘରେ ରହିଲୁ ଓ ଖାଇଲୁ । ସନ୍ଧ୍ୟାବେଳେ ମୁଁ ଭୂଦାନ ଓ ଗ୍ରାମଦାନ କଥା ସଂକ୍ଷେପରେ (ୟେଲବାଲ ସମ୍ମିଳନୀ ପର୍ଯ୍ୟନ୍ତ) କହିଲି । ପ୍ରାର୍ଥନା ଓ ଅଲେଖଧର୍ମର ଭୀମଭୋଇଙ୍କର ଭଜନ ହେଲା ।

ଏ ଗାଁରେ ସ୍ତ୍ରୀଲୋକମାନେ ଏକତ୍ର ବସି ମଧ୍ୟେ ମଧ୍ୟେ ଗାଁର କଥାବାର୍ତ୍ତା କରନ୍ତି ବୋଲି ଶୁଣିଲୁ । ଏଠାର ବିଭିନ୍ନ ଜାତିର ଲୋକେ ୧୯୨୦ ମସିହାଠାରୁ ୫/୬ ବର୍ଷ ଅଲେଖ ଧର୍ମ ଗ୍ରହଣ କରି, ବ୍ରାହ୍ମଣମାନଙ୍କର ପ୍ରଭାବ ଓ ଉତ୍ପୀଡ଼ନରୁ ରକ୍ଷା ପାଇବାକୁ ଯତ୍ନ କରି ବିଫଳ ହୋଇଥିଲେ । ଏହି ବୈକୁଣ୍ଠ ବାବୁ ଆମକୁ କହିଲେ ।

ତା ୭ ଏପ୍ରିଲରୁ ବୋଉ (ରମାଦେବୀ)ଙ୍କର ଜ୍ୱର ହୋଇଛି । ଗଞ୍ଜାମର ବ୍ରହ୍ମପୁର ଶିବିରକୁ ସେ ଯାଇଥିଲେ । ଆମେ ଚିଠିରୁ ଏହା ଜାଣିଲୁ ।

୨୩.୪.୧୯୫୮

କାଲି ଓ ଆଜି ବୋଉଙ୍କର ଦେହ ଭଲ ହେଲା କି ନାହିଁ, ଖବର ପାଇବା ଆଶାରେ ଆମେ ଆଜି କୁଆଡ଼େ ନ ଯାଇ, କଣ୍ଡିଆପଡ଼ାରେ ରହିଲୁ । ଧନେଶ୍ୱରବାବୁ କେଉଁଝରଗଡ଼ରୁ ଆସି ଖବର ଦେଲେ ଯେ B-Colities ଜ୍ୱର ହୋଇଛି ।

ତା ୨୩ ସକାଳଓଳି ମୁଁ ସ୍କୁଲକୁ ଯାଇ, ଶ୍ରୀ ଚାଟୁବାବୁଙ୍କ ସହ କଥାବାର୍ତ୍ତା କଲି । ପୂର୍ବ-ମୌଳିକ ସୋପାନ ଚଳାଇବାକୁ ସେ ଆଉ ଜଣଙ୍କର ସାହାଯ୍ୟ ଚାହାନ୍ତି ବୋଲି କହିଲେ । ସେ ପିଲାମାନଙ୍କ ଦ୍ୱାରା ସ୍କୁଲରେ "ସର୍ବୋଦୟ ପାତ୍ର" (ମୁଷ୍ଟିଭିକ୍ଷା) ଆରମ୍ଭ କରିଛନ୍ତି । ଆଜି ୨୨ ଜଣ ପିଲା ଉପସ୍ଥିତ ଥିଲେ, ଜନ୍ମଧ୍ୟରୁ ୭ ଜଣ ଚାଉଳ ଆଣିଥିଲେ, ମୋଟ ୧ ମାଣ = ୪୦ ତୋଳା = ମୋ ହାତରେ ୧୩ ମୁଠା ।

ଖରାବେଳେ ମୁଁ ଘଣ୍ଟାଏ ଶୋଇଲି । ଉଠି କରି, ଚିତ୍ତରଞ୍ଜନ ଦାସ, ରାଧାରତନ, ଓ ଖୁଡ଼ୀ (ମାଳତୀ ଚୌଧୁରୀ)ଙ୍କୁ ଖଣ୍ଡେ ଖଣ୍ଡେ ଚିଠି ଲେଖିଲି ।

ସାମନ୍ତ ଚନ୍ଦ୍ରଶେଖର (ସିଦ୍ଧାନ୍ତ-ଦର୍ପଣ ଜ୍ୟୋତିଷଶାସ୍ତ୍ର-ପ୍ରଣେତା)ଙ୍କର ଓଡ଼ିଆରେ ଜୀବନୀ (ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ କୃତ) ବହିଟି କୃଷ୍ଣଚନ୍ଦ୍ର ଜେନାଙ୍କ ଠାରୁ ନେଇ କିଛି ମୁଁ ପଢ଼ିଲି ।

୨୭.୪.୧୯୫୮

ଖଳା ସଫା କରିବାରେ ଓ ଖତ ବୋହିବାରେ ସାହାଯ୍ୟ କଲୁ ।

କଣ୍ଡିଆପଡ଼ାରେ । ବମ୍ବେର ଶ୍ରୀ ଗୋବର୍ଦ୍ଧନ ପ୍ରସାଦ ଦୁତିୟା (ଜିଜୀ ରମ୍ଭାଦେବୀଙ୍କର ପତ୍ରରୁ ଆମେ ଜାଣିଥିଲୁ ଯେ ) ବୋଉ, ତୁନୀ ଓ ମୋତେ ଟ୍ରଷ୍ଟୀ କରି ଏକଲକ୍ଷ ଟଙ୍କା ଓଡ଼ିଶାର ଗ୍ରାମ ଅଞ୍ଚଳରେ ମେଡ଼ିକ୍ୟାଲ ସାହାଯ୍ୟ ପାଇ ଦାନ କରିଛନ୍ତି । ପରେ will ରୁ ମୁଁ ଜାଣିଲି ଯେ ଗରୀବ ଛାତ୍ରମାନଙ୍କୁ Scholarships ଦେବା ଓ ଅନ୍ୟାନ୍ୟ charitable works ପାଇଁ ସେ ଦାନ କରିଛନ୍ତି । ୧୯୪୮ ମସିହାଠାରୁ ମୁଁ କୌଣସି ଅନୁଷ୍ଠାନର, କମିଟି, ଆଦିର ମେମ୍ବର ଓ ଟ୍ରଷ୍ଟୀ ରହିବାକୁ ନାରାଜ ଥିଲି ଏବଂ ଏବେ ମଧ୍ୟ ନାରାଜ ଅଟେ । ମାତ୍ର ଅନ୍ୟମାନଙ୍କର ଏକାନ୍ତ ଅନୁରୋଧରେ ମୁଁ ୧୯୫୦ ଠାରୁ ଓଡ଼ିଶା ସରକାରୀ ମୌଳିକ ଶିକ୍ଷା ବୋର୍ଡ଼ର ସଂପାଦକ, ଗାନ୍ଧୀ ସ୍ମାରକ ନିଧିର ଓଡ଼ିଶା ଶାଖାର ପରାମର୍ଶଦାତା କମିଟିର ମେମ୍ବର ଏବଂ ସର୍ବସେବା ସଂଘ ଦ୍ୱାରା ଅନୁଶାସିତ ଉତ୍କଳ ଭୂଦାନ ଯଜ୍ଞ ସମିତିର ସଂଯୋଜକ ସେକ୍ରେଟାରୀ ୧୯୫୨ ଠାରୁ ତା ୩୧.୧୨.୧୯୫୬ ସୁଦ୍ଧା ଏବଂ ଓଡ଼ିଶା ସରକାରୀ ଭୂଦାନ ଯଜ୍ଞ ସମିତିର ସେକ୍ରେଟାରୀ ୧୯୫୪ ଠାରୁ ତା ୨୦.୨. ୧୯୫୮ ପର୍ଯ୍ୟନ୍ତ ଥିଲି ।

ମୋର ଏହି ଅନିଚ୍ଛା ଆଜି (ଏବଂ ତା ୨୮.୩.୫୮ରେ ମଧ୍ୟ) ଜିଜୀଙ୍କୁ ପତ୍ରଦ୍ୱାରା ଲେଖିଲି । ନିହାତି ଟ୍ରଷ୍ଟବୋର୍ଡ଼ରେ ମୋର ରହିବାକୁ ହେଲେ, ସେ ଟ୍ରଷ୍ଟ-ଦଲିଲର ନକଲ ପଠାଇବେ ।

ଆଚାର୍ଯ୍ୟ ହରିହର ଦାସଙ୍କ ""Child's Easy First Grammer (Anglo-Oriya)"" ଟ୍ରେଡ଼ିଂ କମ୍ପାନି, କଟକ ଦ୍ୱାରା ୧୯୫୨ରେ ପ୍ରକାଶିତ ବହିଟି ଥରେ ଆଖି ପକାଇଗଲି । ବଡ଼ ସୁନ୍ଦର ଲେଖା ଓ ପ୍ରାୟ ୩୫/୪୦ ବର୍ଷ ହେଲା ଚଳୁଛି ।

୨୮.୪.୧୯୫୮

ବିନୋବା ଭାବେଙ୍କର ପ୍ରଣୀତ ଗୀତା ପ୍ରବଚନର ଓଡ଼ିଆ ଅନୁବାଦ (୩ୟ ସଂସ୍କରଣ) ଯାହା ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା କରିଛନ୍ତି, ତାହା ମୁଁ ପଢ଼ି, ତଳେ କେତେକ କଠିନ ଶବ୍ଦ ଚିପିଲି । ଏଗୁଡ଼ିକ ବଡ଼ ସୁନ୍ଦର ଶବ୍ଦ ମାତ୍ର ସାଧାରଣ ପାଠୁଆ ଲୋକେ ବିନା ଅଭିଧାନରେ ଠିକ୍‌ରୂପେ ବୁଝିପାରିବେ ନାହିଁ । ଏଗୁଡ଼ିକର ଅର୍ଥ ବହିରେ ଦେବା ଦରକାର ବୋଲି ମୁଁ ଭାବେ ।

୨୮.୪.୧୯୫୮ ଶ୍ରୀ ଗୋବର୍ଦ୍ଧନ ପ୍ରସାଦ ଦୁତିଆଜୀଙ୍କର ମୃତ୍ୟୁ - ବମ୍ବେରେ ହୃଦଯନ୍ତ୍ରର କ୍ରିୟା ବନ୍ଦ ହୋଇ - ଆଜିଠାରୁ ଜିଜୀ (ରମ୍ଭାଦେବୀ) ଅନାଥିନୀ ହୋଇଗଲେ । ଜିଜୀଙ୍କର ତା ୨୯.୪. କାର୍ଡ଼ରୁ ଆମେ ତା ୧.୫ରେ କଟକରେ ଏହା ଜାଣିଲୁ ।

୨୯.୪.୧୯୫୮

ମୁଁ ଅନେକ ଦିନ ଖାଲି ବସି ରହିଛି, କୌଣସି ପଥଶ୍ରମ ବା ଅନ୍ୟ ଶାରୀରିକ ଶ୍ରମ କରୁନାହିଁ । ତେଣୁ କରି ଅଳ୍ପ ମାତ୍ରାରେ ଖାଇବା ଉଚିତ । ଏହା ଅନୁଭବ କରି ସୁଦ୍ଧା, ମୁଁ ଅଧିକ ଖାଉଛି । ଏହା ମୋର ଅନ୍ୟାୟ ଅଟେ । ଦେହଟା ଆଜି ସକାଳେ କସ୍‌ମସ୍ ଲାଗିଲା । ଜଳଖିଆ କଲି ନାହିଁ । ଶତ୍ରୁଘ୍ନ ନାଥ ବାବୁ, ଗୁଣନିଧିବାବୁ, ଚୁନୀ, ରମ୍ଭାଦେବୀ, ଉପେନ୍ଦ୍ର ବାବୁଙ୍କୁ ଚିଠି ଲେଖିଲି ।

ଆଜି ମୋର ୪ ଥର ସକାଳ ଓଳି ଝାଡ଼ା ହେଲା । ଦିନସାକ ଓ ରାତିରେ ମଧ୍ୟ ଭାତ ଖାଇଲି ନାହିଁ । ଚାରିଟାବେଳେ ଓ ସନ୍ଧ୍ୟା ୮ଟାରେ ମୁଁ କଞ୍ଚାଚୁଡ଼ା ଖାଇଲି । ସନ୍ଧ୍ୟା ଉପାସନା ପରେ ପରେ ମୁଁ ଶୋଇପଡ଼ିଲି ।

୩୦.୪.୧୯୫୮

ମୁଁ (ଶରତ) କେଉଁଝର ଜିଲ୍ଲାର କଣ୍ଡିଆପଡ଼ା (ଯମୁନାପଶୀ ପଞ୍ଚାୟତ ମଧ୍ୟରେ) ଗ୍ରାମରେ ଥିଲି । ସେ ଜିଲ୍ଲାର ଗ୍ରାମ ପଞ୍ଚାୟତ ଅଫିସର ଶ୍ରୀ ଲଳିତମୋହନ ପଟ୍ଟନାୟକ ଜୀପ୍‌କାରରେ ଯାଇ ମୋତେ ଗୋପବାବୁଙ୍କର ମୃତ୍ୟୁଖବର ସକାଳ ୧୦ଟାରେ ଦେଲେ । ଶ୍ରୀ

ଲଳିତମୋହନ ପଟ୍ଟନାୟକଙ୍କ ହାତରେ ଟେଲିଗ୍ରାଫ୍ ଦେଖି କଣ୍ଡିଆପଡ଼ାରେ ଜାଣିଲି ଯେ ତା ୨୯.୪ ରାତି ପ୍ରାୟ ୧୧ଟା ୫୫ ମିନିଟ୍ ବେଳେ କଟକ ସହରରେ ଥୋଡ଼ିଆସାହି ଭୂଦାନ ଅଫିସରେ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କର ପରଲୋକ ହୋଇଯାଇଛି । ମୁଁ ଓ କୃଷ୍ଣଚନ୍ଦ୍ର ଜେନା କେଉଁଝରଗଡ଼କୁ ସେହି ଜୀପ୍‌ରେ ଆସିଲୁ । ମାତ୍ର ସର୍ଭିସ ବସ୍ ବାହାରି ଯାଇଥିବାରୁ, ମୁଁ, ଶ୍ରୀମତୀ ପାର୍ବତୀ ସ୍ୱାଇଁ, ଉପେନ୍ଦ୍ର ବାବୁଙ୍କର କନ୍ୟା ଓ ସ୍ତ୍ରୀ ସନ୍ଧ୍ୟା ବେଳର ବସ୍‌ରେ ଆସି, ରାତି ଟ୍ରେନ୍‌ରେ କଟକ ଆସିଲୁ । ଯାଜପୁର ରୋଡ଼ ଷ୍ଟେସନ୍‌ରେ ଶ୍ରୀମାନ୍ ଅନାଦିଚରଣ ନାୟକ (ଲୋକନୀତି ଶିକ୍ଷାଶିବିରର ଛାତ୍ର) ଠାରୁ ହଠାତ୍ ଏହି ବିୟୋଗର ବିବରଣ ମୁଁ ଜାଣିଲି ।

ଶ୍ରୀଯୁକ୍ତ ଗୋପବାବୁ ତା ୧୭ ଏପ୍ରିଲରେ ବରୀରୁ କଟକକୁ ଆସିଥିଲେ । ବୋଉ (ରମାଦେବୀ)ଙ୍କର ଜ୍ୱର ହେତୁ ସେ କଟକରେ ଅବସ୍ଥାନ କଲେ । ସେ (ଗୋପବାବୁ) ବେଶ୍ ସୁସ୍ଥ ଥିଲେ । ଏଠାକୁ ଯେ ଆସୁଥିଲେ, ସମସ୍ତଙ୍କ ସହ ଥଟ୍ଟା ପରିହାସ କରି କଥାବାର୍ତ୍ତା କରୁଥିଲେ । ମାତ୍ର ଏ କେତେ ଦିନ ହେଲା ଭୁବନେଶ୍ୱର ନୂଆ ରାଜଧାନୀଠାରେ କେତେକ ଏମ୍.ଏଲ୍.ଏ ଯେପରି ମଦ ଖାଇ ବିପରୀତ ଦଳର ନେତାମାନଙ୍କ ଦ୍ୱାରା ପ୍ରଲୋଭିତ ହୋଇ, ଚରିତ୍ରବତ୍ତାର ଘୋର ଅଭାବ ଦେଖାଇଛନ୍ତି ଏବଂ ରାଜନୀତି ଯେପରି ଅତି ନୀଚ ସ୍ତରକୁ ଖସିଲାଣି ତାହା ଗୋପବାବୁ ଜାଣି, ବଡ଼ ବ୍ୟଥିତ ହେଉଥିଲେ ଏବଂ ନିଜର ବିରକ୍ତି ଓ ଦୁଃଖ ଶ୍ରୀ ଫକୀର ମିଶ୍ର, ଆଦିଙ୍କ ଆଗରେ କହୁଥିଲେ । ଏହା ମୁଁ ମାତ୍ର ଶ୍ରୀମାନ୍ ଅନାଦି ଚରଣ ନାୟକଙ୍କ ଠାରୁ ଶୁଣିଲି ।

ମାନପୁର (ଓଡ଼ିଶାର ପ୍ରଥମ ଗ୍ରାମାଦନ ଗାଁ) ରେ ଲୋକେ ୨ ଦଳ ହୋଇ, ମାଲିମକଦ୍ଦମା କରି ପୋଲିସର ଶରଣ ପଶି, ଯେପରି ନିମ୍ନସ୍ତରକୁ ଖସିଲେଣି, ତାହା ମଧ୍ୟ ବ୍ୟାସଙ୍କୀ ଗୋପବାବୁଙ୍କୁ ଇତିମଧ୍ୟରେ କହିଥିବେ ।

୨୫.୪ରେ କୋରାପୁଟରୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ରାଧାରତନ ଦାସ ଶ୍ରୀଯୁକ୍ତ ଗୋପବାବୁଙ୍କୁ ଦେଖା କରିଥିଲେ । ସେମାନେ ମଧ୍ୟ ସେ ଜିଲ୍ଲାର ଅବ୍ୟବସ୍ଥା (ନିର୍ମାଣ କାମରେ) କଥା କହିଥିବେ ।

ତା ୨୯ ରେ ଆଚାର୍ଯ୍ୟ ହରିହର ଦାସ ଓ ଶ୍ରୀଯୁକ୍ତ ଗୋପବାବୁ ଭୁବନେଶ୍ୱର ନାଗେଶ୍ୱର ଟାଙ୍ଗିକୁ ଯାଇ ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କୁ ଦେଖା କରିଥିଲେ ଓ ତାଙ୍କ ବସାରେ ମଧ୍ୟାହ୍ନଭୋଜନ କରିଥିଲେ । ଗୋପବାବୁ କେବଳ ପାଚିଲା ଆମ୍ବ ଖାଇଲେ । ସେମାନେ ମୋଟର-ବସ୍‌ରେ କଟକକୁ ସନ୍ଧ୍ୟା ପୂର୍ବରୁ ଫେରିଲେ । କଟକରେ ସନ୍ଧ୍ୟାରେ କଟକଚଣ୍ଡୀଙ୍କର ଭୋଗ ୨ଟି ପେଡ଼ା (ମିଠା) ଖାଇଥିଲେ । ସନ୍ଧ୍ୟା ପ୍ରାର୍ଥନା ପରେ ରାତି ୯ଟାରେ ଗୋପବାବୁ ଶୋଇବାକୁ ଗଲେ । ଡାକ୍ତର ଶରତ୍ ଚନ୍ଦ୍ର ମିଶ୍ର ବୋଉ (ରମା ଦେବୀ)ଙ୍କୁ ରାତି ସାଢ଼େ ୯ଟାରେ ଆସି ଦେଖିଗଲେ । ରାତି ପ୍ରାୟ ୧୧ଟାରେ ଗୋପବାବୁ ପାଇଖାନା ଗଲେ ମାତ୍ର ଝାଡ଼ା ହେଲା ନାହିଁ । ପାଇଖାନାରୁ ଆସି, ତାଙ୍କର ଛାତିରେ ଯନ୍ତ୍ରଣା ହେଲା । ସେ ପାଣିରେ ( tub) ବସିଲେ । ମାତ୍ର

ଯନ୍ତ୍ରଣା କମିଲା ନାହିଁ । ଚୁନୀ ଦେବୀ, କୃଷ୍ଣପ୍ରିୟା ଦେବୀ (ଘର କନିକାରେ, ପ୍ରଫୁଲ୍ଲ ଓ ନିର୍ମଳ ଚନ୍ଦ୍ର ଦାସଙ୍କର ମାତା) ଗୋପବାବୁଙ୍କର ଯନ୍ତ୍ରଣା ଦେଖି ତାଙ୍କୁ ଘରଭିତରେ ତଳେ ଶୁଆଇଦେଲେ । "ବଡ଼ ଯନ୍ତ୍ରଣା, ଭଗବାନ, ଭଗବାନ, ଶାନ୍ତି ଦିଅ -'' ବୋଲି ଗୋପବାବୁ କହୁଥାନ୍ତି । ସେ ପ୍ରଥମେ କହିଲେ ଯେ ମୋର (ଶ୍ୱାସରୋଗ) ଆରମ୍ଭ ହେଲା । ପରେ ଯନ୍ତ୍ରଣା ଅସହ୍ୟ ହେବାରୁ ବିଛଣା ଧରିଲେ । ଦେହ, ପିଠି ଖୁବ୍ ଥଣ୍ଡା ଲାଗିଲା । ସେ କହିଲେ "ମୁଁ ବଡ ଦିବ୍ୟ ସୁନ୍ଦର ଆଲୋକ ଦେଖୁଛି । ଭଗବାନ୍ ! ମୋତେ ତୁମର କୋଳକୁ ନେଇଯାଅ ।'' ଏ ଅବସ୍ଥା ଦେଖି ଶ୍ରୀମତୀ କୃଷ୍ଣପ୍ରିୟା ଦେବୀ ଡାକ୍ତର ଡାକିବାକୁ ଫକୀର ମିଶ୍ରଙ୍କୁ ପଠାଇଦେଲେ । ଗୋପବାବୁଙ୍କ ପାଟିରେ କୋରାମିନ୍ ( Coramin) ଔଷଧ କେତେ ଟୋପା ଦେଲେ ମାତ୍ର ତାହା ଭିତରକୁ ଗଲା ନାହିଁ । ଛାତିରେ କୋରାମିନ୍ ମାଲିସ୍ କଲେ । ସେତେବେଳେ ଗୋପବାବୁ ତାଙ୍କ ଉପରେ ଘୋଡ଼ା ହୋଇଥିବା ସଫା ଧଳା ଚାଦର ବାହର କରି ଦେଲେ ଏବଂ ତାଙ୍କର ଦୁଇ ହାତ - ବିଶେଷରେ ବାମ ହାତ ତଳେ ବାଡ଼େଇ ହୋଇଗଲା । ଶ୍ରୀମତୀ କୃଷ୍ଣପ୍ରିୟା ଦେବୀ "ଜୟ ଗୁରୁ'' କହି ଉଠିଲେ, ଏବଂ ଗୋପବାବୁ ମଧ୍ୟ ସେହି ଶବ୍ଦ ଉଚ୍ଚାରଣ କରୁ କରୁ ରାତି ୧୧ଟା ୫୫ ମିନିଟରେ ତା ୨୯ ମେ, ୧୯୫୮ ମସିହାରେ ଗୋପବାବୁଙ୍କର ଆତ୍ମା ଦେହ ତ୍ୟାଗ କଲା । ଶ୍ରୀଯୁକ୍ତା ରମା ଦେବୀ ଅସୁସ୍ଥ ଥାଇ ସେହି ଘର ଭିତରେ ପାଖରେ ବସି ଏହା ଦେଖୁଥିଲେ । ଡାକ୍ତର ହରିଶଚନ୍ଦ୍ର ରାୟ (କନିକା ରାଜା ଶୈଳେନ୍ଦ୍ର ନାରାୟଣଙ୍କର ଭାଇ) ଓ ଡାକ୍ତର ଶରତ୍‌ଚନ୍ଦ୍ର ମିଶ୍ର ଆସି ପହଞ୍ଚିବା ବେଳକୁ ପ୍ରାଣବାୟୁ ଆଉ ନ ଥିଲା ।

ଶ୍ରୀ ମନମୋହନ ଚୌଧୁରୀ ବରୀରେ ଥିଲେ । ତାଙ୍କଠାକୁ କଟକରୁ ବିନୋଦ କାନୁନ୍‌ଗୋ ଓ ଅନାଦି ଚରଣ ନାୟକ ଜୀପ୍‌ରେ ଯାଇ, ତାଙ୍କୁ ଓ ସୁମିତ୍ରା ଦେବୀ, ଡାକ୍ତରାଣୀ ତୁଙ୍ଗବିଦ୍ୟା ଦେବୀ, ନାନା, ନାନୀ, ବନ୍ଦୁ, ବାବୁଲିଙ୍କୁ କଟକ ନେଇ ଆସିଲେ । ମୋଟର କାର ନେଇ ଅନୁଗୁଳରୁ ଶ୍ରୀଯୁକ୍ତ ନବବାବୁ ଓ ଶ୍ରୀଯୁକ୍ତା ମାଳତୀ ଚୌଧୁରୀଙ୍କୁ, ତିନୁ, ଆଦିଙ୍କୁ ମଧ୍ୟ ଲୋକ ନେଇ ଆସିଲେ । ଓଡ଼ିଶାର ବହୁ ଜଣାଶୁଣା ବ୍ୟକ୍ତି, ଆତ୍ମୀୟ ସ୍ୱଜନମାନେ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ, ବିକାଶ ବିଭାଗର ମନ୍ତ୍ରୀ ରାଧାନାଥ ରଥ ଆଦି ଗୋପବାବୁଙ୍କର ମୃତ୍ୟୁ ପରେ ଆସି ଶେଷ ଦର୍ଶନ କରିଥିଲେ । ତା ୩୦ ଉପରଓଳି ୪ଟା ବେଳେ ଶୋଭାଯାତ୍ରାରେ ମୃତଦେହକୁ ନେଇ, ୫ଟା ବେଳେ ଖାନନଗର ଶ୍ମଶାନରେ ଶେଷକୃତ୍ୟ କରାଗଲା । ବୁଲୁବାବୁ ମୁଖାଗ୍ନି ଦେଇଥିଲେ । ତତ୍‌ପରେ ପରେ ସେଠା ନଦୀବାଲିରେ ଶ୍ରୀ ରାଧାନାଥ ରଥଙ୍କର ସଭାପତିତ୍ୱରେ ଶୋକସଭା ହୋଇଥିଲା ।

୧.୦୫.୧୯୫୮

ସକାଳ ୭ଟାରେ ଥୋଡ଼ିଆ ସାହିରେ ପହଞ୍ଚିଲି । ଆଚାର୍ଯ୍ୟ ମହାଶୟ, ବ୍ୟାସଜୀ, ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ପାଖରେ ମୁଁ ପ୍ରାୟ ଅଧଘଣ୍ଟା ବସିଲି । ମୋର ଆଖିରୁ ଲୁହ

ବୋହିଗଲା । ବୋଉଙ୍କ ନିକଟକୁ ମୁଁ ଯିବାକୁ ଇଚ୍ଛା କଲିନାହିଁ, କାରଣ ସେ ମୋତେ ଦେଖିଲେ ବେଶୀ କୋହ ଉଭୟଙ୍କର ଉଠିବ । ଦାଦା, ଖୁଡ଼ୀ ଆଦି ମଧ୍ୟ ଏଠାରେ ଥିଲେ । ଶ୍ରୀ ଗଣେଶଚନ୍ଦ୍ର ମହାନ୍ତି, କୃଷ୍ଣ ଜେନା, କସ୍ତୁରିଚରଣ ନାୟକ, ବୃନ୍ଦାବନ ପାତ୍ର ଓ ରାମଚନ୍ଦ୍ର ମିଶ୍ରଙ୍କ ସହ ଖାନନଗର ଯାଇ, ସେଠାରେ "ଅଗ୍ନି ଶୀତଳାଇଲୁଁ", କାଠଯୋଡ଼ିରେ ସ୍ନାନ କରି, ଗୋପବାବୁଙ୍କର (ବାପାଙ୍କର) ଅସ୍ଥି ନେଇ, ଥୋଡ଼ିଆସାହିକୁ ଆସିଲୁ । ଏ କେତେ ଦିନ ହେଲା ଏଠାରେ ସକାଳେ ଜଳଖିଆ ଓ ଦିନ ୨ଟା ବେଳେ ଭାତ ଓ ଡାଲଣା ଖିଆ ହେଉଛି, ରାତ୍ରିଭୋଜନ ବନ୍ଦ । ଖରାବେଳେ ସୂତ୍ରଯଜ୍ଞ ହେଉଛି; ସକାଳେ ଭୋର ଓ ସନ୍ଧ୍ୟାରେ ଉପାସନା ତ ସବୁଦିନେ ହୁଏ, ତାହା ହେଉଛି । ତା ୨୮ ଏପ୍ରିଲ ପରେ, ଆଜି ମୁଁ ଭାତ ଖାଇଲି । ମୋର ବଳଣା ନ ଥିଲା, ତୂଳା ବାଛିଲି । ଜିଜାଜୀ (ଗୋବର୍ଦ୍ଧନ ପ୍ରସାଦ ଦୁତିଆ) ବମ୍ବେଠାରେ ତା ୨୮ ଏପ୍ରିଲ ଉପରଓଳି ୩ଟାରେ ଇହଧାମ ତ୍ୟାଗ କରିଛନ୍ତି । ଜିଜୀ (ରାମ୍ଭା ଦେବୀ)ଙ୍କର ପତ୍ରରୁ ଆଜି ଆମେ ଜାଣିଲୁ । ବ୍ୟାସଜୀ ଆଜି ରାତିରେ କଟକକୁ ବମ୍ବେ ବାହାରିଲେ ଦିଜୀଙ୍କୁ ଦେଖିବାକୁ ।

୨.୫.୧୯୫୮

ସକାଳେ କୋରାପୁଟ ଜିଲ୍ଲାରୁ ଆସିଥିବା ବିଶ୍ୱନାଥ ପଟ୍ଟନାୟକ ଓ ରାଧାରତନ ଦାସଙ୍କ ସହ ମୁଁ ଖାନନଗର ଯାଇ, ପୁଣି ଶେଷକୃତ୍ୟ ସ୍ଥାନ ଦେଖିଆସିଲି । ତୂଳା ବାଛିଲି । ସନ୍ଧ୍ୟା ପରେ ବିନୋବାଜୀଙ୍କର ଭାଷଣ ପଢ଼ାଯାଉଛି ଓ ତତ୍‌ପରେ ଗୋପବାବୁଙ୍କର ଶୁଦ୍ଧିକ୍ରିୟା ( ତା ୯.୫.୧୯୫୮ରେ ହେବ) ଏବଂ ସେବକମାନଙ୍କର ସମ୍ମିଳନୀ ( ତା ୧୨ ଓ ୧୩ ମେ ରେ ହେବ) ବିଷୟରେ ଆଲୋଚନା ହେଉଛି । ମୁଁ ଉପସ୍ଥିତ ଥିଲି । ଶ୍ରୀଯୁକ୍ତ ରାଧାନାଥ ରଥ ପ୍ରତିଦିନ ଭୂଦାନ ଅଫିସକୁ ଆସି, ବୋଉଙ୍କର ସ୍ୱାସ୍ଥ୍ୟ ଓ ଅଭାବ ଅସୁବିଧା କଥା ପଚାରୁଛନ୍ତି । ଶ୍ରୀ ନାରାୟଣ ଦେସାଇ, ବୁବୁ, ପୂଷ୍ଟୁ, ମୁନୁ ଆଜି କଟକରେ ପହଞ୍ଚିଲେ ।

୩ ରୁ ୮.୫.୧୯୫୮

ବିନୋବାଜୀ ଯେଉଁ ୧୦୮ ସମସୂତ୍ରୀ ଶ୍ଳୋକ କୋରାପୁଟ ଜିଲ୍ଲାରେ ପଦଯାତ୍ରାବେଳେ ରଚନା କରିଥିଲେ, ସେଥିରୁ ଗୋଟିଏ ଗୋଟିଏ ଏ ୨ ଦିନ ହେଲା ପଢ଼ା ହେଉଛି ।

୯.୫.୧୯୫୮

ଆଜି ୰ ଗୋପବନ୍ଧୁ ଚୌଧୁରୀଙ୍କର "ଏକାଦଶାହ" ପାଳିତ ହେଉଅଛି । (ବିକାଶ ବିଭାଗର ମନ୍ତ୍ରୀ) ଶ୍ରୀ ରାଧାନାଥ ରଥ ବରୀକୁ ଯାଇ ଏହି ପାଳନରେ ଯୋଗ ଦେବେ ବୋଲି ଶ୍ରୀ ବିନୋଦ କାନୁନ୍‌ଗୋଙ୍କୁ ଆଗରୁ ସମ୍ମତି ଦେଇଥିଲେ । ମାତ୍ର ଓଡ଼ିଶା ମନ୍ତ୍ରୀମଣ୍ଡଳର ଜରୁରୀ ବୈଠକ ଆଜି ହେବା ୮.୫.ରେ ସ୍ଥିର ହେବାରୁ, ସେ ଗଲେ ନାହିଁ । ଶ୍ରୀ ବିନୋଦ କାନୁନ୍‌ଗୋ, ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ୧୯୩୪ ମସିହାରୁ ୨/୩ ବର୍ଷ ଗୋପବାବୁଙ୍କ ସହ ବରୀରେ

ଥିଲେ । ସେ ଦୁଇଜଣ ଆଜି ଭୋର ୫ଟା ବେଳେ ୰ ଗୋବବନ୍ଧୁ ଚୌଧୁରୀଙ୍କର ଚିତାଭସ୍ମ, ଅସ୍ଥି ନେଇ କଟକରୁ ବରୀ ଗଲେ । ଥୋଡ଼ିଆସାହିରେ ମୁଁ ଭୋର ଉପାସନା ଓ ସୂତ୍ରଯଜ୍ଞରେ ଯୋଗ ଦେଇ, ସେ ଦୁହିଙ୍କ ସହ ମୋଟରରେ ଧର୍ମଶାଳା, କୁଆଖିଆ ବଜାର, ହରିପୁର, ସୁଜନପୁର ଦେଇ ବରୀ ଗଲି । ଧର୍ମଶାଳାଠାରେ ଲୋକମାନେ ଅସ୍ଥି ଉପରେ ପୁଷ୍ପମାଲ୍ୟ ଅର୍ପଣ କଲେ ଓ କୀର୍ତ୍ତନ କଲେ । ପ୍ରାୟ ୭ଟା ବେଳେ ଆମ୍ଭେମାନେ ବାଲିଆପାଳ କାଠ ପୋଲଠାରେ ପହଞ୍ଚିଲୁ । ସେଠାରୁ ଚାଲି କରି, ଅସ୍ଥିବହନକାରୀ ଲୋକ ଓ ସଂକୀର୍ତ୍ତନ ଦଳ ସହ ଆମେ "ସେବାଘର'' (ରମାଦେବୀଙ୍କର ଆଶ୍ରମ), ଦୁଧେଇଠାରେ "ନୂଆଘର'' (ବୁଲୁବାବୁଙ୍କର ରହିବା ଘର) ପ୍ରଦକ୍ଷିଣ କରି, ରାମଚନ୍ଦ୍ରପୁରରେ ମୌଳିକ ଶିକ୍ଷାକେନ୍ଦ୍ର ଓ କସ୍ତୁରବା କେନ୍ଦ୍ରରେ କିଛି ସମୟ ରହି, ବ୍ରାହ୍ମଣୀ ନଦୀର ଉତ୍ତରକୂଳ "କଣିବାଙ୍କ'' ଠାରେ ପ୍ରାର୍ଥନାରେ ଯୋଗ ଦେଲୁ । ତତ୍‌ପରେ କଣିବାଙ୍କଠାରେ ସେଠାରେ ବ୍ରାହ୍ମଣୀ ନଦୀରେ ସେହି ଅସ୍ଥିକୁ ବିସର୍ଜନ କରାଗଲା । ନଦୀରେ ସ୍ନାନ ସାରି, ମୁଁ (ଚାଟୁବାବୁଙ୍କର) ଖଦୀ କେନ୍ଦ୍ରଠାରେ ସମସ୍ତଙ୍କ ପାଇଁ ପ୍ରସ୍ତୁତ ଭାତ ଖାଇ, ବରଗଛମୂଳେ ରତଳାର ଶ୍ରୀ ବୈଦ୍ୟନାଥ ରାୟଙ୍କ ସହ ବିଶ୍ରାମ କଲି । "ସେବାଘର''ରେ ସୂତ୍ରଯଜ୍ଞରେ ଓ ଗୀତା-ଶ୍ରବଣରେ ଯୋଗ ଦେଲି । ସେହି ପାଖର ସାନ ଆମ୍ବତୋଟାରେ ୫ଟା ବେଳେ ଓଡ଼ିଆ ଗୀତା ପାଠ, ଆଦିରେ ସଭାରେ ଉପସ୍ଥିତ ଥିଲି । ଶ୍ରୀ ବିନୋଦ କାନୁନ୍‌ଗୋ ତାଙ୍କ ପ୍ରକାଶିତ "ଶିଶୁ ସଂପଦ'' ମାସିକ ପତ୍ରିକାରୁ ୰ ଗୋପବନ୍ଧୁ ଚୌଧୁରୀଙ୍କ ବିଷୟରେ ଲିଖିତ କେତୋଟି ଲେଖା ପାଠ କଲେ । କଟକ ରାଜବଗିଚାରୁ ଶ୍ରୀମତୀ ବସନ୍ତ କୁମାରୀ ଦେବୀ (ଇଞ୍ଜିନିୟର୍ ଶ୍ରୀ ବାସୁଦେବ ମହାନ୍ତିଙ୍କର ପତ୍ନୀ) ଓ ଅବସରପ୍ରାପ୍ତ ପ୍ରଫେସର ଶ୍ରୀ ଯୋନାଥନ ମହାନ୍ତିଙ୍କର କନିଷ୍ଠା ଭଗିନୀ ଶ୍ରୀମତୀ କ୍ଷମା ଦେବୀ ଆମ ସହ ଆଜି ବରୀ ଯାଇଥିଲେ । ଶ୍ରୀମତୀ ବସନ୍ତକୁମାରୀ ଦେବୀ ଆଜିର ପ୍ରାର୍ଥନା ସଭାରେ ସଭାନେତ୍ରୀ ହେଲେ । ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ, ଶ୍ରୀ ଭୁବନାନନ୍ଦ ସ୍ୱାଇଁ (ମୌଳିକ ସ୍କୁଲର ଗୁରୁଜୀ), ଶ୍ରୀ ବାମନ ମିଶ୍ର (ଯାଜପୁର ସ୍କୁଲ ଡ଼େପୁଟି ଇନ୍‌ସପେକ୍ଟର ଓ ପୂର୍ବେ ରାଜସୁନାଖଲା ମୌଳିକ ଟ୍ରେନିଂସ୍କୁଲର ପ୍ରଧାନ ଗୁରୁଜୀ), ସୀତାନାଥ ମହାନ୍ତି (ଯାଜପୁର ଟାଉନର ପ୍ରାଇମେରୀ ସ୍କୁଲର ଶିକ୍ଷକ) କିଛି କିଛି କହିଲେ । ପ୍ରାର୍ଥନା ପରେ ସନ୍ଧ୍ୟାକୁ ସଭା ସରିଲା । ମୁଁ କଟକକୁ ଫେରିଆସିଲି ନାହିଁ । ଭୂଦାନ ସେବକ ଓ ପ୍ରେମୀମାନଙ୍କର ବୈଠକରେ ରାତିରେ ଯୋଗ ଦେଲି । ଶ୍ରୀ ପ୍ରାଣକୃଷ୍ଣ ପଟ୍ଟନାୟକ, ବାସୁଦେବ ସାମଲ, ରଙ୍ଗାଧର ଦାସ, ଭୁବନାନନ୍ଦ ସ୍ୱାଇଁ,ଆର୍ତ୍ତବନ୍ଧୁ ମହାନ୍ତି, ଆଦି ୧୨/୧୪ ଜଣ ଥିଲେ । ମାର୍ବଲ ପଥରର ମୂର୍ତ୍ତି, କୌଣସି ଅନୁଷ୍ଠାନ, ଆଦି ସ୍ମୃତି ପାଇଁ ସ୍ଥାପନ କରିବା ଅପେକ୍ଷା ୰ ଗୋପବନ୍ଧୁଙ୍କର ପ୍ରିୟ କାର୍ଯ୍ୟ (ଗ୍ରାମଦାନ, ଭୂଦାନ, ଗ୍ରାମସ୍ୱରାଜ୍ୟ ସ୍ଥାପନ) କରିବା ପ୍ରକୃତ ସ୍ମୃତି ହେବ ବୋଲି ଆମେ ୨/୩ ଜଣ ବ୍ୟକ୍ତ କଲୁ । ବିନୋବାଜୀଙ୍କର ନୂତନ ଭାବରେ ସୂଚିତ "ସର୍ବୋଦୟ ପାତ୍ର'' କିପରି ଏହି ସମଗ୍ର ବିଞ୍ଝାରପୁର ଥାନାରେ ଲାଗନ୍ତା କି, – ପ୍ରଶ୍ନ ମଧ୍ୟ

ପଡ଼ିଲା । ରାତି ୧୧ଟା ପର୍ଯ୍ୟନ୍ତ ସଡ଼କ ଉପରେ ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତିଙ୍କ ଠାରୁ ଓ ସେବାଘରେ ଶ୍ରୀ ଗଣେଶଚନ୍ଦ୍ର ମହାନ୍ତିଙ୍କ ଓ ଶ୍ରୀମତୀ ତୁଙ୍ଗବିଦ୍ୟା ଦେବୀଙ୍କ ଠାରୁ ଗୋପବାବୁଙ୍କର ଗତଥର ବରୀରେ ଥିବା ସମୟର କାର୍ଯ୍ୟ, ସ୍ମୃତି, ପରିହାସ ଆଦି କଥା ମୁଁ ଶୁଣିଲି । ରାତିରେ ସେବାଘରେ ମୁଁ ଶୋଇଲି ।

୧୦.୫.୧୯୫୮

"ନୂଆଘର''କୁ ଯାଇ ଲୋକନାଥକୁ (ଗାଈଜଗା ପିଲାକୁ) ମୁଁ ଗୁହାଳସଫା, ଅଗଣା ଓଳାଇବାରେ ସାହାଯ୍ୟ କଲି । ସେବାଘରେ ନିତ୍ୟକର୍ମ ଓ ଜଳଖିଆ ସାରି, ଶ୍ରୀ ଭଗୀରଥ ଦାସ ଓ ନିନୀ ମାଉସୀଙ୍କୁ ଦେଖା କରି, ଶ୍ରୀ ରାମଚନ୍ଦ୍ରପୁରକୁ ଆସିଲି । ଓସ୍ତପୁରରେ ଶ୍ରୀ ଗୟାଧର ବେଉରା (କାଠ କରତୀ), ଆଦି ଯେ ଦେଖାଦେଲେ, ଗୋପବାବୁଙ୍କର ଶେଷ ଦିନର କଥା ଆଦି ପଚାରିଲେ । ସମସ୍ତେ କହୁଥାନ୍ତି "ଦୀପ ନିଭିଗଲା ।'' ସନ୍ଧ୍ୟାବେଳେ ଶିକ୍ଷାର୍ଥିନୀମାନଙ୍କର ପ୍ରାର୍ଥନାରେ ମୁଁ ଯୋଗ ଦେଲି । ଶ୍ରୀ ବଳି ବିଶ୍ୱାଳ (ଶମ୍ଭୁର ବାପା) ଆସି ଗୋପବାବୁଙ୍କର ମୃତ୍ୟୁ ବିଷୟରେ ଦୁଃଖ ପ୍ରକାଶ କରିଗଲେ । ସେ ଦୁହିଙ୍କ ସହ ମୁଁ ଡାକ୍ତରବାବୁଙ୍କର ବସାକୁ ଗଲି । ଡାକ୍ତର କାଳୀପଦ ଚୌଧୁରୀ ସମବେଦନା ଜଣାଇବା ସଙ୍ଗେ ସଙ୍ଗେ ମଧ୍ୟ କହିଲେ ଯେ ଏପରି ଇଚ୍ଛା-ମୃତ୍ୟୁ ତ ବିରଳ - ଏହା ଯୋଗୀଜନର ମୃତ୍ୟୁ ।

୧୧.୫.୧୯୫୮

ସକାଳେ ବରୀ ଯାଇ, ଗଣେଶ ବାବୁ ଓ କୁନକୁ କଟକ ଯିବାକଥା ପଚାରିଲି । ଦରଘା ପାଖରେ ସଡ଼କ ଉପରେ ଉପସ୍ଥିତ ୫/୬ ଜଣଙ୍କ ସହ ଗୋପବାବୁଙ୍କର କଥା ପଡ଼ିଲା ।

ଉପରଓଳି ୬ଟା ବେଳେ ଶ୍ରୀ କୈଳାଶନାଥ, କ୍ଷମା ମାଉସୀ, ଅନ୍ନପୂର୍ଣ୍ଣା ଦାସ, ବୈଷ୍ଣବ ସାମଲ, ମୁଁ ଓ ଜଣେ ଭାରୁଆ (ମୁରଲୀ) ରାମଚନ୍ଦ୍ରପୁରକୁ ଚାଲି, ରାତି ୯ଟାରେ ବନ୍ଧଡିହ ହାଟପଡ଼ିଆଠାରେ ଶ୍ରୀ ଚତୁରୀ ମଲିକ (ଭୂଦାନ ସେବକ)ଙ୍କର ନୂଆ କୁଡ଼ିଆରେ ପହଞ୍ଚିଲୁ । ସେଠାରେ ରାତ୍ରି ଯାପନ କରି, ଭୋର ଗଣେଶ ବାବୁ, କୁନ, ଆଦିଙ୍କ ସହ ହାଟଚାଳିରେ ପ୍ରାର୍ଥନା ସାରି, ଆମେ ୫ ଜଣ କଦଳାମଠକୁ ଆସିଲୁ । ଦିନ ଟ୍ରେନ୍‌ରେ ୧୨.୫.୫୮ରେ ଆମେ କଟକ ଆସିଲୁ । ତା ୧୨,୧୩ ଓ ୧୪ରେ ସର୍ବୋଦୟ ସେବକ ମାନଙ୍କର ସମ୍ମିଳନୀରେ କଟକରେ ଶ୍ରୀ ରାମଚନ୍ଦ୍ର ଭବନରେ ଯୋଗ ଦେଲି । ଶ୍ରୀ ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ ସଭାପତି ହୋଇଥିଲେ । ମୋଟରେ ପ୍ରାୟ ୧୭୦ ଜଣ ସେବକ ଓ ଆଗ୍ରହୀ ବ୍ୟକ୍ତି ଯୋଗ ଦେଇଥିଲେ । ବୋଉ (ରମା ଦେବୀ) ଦୁର୍ବଳ ଥିବାରୁ, ଏଥିରେ ଉପସ୍ଥିତ ହୋଇ ପାରି ନ ଥିଲେ । ସେ ଥୋଡ଼ିଆସାହିରେ ଖଦୀମଣ୍ଡଳ ଘରେ ରହୁଥିଲେ । ଚୁନୀ, କୃଷ୍ଣପ୍ରିୟାଦେବୀ, ଅନ୍ନ ମହାନ୍ତି, ଆଦି ତାଙ୍କର ଯତ୍ନ ନେଉଥିଲେ । ଡାକ୍ତର ଶ୍ରୀ ଶରତ୍‌ଚନ୍ଦ୍ର ମିଶ୍ର ତ ଆଗେ ଦେଖୁଥିଲେ । ଏବେ

ବୈଦ୍ୟ ଶ୍ରୀ ଗଙ୍ଗାଧର ମିଶ୍ର କବିରାଜୀ ଔଷଧ ଦେଉଛନ୍ତି । ବୋଉ ତା ୬.୫.୧୯୫୮ରୁ ସକାଳ ଓଳି ଦିଇଟା ଲେଖାଁଏ ଭାତ ଖାଉଛନ୍ତି ।

ଂଗୋପବନ୍ଧୁ ଚୌଧୁରୀଙ୍କର ସ୍ମୃତିକୁ ମନେ ପକାଇ "ଗ୍ରାମସେବକ'' ପତ୍ରିକାର ଏକ ବିଶେଷ ସଂଖ୍ୟା ବାହାରୁଛି । ତା ୧୪ ଉପରଓଳି "ଗ୍ରାମସେବକ ସମବାୟ ପ୍ରକାଶନ ଲିମିଟେଡ୍''ର ୨ୟ ବାର୍ଷିକ ସଭାରେ ମୁଁ ବିଶେଷ ନିମନ୍ତ୍ରଣରେ ଉପସ୍ଥିତ ଥିଲି ।

ରାତିରେ ଥୋଡ଼ିଆସାହିରେ ଶ୍ରୀଯୁକ୍ତା ମାଳତୀ ଦେବୀ, ନବବାବୁ, ହରମୋହନ ପଟ୍ଟନାୟକ, ମନଦମୋହନ ସାହୁ, ବୁଲୁବାବୁ, ସଚ୍ଚିବାବୁ, ଫକୀର ମିଶ୍ର ଚମ୍ପତିମୁଣ୍ଡା ଉତ୍ତର ମୌଳିକ ଶିକ୍ଷାକେନ୍ଦ୍ରର ଭବିଷ୍ୟତ ଚର୍ଚ୍ଚା କଲେ । ଶ୍ରୀ ଚିତ୍ତରଞ୍ଜନ ଦାସ ଛାଡ଼ି ଚାଲିଯିବେ । ତତ୍‌ପରେ ସେଠାରେ କି କାର୍ଯ୍ୟ କାହାଦ୍ୱାରା ଚଳିପାରିବ, ଆଲୋଚିତ ହେଲା । "ଲୋକନୀତି'' ବିଦ୍ୟାଳୟ, କର୍ମୀ ତାଲୀମ କାର୍ଯ୍ୟ ମଦନମୋହନ ସାହୁଙ୍କ ତତ୍ତ୍ୱରେ ହୋଇପାରେ, ବିଚାର ହେଲା ।

୧୬.୫.୧୯୫୮

ସକାଳେ ମୁଁ ଫିରିଙ୍ଗୀବଜାର ଯାଇ, ଶ୍ରୀ ଦିବ୍ୟସିଂହ ମହାନ୍ତିଙ୍କ ଘରେ ଗ୍ରାମସେବକର ବାକୀ ଚାନ୍ଦା ପାଇଁ ବସି ବସି ଫେରିଲି । ଉପରଓଳି ତାଙ୍କର ଦେଖା ପାଇଲି ନାହିଁ । ଶ୍ରୀ ଦୁଃଖୀଶ୍ୟାମ ମିତ୍ରଙ୍କୁ ଦେଖା କଲି । ତାଙ୍କର ପୁଅ ମଣ୍ଟୁ ମାସିକ କିଛି ସାହାଯ୍ୟ ଦେବ ବୋଲି ସେ କହିଲେ । "ସର୍ବୋଦୟ ପାତ୍ର'' କଥା ପଡ଼ିଲା । ବର୍ତ୍ତମାନ ପୃଥିବୀର ଓ ଦେଶର ଶାନ୍ତିର ବାଟ ଏକମାତ୍ର "ସର୍ବୋଦୟ ପନ୍ଥା'' - "The Way'' ବୋଲି ଦୁଃଖୀଶ୍ୟାମ ବାବୁ ସ୍ୱତଃ କହିଲେ ।

ଆଜି (ତା ୧୬) ମଧ୍ୟାହ୍ନଭୋଜନ ଆମ୍ଭେମାନେ ସୂତାହାଟରେ ଶ୍ରୀଯୁକ୍ତ ବିଭୂତିବାବୁଙ୍କର (ବୁଲୁବାବୁଙ୍କର ଶ୍ୱଶୁରଙ୍କର) ବସାରେ କଲୁ । ବନ୍ଦୁ, ବାବୁଲି, ନାନା, ନାନୀ, ବୁଲୁବାବୁ, ନବବାବୁ ଓ ମୁଁ ଯାଇଥିଲୁ ।

୧୭.୫.୧୯୫୮

ସକାଳେ ଗ୍ରାମସେବକ ପ୍ରେସକୁ ଯାଇ, ଅଦ୍ୱୈତଚରଣ ଦାସଙ୍କଠାରୁ ପୁରୀ ସର୍ବୋଦୟ ସମ୍ମିଳନୀ (୧୯୫୫)ର ଆୟବ୍ୟୟ ଫର୍ଦ୍ଦ ଟିପି ଆଣିଲି । ଗ୍ରାମସେବକର ଗ୍ରାହକ ତାଲିକାର ନକଲ (କେଉଁଝର ଜିଲ୍ଲା, ସୁନ୍ଦରଗଡ଼ ଜିଲ୍ଲା ଓ ଢ଼େଙ୍କାନାଳ ଜିଲ୍ଲା ପାଇଁ ) ମଧ୍ୟ ଆଣିଲି । ଦିବ୍ୟସିଂହବାବୁ କହିଲେ ଯେ ଆସନ୍ତା ମାସର ପ୍ରଥମ ଭାଗରେ ତାଙ୍କ ହାତରେ ଟଙ୍କା ଥିବାବେଳେ ଗ୍ରାମସେବକର ଗ୍ରାହକଚାନ୍ଦା ଦେବେ । ଶ୍ରୀ ଭରତ ସିଂହ ( ଧୂଆଁ ପତରିଆ ସାହି) ବର୍ତ୍ତମାନର ଶ୍ରମିକମାନଙ୍କର ମନୋଭାବ (ନିରପେକ୍ଷ ଓ ବିରକ୍ତ ଭାବ) କହିଲେ । ଉପରଓଳି ଶ୍ରୀ କୃଷ୍ଣରାଜ ମେହତାଙ୍କୁ ପୁରୀ ସମ୍ମିଳନୀର ହିସାବଫର୍ଦ୍ଦ ପଠାଇଲି ।

୧୯.୫.୧୯୫୮

ଶ୍ରୀମତୀ ନିର୍ମଳା ଦେଶପାଣ୍ଡେ (ଯେ ବିନୋବାଜୀଙ୍କ ସହ ଭୂଦାନ ପଦଯାତ୍ରାରେ କେତେବର୍ଷ ଥିଲେ ) ଙ୍କ ଦ୍ୱାରା ପ୍ରସ୍ତୁତ ଏବଂ ସର୍ବସେବା ସଂଘ ଦ୍ୱାରା ପ୍ରକାଶିତ ହିନ୍ଦୀ " ଭୂଦାନ ଗଙ୍ଗା'' ଆଜି ମୂଳରୁ ପଢ଼ା ଆରମ୍ଭ କଲି । ଓଡ଼ିଆରେ ବିନୋବାଜୀଙ୍କର ଖଣ୍ଡିଏ ସଂକ୍ଷିପ୍ତ ଜୀବନୀ ମୁଁ ଲେଖିବି ବୋଲି ତା ୨୦.୧୨.୧୯୫୭ରେ ମୁଁ ସହକର୍ମୀମାନଙ୍କ ଆଗରେ କହିଥିଲି । ସେଥିପାଇଁ ଏହିପରି ଉତ୍ସରୁ ମୁଁ ଉପାଦାନ ସଂଗ୍ରହ କରିବାକୁ ଆରମ୍ଭ କରୁଛି ।

୨୧.୫.୧୯୫୮

ଭୂଦାନ ଗଙ୍ଗା – ୧ମ ଖଣ୍ଡ ବହିରୁ କିଛି କିଛି ପଢ଼ିଲି । ଅରଟରେ କିଛି କିଛି ସୂତା କାଟିଲି । ତା ୨୨ ଉପରଓଳି ପ୍ରଫେସର ଶ୍ରୀ ଦୟାନିଧି ପଟ୍ଟନାୟକଙ୍କ ଠାକୁ ଫକୀର ମିଶ୍ର ଓ ମୁଁ ଯାଇଥିଲୁ । ହରମୋହନ ବାବୁ ଓଡ଼ିଶାରେ ମନ୍ତ୍ରୀମଣ୍ଡଳ ଗଣ୍ଡଗୋଳ ବିଷୟରେ ସର୍ବୋଦୟ ବିଚାରର ଲୋକଙ୍କର ମତ ଓ ପ୍ରତିକାର କଅଣ ବୋଲି ସର୍ବସାଧାରଣଙ୍କର ଅବଗତ୍ୟର୍ଥେ ଲେଖା ବାହାରିବା ଦରକାର ଓ ମିଳିତ ମନ୍ତ୍ରୀମଣ୍ଡଳ ଦରକାର ବୋଲି କହିଲେ । ମୁଁ କହିଲି ମୂଳ ବିଚାର କୌଣସି ଦଳ ମାନିବେ ନାହିଁ, ସେପରି ଅବସ୍ଥାରେ ମତାମତ ପ୍ରକାଶ କରି ଲାଭ କଅଣ ?

ତା ୨୩ ମଧ୍ୟାହ୍ନରେ ଆଚାର୍ଯ୍ୟ ମହାଶୟ ପୁରୀରୁ କଟକକୁ ଆସି ପହଞ୍ଚିଲେ । ଯିବା ବେଳେ ମୋଟରବସ୍‌ରୁ ଓହ୍ଲାଇବାବେଳେ ଗୋଡ଼ କିମିତି ମୋଡ଼ି ହୋଇଯାଇଥିଲା ଯେ ଗୋଡ଼ରେ ବ୍ୟାଣ୍ଡେଜ୍ ବନ୍ଧା ହୋଇଛି । ଆଖିକୁ ଦିଶୁ ନ ଥିବାରୁ, ସେ ଏହିପରି ବାରମ୍ବାର ପାଦରେ ଓ ଗୋଡ଼ରେ ତଥା ଅନ୍ୟ ଅଂଶରେ ଆଘାତ ପାଉଛନ୍ତି । ତଥାପି, ଭ୍ରୂକ୍ଷେପ ନାହିଁ, ଚାଲିଛନ୍ତି । କି ଶକ୍ତି ଓ ବିଶ୍ୱାସ ! !

୨୪.୫.୧୯୫୮

ଶନିବାର ସନ୍ଧ୍ୟାବେଳେ ମୁଁ ଶ୍ରୀ ପ୍ରାଣନାଥ ମିଶ୍ରଙ୍କଠାରୁ ଟ.. ୭୦/– ବ୍ୟାକରଣ ବହିର ରୟାଲଟି ବାବତ୍ ଆଣିଲି । ଅରଟରେ ଅଧଗୁଣ୍ଡିଏ ସୂତା କାଟିଲି । କାଲି ମୋର ହଠାତ୍ ମନେ ପଡ଼ିଲା ଯେ ବାଣୀକଣ୍ଠ ନିମାଇଁ ହରିଚନ୍ଦନ ଆସନ୍ତେ କି । ଆଜି ତାଙ୍କ ମନକୁ ସେ ଆସି ହଠାତ୍ ପହଞ୍ଚିଲେ ଏବଂ ବୋଉଙ୍କୁ ଖୋଜିଲେ ।

୨୫.୫.୧୯୫୮

ଅନୁଗୁଳରୁ ସକାଳେ ୧୧ଟା ବେଳେ ବୋଉ (ରମାଦେବୀ), ଚୁନୀ, ବୁବୁ, ପିଲାମାନେ ଓ ନବବାବୁ (ଦାଦା) କଟକରେ ପହଞ୍ଚିଲେ । ସୋସାଲିଷ୍ଟ ନେତା ଶ୍ରୀ ରାମମନୋହର ଲୋହିଆ କଟକକୁ ଆସି ଗ୍ରାମସେବକ ପ୍ରେସ୍‌ରେ ଅଛନ୍ତି । ଶ୍ରୀ ରବି ଘୋଷଙ୍କର ଅନୁରୋଧକ୍ରମେ

ଆମେମାନେ (ବୁଲୁବାବୁ, ଗୁଣନିଧିବାବୁ, ଫକୀରବାବୁ, ଉପେନ୍ଦ୍ର ନାୟକ, ସଚ୍ଚିଦାନନ୍ଦ ମହାନ୍ତି, ବୁବୁ, ଆଦି) ତାଙ୍କୁ ଦେଖା କଲୁ । ଶ୍ରୀଯୁକ୍ତ ନବବାବୁ ମଧ ମଧ୍ୟାହ୍ନରେ ସେଠାରେ ଖୁସିରେ ଥିଲେ । ଆମ ସହ ଏମିତି ଖୁସିରେ କଥାବାର୍ତ୍ତାରେ ଓଡ଼ିଶାରେ ରାଜାମାନେ ଶାସନ କ୍ଷମତାକୁ ଆସିବାକୁ କିପରି ଓ କେତେ ସଂଖ୍ୟାରେ ଆଗ୍ରହୀ, ଗ୍ରାମଦାନ ଗାଁରେ କି ପରିବର୍ତ୍ତନ ଦେଖାଯାଉଛି, ଆମେ ଇଂରାଜୀଭାଷାକୁ ଆମ ଦେଶରୁ ହଟାଅ ଓ ଆଞ୍ଚଳିକ ଭାଷାରେ ସବୁ କାର୍ଯ୍ୟ ଓ ଉଚ୍ଚ ଶିକ୍ଷା (ବି.ଏ. ପର୍ଯ୍ୟନ୍ତ) ଚାଲୁ, ବିନୋବାଜୀଙ୍କର ଭୂଦାନ କାର୍ଯ୍ୟକ୍ରମ ଦ୍ୱାରା କିଛି ହେବ ନାହିଁ ଏବଂ ସତ୍ୟାଗ୍ରହ ଓ ଜେଲ ଯିବା ଦରକାର ବୋଲି ସେ କହିଲେ ।

୨୬.୪.୧୯୫୮

ଦଶମ ସର୍ବୋଦୟ ସମ୍ମିଳନୀ, ପଣ୍ଢରପୁର (ଜିଲ୍ଲା ସୋଲାପୁର, ବମ୍ବେ ପ୍ରଦେଶ)କୁ ମୁଁ ଯିବାକୁ ସ୍ଥିର କଲି । ସେଥିପାଇଁ ଲୁଗାପଟା ସଫା କଲି ଓ ସାମାନ୍ୟ ଜିନିଷପତ୍ର ବଜାରରୁ କିଣି ଆଣିଲି । ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ଯିବେ ନାହିଁ, ଭାବିଥିଲି । ସେ ମଧ୍ୟ ଶେଷରେ ଯିବାକୁ ଠିକ୍ କଲେ । ଦୁଃଖର କଥା ଯେ ଶ୍ରୀମତୀ ନନ୍ଦିନୀ ଶତପଥି, ଦେବେନ୍ଦ୍ର ବାବୁ (ତାଙ୍କ ସ୍ୱାମୀ) ଓ ସେମାନଙ୍କର ପିଲା ଦୁଇଜଣ ଶେଷରେ ଯାଇପାରିଲେ ନାହିଁ ।

ରେଲୱେ ଯୋଗାଇଥିବା ୩ୟ ଶ୍ରେଣୀ ସ୍ପେଶାଲ ଟ୍ରେନ୍‌ରେ ଆମ୍ଭେମାନେ (ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ଗୁଣନିଧି ମହାନ୍ତି, ରମାଦେବୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ମନମୋହନ ଚୌଧୁରୀ, ହରେକୃଷ୍ଣ ବିଶ୍ୱାଳ, ସଚ୍ଚିଦାନନ୍ଦ ମହାନ୍ତି, ସୁମିତ୍ରା ଚୌଧୁରୀ..... ଆଦି କଟକରୁ ମୋଟରେ ପ୍ରାୟ ୪୫ ଜଣ ରାତି ୨ଟାରେ ବାହାରିଲୁ । ବେଜବାଡ଼ା, – ହାଇଦରାବାଦ -ବାଡ଼ି ବାଟ ଦେଇ ଆମେ କୁର୍ଦ୍ଦବାଡ଼ିରେ ତା ୨୯ ମଧ୍ୟାହ୍ନରେ ପହଞ୍ଚିଲୁ । ଟ୍ରେନ୍‌ରେ ମୁଁ ସର୍ବଶ୍ରୀ ହରେକୃଷ୍ଣ ବିଶ୍ୱାଳ, ତାଙ୍କ ସାଥୀ ଦୈତାରି ସାହୁ, ମହନ୍ତ.... ଫକୀର ମିଶ୍ର, ସଚ୍ଚିବାବୁ ଆଦିଙ୍କ ଦଳରେ ଚୂଡ଼ା, ଆଚାର, ଛତୁ, ଆମ୍ବ, ଆଦି ଖାଦ୍ୟ ଖାଉଥାଏ । କୁର୍ଦ୍ଦବାଡ଼ିରୁ ଆମ୍ଭେମାନେ ସମସ୍ତେ (ଓଡ଼ିଶାର ପ୍ରାୟ ୨୦୦ ପ୍ରତିନିଧି ଓ ଦର୍ଶକ ଏବଂ ବଙ୍ଗଳା, ଆସାମ, ଆଦିର ପ୍ରତିନିଧିମାନେ) ଛୋଟ narrow gauge line ର passenger ଓ ମାଲବୁହା ଡ଼ବାରେ ୩୧ ମାଇଲ ଦୂର ପଣ୍ଢରପୁରକୁ ଯାଇ ଉପରଓଳି ୪ଟାରେ ପହଞ୍ଚିଲୁ ।

ସ୍ଥାନୀୟ ଲୋକେ ବ୍ୟବସ୍ଥା କରିଥିଲେ ମାତ୍ର ଅଭ୍ୟର୍ଥନା ସମିତି ସେମାନଙ୍କୁ ପୂରା ସ୍ୱାଧୀନତା ଦେଇ ନ ଥିବାରୁ, କେତେକ ଅବ୍ୟବସ୍ଥା ଘଟିଥିଲା ।

ବନୋବାଜୀ ତାନପୁର ମହାରାଜ (ଜଣେ ବିଖ୍ୟାତ ସନ୍ଥଙ୍କର ନାମ)ଙ୍କର ମଠରେ ରହିଥିଲେ । ପଣ୍ଢରପୁର ସହରର ଲୋକସଂଖ୍ୟା ପ୍ରାୟ ୪୧ ହଜାର । ଦକ୍ଷିଣ, ପଶ୍ଚିମ

ଭାରତର ଏହା ଅତି ପ୍ରସିଦ୍ଧ ତୀର୍ଥ ଅଟେ । ଏଠାର ବିଠୋବା (ବିଷ୍ଣୁ), ରକ୍ମିଣୀ, ଓ ପୁଣ୍ଡଳିକଙ୍କର ଦର୍ଶନ ପାଇଁ ଲକ୍ଷାଧିକ ଯାତ୍ରୀ ହୁଅନ୍ତି । ଏ ବର୍ଷ ଏଠାର ଉତ୍ତାପ ୧ ୧ ୦ ଡିଗ୍ରି . ଥିଲା । ପାଣି ଓ ଆଲୁଅର ଅଭାବ ନ ଥିଲା । ଲୋକେ "ଚନ୍ଦ୍ରଭାଗା'' ବା ଭୀମା ନଦୀରେ ଗାଧୋଉଥିଲେ । ରାତିରେ ବେଶ୍ ଥଣ୍ଡା ପବନ ଥିଲା । ଗୋଟିଏ ଅତି ମହତ୍ତ୍ୱପୂର୍ଣ୍ଣ ଘଟଣା ଘଟିଲା ଯେ ପଣ୍ଢରପୁରର ବିଠୋବା, ରକ୍ମିଣୀ ଓ ପୁଣ୍ଡଳିକ ମନ୍ଦିରତ୍ରୟର ଟ୍ରଷ୍ଟୀମାନେ ବିନୋବାଜୀଙ୍କୁ ଲିଖିତ ନିମନ୍ତ୍ରଣ ଦେଲେ ଯେ ସେ ଅହିନ୍ଦୁମାନଙ୍କ ସହ ସେହି ୩ ମନ୍ଦିରରେ ପ୍ରବେଶ କରିପାରନ୍ତି ଏବଂ ସମସ୍ତେ ଦେବତାମାନଙ୍କୁ ଦର୍ଶନ (ଓ ଏଠିକାର ରୀତି ଅନୁସାରେ), ସ୍ପର୍ଶ କରିପାରନ୍ତି । ତଦନୁସାରେ ତା ୨୯.୫.୫୮ ପ୍ରତ୍ୟୁଷରେ ବିନୋବାଜୀ, ମୁସଲମାନ ଓ ଖ୍ରୀଷ୍ଟିୟାନ ସହଯାତ୍ରୀମାନଙ୍କୁ ନେଇ ଏହି ଦେବତାମାନଙ୍କୁ ମନ୍ଦିର ଭିତରେ ଦର୍ଶନ କରିଥିଲେ ।

ବିନୋବାଜୀ ତାଙ୍କର ଭାଷଣରେ ଏହାର ବିଶେଷ ଉଲ୍ଲେଖ କରିଥିଲେ । ସେ ଆହୁରି ମଧ୍ୟ କହିଲେ ଯେ ୧୯୫୫ ମସିହାର ପୁରୀ ଜଗନ୍ନାଥ ମନ୍ଦିରରେ ସେ, ସଙ୍ଗରେ ଜଣେ ଖ୍ରୀଷ୍ଟିୟାନ୍ ମହିଳା ଥିବାରୁ, ପ୍ରବେଶ କରିବାକୁ ମନ୍ଦିର କର୍ତ୍ତୃପକ୍ଷଙ୍କ ଠାରୁ ଅନୁମତି ପାଇ ନଥିଲେ । ଏଥିରେ ଗୋପବାବୁଙ୍କର ମନରେ ବହୁତ ଦୁଃଖ ହୋଇଥିଲା । ମାତ୍ର ଗୋପବାବୁଙ୍କର ମୃତ୍ୟୁପରେ ତାଙ୍କର ଆତ୍ମା ବୋଧହୁଏ ପଣ୍ଢରପୁର ମନ୍ଦିର ପ୍ରବେଶ ପାଇଁ କର୍ତ୍ତାମାନଙ୍କୁ ପ୍ରେରଣା ଦେଇଛି । ଏ ପର୍ଯ୍ୟନ୍ତ ହିନ୍ଦୁଧର୍ମର କୌଣସି ମନ୍ଦିରରେ ଅ-ହିନ୍ଦୁ ପ୍ରବେଶ କରି ନ ଥିଲେ । ଏହା ଗୋଟିଏ ନୂଆ କଥା ହେଲା । ମାତ୍ର, ଆମେ ପଣ୍ଢରପୁରର ୩ ଜଣ ଦୋକାନୀ, ଓକିଲଙ୍କ କଥାବାର୍ତ୍ତାରୁ ଜାଣିଲୁ ଯେ ସେମାନେ ଏଥିରେ ଭାରୀ ବିରକ୍ତ ଓ କ୍ଷୁବ୍ଧ । ରକ୍ଷଣଶୀଳ ହିନ୍ଦୁମାନଙ୍କର ଏପରି ବିରୁଦ୍ଧ ମନୋଭାବ ତ ହେବାର କଥା । ତେବେ, ଏପର୍ଯ୍ୟନ୍ତ କୌଣସି ପ୍ରତିବାଦମୂଳକ ଗଣ୍ଡଗୋଳ ଘଟିନାହିଁ – ଏହା ଆଶ୍ଚର୍ଯ୍ୟର କଥା ।

୩୦.୫.୧୯୫୮

ଭୋର ୩ଟାରେ ୰ଗୋପବାବୁଙ୍କର ପରିବାରର ଲୋକଙ୍କ ସହ ବିନୋବାଜୀ ପ୍ରାତଃପ୍ରାର୍ଥନା ପରେ ପ୍ରାୟ ଅଧ ଘଣ୍ଟାଏ ସାକ୍ଷାତ ଦେଲେ ଓ କଥାବାର୍ତ୍ତା କଲେ । ଗୋପବାବୁଙ୍କର ଆତ୍ମା ଏଠା ମନ୍ଦିର ପ୍ରବେଶରେ ଓ ଭୂଦାନ ଆରୋହଣ କାମରେ କାର୍ଯ୍ୟ କରୁଛି ବୋଲି ସେ କହିଲେ । ଆଚାର୍ଯ୍ୟ ମହାଶୟ, ବ୍ୟାସଜୀ, ମୁଁ ମଧ୍ୟ ଉପସ୍ଥିତ ଥିଲୁ ।

୩୦ ମଇ ରୁ ୧ ଜୁନ୍, ୧୯୫୮

ଆମ୍ଭେମାନେ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେଲୁ । ଶେଷ ଦିନ ଭାରତର ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ସଭାକୁ ଆସିଥିଲେ । ୰ଗୋପବାବୁଙ୍କର ପରିବାର ସହ ସେ ଦେଖା କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ମୋତେ ବୁବୁ ଏଥିପାଇଁ ୩ ଥର ସଭା ଭିତରୁ ଡାକିଲେ

ହେଁ, ମୁଁ ଇଚ୍ଛା କରି ଦେଖା କରିବାକୁ ଗଲି ନାହିଁ । ମୁଁ ଭାବିଲି ଯେ ମୋର ତାଙ୍କଠାରେ କିମ୍ବା ତାଙ୍କର ମୋଠାରେ କିଛି କାର୍ଯ୍ୟ ନାହିଁ । ଆଗରୁ ମଧ୍ୟ ସେପରି ସୂଚନା ନ ଥିଲା । ଅତଏବ, ମୋର ଯିବା ଅନାବଶ୍ୟକ ।

ଏହି ଦଶମ ସର୍ବୋଦୟ ସମ୍ମିଳନୀରେ ଶ୍ରୀଯୁକ୍ତା ରମାଦେବୀ ଚୌଧୁରୀ ଅଧକ୍ଷା ହୋଇଥିଲେ ।

ତା ୨ ଓ ୩ ଜୁନ୍‌ରେ ସର୍ବସେବା ସଂଘର ଓ ପ୍ରକାଶନ ସମିତିର ବୈଠକ ଥିଲା ଓ ମୋତେ ଆଗରୁ ବିଶେଷ ନିମନ୍ତ୍ରଣ ପତ୍ର ମିଳିଥିଲା । ମାତ୍ର ମୁଁ ଜାଣିକରି ଯୋଗ ଦେଇ ନ ଥିଲି । ମୋର କିଛି କହିବାକୁ ନ ଥିଲା, ଏବଂ ଯାହାସବୁ ଆମର ଆଲୋଚିତ ଓ ସ୍ଥିର ହୋଇଛି ସେ ସବୁ ତ କାର୍ଯ୍ୟକାରୀ ହେଉନାହିଁ । ଖାଲି କଥାବାର୍ତ୍ତା ଶୁଣି ଲାଭ କଅଣ ?

ଆଚାର୍ଯ୍ୟ ମହାଶୟ, ହୋତା ମହାଶୟ ତା ୨.୬ରେ ସେଠାରୁ ସତ୍ୟବାଦୀ (ପୁରୀ) ଅଭିମୁଖେ ବାହାରିଆସିଲେ । ତା ୩ ଉପରଓଳି ବୋଉ, ଚୁନୀ ଦେବୀ, ଆଦି ପଣ୍ଡରପୁରରୁ ମଙ୍ଗଳବାର ଦିନ ମୋଟରକାରରେ ମୋହଲ ରେଲଷ୍ଟେସନକୁ ଆସିଲେ । ବ୍ୟାସଜୀ, ଗୁଣନିଧି ବାବୁ, ଆଦିଙ୍କ ସହ ସେମାନେ ହାଇଦରାବାଦକୁ ଆସି, ଶ୍ରୀ ପ୍ରଫେସର ଗୋରାଙ୍କ ପୁଅ ଶ୍ରୀ ଲବଣମ୍‌ଙ୍କ ବସାରେ ୧ ଦିନ ରହିଲେ । ସେମାନେ ତା ୬ରେ କଟକରେ ପହଞ୍ଚିଲେ ।

ଆମ୍ଭେମାନେ (ଦାଦା, ଖୁଡ଼ୀ, ସୁମିତ୍ରା ଦେବୀ, ନାନା, ନାନୀ, ବୁଲୁବାବୁ, ବନୁ, ବାବୁଲି, ମଙ୍ଗଳ ଦେବୀ, ତିନୁ, ମୁଁ) ତା ୩ ସନ୍ଧ୍ୟାରେ ପଣ୍ଡରପୁରରୁ କୁର୍ଦ୍ଦୁବାଡ଼ିକୁ ଟ୍ରେନ୍‌ରେ ଆସି, ସେଠାରୁ ଟ୍ରେନ୍‌ରେ ତା ୪ ଭୋର ପୁନାକୁ ପ୍ରାୟ ୧୧୦ ମାଇଲ ଆସିଲୁ । ଶ୍ରୀ ରାଓସାହେବ ପଟବର୍ଦ୍ଧନଙ୍କ "ସୀତାରାମ" ଘରେ - ପୁନା-୪ରେ ଆମ୍ଭେମାନେ ରହିଲୁ ଓ ଭୋଜନ କଲୁ । "ସମାଜ"ର ପୂର୍ବ ସଂପାଦକ ଓ ବର୍ତ୍ତମାନ ଓଡ଼ିଶରେ ଜଣେ ମନ୍ତ୍ରୀ ଶ୍ରୀ ରାଧାନାଥ ରଥଙ୍କର ପୁଅ ଶ୍ରୀ ନୀଳକଣ୍ଠ ରଥ ଆମ୍ଭମାନଙ୍କୁ ତାଙ୍କର ଅନୁଷ୍ଠାନ (ଭାରତ ସେବକ ସମାଜର Gokhale Institute of Economics & Politics) କୁ ନେଇଗଲେ । Vice-Director ଶ୍ରୀ ସୋହନୀଙ୍କ ସହ ଦେଖାହେଲା । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଓ ଶ୍ୟାମସୁନ୍ଦର ମିଶ୍ର ସେଠାରେ ସଭାରେ ଥିବାରୁ, ଆମେ ଦେଖା ପାଇଲୁ ନାହିଁ । ନୀଳକଣ୍ଠ ବାବୁଙ୍କର ବସାକୁ ଗଲୁ । ତାଙ୍କର ୧ ବର୍ଷର ପୁଅକୁ ଦେଖିଲୁ । ଚୁଡ଼ାଭଜା, ଆମ୍ବ ଖାଇଲୁ । ଆମର ପିଲାମାନେ ପେଶବା ପାର୍କ ଦେଖି, ହାତୀରେ ଚଢ଼ି ଭାରୀ ଖୁସି ହୋଇଥିଲେ । ସନ୍ଧ୍ୟାପରେ ଆମେ ପଟବର୍ଦ୍ଧନଜୀଙ୍କ ସହ ଶ୍ରୀମତୀ ନିର୍ମଳା ଦେଶପାଣ୍ଡେ (ଯେ ବିନୋବାଜୀଙ୍କର ପଦଯାତ୍ରାରେ ଓଡ଼ିଶାରେ ଥିଲେ)ଙ୍କ ର ମାତାଙ୍କର ବାପା ବୁଢ଼ା (ଅବସରପ୍ରାପ୍ତ ଜିଲ୍ଲା ଜଜ୍ - ବୟସ ୮୩

ବର୍ଷ)ଙ୍କୁ ଦେଖା କଲୁ । ସେ ଭାରୀ ଖୁସି ହେଲେ, ଦାଦାଙ୍କୁ ଦେଖି, ଜଣେ ସ୍ୱତଃ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିଛନ୍ତି ବୋଲି । ଆଗା ଖାଁ ପ୍ରସାଦରେ ଆମେ ମହାଦେବ ଦେସାଇଙ୍କର ଓ କସ୍ତୁରବାଙ୍କର ସମାଧି ଦେଖିଲୁ ।

୫.୬.୧୯୫୮

ସକାଳ ଟ୍ରେନ୍‌ରେ ଆମ୍ଭେମାନେ (ଦାଦା ଓ ଖୁଡ଼ୀଙ୍କୁ ଛାଡ଼ି - ଖୁଡ଼ୀଙ୍କର ଦାନ୍ତ ଉପାଡ଼ିବାକୁ) ବମ୍ବେ ଆସିଲୁ । ଦାଦାର ଷ୍ଟେସନରେ ଓହ୍ଲାଇ, ଶିବାଜୀ ପାର୍କ ସାମନାରେ "ଲକ୍ଷ୍ମୀନିବାସ" କୋଠାରେ ନାରାୟଣ ଦେସାଇଙ୍କର ମାମୁଁପୁଅ ଭାଇ ଶ୍ରୀ ରମଣଲାଲ ମୁଲାଭାଇ ଦେସାଇଙ୍କ ବସାରେ ରହିଲୁ । ରମଣଭାଇଙ୍କର ମାତା (ବୃଦ୍ଧା) ଆମପାଇଁ ରନ୍ଧାବଢ଼ା କରୁଥାନ୍ତି ।

ତା ୬ରେ ଆମେ ଜାହାଙ୍କ ଦେଖିବାକୁ ଯାଇ, ବାଟ ଠିକ୍ ପାଇଲୁ ନାହିଁ । ଏଥିପାଇଁ ବୁବୁ ନାରାୟଣଙ୍କୁ କଅଣ ଦୋଷ ଦେବା ପରି କହିଥିଲା । ତା ୭ ସକାଳେ ବୁବୁ ବଡ଼ ମର୍ମସ୍ପର୍ଶୀ ଭାବରେ ଦାଦା, ଖୁଡ଼ୀ, ନାରାୟଣଙ୍କ ଆଗରେ କହିଲା – ଏ (ନାରାୟଣ) ମାସରେ ମାତ୍ର ୨/୩ ଦିନ ଆମପାଖରେ ରହିବେ, ଅନ୍ୟ ଦିନ ଯାକ (ଦେଶକାମରେ) ଅନ୍ୟତ୍ର ବୁଲୁଥିବେ । ମୁଁ ଏକାକୀ ମୋ ଜୀବନ ଚଳାଇଛି - ଏତେ ଦୂରରେ ରହି । ମୋ ଦୁଃଖ ତୁମେ (ବାପୀ, ନୂମା) କେହି ଦେଖିପାରିବ ନାହିଁ । X X X ।

ମୋର ମନେ ହେଲା ସାର୍ବଜନୀନ କାର୍ଯ୍ୟ ସହ ପାରିବାରିକ ଜୀବନଯାପନ ଏକ Contradiction ଦିଶୁଛି ଏବଂ ଏହାର ପରିଣତି ସାଧାରଣ ମନୁଷ୍ୟ ପକ୍ଷରେ ଏପରି ମନରେ ଅବଶୋଷ ଓ ଦୁଃଖ ।

ବନ୍ନୁ, ବାବୁଲିଙ୍କୁ ମୁଁ ଯେତେ ପଚାରିଲେ – ତୁମର କଅଣ ଦରକାର, ଏଠାରୁ କିଣିବା କୁହ – ସେମାନେ କିଛି ଚାହୁଁ ନ ଥାନ୍ତି । ପିଲା ହେଲେ ସୁଦ୍ଧା, ସେମାନେ ଆମର କ୍ରୟଶକ୍ତିର ଅଭାବ ବୁଝୁଛନ୍ତି ଏବଂ କିଛି ନେବାନାହିଁ, କହୁଥାନ୍ତି । ଶେଷରେ ଗୋଟିଏ chess set (ସତରଞ୍ଜ ଖେଳ) ଓ Trade game set ଚାହିଁଲେ ଓ ଦାଦା (ନବବାବୁ) କିଣି ଦେଲେ । ବନ୍ନୁ ଗୋଟିଏ ସାନ ଚାକୁ ମଧ୍ୟ କିଣିଲା ।

ଜିଜୀ (ରାମ୍ଭାଦେବୀ) ପଣ୍ଢରପୁରକୁ ଯାଇଥିଲେ ଏବଂ ଜିଜାଜୀ ଯେଉଁ ଏକଲକ୍ଷ ଟଙ୍କାର will କରିଯାଇଛନ୍ତି, ସେଥିରେ କିଛି ସର୍ତ୍ତ ନାହିଁ ବୋଲି ମୋତେ କହିଲେ । ସେ ବୋଉଙ୍କୁ, ବିନୋବାଜୀଙ୍କୁ ଓ ଅନ୍ୟମାନଙ୍କୁ ଦେଖି, ଆଶ୍ୱାସନା ପାଇଲେ ।

ଆମ୍ଭେମାନେ ତା ୮ ଉପରଓଳି ବମ୍ବେ ଭିକ୍ଟୋରିଆ ଟର୍ମିନାସ୍ ଷ୍ଟେସନ୍‌ରୁ ପୁନା ଷ୍ଟେସନକୁ ଟ୍ରେନ୍‌ରେ ଆସି, ସେଠାରୁ ରାତି ପାସେଞ୍ଜର ଟ୍ରେନ୍‌ରେ ହାଇଦରାବାଦ ଅଭିମୁଖେ ଆସି, ତା ୯ ଜୁନ୍ ରାତି ୧୧ଟାରେ ହାଇଦରାବାଦ ଷ୍ଟେସନରେ ପହଞ୍ଚିଲୁ । ସେଠାରେ ରହିଲୁ ।

ତା ୧୦ରେ ଆମ୍ଭେମାନେ ଶ୍ରୀ ଲବଣମ୍‌ଙ୍କର ବସାରେ ରହିଲୁ । ସେ ନିଜେ ଆସି ଷ୍ଟେସନ୍‌ରୁ ଆମକୁ ୫ ଖଣ୍ଡ ରିକ୍ସାରେ ବସାଇ ନେଇଗଲେ, ନିଜେ ରାନ୍ଧିକରି ଖୁଆଇଲେ ଏବଂ ଭୂଦାନ ସମିତିର ଜୀପ୍‌କାରରେ ପିଲାମାନଙ୍କୁ ଓ ମାସୀ, ତିନୁ, ମୋତେ ବସାଇ ଚାର-ମିନାର, ମସଜିଦ୍, ଉସ୍‌ମାନିଆ କଲେଜ, ଆଦି ବୁଲାଇ ଦେଖାଇଲେ । ନାନାର ଦେହ ଟିକିଏ ଖରାପ ଥିବାରୁ, ସେ ଓ ସୁମିତ୍ରା ଦେବୀ ଗାନ୍ଧୀ ସ୍ମୃତି ମନ୍ଦିରରେ ରହିଲେ । ଦାଦା ଓ ଖୁଡ଼ୀ ଆନ୍ଧ୍ରର ଗବର୍ଣ୍ଣର ଶ୍ରୀ ଭୀମସେନ ସାଚାରଙ୍କୁ ଦେଖା କରିବାକୁ ଗଲେ ।

ତା ୧୧ ରାତି ଶେଷରେ ବା ୧୨ ଭୋର ୪ଟାରେ କଟକରେ ପହଞ୍ଚିଲୁ ।

୧୩.୬.୧୯୫୮

ବାବୁଲି ଓ ଓ ମୁଁ ବାବୁଲିର ସାଇକେଲକୁ ଖୋଲି ସଫା କଲୁ । ମୋର ଅସାବଧାନତାରୁ ୧ ତାଲା, ଚାବିକାଠି ନେନ୍ଥା ଓ ମୋର ପିତ୍ତଳ ସୀଲ୍‌ଟା ଘରଭିତରୁ କିଏ ନେଇଗଲା । ୧୪ ରିଖ ସକାଳ ଓଳି ବାବୁଲିର ସାଇକେଲ ଫିଟ୍ କଲୁ । ତେଣ୍ଡାକୁଡ଼ାର ଶ୍ରୀଯୁକ୍ତ ରାଜକିଶୋର ମହାନ୍ତି ଆସି, ଦାଦା ଓ ଖୁଡ଼ୀଙ୍କ ସହ କଥାବାର୍ତ୍ତା କରିଗଲେ । ତାଙ୍କର ମଧ୍ୟମ ପୁତ୍ର ଶ୍ରୀ ବିଭୂତିଭୂଷଣ ମହାନ୍ତି, ଏମ୍.ଏସ୍.ସି.ଙ୍କ ସହ ତିନୁର ଶୁଭବିବାହ ତା ୧୪.୭.୫୮ ରେ ଅନୁଗୁଳରେ ହେବ ବୋଲି ସେ ସ୍ଥିରି କରି ଗଲେ । ଶ୍ରୀ ବୀରେନ୍ ମିତ୍ର ମଧ୍ୟ ଆସିଥିଲେ । ପିଲାମାନଙ୍କ ଓ ଅନ୍ୟମାନଙ୍କ ପାଇଁ ବୀରେନ୍‌ବାବୁ ଖୁସୀରେ ଆମ୍ବ ଏକ ଝୁଡ଼ି ଦେଲେ । ରାମଚନ୍ଦ୍ରପୁରର ଶ୍ରୀମାନ୍ ମୁକ୍ତେଶ୍ୱର ବେଉରା (ପୁରାତନ ଛାତ୍ର) ଆଜି ଜାପାନ ଯାଇଥିବ, ମୁଁ ପରେ ପତ୍ରରୁ ଜାଣିଲି ।

୧୭.୬.୧୯୫୮

ସକାଳ ୬ଟାରେ ମୁଁ କଟକରୁ ସାଇକେଲରେ ଭୁବନେଶ୍ୱର ବାହାରିଲି । ଆଚାର୍ଯ୍ୟ ମହାଶୟ, ବନ୍ଦୁ, ଆଦି ତିଳତର୍ପଣ କରିବାକୁ କାଠଯୋଡ଼ିକୁ ଗଲେ । ମୁଁ ଇଚ୍ଛା କରି ଜଳଖିଆ କଲି ନାହିଁ । ଭୁବନେଶ୍ୱରରେ ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କୁ ପଣ୍ଢରପୁର ସର୍ବୋଦୟ ସମ୍ମିଳନୀର ଛାପା ବିବରଣୀ ୧ ଖଣ୍ଡ, ହିନ୍ଦୀ ପ୍ରାକୃତିକ ଚିକିତ୍ସା, Talks on Gita (Vinoba), Vinoba & His Mission(2nd revised edn.) .ବହି ଦେଲି । ସମ୍ମିଳନୀ କଥା, ଉତ୍ତର ମୌଳିକ ଶିକ୍ଷାକେନ୍ଦ୍ର ଦ୍ୱୟର କଥା, ସର୍ବୋଦୟ-ପାତ୍ର ବସାଇବା, ତା ୨୯.୪.୧୯୫୮ରେ ଗୋପବାବୁ ତାଙ୍କ ସହ ଦେଖାକରି କଅଣ କଥାବାର୍ତ୍ତା ହୋଇଥିଲେ, ଆମର କର୍ମୀ ସଂଖ୍ୟା ଓ ଦକ୍ଷତାର ଅଭାବ, ଆଦି ବିଷୟ ପଡ଼ିଲା । ଶ୍ରୀଯୁକ୍ତ ସାଧୁବାବୁଙ୍କ ବସାରେ ମୁଁ ଖେଚିଡ଼ି ଖାଇ, ବିଶ୍ରାମ କରି, ଉପରଓଳି ୪ଟାରେ ସେଠାରୁ ବାହାରିଲି ।

ସାଇକେଲରେ ଫେରିବାବେଳେ ରାଣୀହାଟ ଛକରେ ପୋଲିସ କନଷ୍ଟେବଲ ନମ୍ବର ୮୭୬ (ପତଳା ବ୍ୟକ୍ତି, ବୟସ ୩୦/୩୨ ବର୍ଷ ହେବ) ଟ୍ରାଫିକ୍ ରୁଲ୍‌ରେ ମୋତେ ଅଟକାଇଲେ

ଏବଂ ନାମଧାମ ଲେଖିନେଲେ । ସେ ମୋଟରକାର ଓ.ଆର.ଜି ୭୩୫ +(ରେଡ୍‌କ୍ରସ)କୁ ରାସ୍ତା ଦେବାପରେ, ଅନ୍ୟ ସାଇକେଲ, ଆଦି ଟ୍ରାଫିକ୍ clear ନ ହେଉଣୁ, ଅନ୍ୟ ଏକ କାର୍‌କୁ ଦୋଳାମୁଣ୍ଡାଇ ଆଡ଼ୁ ବାଟ ଦେଲେ । ଏହା ତାଙ୍କର ଭୁଲ ମାତ୍ର ମୋତେ ଅଯଥା ଅଟକାଇଲେ । ମୁଁ ପ୍ରତିବାଦ କରି ନ ଥିଲି ।

୧୮.୬.୫୮

ମୁଁ ସେମିତି କିଛି କାମ କରିନାହିଁ । ସକାଳେ ଶାଗପଟାଳିରେ ପ୍ରାୟ ୩୦ ବାଲତୀ ପାଣି କୂଅମୂଳରୁ ଆଣି ଦେଲି । ୧୧ ଇଞ୍ଚିଆ ବଡ଼ ବାଲତିରେ ମୁଁ ଥରକେ ୨ ହାତରେ ୨ ବାଲତି ପାଣି ଆଣୁଥିଲି । ଶ୍ରୀ ନିତ୍ୟାନନ୍ଦ ଜେନା କୂଅଭିତରେ ପଶି ପଙ୍କ ଓ ଭଙ୍ଗାନନ୍ଦ, ଆଦି ବାଲିତିରେ ପୂରାଇ ଦେଲେ ଓ ମୁଁ ଉପରୁ ତାହା ଉଠାଇ ନେଉଥାଏ । କୂଅ ଉଝାଳି ଦେଲୁ ।

୨୧.୬.୧୯୫୮

ରାମଚନ୍ଦ୍ରପୁରରରେ । ସକାଳେ ଓ ସନ୍ଧ୍ୟାପରେ ସର୍ବଶ୍ରୀ ବୈଷ୍ଣବ ସାମଲ, କଣ୍ଟୁରି ଶାନ୍ତି ଓ କୈଳାଶଚନ୍ଦ୍ର ନାଥଙ୍କ ସହ ସେମାନେ ଗଢ଼ିଥିବା "ସର୍ବୋଦୟ ପରିବାର'' ବିଷୟରେ ପ୍ରାୟ ୪ ଘଣ୍ଟା ମୁଁ ସେମାନଙ୍କଠାରୁ ଶୁଣିଲି । ସେମାନେ ନିଜ ନିଜର ଜମି ଏକାଠି ଚାଷ କରିବେ, ଅନ୍ୟ ଆୟ ମିଶାଇଦେବେ ଏବଂ ଗୋଟିଏ ପରିବାର ପରି ଚଳିବେ ବୋଲି ସ୍ଥିର କରିଛନ୍ତି । ଏହା ବଡ଼ ଉଦାର ଭାବନା । ଚାଷକାମରେ ଖର୍ଚ୍ଚ କରିବାକୁ ଓ ବିଶାଳଧାନ ଅମଳ ପର୍ଯ୍ୟନ୍ତ ଖାଇବଖର୍ଚ୍ଚର (ଧାନ ଚାଉଳ ଆଦିର ) ଅଭାବ କିପରି ପୂରଣ ହେବ, ଚିନ୍ତା କରୁଛନ୍ତି ।

ସନ୍ଧ୍ୟାବେଳେ ଖୁବ୍ ଭଲ ବର୍ଷା ହେଲା । ତା ୭.୬.୧୯୫୮ରେ ଏଣେ ଭଲ ବର୍ଷା ହୋଇଥିଲା । ମାତ୍ର ଏ ବର୍ଷର ଖରାରେ ଓ ଗତ ବର୍ଷରେ ଅତି ଅଳ୍ପ ବର୍ଷା ହୋଇଥିବାରୁ, ଭାରତର ବିଭିନ୍ନ ଅଞ୍ଚଳରେ କେତେ ଲୋକ ମରିଯାଇଛନ୍ତି, ଗୋମେଷାଦି ପଶୁ ପାଣି ପାଇନାହାନ୍ତି, ଏବଂ ଏଣେ ବହୁତ ବଡ଼ ପଣସଗଛ, ଲେମ୍ବୁଗଛ ମରିଯାଇଛି ।

୨୨.୬.୧୯୫୮

ସକାଳେ ବୋଇତିକଖାରୁ ଓ ଭେଣ୍ଡିପୁଆ ମୁରଲୀଠାରୁ ଆଣି ମୁଁ ଲଗାଇଲି । କାଲିଠାରୁ ସକାଳଓଳି ୨ ଘଣ୍ଟା ଲେଖାଁଏ ମୁଁ କସ୍ତୁରବା କେନ୍ଦ୍ରରେ ଶିକ୍ଷାର୍ଥିନୀମାନଙ୍କୁ ଭୂଦାନ, ଭାରତର କେତେକ ପ୍ରଧାନ ସେବାମୂଳକ ସଂସ୍ଥା, ସର୍ବୋଦୟ ଆଦି ବିଷୟରେ କିଛି କହୁଛି ।

ଉପରଓଳି ଶ୍ରୀ ଭୁବନାନନ୍ଦ ସ୍ୱାଇଁ ନିଜର ସହକର୍ମୀମାନଙ୍କ ମଧ୍ୟରୁ କେତେ ଜଣ ଠିକ୍ ଧରଣର (ପିଲାଙ୍କର) ପାଠ୍ୟପୁସ୍ତକ ନିର୍ବାଚନ କରୁ ନ ଥିବା, ଗୁରୁଜୀମାନେ ନିଜେ ଜ୍ଞାନ ନ ବଢ଼ାଇବା, ସରକାରୀ ପରୀକ୍ଷା ପ୍ରତି ଅଭିଭାବକମାନଙ୍କର ଓ ପିଲାଙ୍କର ଆସ୍ଥା ବଢ଼ୁଥିବା କଥା ମୋତେ କହିଲେ ।

୨୩.୬.୧୯୫୮

ଡେ଼ରିରେ ଉଠିଲି । କସ୍ତୁରବା କେନ୍ଦ୍ରରେ "ସର୍ବୋଦୟ'' କଥା ୯ଟାରୁ ୧୧ଟା ପର୍ଯ୍ୟନ୍ତ ବୁଝାଇଲି । ବାବୁଲି ଓ ମୁଁ ୩ଟା ବେଳେ ବରୀ ଗଲୁ । ମୁଁ ଗଣେଶଚନ୍ଦ୍ର ମହାନ୍ତିଙ୍କ ଘରକୁ ଗଲି । ଆର୍ତ୍ତବନ୍ଧୁ ମହାନ୍ତି (ଓ ବୃନ୍ଦାବନ ଚନ୍ଦ୍ର ଜେନା)ଙ୍କ ସହ ଦେଖା ଏବଂ ଗଣେଶବାବୁ ଥାଇ, "ସର୍ବୋଦୟ ପାତ୍ର'' କଥା ଚର୍ଚ୍ଚା ହେଲା । ଗଣେଶବାବୁ କହିଲେ ଯେ କେତେ ଲୋକେ କୌଣସି ଅନୁଷ୍ଠାନ ପାଇଁ ସର୍ବୋଦୟ ପାତ୍ର ଦ୍ୱାରା ଦାନ (ମୁଠିଚାଉଳ) ଦେବାକୁ ରାଜୀ, ମାତ୍ର କୌଣସି କର୍ମୀଙ୍କ ପାଇଁ ଦେବାକୁ ରାଜୀ ନୁହନ୍ତି ।

୨୬.୬.୧୯୫୮

ଦୁଇଓଳି ମୁଁ ଭାଗବତ ଓ ମୁରଲୀ ସହିତ ବାଡ଼ିର ଘାସ ସଫା କଲି । ମୁଁ ସକାଳଓଳି ୫ ଘଣ୍ଟା ପରିଶ୍ରମ କରିପାରିଲି । ଆମେ ପ୍ରତ୍ୟେକେ ୬ ଘଣ୍ଟାରେ ପ୍ରାୟ ୪୦୦ ବର୍ଗ ଫୁଟ ସଫା କଲୁ । ଜଳଖିଆ ଖାଇ ନ ଥିଲି । ୧୮୦ ଘେରା ମାତ୍ର ସୂତା କାଟିଲି । ଆଜି କସ୍ତୁରବା କେନ୍ଦ୍ରରେ ପଢ଼ାଇବା ବନ୍ଦ ଥିଲା ।

୨୭.୬.୧୯୫୮

କ୍ଷମା ମାଉସୀଙ୍କୁ ତାଙ୍କ ପତ୍ରର ଉତ୍ତର ଲେଖିଲି । ଆଜି କସ୍ତୁରବା କେନ୍ଦ୍ରରେ ସାପ୍ତାହିକ ଛୁଟି; ମୋତେ କ୍ଳାସ ନେବାକୁ ହେଲାନାହିଁ । ସୂତା ୧ ଗୁଣ୍ଡି କାଟିଲି । ଉପରଓଳି ୨ ଘଣ୍ଟା ଭୁବନାନନ୍ଦ ସ୍ୱାଇଁଙ୍କ ସହ ପାଠ୍ୟପୁସ୍ତକ ପାଇଁ ଉପାଦାନ, ଶିକ୍ଷାକୁ ଓ ଶିକ୍ଷାଦାନକୁ ବାସ୍ତବ କରିବା, ଲୋକସାଧାରଣଙ୍କର test ରେ ଆମର ଶିକ୍ଷା ଉତ୍ତୀର୍ଣ୍ଣ ହେବା, ବାଳିକା (ଛାତ୍ରୀ)ମାନଙ୍କର ଦଳଗଠନର କାରଣ, ଇତ୍ୟାଦି ଆଲୋଚନା କଲି । ସନ୍ଧ୍ୟାପରେ ବାବୁଲି ଘଣ୍ଟାଏ ... ପଢ଼ାଇଲି । ଉତ୍ତର ଶ୍ଳୋକ, ପଦ୍ୟ ମୁଖସ୍ଥ କରିବା, ହସ୍ତାକ୍ଷର ଭଲ ଲେଖିବା, ମନେ ରଖି ସବୁ କାର୍ଯ୍ୟ କରିବା କଥା ମୁଁ ତାକୁ କହିଲି । ଫିତାଦ୍ୱାରା ବାବୁଲି ଓ ମୁଁ ମାପି ଦେଖିଲୁ ଯେ ବୁଢ଼ୀମା ଓ ଝିଙ୍କୀଙ୍କର ଘର ସାମନରେ ୫୪' X୧୫' ଓ ୨୦' X୧୦' ଏବଂ ଝିଙ୍କୀଙ୍କର ଘର ପଛରେ ୧୪' X ୮' ଜାଗା ତା ୨୭.୭ରେ ଆମେ ସଫା କରିଥିଲୁ ।

ବାକୀ କାର୍ଯ୍ୟ (୧) ବିଛଣା ବାନ୍ଧିବାର ଫିତା ଲଗାଇବା (୨) ତଣ୍ଡି ସଫା କରି କପା ଲଗାଇବା (୩) ଭେଣ୍ଡି ଓ ବାଇଗଣ ଲଗାଇବା (୪) ଦ୍ୱାର କବାଟ ଲଗାଇବା, ଘର ଲିପାପୋଛା କରାଇବା (୫) ବାବୁଲିର ଆଟଲାସ୍ ଖୋଜିବା (୬) ବାବୁଲିକୁ ଭଲ ହସ୍ତାକ୍ଷରର ନମୁନା ଦେଖାଇଦେବା (୭) କଟକକୁ ଚିଠି ଦେବା (୮) ତୂଳା ଭିଣିବା ଓ ପାର୍ବତୀଠାରୁ ବଇଣା ଆଣିବା (୯) ଛତା ମରାମତ କରାଇବା (୧୦) ବଢ଼ାଇ ଆସିଲେ, ରୋଷାଇଘରର କବାଟରେ ଜଞ୍ଜିର ଲଗାଇବା, ସାମନା ଦ୍ୱାରବନ୍ଧକୁ ମଜବୁତ କରିନେବା, ଝିଙ୍କୀଙ୍କର ଗାଧୁଆଘରେ ଝରକା ଲଗାଇବା, ଅରଟରେ

ଛିଟକିଣୀ ଲଗାଇବା । (୧୧) ମୋ ଗୋଇଠି ବଥାଇବା ଡାକ୍ତରବାବୁଙ୍କୁ ପଚାରିବି (୧୨) ସାଇକେଲ ପାଇଁ ଗଦି କରାଇବା ।

୨୮.୬.୧୯୫୮

ଅଧ ଗୁଣ୍ଡି ସୂତା କାଟିଲି । ଭୂଦାନ ଗଙ୍ଗାର ୨ୟ ଭାଗରୁ ୧୪ ପୃଷ୍ଠା ପଢ଼ିଲି । କସ୍ତୁରବା କେନ୍ଦ୍ରରେ ୧ ଘଣ୍ଟା ସର୍ବୋଦୟ ବିଚାରର କେତେକ ମୂଳ କଥା କହିଲି । ୧୦ଟି ପଏଣ୍ଟ ଶିକ୍ଷାର୍ଥିନୀମାନଙ୍କୁ ନୋଟ କରାଇଦେଲି ।

ଉପରଓଳି କସ୍ତୁରବା କେନ୍ଦ୍ରରେ ରାମଚନ୍ଦ୍ରପୁରରେ ଶ୍ରୀମତୀ ତୁଙ୍ଗବିଦ୍ୟା ଦେବୀ (ଡାକ୍ତରାଣୀ)ଙ୍କର ବିଦାୟସଭାରେ ମୁଁ ଉପସ୍ଥିତ ଥିଲି । କଲ୍ୟାଣପୁରର ଶ୍ରୀ ପ୍ରାଣକୃଷ୍ଣ ପଟ୍ଟନାୟକ ଓ ଅମଠପୁରର ଶ୍ରୀ ରଙ୍ଗାଧର ଦାସ ଏଠାକୁ ଆସିଲେ । ରାତିରେ ରହିଲେ ।

୨୯.୬.୧୯୫୮

ସକାଳେ ଖଣ୍ଡିଏ ଜାଗାରୁ ତଣ୍ଡିଘାସ ତାଡ଼ିଲି । ବାବୁଲି ମଧ୍ୟ ୧ ଘଣ୍ଟା ମୋ ସହ ସେ କାର୍ଯ୍ୟ କଲା । ଭାଗବତ ମଧ୍ୟ । କସ୍ତୁରବା କେନ୍ଦ୍ରରେ କ୍ଲାସ । ଖରାବେଳେ ଅଧ ଗୁଣ୍ଡି ସୂତା କାଟିଲି । ବାବୁଲି ଇଂରାଜୀ ବହିରୁ ୩ଟା lesson ପଢ଼ିଲା । ୫ଟା ବେଳେ ବରୀ ଗଲି । କୁଏର ବିଦାୟସଭାରେ ମୁଁ କିଛି କହିଲି । ସ୍ଥାନୀୟ ଲୋକଙ୍କର ସାହାଯ୍ୟ ଓ ଦାୟିତ୍ୱ ଦରକାର । ରାତିରେ ପାଣ୍ଡୁବାବୁ, ରଙ୍ଗାଧରବାବୁ, କଣ୍ଟୁରି ଶାନ୍ତି, ବୈଷ୍ଣବ ସାମଲ ଏ ଅଞ୍ଚଳର କାର୍ଯ୍ୟ କଥା ଟିକିଏ ଚର୍ଚ୍ଚା କଲେ । ମୁଁ ଥିଲି । ସନ୍ଧ୍ୟା ପରଠାରୁ ମୋତେ ଭାରୀ ଥକା ଓ କସ୍‌ମସ୍ ଲାଗିଲା । କୁଇନାଇନ୍ ବଟିକା ଗୋଟିଏ "ସେବାଘରେ'' ଖାଇଲି । ସକାଳେ ଜଳଖିଆ ଖାଇ ନ ଥିଲି, ମଧ୍ୟାହ୍ନରେ କଞ୍ଚାଚୂଡ଼ା, ଦହି ଓ ନଡ଼ିଆ ଖାଇଲି । ରାତିରେ କିଛି ଖାଇଲି ନାହିଁ ।

୧.୭.୧୯୫୮

ଆଜି ମଧ୍ୟ ମୁଁ ମୋଟରେ ପ୍ରାୟ ୫ ଘଣ୍ଟା ତଣ୍ଡି ତାଡ଼ିଲି । ଉପରଓଳି ବାବୁଲି ଘାସ ଓ ତଣ୍ଡି ବାଛି ଦେଉଥିଲା । ମୋର ତଳିପେଟ ପୂରି ରହିଥିବା ପରି ଜଣାଗଲା; କାଲି ଅଧିକ ଚୂଡ଼ା ଓ ନଡ଼ିଆ ଖାଇବାକୁ ଏପରି ବିଗିଡ଼ିଛି । ରାତିରେ କେବଳ ସରବତ୍ ଗ୍ଲାସେ ଖାଇଲି । ପୂର୍ଣ୍ଣବାବୁ ହୋମିଓପାଥି ନକ୍ସ ଭୋମିକା ପାନେ ଦେଲେ, ମୁଁ ଶୋଇବା ପୂର୍ବରୁ ଖାଇଲି ।

ମୋର ଡାହାଣହାତରେ Collis fracture ଫୁଟବଲ୍ ଖେଳରେ ୧୯୨୬ ମସିହାରେ କଲେଜରେ ହୋଇଥିଲା । ଏବେ କେତେବର୍ଷ ହେଲା କହୁଣିଠାରୁ ଆଙ୍ଗୁଳିଗୁଡ଼ିକ ପର୍ଯ୍ୟନ୍ତ ଦୁର୍ବଳତା ବୋଧ କରୁଛି । ଏ ୨/୩ ଦିନ ଖୁବ୍ ମାଟି ଖୋଳିବାରୁ ଖୁବ୍ ଦୁର୍ବଳତା ସେଥିରେ ଦେଖୁଛି । ରାତିରେ ରନ୍ଧାଜଡ଼ା ତେଲ ମୁଁ ନିଜେ ମାଲିସ କରୁଛି । କସ୍ତୁରବା କେନ୍ଦ୍ରରେ ପଢ଼ାଉଛି । ସର୍ବୋଦୟ ବିଚାରର ଆଲୋଚନା ଆଜି ସରିଲା ।

୩.୭.୧୯୫୮

ସକାଳେ ଓ ଉପରଓଳି ତଣ୍ଡି ତାଡ଼ିଲି । ଉପରଓଳି ଭାଗବତ ଓ ପବନା (ବୈରାଗୀର ପୁଅ) ୧ ଘଣ୍ଟା ମଧ୍ୟ ତାଡ଼ିଲେ । ବାବୁଲି ବାଛିଲା । ରାତିରେ ଅଳିଆବାଦ ମୌଳିକ ସ୍କୁଲରେ ଗୁରୁଜୀ (ପୀତବାସ, ବୀରକିଶୋର, ଶଶୀଭୂଷଣ, ଇତ୍ୟାଦି) ଓ ମଧୁସୂଦନ ଦାସଙ୍କ ସହ କଥାବାର୍ତ୍ତା କଲି । ସର୍ବୋଦୟ ବିଚାର ଆଗେ ଲୋକେ ନ ଧରିଲେ, ଗାଁର ଉନ୍ନତି ଓ ଏଠାରେ ଉଚ୍ଚ ସୋପାନ ଖୋଲିବା ଅସମ୍ଭବ । (ମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତି ଓ ରାଜସ୍ୱବିଭାଗ କିପରି ମୋ ସହ ଭୂତେଇବା କାରବାର କରିଥିଲେ, କହିଲି ।)

୪.୭.୧୯୫୮

ସକାଳେ ସାମାନ୍ୟ ଭାବରେ ତଣ୍ଡି ତାଡ଼ିଲି । ଦୋଳଗୋବିନ୍ଦ ଓ ରଙ୍ଗାଧର ଦାସ ଏଠାରେ ରହିଲେ । ଉପରଓଳି ଘାସ ସଫା କଲି, ଏବଂ ଭାଗବତ ଓ ପବନାଙ୍କ ସହ ମୁଁ ୧ ଘଣ୍ଟା ତଣ୍ଡି ତାଡ଼ିଲି । ବାବୁଲି ବାଛିଲା ।

ବିହାରର ଦେଓଗଡ଼ରୁ ଶ୍ରୀ ସ୍ୱାମୀ ପ୍ରକାଶନନ୍ଦ ପରିବ୍ରାଜକ ରାମଚନ୍ଦ୍ରପୁରକୁ ଆସିଛନ୍ତି । କେବଳ ମାତ୍ର ସ୍ଥାନୀୟ, ସୁଲଭ ଫଳ ଖାନ୍ତି । ଦୁଧ, ଚିନି, ମହୁ ଖାନ୍ତି ନାହିଁ । ସେ ଭାରତବର୍ଷର ପ୍ରଧାନ ୧୦ଟି ଭାଷା ଜାଣନ୍ତି ଏବଂ ବିଭିନ୍ନ ଭାଷାଭାଷୀ ଲୋକେ କିପରି ଅଳ୍ପ ଆୟାସରେ ଅନ୍ୟ ପ୍ରଦେଶର ଭାଷା ଶିଖିପାରିବେ ଏବଂ ଭାରତର ଏକତା ଭାଷାଦ୍ୱାରା ହେବ, ତାହା ବୈଜ୍ଞାନିକ ଭାବରେ ଓ ଅତିନିଷ୍ଠା ସହକାରେ ସେ କହୁଛନ୍ତି ।

୭.୭.୧୯୫୮

ସକାଳେ ଚୁନୀ ଦେବୀଙ୍କୁ, ଭୂଦେବଙ୍କୁ, ବିଜୟବାଡ଼ାର M. Lakshminarayanaଙ୍କୁ ଏବଂ ବମ୍ବେର Vision B. Gaikward ଙ୍କୁ ଚିଠି ଲେଖିଲି । ଏକାକୀ କିଛି ଜାଗା (ହଣାମାଟିକୁ) ସମତଳ କଲି । Fundamentals of Child Study by Edwin A Kirkpatrick ବହିରୁ ପଢ଼ି ଶିକ୍ଷାର୍ଥିନୀମାନଙ୍କ ପାଇଁ ନୋଟ କଲି । ସହଜାତ ପ୍ରବୃତ୍ତି - ଶ୍ରେଣୀ ବିଭାଗ - Emotion - ପ୍ରକ୍ଷୋଭ -

Instincts - classification (I) **Indivudualist** - (1) self-preservation (unmoral) (2) Feeding instinct (3) Fear instinct & as an emotion. (4) Fighting. **(II) Racial** (1) Sex instinct and mating, (secondary sex characteristics), care-taking inst. regulation of sex behaviour (III) **Social** - (1) Gregarious (2) Sympathy (3) Love of approbation (4) Compitative & Co-operative (5) Loyalty & Altruism (6) Teasing (IV) **Adaptive** (1) Imitation, (2) Play a function of educa-

tion, (3) Curiosity (V) moral , (VI) **Religious** (VII) **Resultant Instincts** - (1) Collective (2) Constructive (3) Aesthetic (4) Migratory (5) Rhythmic, (VIII) **Expressive** .

ଦିନ ୨ଟାରୁ ୪ଟା ପର୍ଯ୍ୟନ୍ତ କସ୍ତୁରବା କେନ୍ଦ୍ରରେ ଶିକ୍ଷାର୍ଥିନୀମାନଙ୍କୁ ମନୋବିଜ୍ଞାନର ଉପରୋକ୍ତ ପ୍ରଧାନ ବିଷୟମାନ ବୁଝାଇଲି । ଶ୍ରୀଯୁକ୍ତା ବନବାସିନୀ ପାତ୍ର (ବୟସ ୫୦ ବର୍ଷ) ପ୍ରତିଦିନ କ୍ଲାସରେ ଉପସ୍ଥିତ ଥାନ୍ତି । ସାମୟିକ ଭାବରେ ସେ କସ୍ତୁରବା କେନ୍ଦ୍ରରେ ଶିକ୍ଷୟିତ୍ରୀ ଅଛନ୍ତି । ବାବୁଲି ଓ ମୁଁ ଭେଣ୍ଡିଚାରା, ପୋଇଚାରା ଗୋଟିଏ ଲଗାଇଲୁ । ଉପରଓଳି ଆମେ ୨ ଜଣ ଏବଂ ହାଡ଼ିବନ୍ଧୁ, ବତାସୀ ଓ ଭାଗବତ ସାହୁ ପଟା ଟାଣି ହଣା ଜମିକୁ ସମତଳ କଲୁ । ତା ୪,୫,୬ ଓ ୭ରେ ଏ ମଜୁରୀ ମୋଟ ୩.୫୦ (ପ୍ରାୟ) କସ୍ତୁରବା କେନ୍ଦ୍ର ଦେଇଛନ୍ତି ।

୮.୭.୧୯୫୮

ସକାଳଓଳି ୨ ଥର ଝିପରି ଝିପରି ବର୍ଷା ହୋଇ, ପ୍ରାୟ ୧୦ଟା ଠାରୁ ବେଶ୍ ପ୍ରବଳ ବର୍ଷା ୨ ଘଣ୍ଟା ହେଲା । ବୁଲୁବାବୁ ସେହି ବର୍ଷାରେ କେନ୍ଦ୍ରାପଡ଼ାରୁ ରାମଚନ୍ଦ୍ରପୁରକୁ ସାଇକେଲରେ ଆସିଲେ – ମାନପୁରବାସୀ ୩୦/୩୫ ଜଣ କେନ୍ଦ୍ରାପଡ଼ାରେ interned(ନଜରବନ୍ଦୀ) ହୋଇ ଅଛନ୍ତି ଏବଂ ସେମାନଙ୍କର ଗାଁର କଳି ମାଲିମକଦ୍ଦମା ତୁଟାଇବା ପାଇଁ ବୁଝାଇବା ଉଦ୍ଦେଶ୍ୟରେ ବୁଲୁବାବୁ ଓ ସଚ୍ଚିଦାନନ୍ଦ ମହାନ୍ତି କଟକରୁ କେନ୍ଦ୍ରାପଡ଼ାକୁ ଆସିଥିଲେ ।

ମୁଁ ସକାଳଓଳି ଅଳ୍ପ ମାଟି ତଣ୍ଡିବନ୍ଧା କିଆରିରୁ ଉଠାଇଲି, ବର୍ଷା ଆସିବାରୁ ନିବୃତ୍ତ ହେଲି । ଦ୍ୱିଜ ବିଶ୍ୱାଳ, ମଧୁ ବିଶ୍ୱାଳ, ବେଣୁଧର ବେଉରା ଓ ବଳି ବିଶ୍ୱାଳଙ୍କୁ ଦେଖା କରି ଆସିଲି – ଖୁସିରେ । ଦ୍ୱିଜ ବିଶ୍ୱାଳଙ୍କର ପାଳିତ ପୁଅ (ବୟସ ୨୩ ବର୍ଷ ପ୍ରାୟ) ସାଧୁକୁ ମୁଁ ବଡ଼ ସ୍ପଷ୍ଟ ଭାବରେ କହିଲି ଯେ ସେ ( ଓ ଆମେ ପାଠୁଆ) ସର୍ବଦା ମନେ ରଖିବା ଦରକାର ଯେ ଆମେ ସମସ୍ତେ (ବିନୋବା ସୁଦ୍ଧା) ଶରୀର-ଶ୍ରମ କରୁଥିବା ଗରୀବ ଲୋକଙ୍କର ଉତ୍ପାଦନରେ ବଞ୍ଚୁଛୁ ଏବଂ ଅନେକ ଲୋକ ବିଳାସ କରୁଛନ୍ତି । ସାଧାରଣ ଲୋକଙ୍କର କି ପ୍ରକୃତ ଉପକାରରେ ଆମେ ପାଠ ଲାଗୁଛି ?

ଉପରଓଳି ୪ଟାରୁ ରାତି ୯ଟା ପର୍ଯ୍ୟନ୍ତ ବୁଲୁବାବୁ, ବସୁଦେବ ସାମଲ, ରଙ୍ଗାଧର ଦାସ, ଦୋଳଗୋବିନ୍ଦ ମହାନ୍ତି, ଦୁର୍ଗାଚରଣ ଶାନ୍ତି, ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନେ ଏ ଅଞ୍ଚଳରେ "ସର୍ବୋଦୟ-ପାତ୍ର'' ସ୍ଥାପନ ବିଷୟରେ ଆଲୋଚନା କଲେ । ବିନୋବାଜୀଙ୍କ ସହ ବୁଲୁବାବୁ ସତ୍ୟାଗ୍ରହ, ଅତିମାନୁଷ ଅବସ୍ଥା(କର୍ମୀଙ୍କର), ଆଦି ବିଷୟରେ ପ୍ରାୟ ତା ୧୦ ରୁ ୧୫ ଜୁନ୍ ପର୍ଯ୍ୟନ୍ତ ପଦଯାତ୍ରାବେଳେ ଚର୍ଚ୍ଚା କରିଥିଲେ । ତାହା ବୁଲୁବାକୁ କହିଲେ । "ସର୍ବୋଦୟ ପରିବାର'' କଥା ମଧ୍ୟ ପଡ଼ିଲା ।

୯.୭.୧୯୫୮

ସକାଳୁ ଦିନଯାକ ମେଘ ବର୍ଷିଲା । ମୁଁ ତିନି କରି (ଭବନାନନ୍ଦ ସ୍ୱାଇଁଙ୍କଠାରୁ ଆଣି) ଖଡ଼ା ରୋଇଲି, ପାଣିକଖାରୁ ପୁଆ ଲଗାଇଲି, ବାବୁଲି ଲଗାଇଥିବା କଲମୀ ଆମ୍ବଗଛର ଟାକୁଆରୁ ଏକ ଚାରା ହାଣ୍ଡିରେ ଲଗାଇଲି । ବୁଢ଼ୀମା'ଙ୍କର ଘରର ପଛପାଖ ସଫା କଲି ଓ ବର୍ଷାପାଣି କାଟି ବାହାର କରିଦେଲି ।

ସକାଳ ୯ଟାରୁ ୧୧ ଟା ପର୍ଯ୍ୟନ୍ତ ରାମପୁର ଓ ଶୁକଳ(ହାଟସାହି)ର ଆଂଶିକ ଭାଗ ବୁଲି, "ସର୍ବୋଦୟ ପାତ୍ର" ସ୍ଥାପନ ଆରମ୍ଭ କଲୁ । ବୁଲୁବାବୁ, ବୈଷ୍ଣବ ସାମଲ, ଗୋବିନ୍ଦ ସାମଲ, ହରିଚରଣ ଜେନା, କଣ୍ଡୁରି ଶାନ୍ତି, ଦୋଳଗୋବିନ୍ଦ ରାଜ ଥିଲେ । ମୁଁ ମଧ୍ୟାହ୍ନଭୋଜନ କଲି ନାହିଁ, ଚୂଡ଼ା ଖାଇଥିଲି । ଉପରଓଳି କସ୍ତୁରବା କେନ୍ଦ୍ରରେ କ୍ଲାସ୍ ନେଲି ।

୧୪.୭.୧୯୫୮

କେନ୍ଦ୍ରାପଡ଼ା ସବ୍‌ଡ଼ିଭିଜନର ତେଣ୍ଡାକୁଡ଼ା ପାଖ କେଶୋଳ ଗ୍ରାମର ବାସିନ୍ଦା ଅବସରପ୍ରାପ୍ତ excise D.S.P. ଶ୍ରୀଯୁକ୍ତ ରାଜକିଶୋର ମହାନ୍ତିଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀ ବିଭୂତିଭୂଷଣଙ୍କ ସହ ତିନୁ (କୃଷ୍ଣା)ର ଶୁଭବିବାହ ଆଜି ରାତି ୯ଟାରେ ଅନୁଗୁଳରେ ବାଜୀରାଉତ ଛାତ୍ରାବାସରେସ ସଂପନ୍ନ ହେଲା । ଆଚାର୍ଯ୍ୟ ହରିହର ଦାସ, ଈଶ୍ୱରଲାଲ ବ୍ୟାସ, ଦାଦା (ନବବାବୁ), ଖୁଡ଼ୀ (ମାଳତୀ ଦେବୀ), ବୋଉ (ରମାଦେବୀ) ବୁଲୁବାବୁ, ସୁମିତ୍ରାଦେବୀ, ନାନା, ନାନୀ, ବନ୍ଦୁ, ବାବୁଲି,.....ବିଶ୍ୱନାଥ ପଟ୍ଟନାୟକ, ରାଧାରତନ ଦାସ, ଜୟକୃଷ୍ଣ ମହାନ୍ତି... ଆଦି ଯୋଗ ଦେଇଥିଲେ । ମୁଁ ମଧ୍ୟ ଯୋଗ ଦେଇଥିଲି । ପାଗ ଭଲ ଥିଲା । ବଡ଼ ସୁନ୍ଦରରୂପେ ସର୍ବଶୁଭରେ ବିବାହ ସଂପନ୍ନ ହେଲା । ବୈଦିକ ମନ୍ତ୍ର ପଢ଼ା ଗଲା ଓ ଘୃତ ହୋମ ହେଲା ।

୧୬.୭.୧୯୫୮

ଦଶଟା ବେଳଠାରୁ ଓଡ଼ିଶା ସର୍ବୋଦୟ ମଣ୍ଡଳର ପ୍ରଥମ ବୈଠକ ଥୋଡ଼ିଆ ସାହିରେ ହେଲା । ସଦସ୍ୟମାନେ – ସର୍ବଶ୍ରୀ ରମାଦେବୀ, ମାଳତୀ ଦେବୀ, ଫକୀର ମିଶ୍ର, ସୁଧାଂଶୁଶେଖର ଦାସ, ମନମୋହନ ଚୌଧୁରୀ, ରାମଚନ୍ଦ୍ର ମିଶ୍ର, ରାଧାରତନ ଦାସ ଏବଂ ବିଶେଷ ନିମନ୍ତ୍ରଣରେ ନବବାବୁ, ଆଚାର୍ଯ୍ୟ ହରିହର ଦାସ, ବ୍ୟାସଜୀ, ବିଶ୍ୱନାଥ ପଟ୍ଟନାୟକ, ସଚ୍ଚିଦାନନ୍ଦ ମହାନ୍ତି, ହରମୋହନ ପଟ୍ଟନାୟକ, ଆଦି ଯୋଗ ଦେଇଥିଲେ । ମୁଁ ମଧ୍ୟ ଉପସ୍ଥିତ ଥିଲି । ଉପରଓଳି ମଧ୍ୟ ବୈଠକ ହେଲା ।

୧୭.୭.୧୯୫୮

ସକାଳେ ଓ ଉପରଓଳି ସର୍ବୋଦୟ ମଣ୍ଡଳର ଶିକ୍ଷା ସବ୍ କମିଟିର ବୈଠକ ହେଲା ।

ମୋତେ ସଭାପତି କଲେ । ପୂର୍ବ ଦିନର ବ୍ୟକ୍ତିମାନେ ଯୋଗ ଦେଇଥିଲେ । ଏଥର ସଦସ୍ୟମାନେ – ହରମୋହନ ପଟ୍ଟନାୟକ (ଆବାହକ), ରବି ଘୋଷ, ଅନ୍ନପୂର୍ଣ୍ଣା ମହାରଣା, ଅନ୍ନପୂର୍ଣ୍ଣା ଦାସ, ଫକୀର ମିଶ୍ର, ମନମୋହନ ଚୌଧୁରୀ, ଚିନ୍ତାମଣି ସ୍ୱାଇଁ, ନବକୃଷ୍ଣ ଚୌଧୁରୀ, ମଦନମୋହନ ସାହୁ ଓ ଶରତଚନ୍ଦ୍ର ମହାରଣା ।

ସର୍ବୋଦୟ କାର୍ଯ୍ୟ ପାଇଁ ନୂତନ ଲୋକଙ୍କୁ ଟ୍ରେନିଂ ଦେବାର କଥା, ସିଲାବସ୍, ଟ୍ରେନି ସମୟକାଳ, ପୁରୁଣା କର୍ମୀଙ୍କ ପାଇଁ ସ୍ୱାଧ୍ୟାୟର ବହିତାଲିକା, ଏକ ନୂଆ ବାଳ-ନିକେତନ ସ୍ଥାପନ କରିବା ଚର୍ଚ୍ଚା ହେଲା । ଉପଯୁକ୍ତ ଲୋକର ଅଭାବରୁ ଶେଷୋକ୍ତଟିର ସ୍ଥାପନା ଅସମ୍ଭବ ବର୍ତ୍ତମାନ ଦେଖାଗଲା ।

୧୮.୭.୧୯୫୮

ଡାକ୍ତର ସୁଶୀଳା ନାୟାର ଦିଲ୍ଲୀରୁ ଆଜି ଏଠାରେ ବୋଉ (ରମାଦେବୀ)ଙ୍କୁ ଦେଖା କରିବାକୁ ଆସିଥିଲେ । ନବବାବୁ ମଧ୍ୟ ଥିଲେ । ଜିଜୀ ଆଜି ପୁରୀକୁ ଫେରିଗଲେ । ଆଚାର୍ଯ୍ୟ ମହାଶୟ ଓ ପଣ୍ଡିତ କୃପାସିନ୍ଧୁ ହୋତା କଟକରୁ ଭୁବନେଶ୍ୱରକୁ ଗଲେ – ଉପରଓଳି ।

ପଣ୍ଢରପୁର ଠାରେ ୧୦ମ ସର୍ବୋଦୟ ସମ୍ମିଳନୀ ବେଳେ ଅଖିଳ ଭାରତ ସର୍ବସେବା ସଂଘର ବୈଠକର ପ୍ରସ୍ତାବ ହୋଇଥିଲା ଯେ ପ୍ରତି ପ୍ରଦେଶରୁ ଆଉ କେତେକ ଲୋକଙ୍କୁ ସଂଘର ସଦସ୍ୟ କରିବେ । ତଦନୁସାରେ ସଂଘର ସହମନ୍ତ୍ରୀଙ୍କର ତା ୧୪.୬.୫୮ ର ଚିଠିପତ୍ର ଅନୁସାରେ ମୋତେ ସଂଘର ସଦସ୍ୟ କରାଯାଇଛି । ମାତ୍ର ମୁଁ ସବୁ ନିୟମ ପାଳନ କରି ନ ଥିବାରୁ (ନିୟମ ୩ – ପ୍ରତିଦିନ ସୂତା କାଟିବା, ନିୟମ ୫ – ଅନ୍ନବସ୍ତ୍ର କେନ୍ଦ୍ରିତ ଉଦ୍ୟୋଗ ବହିଷ୍କାର) ସଦସ୍ୟ ହେବାକୁ ଅଯୋଗ୍ୟ ମନେ କରୁଅଛି । ମୁଁ ସଦସ୍ୟ ହେଲେ, ଓଡ଼ିଶାରେ ଆଉ ନୂଆ ଲୋକ ଭୂଦାନକାର୍ଯ୍ୟକୁ ଆକୃଷ୍ଟ ହେବେ ବା ମୋର ଭୂଦାନ କାମରେ ଶକ୍ତି ବଢ଼ିଯିବ ବୋଲି ମୁଁ ଦେଖୁନାହିଁ ।

୨୦.୭.୧୯୫୮

ଓଡ଼ିଶା ଭୂଦାନ ଯଜ୍ଞ ସମିତିରୁ ମୁଁ ଇସ୍ତଫା ଦେବାର କାରଣ ଓ ସରକାରଙ୍କ ସହ ଚିଠିପତ୍ରର ନକଲର ସାରାଂଶ ଶ୍ରୀଯୁକ୍ତ ନବବାବୁଙ୍କୁ ଲେଖିଦେଲି । ଶ୍ରୀଯୁକ୍ତ ଗୁଣନିଧିବାବୁ କଟକରୁ କେଉଁଝର ଗଲେ – ଭୂଦାନ କାମରେ । ତାଙ୍କୁ ଟ୍ରେନ୍‌ରେ ଚଢ଼ାଇବାକୁ ଷ୍ଟେସନ ଗଲି । ସୋରର ଶ୍ରୀଯୁକ୍ତ ନନ୍ଦକିଶୋର ଦାସ ମଧ୍ୟ କଟକରୁ ତାଙ୍କ ଘରକୁ ଗଲେ । ତା ୧୫.୮ରେ ଆଚାର୍ଯ୍ୟ ମହାଶୟଙ୍କର ପଦଯାତ୍ରା ଆରମ୍ଭ ହେବ ବୋଲି ନନ୍ଦବାବୁଙ୍କୁ କହିଲି ।

ନାନା, ନାନୀ, ବନ୍ଧୁ, ବାବୁଲି, ସୁମିତ୍ରା ଦେବୀ ଓ ଚୁନୀ ଦେବୀ ଆଜି କଟକରୁ (କଂଗ୍ରେସ ଅଫିସର ଜୀପ୍‌ରେ) ଖେରସକୁ (ଗୋପବାବୁ ଆଦିଙ୍କର ଜନ୍ମସ୍ଥାନକୁ) ଗଲେ । ପ୍ରଥମୋକ୍ତ ୫ ଜଣ ଏହି ସର୍ବପ୍ରଥମେ ସେହି ଘର ଦେଖିଲେ ।

୨୧.୭.୧୯୫୮

ଶ୍ରୀଯୁକ୍ତ ନବବାବୁ, ମାଳତୀ ଦେବୀ, ବେଙ୍ଗ ଅପା, ମାସୀଙ୍କ ସହ ମୁଁ ଜୀପ୍‌ରେ କଟକରୁ ତାରପୁର (୨୪ ମାଇଲ) ଯାଇ, ସେମାନଙ୍କ ସହ ନୌକାରେ ମହାନଦୀ ଓ ଶୁକ ପାଇକା ନଦୀ ପାରି ହୋଇ, କେଶୋଳ ଗଲୁ । ତିନୁ ଓ ବିଭୂତିଭୂଷଣଙ୍କୁ ଦେଖିଲୁ । ଶ୍ରୀଯୁକ୍ତ ରାଜକିଶୋରବାବୁ ମଧ୍ୟ ଘରେ ଥିଲେ । ସେ ପ୍ରାୟ ୩୦ ବର୍ଷ ସରକାରୀ ଚାକିରି କରି ( excise ବିଭାଗର ଡ଼ି.ଏସ୍.ପି. ହୋଇ ୧୯୫୨ରେ ପେନ୍‌ସନ୍ ନେଲେ) ନିଜର ଚାଳ ଘର ଖଣ୍ଡିଏ ସୁଦ୍ଧା ଭଲ କରି କରିନାହାନ୍ତି । ଆଜିକାଲି ଯୁଗରେ ମୁଁ ଏହାକୁ ବଡ଼ ଗୌରବର କଥା ଭାବୁଛି । ସେ ଏତେ ସରଳ ଓ ସଚ୍ଚୋଟଭାବରେ ଚଳୁଥିଲେ ବୋଲି ଏ ଦିଗରେ କିଛି କରିନାହାନ୍ତି । ନୋହିଲେ ତ, ଅନେକ କିଛି କରିପାରିଥାନ୍ତେ । ଏପରି ଉଦାହରଣ ବିରଳ ଅଟେ । ମୋତେ ଭାରି ଭଲ ଲାଗିଲା ।

ତାଙ୍କ ଘରଠାରୁ ଆମେ ଫେରି କଟକରେ ରାତି ୮ଟାରେ ପହଞ୍ଚିଲୁ ।

୨୫.୭.୧୯୫୮

ସକାଳେ "ସେବାଘର'' (ମାତୃମଙ୍ଗଳ କେନ୍ଦ୍ର)କୁ ଯାଇ ଶ୍ରୀମତୀ କୃଷ୍ଣପ୍ରିୟା ଦେବୀଙ୍କୁ ଖୁସିରେ ଦେଖା କରିଆସିଲି । ସେ ସର୍ବୋଦୟ ପାତ୍ର ସ୍ଥାପନ ପାଇଁ ଆମ ସହ ଯିବେ ।

୨୬.୭.୧୯୫୮

ବୁଲୁବାବୁ, ହରିଚରଣ ଜେନା, ଗଣେଶବାବୁ, ଦୋଳ ଗୋବିନ୍ଦ ରାଜଙ୍କ ସହ ମୁଁ ବରୀ, ତଳ ସାହି, ଖୁଣ୍ଟିଆ ସାହିକୁ ସକାଳେ ଯାଇ, ସର୍ବୋଦୟ ପାତ୍ର ସ୍ଥାପନ କଥା କହିଲୁ । ଉପରଓଳି ମୁଁ ଡ଼େସ୍କର ଜିନିଷପତ୍ର ସଜାଡ଼ିଲି । ହାଜୀ ମିଆଁଙ୍କ ତଳ ଭାଇ ଅବଦୁଲ୍ ଦୟାନ୍ କହିଲେ ଯେ ଗୋପବାବୁ ମୃତ୍ୟୁର ପୂର୍ବରୁ ତାଙ୍କ ଫଳନ୍ତୀ ଆମ୍ବଗଛ, ଆଦି ଦେଖାଇ କହିଥିଲେ – "ମୁଁ ଖାଏଁ ବା ନ ଖାଏଁ, ଏ ଫଳ କେଡ଼େ ସୁନ୍ଦର ହୋଇଛି ।'' ପ୍ରାୟ ଦଶଥର ସେ ଏହା କହିଲେ । ଏଥିରୁ ତାଙ୍କର ଧାରଣା ଯେ ଗୋପବାବୁ ନିଜର ମୃତ୍ୟୁକଥା ଆଗରୁ ଜାଣିଥିଲେ । ନୋହିଲେ "ମୁଁ ଖାଏଁ ବା ନ ଖାଏଁ" କୁ ଏତେ ଥର କହି ନ ଥାନ୍ତେ ।

୨୮.୭.୧୯୫୮

ଶ୍ରୀ ବୁଲୁବାବୁ, ଗଣେଶଚନ୍ଦ୍ର ମହାନ୍ତି, ଦୋଳଗୋବିନ୍ଦ ରାଜ ଓ ଶ୍ରୀଯୁକ୍ତା କୃଷ୍ଣପ୍ରିୟା ଦେବୀ (ବରୀ ମାତୃମଙ୍ଗଳ କେନ୍ଦ୍ରରୁ)ଙ୍କ ସହ ମୁଁ ରତଳାଂ ଗଲି । ଆମ୍ଭେମାନେ ଶ୍ରୀ ବୈଦ୍ୟନାଥ ରାୟଙ୍କ ଘରେ ରହିଲୁ ଓ ଖାଇଲୁ । ନବଘନ ରାୟ, ପ୍ରହ୍ଲାଦ ସାମଲ, ଆଦିଙ୍କ ସହ ସର୍ବୋଦୟ ପାତ୍ର ସ୍ଥାପନ କଥା ସନ୍ଧ୍ୟାରେ ପଡ଼ିଲା । ପ୍ରାୟ ୨୦ ଜଣ ସଭାକୁ ଆସିଥିଲେ । ପିଲାମାନଙ୍କ ପାଇଁ ଏକ ..କଥା ପଡ଼ିଲା । residential home (ଶିକ୍ଷାଳୟ ) କଥା ପଡ଼ିଲା ।

୨୯.୭.୧୯୫୮

ସକାଳେ ମଠସାହିର ହରିଜନ ବସ୍ତିକୁ ନବଘନ ରାୟଙ୍କ ସହ ଆମ୍ଭେମାନେ ଗଲୁ । ଶ୍ରୀ ଚିନ୍ତେଇ ମଲିକ, ତାଙ୍କର ଭାଇ ପରମାନନ୍ଦ, ଆଦି ପ୍ରାୟ ୩୦ ଜଣ ଗୋପବାବୁଙ୍କର ତିରୋଧାନରେ ବଡ଼ ଦୁଃଖ ପ୍ରକାଶ କଲେ, ୧୯୨୧ ମସିହାରେ ରିଲିଫ୍ ପାଇବାଠାରୁ ଏ ପର୍ଯ୍ୟନ୍ତ ଉପକାରର କୃତଜ୍ଞତା ଜଣାଇଲେ । ସର୍ବୋଦୟ-ପାତ୍ର ସ୍ଥାପନ କରିବାକୁ ସମସ୍ତେ ସାହିଲୋକେ ରାଜୀ ହେଲେ ।

ନବଘନ ରାୟ ସରପଞ୍ଚ କାମ ୧୫ ଦିନରେ ଛାଡ଼ି, ସର୍ବୋଦୟକାମ କରିବେ, ସେ ଆଲୋଚନା ସଭାରେ କହିଲେ ।

ସାଆନ୍ତ ରାମଚନ୍ଦ୍ର ମହାପାତ୍ରଙ୍କର ସାହିକୁ ଯାଇ, ଆମେ ଉପସ୍ଥିତ ୭/୮ ଜଣଙ୍କ ସହ କଥାବାର୍ତ୍ତା କଲୁ । ଜଳଖିଆ ସାରି ଆମେ ବରୀ ଆସିଲୁ । ମାତୃମଙ୍ଗଳ କେନ୍ଦ୍ରରେ ୩ଟା ବେଳେ ଭାତ ଖାଇଲୁ ।

ବାଇଁସିରିଆକୁ ୫ଟା ବେଳେ ଯାଇ, ଶ୍ରୀ ନୀଳମଣି ପୃଷ୍ଟି ଓ ଶ୍ରୀ ବୈଷ୍ଣବ ଓଝାଙ୍କର ସହାୟତାରେ "ରାମ ନବମୀ ପୂଜା ଘର'' ପାଖରେ ସଭା କଲୁ । ବଢ଼େଇ, କୁମ୍ଭାର ଓ ହରିଜନ ସାହିର ୧୫/୧୭ ଜଣ ଆସିଥିଲେ । ଏଠାରେ ଏକ ଆଶ୍ରମ କରିବା କଥା ଲୋକେ କହିଲେ । ସର୍ବୋଦୟ ପାତ୍ର ପାଇଁ ରାଜି ହେଲେ ।

୩୦.୭.୧୯୫୮

ସକାଳେ ବୁଲୁବାବୁ ରାମଚନ୍ଦ୍ରପୁରକୁ (ବାଇଁସିରିଆରୁ) ଗଲେ, ସେ କେନ୍ଦ୍ରାପଡ଼ା ବାଟେ କଟକ ଗଲେ ।

ଗଣେଶବାବୁ, ଦୋଳ ଗୋବିନ୍ଦ ରାଜ, ନୀଳମଣି ପୃଷ୍ଟି, ବୈଷ୍ଣବ ଓଝା ଓ ମୁଁ ଗ୍ରାମରେ ବୁଲିଲୁ । ମୋଟରେ ୧୩୬ ପରିବାରରେ ଆଜି "ସର୍ବୋଦୟ-ପାତ୍ର'' ବସିବାକୁ ଗୃହକର୍ତ୍ତା ବା ଗୃହିଣୀମାନେ ରାଜି ହେଲେ । ଆମେ ନୀଳମଣି ବାବୁଙ୍କ ଘରେ ଭାତ ଖାଇଲୁ । ମୁଁ ବରୀମାନେ ରାମଚନ୍ଦ୍ରପୁରକୁ ୩ଟାରେ ଫେରିଲି । କାକୁଡ଼ିବୁଦା ଓ ଖଡ଼ାକିଆରିରୁ ଘାସ ବାଛିଲି ।

ଗଣେଶବାବୁ, ଦୋଳଗୋବିନ୍ଦ, ବୈଷ୍ଣବ ସାମଲ, ରାମପୁରରୁ ସର୍ବୋଦୟ ପାତ୍ରର ଚାଉଳ ୨୨ ପରିବାରରୁ କଟକୀ ୭ ସେର ସଂଗ୍ରହ କଲେ ।

୩୧.୭.୧୯୫୮

ରଙ୍ଗାଧର ବାବୁ, ଆଦି ହାଟସାହି ଯାଇ, "ସର୍ବୋଦୟଚାଉଳ'' ସଂଗ୍ରହ କଲେ ଏବଂ ଦଣ୍ଡାରେ ମାପି ପକାଇଲେ । ଚାରିବର୍ଷ ପରେ ହାଟସାହିର ଲୋକେ ଏକାଠି ବସି, ଏ କାମ କଲେ ।

ମୁଁ ଅନାବନା ଘାସ ଆଦି ସଫା କଲି; ଏଥିରୁ ଗାଈପାଇଁ ମଧ୍ୟ ଘାସ ମିଳିଲା । ତେନ୍ତୁଳିପଦାରୁ ଶ୍ରୀ ଭାଗବତ ପରିଜା ତାଙ୍କ ଝିଅକୁ (ଗୀତାକୁ) ସଙ୍ଗରେ ନେଇ ଯିବାକୁ, ତାଙ୍କର ସ୍ତ୍ରୀ ଓ ୨ ବର୍ଷର ସାନ ଝିଅକୁ ଏ ବର୍ଷାଦିନେ ଏଠାକୁ ନେଇ ଆସିଥିଲେ । ଏହି ଅନୁଷ୍ଠାନ ପ୍ରତି ତାଙ୍କର କେତେ ଶ୍ରଦ୍ଧା !! ଏପରି ଲୋକ କମ୍ ଦେଖାଯାନ୍ତି । ଏଠାର ଶିକ୍ଷାର୍ଥିନୀ ୨୩ ଜଣ ମଧ୍ୟରୁ ଆଜି ୧୧ ଜଣ ବିଦାୟ ନେଲେ । ଯିବାବେଳେ ବହୁତ କାନ୍ଦଣା ଦେଖିଲି ।

ସନ୍ଧ୍ୟାପରେ ବୈଷ୍ଣବ ସାମଲ, ମୁଁ ଓ ହରିଚରଣ ହାଟସାହିକୁ ଯାଇ, ସର୍ବୋଦୟ ପାତ୍ର ସ୍ଥାପନ କଥା କହିଲୁ । ଗୋପବାବୁ ଚାହୁଁଥିଲେ ଯେ ଲୋକେ (ସମୂହ ଭାବନାରେ) ନିଜର କାମ କରନ୍ତୁ, ନେତାଙ୍କୁ ଚାହିଁ ବସନ୍ତୁ ନାହିଁ । ଇତ୍ୟାଦି କଥା ମୁଁ କହିଲି । ରାତି ୧୦ଟାରେ ଫେରିଲି ।

୧.୮.୧୯୫୮

ତିଳକ ଶ୍ରାଦ୍ଧ ଦିବସ । ରାମଚନ୍ଦ୍ରପୁର ସ୍କୁଲର ଛାତ୍ରାଭିଭାବକମାନଙ୍କର ବୈଠକ । ଆଜି ୧୨ ଜଣ ଶିକ୍ଷାର୍ଥିନୀ ବିଦାୟ ନେଇ ଘରକୁ ଗଲେ । ବୈଷ୍ଣବ ସାମଲଙ୍କର ଦେହ ଖରାପ ଥିବାରୁ, ମୁଁ ଗୋବିନ୍ଦ ସାମଲଙ୍କୁ ସଙ୍ଗରେ ନେଇ ହାଟସାହିର ପଶ୍ଚିମପାଖ ଗୋହିରୀଠାରୁ ଫେରିଆସିଲି । ହରିଚରଣ ଦେଖା ହେଲେ ।

ଭୁବନାନନ୍ଦ ସ୍ୱାଇଁଙ୍କ ସହିତ ମୁଁ ନବମ ସୋପାନରୁ ଉନ୍ନୀତ ଛାତ୍ରମାନଙ୍କର ନୋଟଖାତା(ସୋପାନର ଗୁରୁଜୀମାନଙ୍କର ଅନୁରୋଧରେ) ଦେଖିବା ଆରମ୍ଭ କଲି ।

ଉପରଓଳି ଡ଼ି.ଡ଼ି.ଟି. ପାଉଡ଼ର ଭୁବନାନନ୍ଦ ସ୍ୱାଇଁଙ୍କ ଠାରୁ ଆଣି, ଖେମେଶ୍ୱରର ଶ୍ରୀମାନ୍ ଶ୍ରୀଧର ସାହାଯ୍ୟରେ ଆମର ବାଇଗଣଗଛରେ ପକାଇଲି ।

ରାମଚନ୍ଦ୍ରପୁର ମୌଳିକ ସ୍କୁଲର ପ୍ରାୟ ୩୦ ଜଣ ଛାତ୍ରାଭିଭାବକଙ୍କର ଉପସ୍ଥିତିରେ, ଶ୍ରୀ ବସୁଦେବ ସାମଲଙ୍କର ସଭାପତିତ୍ୱରେ ଉପରଓଳି ୫ଟାରୁ ରାତି ୮ଟା ପର୍ଯ୍ୟନ୍ତ ବୈଠକ ହୋଇଥିଲା । ଇନ୍ଦ୍ରମଣି ବେଉରା, ନିଧିପଣ୍ଡା, ଦୁଃଖିଶ୍ୟାମ ପତି, ପଦ୍ମଲାଭ (ଉତ୍ତର ମୌଳିକର), ଅମର ବାବୁ, ଭୁବନାନନ୍ଦବାବୁ ଓ ମୁଁ କିଛି କିଛି କହିଥିଲୁ ।

ଶ୍ରୀ ଦୁଃଖୀଶ୍ୟାମ ପତିଙ୍କର ପ୍ରଥମ ଓ ଏକମାତ୍ର ପ୍ରସ୍ତାବ ଥିଲା । (୧) ଶରତ୍‌ବାବୁ ସ୍କୁଲର ପରିଚାଳନା ଭାର ନିଅନ୍ତୁ (୨) ସେ ନ ହେଲେ, ଏକ କମିଟି ପରିଚାଳନା ଭାର ନିଅନ୍ତୁ (୩) ପ୍ରଥମ ଦୁଇଟି ନ ହେଲେ, ସରକାର ଭାର ନିଅନ୍ତୁ ।

ଅନ୍ୟମାନେ ମଧ୍ୟ ମୋତେ ଏ ପରିଚାଳନା-ଭାର ନେବାକୁ କହିଲେ । ମୁଁ ଉତ୍ତରରେ ବୁଝାଇ କହିଲି ଯେ ମୁଁ ବର୍ତ୍ତମାନ କୌଣସି କମିଟିରେ ନାହିଁ; କେବଳ ଏକ ଟ୍ରଷ୍ଟରେ ରହିଛି - ଟ୍ରଷ୍ଟ କରିଥିବା ବ୍ୟକ୍ତି ମରିଗଲେଣି । ମୁଁ କମିଟି ଆଦିରେ ନ ରହିବାର କାରଣ କହିଲି ।

ତେବେ, ମୁଁ ପ୍ରତି ମାସରେ ୪ ଦିନ ଏଠା ସ୍କୁଲପାଇଁ ଦେବି ଏବଂ ଅଧିକ ଯତ୍ନ କରିବି ବୋଲି କହିଲି । ପାଖାଆଖର ୫/୭ଜଣଙ୍କୁ ନେଇ ପରିଚାଳନା କମିଟି ଗଢ଼ିବା କଥା ସ୍ଥିର ହେଲା । ତାହା ପରଦିନକୁ ରହିଲା ।

୯.୮.୧୯୫୮

କଳାମାଟିଆରେ ମୌଳିକ ସ୍କୁଲରେ ଶ୍ରୀ ରଙ୍ଗାଧର ଷଡ଼ଙ୍ଗୀଙ୍କ ଠାରେ ଜଳଖିଆ କରି ଆମ୍ଭେମାନେ ସେଠାର ଶ୍ରୀ ସୁରେନ୍ଦ୍ର ଉତ୍ତରସିଂହ ଆଦିଙ୍କୁ ସକାଳେ ସର୍ବୋଦୟ ପାତ୍ର ବସାଇବାକୁ କହି, କୃଷ୍ଣନଗରକୁ ଆସିଲୁ । ୧୯୪୨ ମସିହାର ଆନ୍ଦୋଳନରେ ଗୁଳିମାଡ଼ ଖାଇଥିବା ଶ୍ରୀ ନିଧି ସାମଲ ବୁଢ଼ାଙ୍କ ଘରେ ଭାତ ଖାଇଲୁ । ସନ୍ଧ୍ୟାରେ ବୁଲୁବାବୁ ସେଠାର ଶୁକଳ ସାହିର ଶ୍ରୀ ବନ୍ଧୁ ଶୁକଳ (ବୟସ ୭୯ ବର୍ଷ) - ଏ ଅଞ୍ଚଳରେ ଏ ଜଣେ ବଡ଼ ନିଦା ଓ ଖାଣ୍ଟି ଲୋକ - ପ୍ରଭୃତିଙ୍କ ସହ ସର୍ବୋଦୟ କଥା ଚର୍ଚ୍ଚା କଲେ । ମୁଁ, ଗଣେଶ ବାବୁ, ଆଦି କୃଷ୍ଣନଗର ଗାଁରେ ବୀର କିଶୋର ରାୟ, ଶହୀଦ୍ ସାନନ୍ଦ ସ୍ୱାଇଁଙ୍କର ଭାଇ ନିତ୍ୟାନନ୍ଦ ସ୍ୱାଇଁ, ପୂର୍ବ ତହସିଲଦାର ଶ୍ରୀ କରୁଣାକର ପତି ଆଦିଙ୍କ ସହ ସର୍ବୋଦୟ କଥା ଚର୍ଚ୍ଚା କଲି । ରାତିରେ ବୀରକିଶୋର ରାୟଙ୍କ ଘରେ ଭାତ ଖାଇଲି ।

୧୧.୮.୧୯୫୮

ଉପରଓଳି ଉତ୍ତର ମୌଳିକ ବିଭାଗର ପିଲାମାନଙ୍କ ସହ ମୁଁ କଥାବାର୍ତ୍ତା କଲି - ସେମାନଙ୍କର ଭବିଷ୍ୟତ ଇଚ୍ଛା ସମ୍ବନ୍ଧରେ ୧୭ଟି ପ୍ରଶ୍ନ କରି, ମୁଁ ଜାଣିଲି ଯେ ସେମାନଙ୍କ ମଧ୍ୟରୁ ଜଣେ ବା ୨ ଜଣ ଛାଡ଼ି, ଅନ୍ୟମାନେ ୫୦/୬୦ ଟଙ୍କାର ଖଣ୍ଡିଏ ଖଣ୍ଡିଏ ଚାକିରି ପାଇବା ବ୍ୟତୀତ ଅନ୍ୟ ଆଶା ଓ ଉଚ୍ଚ କାଙ୍କ୍ଷା ପୋଷଣ କରୁନାହାନ୍ତି । ଏଥିରେ ମୌଳିକ ଶିକ୍ଷା କଅଣ ହେବ !

ରାତିରେ ଶ୍ରୀ ବୈଷ୍ଣବ ସାମଲ ଓ କଣ୍ଟୁରି ଶାନ୍ତି ବୁଢ଼ାଙ୍କ ସହ ସେମାନଙ୍କର "ସର୍ବୋଦୟ-ପରିବାର'' କଥା । କୈଳାଶନାଥଙ୍କୁ ବୈଷ୍ଣବବାବୁ ସାଙ୍ଗରେ ରଖିବାକୁ ଏବେ ନାରାଜ ଅଟନ୍ତି ।

୧୨.୮.୧୯୫୮

ବୋଉଙ୍କ ଠାରୁ ବାବୁଲି ଚିଠି ପାଇଲା ଯେ ବୋଉ (ରମାଦେବୀ), ଚୁନୀ ଦେବୀ, ବ୍ୟାସଜୀ ବମ୍ବେର ଚାଲିଶଗାଁଓରେ ବିନୋବାଜୀଙ୍କର ଉପସ୍ଥିତିରେ ସର୍ବସେବା ସଂଘର ବୈଠକରେ ତା ୮ ରୁ ୧୦ ଅଗଷ୍ଟ ପର୍ଯ୍ୟନ୍ତ ଯୋଗ ଦେଇ, ସେବାଗ୍ରାମରେ ଦିନେ ରହି, ନିକଟରେ ରାମଚନ୍ଦ୍ରପୁରକୁ ଆସିବେ । ସେମାନେ ତା ୬ରେ କଟକରୁ ତେଣେ ଯାଇଥିଲେ ।

ସକାଳେ ଚିଠିପତ୍ର ଲେଖିଲି । ଉପରଓଳି ଉତ୍ତର ମୌଳିକ ଛାତ୍ରମାନଙ୍କ ସହ ଆଲୋଚନା - ସେମାନେ ଉଚ୍ଚ ଆଶା - ଦେଶର ପ୍ରକୃତ ଉନ୍ନତି, ସେବା ଦିଗରେ କାମ କରିବାକୁ ପୋଷଣ କରନ୍ତୁ ବୋଲି, ଉଦାହରଣ ଦେଇ ମୁଁ କହିଲି । ପ୍ରାୟ ୨ ଘଣ୍ଟା ସମୟ ଦେଲି । ଭେଣ୍ଡି କିଆରିରୁ ଘାସ ବାଛିଲି । ରାତିରେ ମୁଁ କିଛି ପଢ଼ାପଢ଼ି କରୁନାହିଁ ।

୧୩.୮.୧୯୫୮

ସକାଳେ ଘାସ କାଟି ଗାଈକୁ (କସ୍ତୁରବା କେନ୍ଦ୍ରର) ଦେଲି । ଶ୍ରୀ ହରେକୃଷ୍ଣ ବିଶ୍ୱାଳଙ୍କ ସହ ଶ୍ରୀ ବସୁଦେବ ସାମଲଙ୍କୁ ରାମଚନ୍ଦ୍ରପୁରରେ ଦିନ ୯.୩୦ ରୁ ୧୦.୩୦ ପର୍ଯ୍ୟନ୍ତ ଭେଟି, ସ୍କୁଲର ନୂଆ ପରିଚାଳନା କମିଟି ସମ୍ବନ୍ଧରେ କଥାବାର୍ତ୍ତା କଲି । ଖରାବେଳେ ଟିକିଏ ପଢ଼ିଲି । ଉପରଓଳି ୪ ଟାରୁ ୬ଟା ପର୍ଯ୍ୟନ୍ତ ହରି (ବିଶ୍ୱାଳ) ବାବୁଙ୍କ ସହ ବୈଷ୍ଣବ ସାମଲଙ୍କ ଘରେ ବସି, ତାଙ୍କ ପୁଅ ଦ୍ୱିଜ ଓ ସମ୍ବନ୍ଧୀ ଧରଣୀ ବେଉରାଙ୍କର କାର୍ଯ୍ୟ (ପୁରୁଣା ବନ୍ଧୁର ଦେଣନେଣର କୁଫଳ) ବିଷୟରେ ଧରଣୀ ବେହେରାଙ୍କୁ ବୁଝାଇ, ତାଙ୍କୁ ଖାଇବାକୁ ଅନୁରୋଧ କଲୁ । କାରଣ, ସେ ରାଗି କରି, ଦୁଇ ଦିନ ହେଲା ଭାତ ଖାଇ ନ ଥିଲେ । ହରିବାବୁ ଓ ମୁଁ ତାଙ୍କ ଘରେ ଭାତ ଖାଇଲୁ । ସେ ମଧ୍ୟ ଭାତ ଖାଇଲେ । ସନ୍ଧ୍ୟା ୬ଟା । ଆମେ ୩ ଜଣ ଓ ଗଣେଶ ବାବୁ, ପଦ୍ମନାଭ ଅଣିକଣା ଯାଇ, ସେଠାରେ ବାଳାମଣି ଜେନା, ଭାସ୍କର ଜେନା ଆଦି ୧୫/୧୬ ଜଣଙ୍କ ସହ ରାତିରେ ସର୍ବୋଦୟ ବିଷୟରେ କଥାବାର୍ତ୍ତା କଲୁ । ବରୀ ଅଞ୍ଚଳରେ ଏ ବର୍ଷକ ମଧ୍ୟରେ ହୋଇଥିବା ହତ୍ୟାକୁ ମୁଁ କୌଣସି ନାମ ଉଲ୍ଲେଖ ନ କରି, ନିନ୍ଦା କଲି; କୌଣସି କଳି, ସତ୍ତ୍ୱାସତ୍ତ୍ୱର ସମାଧାନର ବାଟ ଏହା ନୁହେଁ ବୋଲି ମୁଁ ଦୃଢ଼ ମତ ବ୍ୟକ୍ତ କଲି । ହରିବାବୁ ମଧ୍ୟ ଏହା କହିଲେ ଓ ସର୍ବୋଦୟ ପାତ୍ର କଥା ବୁଝାଇଲେ ।

୧୪.୮.୧୯୫୮

ଆମ୍ଭେମାନେ କାଲି ରାତିରେ ଅଣିକଣା ସରକାରୀ ମୌଳିକ ସ୍କୁଲରେ ଶୋଇଥିଲୁ । ସରକାରୀ ଶିକ୍ଷକ ରାସବିହାରୀ ଖଟେଇ (ଘର କୁରାଳ, ନୟାଗଡ଼) ଥିଲେ । ସ୍କୁଲରେ ବୃଦ୍ଧ ଶ୍ରୀ ଭାସ୍କର ଜେନା ଓ ବାଲମଣି ଜେନାଙ୍କ ସହିତ ଛାତ୍ର ରାମ ଓ ମନମୋହନର ଭବିଷ୍ୟତ ସମ୍ବନ୍ଧରେ ଓ ମୌଳିକ ଶିକ୍ଷାର ପ୍ରକୃତ ଲକ୍ଷ୍ୟ ବିଷୟରେ ଆମେ ଏ ଦୁହିଁଙ୍କୁ (ଅଭିଭାବକଙ୍କୁ) ବୁଝାଇଲୁ । ଜଳଖିଆ କରିବାବେଳେ, ମୁଁ କଥାର ଉତ୍ତରରେ ଦହି କଥା କହିଲି । ଶ୍ରୀ ଭାସ୍କର ଜେନା, ସେତିକିରୁ ଧରି ନେଲେ ଯେ ଚୂଡ଼ା ସହ ମୁଁ ଦହି ଖାଇବାକୁ ଇଚ୍ଛା କରୁଥିଲି । ତାଙ୍କ ଘରକୁ ମୁଁ ଆସିବାରୁ, ସେ ବହୁତ ବଳାଇ କରି, ମୋତେ ଦହି ଖୁଆଇଲେ । କେଡ଼େ ମନ କଳିବାର ଲୋକ, କେଡ଼େ ଆନ୍ତରିକତା, ସରଳତା !! ବୁଢ଼ା କଥାପ୍ରସଙ୍ଗରେ କହିଲେ ଯେ ବର୍ତ୍ତମାନ ସରକାର ଓ ରାଜନୈତିକ ଦଳମାନଙ୍କ ଦ୍ୱାରା ସାଧାରଣ ଲୋକଙ୍କର କୌଣସି ଉପକାର ହେବ ନାହିଁ, ତେଣୁ କେହି ସେମାନଙ୍କ ପ୍ରତି ଆଉ ଚାହିଁ ବସନ୍ତୁ ନାହିଁ ।

ବାଳମଣି ଜେନାଙ୍କ ସହ ଆମେ ବୁଲିଲୁ ଏବଂ ମୋଟରେ ପରିବାରରେ ସର୍ବୋଦୟ ପାତ୍ର ଆଜି ବସିବ ବୋଲି ଗୃହକର୍ତ୍ତାମାନେ ପ୍ରତିଶ୍ରୁତି ଦେଲେ । ବେଙ୍ଗାରପୁରର ଶ୍ରୀ.... ଓ ୮୪ ବର୍ଷର ବୃଦ୍ଧ ପୂର୍ବ ଜମିଦାର ଶ୍ରୀ ବାଇଧର ଜେନାଙ୍କ ସହ ପ୍ରାଚୀନ ଧର୍ମର ନିମନ୍ତ୍ରଣଶକ୍ତି, ବାନପ୍ରସ୍ଥୀମାନଙ୍କର ଆମ ସହ ଏ କାର୍ଯ୍ୟକୁ ବାହାରିବାକୁ ନିବେଦନ, ସର୍ବୋଦୟ ପାତ୍ର ବସାଇବା କଥା ୨ ଘଣ୍ଟା ଚର୍ଚ୍ଚା ହେଲା ।

ରାମଚନ୍ଦ୍ରପୁରରେ ୧୯୩୯ ଠାରୁ ଏପର୍ଯ୍ୟନ୍ତ ଚଳିଥିବା ମୌଳିକ ଶିକ୍ଷାର ପ୍ରୟୋଗରେ କାହିଁକି ଆଶାନୁରୂପ ଶିକ୍ଷାକାର୍ଯ୍ୟ ହେଲା ନାହିଁ; ତାହାର ସଂକ୍ଷିପ୍ତ ଇତିହାସ ଓ କାରଣ ଶ୍ରୀମତୀ ସୁମିତ୍ରା ଦେବୀ (ଭାଉଜ)ଙ୍କୁ କହିଲି । କର୍ମୀମାନଙ୍କ ମଧ୍ୟରେ ଉଚ୍ଚ ଆଦର୍ଶବାଦ, ବିଦ୍‌ବତ୍ତା, ସୃଜନାତ୍ମକ ଶକ୍ତି ଓ ଖାସ୍ ଶିକ୍ଷାନୁଷ୍ଠାନ ଗଢ଼ିବାର ପ୍ରବୃତ୍ତିର ଅଭାବ ପ୍ରଧାନ କାରଣ ଅଟେ । ରାଜନୈତିକ କାରଣରୁ କାର୍ଯ୍ୟରେ ଅଖଣ୍ଡତା ରହିଲା ନାହିଁ ।

୧୮.୮.୧୯୫୮

ବନ୍ଦୁର ଆଜି ପୁଣି ଜ୍ୱର ହେଲା, ୯୯ ଡିଗ୍ରୀ ରୁ ୧୦୦ ଡିଗ୍ରୀ ପର୍ଯ୍ୟନ୍ତ ଉତ୍ତାପ ଉଠିଥିଲା । ଝାଡ଼ା ହୋଇନାହିଁ ।

ରତଳାଂର ଶ୍ରୀ ରାମଚନ୍ଦ୍ର ସାମନ୍ତ କଲମୀ ଆମ୍ବଗଛ ବରାତ ଦେଇଗଲେ । ତାଙ୍କ ସହ ଅନ୍ୟ ଗପ (gossip) ପଢ଼ିଲା । ଏପରି ସମୟ ନଷ୍ଟ ମୁଁ କରିବା ଉଚିତ ନୁହେଁ । ଏଣିକି ସାବଧାନ ହେବି । ବାକୀ ୩ ମାସର କାର୍ଯ୍ୟ ବିବରଣୀ ମୁଁ ଲେଖିଲି ।

୨୧.୮.୧୯୫୮

କପା କିଆରୀରୁ ପ୍ରାୟ ୬ ବର୍ଗଫୁଟ ଘାସ ବାଛିଲି । ଗାଧୋଇ ଚୂଡ଼ା, ଦହି ଜଳଖିଆ କରି, ପ୍ରାୟ ୯ଟା ଠାରୁ ୧୦ଟା ପର୍ଯ୍ୟନ୍ତ ୧ମ ସୋପାନରେ ବସି ପିଲାମାନଙ୍କର ପଢ଼ାପଢ଼ି ଦେଖିଲି । ଶ୍ରୀ ରାଧାକୃଷ୍ଣ ସମାନ ଏହି ସୋପାନରେ ଗୁରୁଜୀ ଅଛନ୍ତି । ନିମ୍ନଲିଖିତ ବିଷୟମାନ ମୋ ମନକୁ ଆସିଲା:-

୧) ପୂର୍ବ ମୌଳିକଠାରୁ ଉତ୍ତର ମୌଳିକ ସୁଦ୍ଧା ଅନୁଷ୍ଠାନର କାର୍ଯ୍ୟ ସମଗ୍ରଭାବରେ ବିଚାର କରାଯାଉ । ବିଭିନ୍ନ ସୋପାନର ଓ ବିଭିନ୍ନ କାର୍ଯ୍ୟର ଭାର ବିଭିନ୍ନ ବ୍ୟକ୍ତିଙ୍କ ଉପରେ ରହିଲେ ହେଁ, ଏକତ୍ର ଚିନ୍ତା କରି କାମ ଚାଲୁ ।

୨) ହତାରେ ନାନା ଅଦରକାରୀ ଗଛ ଲତା ହୋଇଗଲାଣି । ସେଗୁଡ଼ିକ ଦେଖି, ସଫା କରାଯାଉ ଓ ନୂଆ କରି Lay-out କରାଯାଉ । ପୋକା ନଡ଼ିଆଗଛ ଉଠିଯାଉ ।

୩) ବଡ଼ ହଲ ଦୁଇଟାର ହାତୀଦାନ୍ତିଆ ଉଠାଇଦେଇ, ମଉଡ଼ କରାଯାଉ ଏବଂ ଘରତିଆରି

ସଂପର୍କୀୟ ବାକି କାମ ଶେଷ କରାଯାଉ । ମଥାନ ଢ଼ାଙ୍କୁଣି ଓ ଅନ୍ୟ ସାନ ସାନ ବାକି କାମ ଓ ମରାମତି କରାଯାଉ ।

୪) ଯେଉଁ ଗୁରୁପତ୍ନୀମାନଙ୍କର ଶିଶୁ ନାହାନ୍ତି, ସେମାନେ ସ୍କୁଲ କାର୍ଯ୍ୟରେ କିଛି ଲଗାତାର ସାହାଯ୍ୟ କରନ୍ତୁ, ଗାଁକୁ ଖରାବେଳେ ଯାଇ ସ୍ତ୍ରୀ ଲୋକମାନଙ୍କ ସହ ସଂପର୍କ ସ୍ଥାପନ କରନ୍ତୁ ଏବଂ କିଛି କାର୍ଯ୍ୟ କରନ୍ତୁ ।

୫) ଶୃଙ୍ଖଳା ପାଗ ହେଲେ, ଗାଁରେ ସାନ୍ଧ୍ୟପ୍ରାର୍ଥନା ହେଉ, ଖବରକାଗଜ ପଢ଼ାହେଉ ।

୬) ସର୍ବୋଦୟପାତ୍ର ବସାଇବାରେ ଗ୍ରାମବାସୀମାନଙ୍କର ସମ୍ମତି ଆମେ ନେଉ ଓ ଉପର ସୋପାନର ଛାତ୍ରମାନେ ଏହି ଚାଉଳ ସାପ୍ତାହିକ ଛୁଟି ଦିନରେ ସଂଗ୍ରହ କରନ୍ତୁ ।

୭) ପଞ୍ଚମ ସୋପାନ ଠାରୁ ଉପର ସୋପାନର ପିଲାଙ୍କ ପାଇଁ ଛାତ୍ରାବାସ ପୁଣି ରଖାଯାଇପାରେ କି, ବିଚାର କରାଯାଉ ।

୮) ଗୁରୁଜୀମାନଙ୍କର ରୋଷାଇ ଏକତ୍ର ହୋଇପାରେ କି ଏବଂ ଦିନରେ ଥରେ ସୁବିଧା ସମୟରେ ଏକତ୍ର ଅଧଘଣ୍ଟାଏ ପଢ଼ା ଓ ପ୍ରାର୍ଥନା ହୋଇପାରେ କି ? ପ୍ରତିଦିନ କାର୍ଯ୍ୟ କଥା ମଧ୍ୟ ପଢ଼ୁ ।

୯) ଗୋଟିଏ ଗୋଦାମ ଘର କରି, ସୋପାନର ଅତିରିକ୍ତ ଜିନିଷମାନ ରଖାଯାଉ - ଯଥା ୧ମ ସୋପାନରେ ଟଙ୍ଗା ହୋଇଥିବା ତନ୍ତ ଆଦି ।

୧୦) ପ୍ରଥମ ସୋପାନ ପ୍ରି-ବେସିକ ପାଖରେ ହୋଇପାରେ କି ?

୧୧) ପ୍ରି-ବେସିକରୁ ପିଲା ୧ମ ସୋପାନକୁ କାହିଁକି ଆସୁନାହାନ୍ତି ?

୧୨) କାନ୍ଥକୁ ସୁନ୍ଦର କରି ମଝେ ମଝେ ଲିପାଯାଉ - ଚିତ୍ର, ଚାର୍ଟ ଆଦି ରହିପାରନ୍ତା କି ?

ପ୍ରଥମ ସୋପାନ ବିଷୟରେ

୧) ଛାତ୍ରୋପସ୍ଥାନ - ଏପ୍ରିଲ ୮/୧୩, ମେ ୫/୧୯, ଜୁନ୍ : ୬/୧୧, ଜୁଲାଇ ୧୩/୧୮ । ୨୧ ଅଗଷ୍ଟରେ ୨୨/୨୨, କେତେକ ଉମେଦ୍‌ବାର ଅଛନ୍ତି । ବାଳିକା ୧୧/୧୧ ଏଥିରେ ଅନ୍ତର୍ଭୁକ୍ତ ୨୨ ମଧ୍ୟରେ ।

୨) ଯୋଜନା - କେବଳ ଜୁଲାଇ ଓ ଅଗଷ୍ଟ ପାଇଁ ଅଛି ।

୩) ଦୈନନ୍ଦିନ କାମର ଶିକ୍ଷକ ନୋଟ ମୁଁ ମାଗିନାହିଁ ଓ ଦେଖିନାହିଁ ।

୪) ସିଲାବସ୍ ତ ଅଛି; ସାନ ସାନ ପ୍ରୋଜେକ୍ଟ କରି ତହିଁରୁ କାର୍ଯ୍ୟ ଓ ଶିକ୍ଷା ଦିଆଯାଉ । ନୂଆ ପାଠ୍ୟ ଉପକରଣ ସେଇଥିରୁ ବାହାରିବ ଓ ଆମେ ପିଲାଙ୍କ ପାଇଁ ବହି ଲେଖିବା ।

୫) ପିଲା ଜ୍ୱରରେ ପଡ଼ିଥିଲେ । ୩/୪ ଜଣଙ୍କର ଖଣ୍ଡିଆ ଶ୍ଲେଟ - ପ୍ରାୟ ୮ ରୁ ୧୫ ବର୍ଗ ଇଞ୍ଚ ମାପର ହେବ ।

୬) ତକଲି ବଦଳରେ କିସାନ ଅରଟରୁ ସୂତାକଟା ଆରମ୍ଭ ହେଉ ।

୭) ସଂଖ୍ୟା Drilling ଓ Mimicry ଗୁରୁଜୀ କରାଇଲେ । ଏତଦ୍ୱାରା ଶମ୍ଭୁ ଗୁରୁଜୀଙ୍କର ସୋପାନରେ ବହୁତ ବାଧା ପଡ଼ିଥିବ । (ପିଲାଙ୍କ ସଙ୍ଗରେ ମୁଁ କାମ କରିନାହିଁ ବା ସେମାନଙ୍କୁ କିଛି ପଚାରିନାହିଁ ।)

ଖରାବେଳେ ଉତ୍ତର ମୌଳିକ ଛାତ୍ରମାନଙ୍କୁ ସର୍ବୋଦୟ ବିଷୟରେ - ମୂଳ ସିଦ୍ଧାନ୍ତ ବିଷୟରେ କିଛି କହିଲେ । ରାମଚନ୍ଦ୍ରପୁର ସ୍କୁଲର ତଥା ଗାଁର ଜମିର ଜଳସେଚନ ବିଷୟରେ ବସୁଦେବ ସାମଲ, ବେଣୁଧର ବେଉରା, ପବନ ମଳିକ, ବଳି ବିଶ୍ୱାଳ, ଭୁବନାନନ୍ଦ ସ୍ୱାଇଁ (ଗୁରୁଜୀ)ଙ୍କ ସହ କଥାବାର୍ତ୍ତା କଲେ । ମୁଁ ଉପସ୍ଥିତ ଥିଲି । ଲୋକେ ଜମି ବନ୍ଧକ ଦେଇ ସରକାରଙ୍କ ଠାରୁ ଋଣ ଆଣି ସେହି ଜଳସେଚନ ଯୋଜନା କରିବାକୁ ଅନିଚ୍ଛୁକ ଅଟନ୍ତି ।

ସନ୍ଧ୍ୟା ପରେ ବାବୁଲି ପିଆରୀ ଚରଣ ସରକାରଙ୍କର ଓ First Book ମୋଠାରେ ପଢ଼ିଲା ।

୨୨.୮.୧୯୫୮

ଅର୍ଣ୍ଣାସାହେବଙ୍କୁ ଦେଖା କରିବାକୁ ଭୁବନାନନ୍ଦ ବାବୁ ଭୋର କଟକ ଗଲେ । ଶ୍ରୀ ସୁରେନ୍ଦ୍ର ପତି ଆସିଥିଲେ - କିପରି ଏ ଅଞ୍ଚଳର ମୁଖ୍ୟ ଗ୍ରାମବାସୀମାନେ ବଡ଼ ଏବଂ ସାଧାରଣ ହିତଙ୍କର କାମରେ ଏକଜୁଟ ହୋଇ କାମ କରିବେ, ମୁଁ ନିବେଦନ କଲି । ସେ ଆସି ପ୍ରଥମେ କହିଲେ ଯେ ଗୋପବାବୁ ଅନ୍ତେ ଆଉ କିଏ ଅଛି ? ଆପଣଙ୍କୁ ଦେଖି ପରାମର୍ଶ ମାଗୁଛୁ ।

ସକାଳ ୮ ଟାରୁ ୧୧ଟା ଓ ୨.୩୦ ରୁ ୪.୩୦ ପର୍ଯ୍ୟନ୍ତ ମୁଁ ଉତ୍ତର ମୌଳିକ ଛାତ୍ରମାନଙ୍କୁ ସର୍ବୋଦୟର ବାକି ପଏଣ୍ଟମାନ ବୁଝାଇଲି ।

ଶୁକ୍ରବାରର ସ୍କୁଲ ସୂତ୍ରଯଜ୍ଞ ଓ ପ୍ରାର୍ଥନାରେ ମୁଁ ଯୋଗ ଦେଲି । ସନ୍ଧ୍ୟା ୭.୩୦ ଟାରୁ ୯.୩୦ ପର୍ଯ୍ୟନ୍ତ କସ୍ତୁରବା ଶିକ୍ଷାର୍ଥିନୀମାନଙ୍କୁ ସର୍ବୋଦୟ ବିଷୟରେ କେତୋଟି ମୂଳ ସିଦ୍ଧାନ୍ତ ବୁଝାଇଲି ଏବଂ ସର୍ବୋଦୟ-ପାତ୍ର-ସ୍ଥାପନରେ ସେମାନଙ୍କର ସାହାଯ୍ୟ ଲୋଡ଼ା ବୋଲି କହିଲି ।

୨୩.୮.୧୯୫୮

ସକାଳେ ପାଇଖାନା ଓ ଘରର ପଛ ପାଖରେ ଘାସ ଉପାଡ଼ି ସଫା କଲି - ପ୍ରାୟ ୫.୩୦ ରୁ ୭.୩୦ଟା ପର୍ଯ୍ୟନ୍ତ । ଗାଧୋଇ ଜଳଖିଆକରି, ୮ରୁ ୧୦ଟା ପର୍ଯ୍ୟନ୍ତ ଉତ୍ତର

ମୌଳିକ ଛାତ୍ରମାନଙ୍କୁ ସର୍ବୋଦୟ ବିଚାରର ବାକି ମୂଳ ସିଦ୍ଧାନ୍ତ ବିଷୟ ବୁଝାଇଲି। ଡାକ୍ତରଖାନାରୁ ବନୁ ପାଇଁ ମାମୁଲି carminative mixture ଆଣିଲି, ଏବଂ ଡାକ୍ତରବାବୁଙ୍କୁ ଦେଖା କରି ଆସିଲି।

ପୂର୍ଣ୍ଣବାବୁଙ୍କର ଅଫିସ ଆଗର ପାଁ-ପୋସ୍ ଧୋଇ ଶୁଖାଇଲି।

ଉପରଓଳି ୨.୫୦ ରୁ ୪ ଟା ପର୍ଯ୍ୟନ୍ତ ଉତ୍ତର ମୌଳିକ ଛାତ୍ରମାନଙ୍କୁ ସର୍ବୋଦୟପାତ୍ର କଥା କହି, ଏହି ଚାରିଦିନର ଆଲୋଚନା ଶେଷ କଲି।

ବୋଉ, ଚୁନୀ ଦେବୀ ଓ ଶ୍ରୀ ଫକୀର ମିଶ୍ର କଟକରୁ କେନ୍ଦ୍ରାପଡ଼ା ବାଟେ ଆସି ସନ୍ଧ୍ୟା ୭.୩୦ରେ ରାମଚନ୍ଦ୍ରପୁରରେ ପହଞ୍ଚିଲେ।

୨୪.୮.୧୯୫୮

ସକାଳେ ମାମୁଲି ସଫାଇ କଲି। ପାଇଖାନା ସଫାକଲି। ଶ୍ରୀ ଫକୀର ମିଶ୍ରଙ୍କ ସହ କଥାବାର୍ତ୍ତା ହେଲା। କଦଳାମଠରେ ଗୋଟିଏ ବାଳ-ନିକେତନ ନୂଆ କରି ଗଢ଼ିବାପାଇଁ ତାଙ୍କର ଭାରୀ ଇଚ୍ଛା ବୋଲି ସେ କହିଲେ। ବୋଣ (ରମାଦେବୀ)ଙ୍କ ସହ ସେ କଥାବାର୍ତ୍ତା କରି ତାଙ୍କର ସମର୍ଥନ ପାଇଛନ୍ତି - କହିଲେ। ମୋର ତ ମନା ନାହିଁ ମାତ୍ର କିଏ ଲୋକ ଅଛନ୍ତି ଯେ ଏହା କରିବେ!! ଖରାବେଳେ ସୂତା କାଟିଲି ପ୍ରାୟ ୫ ଗୁଣନ ୮୦ ଘେରା। ବନୁ ମଧ୍ୟ ସୂତା କାଟିଲା। ଆଚାର୍ଯ୍ୟ ମହାଶୟ, ଶ୍ରୀଯୁକ୍ତ ବସନ୍ତ କୁମାର ପଣ୍ଡା (ଭୋଗରାଇ) ଆଦିଙ୍କୁ ଚିଠି ଲେଖିଲି। ଚନ୍ଦନପୁର ଛକରେ ରାତିରେ ବସି ଶ୍ରୀ ଫକୀର ବାବୁ ଓ ମୁଁ ଶ୍ରୀ ଗୋବିନ୍ଦ ସାମଲ, ବୈଷ୍ଣବ ବାବୁ ପ୍ରଭୃତି ସେହି ସାହିର ପ୍ରାୟ ୧୫/୧୭ ଜଣ ଲୋକଙ୍କ ସହ ବର୍ଷାର ଅଭାବର ପ୍ରତିକାର, ସର୍ବୋଦୟ ପାତ୍ର କଥା ଆଦି ଚର୍ଚ୍ଚା କଲୁ।

୨୫.୮.୧୯୫୮

ଏ ଅଞ୍ଚଳର ପ୍ରାୟ ୪୦ ଜଣ ଗ୍ରାମବାସୀଙ୍କର ଆଗ୍ରହ ଅନୁସାରେ କଲମୀ ଆମ୍ବ, ସପେଟା ଆଦି ମୋଟ ପ୍ରାୟ ୧୭୧ ଗଛ ପାଇଁ ମୁକ୍ତି ଲକ୍ଷ୍ମୀନାରାୟଣା, ଦୁର୍ଗା ନର୍ସରୀ ଗାର୍ଡ଼େନ୍, ବିଜୟୱାଡ଼ା-୨ଙ୍କୁ ପତ୍ର ଲେଖିଲି। ସେବାଗ୍ରାମରେ ଉତ୍ତର ମୌଳିକ ଶିକ୍ଷା ଶେଷ କରିଥିବା, ଏଠା ଅନ୍ୟାସୀପୁର-ବାସୀ ଶ୍ରୀମାନ୍ ମହେନ୍ଦ୍ର ଓ ଗୋବିନ୍ଦ ଓଝା ଆଦି, ବୋଉ ଓ ଫକୀରବାବୁଙ୍କ ସହ ସେମାନଙ୍କର କାର୍ଯ୍ୟ ବିଷୟରେ ୨ ଘଣ୍ଟା ଆଲୋଚନା କଲେ। ମୁଁ ଥିଲି। ପରେ, ମୁଁ ଏକାକୀ ଏମାନଙ୍କୁ ସାମାଜିକ ଓ ଅର୍ଥନୈତିକ କାରଣମାନ କିପରି ପରସ୍ପର ସଂପୃକ୍ତ ଏବଂ କେତେକ ସାମାଜିକ କୁସଂସ୍କାର ଯୋଗୁଁ ଆମର କିପରି ଅର୍ଥନୈତିକ ଦୁରାବସ୍ଥା ଘଟୁଛି, ତାହା କହିଲି।

ଉପରଓଳି ୩ଟାରୁ ୬ଟା ପର୍ଯ୍ୟନ୍ତ ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନେ, ଝିଙ୍କୀ,ଶ୍ରୀ ଫକୀର ମିଶ୍ର ଓ ମୁଁ ବସି, ସ୍କୁଲର ପଢ଼ାପଢ଼ି କଥା ଏବଂ ନିକଟରେ ଅଭିଭାବକମାନଙ୍କର ଅଭିଯୋଗ ବିଷୟ ଆଲୋଚିତ ହେଲା ।

ବୋଉ(ରମାଦେବୀ) ଆଜିକାଲି ଏକାଦଶୀ ବ୍ରତ କରୁଛନ୍ତି । ପ୍ରତି ମଙ୍ଗଳବାରରେ (ଗୋପବାବୁ ମଙ୍ଗଳବାରରେ ଇହଲୀଳା ସାଙ୍ଗ କରିଥିଲେ, ତା ୨୯.୪.୧୯୫୮ରେ) ମଧ୍ୟ ଉପବାସ କରୁଛନ୍ତି ।

୨୭.୮.୧୯୫୮

ସକାଳେ ପାଟଣା ଗାଁରେ ସର୍ବୋଦୟ ପାତ୍ର ବସାଇବାବୁ ଆମେ ପ୍ରତିଲୋକଙ୍କର ଦ୍ୱାରକୁ ବାହାରିଲୁ । ଦାଣ୍ଡାର ରାଉତସାହିର ଶ୍ରୀ ଗଜେନ୍ଦ୍ର ନାୟକ କଂଗ୍ରେସବାଲାଙ୍କୁ, ଗୋବିନ୍ଦ ସାମଲ, ପ୍ରାଣକୃଷ୍ଣ ପଟ୍ଟନାୟକ, ଭଗୀରଥ ଦାସଙ୍କୁ ଖୁବ୍ କଟୁ ସମାଲୋଚନା କଲେ, କଂଗ୍ରେସ ଚାନ୍ଦା (ମେମ୍ବର-ଫିଜ୍) ସେ ୧୬ ବର୍ଷ କଅଣ ଦେଇଥିଲେ ତାହା ଫେରାଇ ପାଇବାକୁ ଦାବୀ କଲେ । ଆମକୁ ଭୂଦାନ ସେବକଙ୍କୁ ମଧ୍ୟ ଅବିଶ୍ୱାସ କରନ୍ତି, ଇତ୍ୟାଦି କହି ଖୁବ୍ ଗପିଲେ ।

ଆମେ ମେଦୁଆକୂଳରେ ଶ୍ରୀ କଣ୍ଟୁରି ଶାନ୍ତିଙ୍କ ଘରେ ଭାତ ଖାଇ, ରାମଚନ୍ଦ୍ରପୁରକୁ ଫେରିଲୁ । ଉପରଓଳି ତୂଳା ବାଛିଲି । ରାତି ୭.୩୦ ଟାରୁ ୧୧.୩୦ଟା ପର୍ଯ୍ୟନ୍ତ ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନେ; ଫକୀର ବାବୁ, ଆଦି ସ୍କୁଲକାର୍ଯ୍ୟ, ମୂଳ ଧ୍ୟେୟ, ଆଦି ବିଷୟରେ ଚର୍ଚ୍ଚା କଲେ । ମୁଁ ମଧ୍ୟ ଥିଲି । ଉପରଓଳି ଚୂନୀଦେବୀ, ବୋଉ, ଫକୀର ବାବୁ ଥିଲେ । ଇତିହାସ -ଶିକ୍ଷାର ଲକ୍ଷ୍ୟ, ପୁରୁଣା ଶିକ୍ଷାଦାନ ପଦ୍ଧତି, ବହିରେ ଯାହା ଲେଖାଅଛି, ବିନୋବା ମଧ୍ୟ ତାହା କହୁଛନ୍ତି ଏବଂ ନୂଆ ଧରଣର ପାଠ୍ୟ ପୁସ୍ତକ ବାହାରିଲାଣି ଓ ଆମେ ବାହାରକରୁ ବୋଲି ମୁଁ କହିଲି ।

୨୯.୮.୧୯୫୮

ସକାଳେ ଆମ୍ଭେମାନେ କଳାମାଟିଆ ଶହୀଦପୀଠକୁ ଯାଇ, ୧୯୪୨ ମସିହାର "ଭାରତ-ଛାଡ଼'' ଆନ୍ଦୋଳନରେ ଶହୀଦ ହୋଇଥିବା ହାଡ଼ିବନ୍ଧୁ ପଣ୍ଡା, ସାନନ୍ଦ ସ୍ୱାଇଁ, ସାଉଣ୍ଟି ମଳିକ ଓ ମାୟାଧର ଭୂୟାଁଙ୍କର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଆସିଲୁ । ସାଧାରଣ ଲୋକ ବୋଧହୁଏ ୮/୧୦ ଜଣ, ରାମଚନ୍ଦ୍ରପୁର, ଅନ୍ୟାସୀପୁର, କାଇପଡ଼ା ମୌଳିକ ସ୍କୁଲଗୁଡ଼ିକର ଛାତ୍ରମାନେ, ଏଥିରେ ଅଧିକାଂଶ ଗୁରୁଜୀ, କସ୍ତୁରବା ମହିମାକେନ୍ଦ୍ରର ୧୫/୧୭ ଜଣ ଶିକ୍ଷାର୍ଥିନୀ, ଗୋବିନ୍ଦ ସାମଲ, ବୈଷ୍ଣବ ସାମଲ, ଫକୀର ମିଶ୍ର, ଆଦିଙ୍କ ସହ ମୁଁ ଯୋଗ ଦେଇଥିଲି । କଳାମାଟିଆ ଶହୀଦ୍ ସ୍ମୃତି ସମିତିର ସଭାପତି ବୀରବର ରଥ ଓ ସଂପାଦକ ବସୁଦେବ ସାମଲ ସେତେବେଳେ ଯୋଗଦେଇ ନ ଥିଲେ ।

ଉପରଓଳି ୩ଟା ବେଳେ ଫକୀର ମିଶ୍ର, ବୈଷ୍ଣବ ସାମଲ, ଖେମେଶ୍ୱରର ଛାତ୍ର ଶ୍ରୀଧର ନାୟକ ଓ ମୁଁ ରାମଚନ୍ଦ୍ରପୁରରୁ ଚାଲି କରି ସଂନ୍ଧ୍ୟା ୮.୩୦ରେ "ଶ୍ୟାମସୁନ୍ଦର ବିଦ୍ୟାପୀଠ" ମିର୍ଜାପୁରରେ ପହଞ୍ଚିଲୁ । ଏହି ମିଡ଼ିଲ ସ୍କୁଲର ଶିକ୍ଷକ ତ୍ରୈଲୋକ୍ୟ ପ୍ରଧାନ ଓ ସାଧୁଚରଣ ବିଶ୍ୱାଳଙ୍କର ଆତିଥ୍ୟରେ ରାତିରେ ସେଠାରେ ରହିଲୁ । ରାତି ୧୧ଟାରେ ଶ୍ରୀଧର ଓ ମୁଁ ରୋଟି ଖାଇଲୁ ମାତ୍ର ଫକୀର ମିଶ୍ର ଖାଇବାକୁ ଆଗରୁ ମନା କରିଥିଲେ ହେଁ, ଆମର ତାଙ୍କୁ ମଧ୍ୟ ସେତେବେଳେ ପଚାରିବା ଉଚିତ ଥିଲା ।

୩୦.୮.୧୯୫୮

ଆମ୍ଭେମାନେ ଭୋର ୫ଟାରେ ମିର୍ଜାପୁର ଶ୍ୟାମସୁନ୍ଦର ବିଦ୍ୟାପୀଠରୁ ବାହାରି କାଯମା ବାଟେ ଚାଲି କରି ୭ଟାରେ କଦଳାମଠରେ ପହଞ୍ଚିଲୁ । ଅଧିକାରୀ ମହାଶୟ (ଚକ୍ରଧର ଦାସ) ଫକୀର ମିଶ୍ରଙ୍କୁ ଗତ ୧୫/୧୭ ଦିନ ପୂର୍ବେ କହିଥିଲେ ଯେ ଏଠାରେ ଗୋଟିଏ କୌଣସି ଅନୁଷ୍ଠାନ ହେଉ ।

ତଦନୁସାରେ, ଆମେ ତିନିଜଣ ବୁଲି ମଠର ପଶ୍ଚିମ ଦିଗରେ ଥିବା ଠାର ଜାଗା ଦେଖିଲୁ । ବଡ଼ କୋଚିଲା ଗଛ ମୂଳେ ବସି କଥାବାର୍ତ୍ତା ହେଲୁ । ଏଠାରେ ଗୋଟିଏ କ୍ଷୁଦ୍ର ଶିଶୁପାଳନ ଓ ଶିକ୍ଷା କେନ୍ଦ୍ର କରିବା ଠିକ୍ ହେଲା; ଅଧିକାରୀ ମହାଶୟ ଜମିବାଡ଼ି ଦାନ କରିବେ, ଫକୀର ମିଶ୍ର ଏହାକୁ ଚଳାଇବାରେ ମୁଣ୍ଡଧାରଣ ହେବେ ଓ ଏଠାରେ ରହିବେ, ଆରମ୍ଭରେ ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତି (ଅବସରପ୍ରାପ୍ତ ଜିଲ୍ଲା ଜଜ୍, ଭୁବନେଶ୍ୱର), ଶ୍ରୀଯୁକ୍ତ ଅଧିକାରୀ ଚକ୍ରଧର ଦାସ (କଦଳାମଠ), ଶ୍ରୀଯୁକ୍ତା ରମ୍ଭା ଦେବୀ (୵ ଗୋବର୍ଦ୍ଧନ ପ୍ରସାଦ ଦୁତିୟାଙ୍କର ସହଧର୍ମିଣୀ) ଓ ଶ୍ରୀଯୁକ୍ତା ଇନ୍ଦିରା ଦେବୀ (ଫକୀର ମିଶ୍ରଙ୍କର ସହଧର୍ମିଣୀ) ଟ୍ରଷ୍ଟୀ ରହନ୍ତୁ ବୋଲି ମୁଁ ସୂଚନା ଦେଲି । ପରିଚାଳନା କମିଟିରେ ମଠର ମାଉସୀ ଜଣେ ମେମ୍ବର ରହିଲେ ଭଲ ହେବ ବୋଲି ମୁଁ କହିଲି ।

୩୧.୮.୧୯୫୮

ମାଣିତ୍ରୀର ଶ୍ରୀ ଜଗନ୍ନାଥ ପଣ୍ଡା (ଭୂଦାନ-ସେବକ)ଙ୍କ ସହ କଥାବାର୍ତ୍ତା କଲି । ସେ ମନ୍ଦିରସାହି ଓ କଅଁରାଳୀ ଗଲେ । ଉପରଓଳି ଆମ୍ଭେମାନେ ରେମୁଣା ହାଟକୁ ଗଲୁ । ବ୍ରାହ୍ମଣୀଆ ଗ୍ରାମକୁ ଯାଇ ବିପିନ ବିହାରୀ ଦାସଙ୍କୁ ତାଙ୍କ ଘରଠାରେ ନ ପାଇ, ଭୂଦେବର ଗହଣାଦୋକାନରେ ଭେଟିଲୁ । ସର୍ବୋଦୟ-ପାତ୍ର ସ୍ଥାପନ ବିଷୟରେ ସେ ତାଙ୍କ ଗ୍ରାମର କେତେକ ଯୁବକଙ୍କ ସହ କଥାବାର୍ତ୍ତା କରିଥିଲେ । ପ୍ରାୟ ୭୨/୭୩ ବର୍ଷ ବୟସ ଓ ଶୋଥରୋଗରେ ମରଣାପନ୍ନ ଅବସ୍ଥାରେ ୨ ଥର ଇତି ମଧ୍ୟରେ ପଡ଼ିଥିଲେ ହେଁ, ଏହାଙ୍କର ଆଗ୍ରହ ଓ ତେଜସ୍ୱୀଭାବ ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଲି । ୧୯୨୧ ମସିହାରେ ପ୍ରଥମ ଅସହଯୋଗ ଆନ୍ଦୋଳନ ଠାରୁ ସେ

ସ୍ୱାଧୀନତା-ସଂଗ୍ରାମରେ ରହିଥିଲେ । ସାହାଜୀପାଟଣାର ଶ୍ରୀ ଉଦୟନାଥ ମିଶ୍ର, ବି.ଏ. (ଅବସରପ୍ରାପ୍ତ ସବ୍‌ରେଜିଷ୍ଟ୍ରାର)ଙ୍କୁ ମୁଁ ଦେଖା କରି, ତା ୧.୯.୫୮ରେ ଆଚାର୍ଯ୍ୟ ମହାଶୟଙ୍କର ରେମୁଣାକୁ ଆଗମନ କଥା କହିଲି ।

୧.୯.୧୯୫୮

ସର୍ବୋଦୟ ପଦଯାତ୍ରା । ଆଚାର୍ଯ୍ୟ ମହାଶୟ, ଈଶ୍ୱରଲାଲ ବ୍ୟାସଜୀ, ଛାତ୍ର ଅନାଦି ନାୟକ(ବରୀ), ଛାତ୍ର ଧର୍ମାନନ୍ଦ ସାହୁ (ଘର କଟକ ସହରରେ); ରାଧାଶ୍ୟାମ, ଚଣ୍ଡୀପୁରରୁ (ମିତ୍ରପୁର ପାଖରେ) ପଦଯାତ୍ରାରେ ଆସି ରେମୁଣାରେ ପହଞ୍ଚିଲେ । ଭୂଦେବ ମହାରଣା, ୰ ଚନ୍ଦ୍ରମୋହନ ମହାରଣାଙ୍କ ଘରେ ଏମାନେ ରହିଲେ । ସୋରର କୁମ୍ଭୀ ଗ୍ରାମବାସୀ ଜୟକୃଷ୍ଣ ବିଶ୍ୱାଳ ତାଙ୍କ ଘରୁ ଆସି ଏଠାରେ ପହଞ୍ଚିଲେ । କଅଁରାଳୀର ବିପିନ ବିହାରୀ ଦାସ ମୋହରୀଙ୍କର ସାନ ଝିଅ କାଦମ୍ବିନୀ (ଗ୍ରାମସେବିକା - ଶହୀନଦଗର(ଲୁଣିଆ), ତାଙ୍କର ପୁଅ ମନୋରଞ୍ଜନ, ବ୍ରାହ୍ମଣିଆର ବିପିନବାବୁ ଆଦି ଦେଖା କଲେ ।

ସନ୍ଧ୍ୟା ୬ ଟାରୁ ୮.୩୦ ଟା ପର୍ଯ୍ୟନ୍ତ ସାହଜୀହାଟ କ୍ଲବ ବାରନ୍ଦାରେ ସାଧାରଣ ସଭା ହେଲା । ପ୍ରାୟ ୩୦୦ ଲୋକ ବେଶ୍ ଧୀରସ୍ଥିର ଭାବରେ ଶେଷ ପର୍ଯ୍ୟନ୍ତ ଶୁଣିଲେ । ପ୍ରଥମେ ଜୟକୃଷ୍ଣ ବିଶ୍ୱାଳ ଓ ପରେ ଆଚାର୍ଯ୍ୟ ମହାଶୟ ସଭାରେ ସର୍ବୋଦୟ ବିଚାର ଓ ସର୍ବୋଦୟ ପାତ୍ର ବିଷୟ କହିଲେ ।

୨.୯.୧୯୫୮

ସକାଳେ ସର୍ବୋଦୟ ପଦଯାତ୍ରୀ ଦଳ ଚୌଧୁରୀବାଗ (ରେମୁଣା)ରୁ ବାଲେଶ୍ୱର ଅଭିମୁଖେ ଗଲେ । ଗତ ୨ ଦିନ ହେଲା ମୋର ୨ ଗୋଡ଼ର ଭଣ୍ଡା ବଡ଼ ଘୁଳାବିନ୍ଧା କରୁଛି । ମନେ ହେଉଛି ଯେପରି ମେଲେରିଆ ଜ୍ୱରର ଏ ପୂର୍ବ ଲକ୍ଷଣ । ତା ୧ ଓ ୨ ମାର୍ଚ୍ଚ, ୫୮ରେ ମୋର ସମୁଦାୟ ଗୋଡ଼ ଓ ଅଣ୍ଟା ଏହିପରି ଅତି ଅସହ୍ୟଭାବରେ ବିନ୍ଧିଥିଲା । କାଲି ଓ ଆଜି ମିଶି ୩ଟି କୁଇନାଇନ ପିଲ୍ ଖାଇଲିଣି ।

ନାନୀଙ୍କର ଘରେ ମୁଁ ଓ ବୈଷ୍ଣବଚରଣ ସାମଲ ଭାତ ଖାଇଲୁ । ସେଠାର ଫକୀର ମୋହନ କଲେଜରେ କରୁଣାକର ପାଣିଗ୍ରାହୀଙ୍କର ସଭାପତିତ୍ୱରେ କଲେଜଛାତ୍ର ଓ ଅଧ୍ୟାପକମାନଙ୍କୁ ଶ୍ରୀ ମନମୋହନ ଚୌଧୁରୀ, ମୁଁ (ଶରତ୍) ଓ ଆଚାର୍ଯ୍ୟ ମହାଶୟ ସର୍ବୋଦୟ ବିଚାର ଓ ସର୍ବୋଦୟ ପାତ୍ର ସ୍ଥାପନ ବିଷୟରେ କିଛି କହିଲୁ । ରାତି ୮ଟାରେ କଂଗ୍ରେସ ଅଫିସକୁ ଗଲୁ ଓ ଶୋଇଲୁ ।

୩.୯.୧୯୫୮

ସକାଳେ କଂଗ୍ରେସ ଅଫିସରେ ଆମ୍ଭେମାନେ ଚୁଡ଼ା ଖାଇଲୁ । ମୁଁ ଚିଠିପତ୍ର ଲେଖିଲି ।

ମଧ୍ୟାହ୍ନଭୋଜନ ବିପିନ ବିହାରୀ ରଣାଙ୍କ ଘରେ ମୁଁ ଓ ବୈଷ୍ଣବ ବାବୁ କଲୁ । କଲେଜ ଛାତ୍ର ଓ ଅଧ୍ୟାପକ ଆଲୋଚନା କରିବାକୁ ଆସିଲେ ନାହିଁ । ଆମେ ୯ ଜଣ ଭୂଦାନସେବକ ଏବଂ କରୁଣାକର ପାଣିଗ୍ରାହୀ, ହାଡ଼ିବନ୍ଧୁ ଶତପଥି (ପ୍ରଚାର ବିଭାଗ ଅଫିସର), ସତ୍ୟନାରାୟଣ ଦାସ(ଓକିଲ)... ବାଲେଶ୍ୱର ଟାଉନ୍‌ରୁ ଆଉ ୧୮/୧୯ ଜଣ – ମୋଟ ୩୪ ଜଣ ମାତ୍ର ସଭାକୁ ଆସିଥିଲେ । ଶ୍ରୀ ବୁଲୁବାବୁ ଓ ଆଚାର୍ଯ୍ୟ ମହାଶୟ କିଛି କିଛି କହିଲେ । ସର୍ବୋଦୟ-ପାତ୍ର କାର୍ଯ୍ୟ ପାଇଁ ଏକ କମିଟି ଗଢ଼ାଗଲା ।

ରାତିରେ କଂଗ୍ରେସ ଅଫିସରେ ଶୋଇଲି । ଅନ୍ୟର ମଶିଣା ମୁଁ ନେଇ ବିଛାଇବା (ମାଲିକ ଭିନ୍ନ ଅନ୍ୟ ବ୍ୟକ୍ତିର ଅନୁମତି ନେବା ଅବଶ୍ୟ) ଠିକ୍ ହେଲା ନାହିଁ ।

୪.୯.୧୯୫୮

ଆଚାର୍ଯ୍ୟ ମହାଶୟ, ବ୍ୟାସଜୀ, ଆଦି ପଦଯାତ୍ରୀଙ୍କୁ ରସାଲପୁର ସଡ଼କରେ ବିଦାୟ ଦେଇ, ମୁଁ ସୁନହଟ ଯାଇ କୁନର ବାପା (ରାଧାରଞ୍ଜନ ବାବୁ) ଓ ବୋଉଙ୍କୁ ଖୁସିରେ ଦେଖା କରିଆସିଲି । ବାରବାଟି ଯାଇ ୰ ମଣିଭାଇଙ୍କର ସ୍ତ୍ରୀ (ବଡ଼ ବୋହୂ)ଙ୍କୁ ଦେଖା କଲି । ସେ ଓ ତାଙ୍କର ଦୁଇ ପୁଅ ବଡ଼ ଅଭାବରେ ଚଳୁଛନ୍ତି । ତଥାପି, ବଡ଼ ବୋହୂର ଦୁଃଖ ନାହିଁ । ସେ ମୋତେ ବଡ଼ ଆଦର କରି କହିଲା, "ଏହିପରି ଟିକିଏ ଆସୁଥିବ; ମୁଁ ତୁମ ଉପରେ କିଛି ଭାରା ଦେଉନାହିଁ ।'' ଅର୍ଥାତ୍ ଆର୍ଥିକ ସାହାଯ୍ୟ ମାଗୁନାହିଁ । କି ଧୈର୍ଯ୍ୟ ! କି ଅପେକ୍ଷା କରିବାର ଶକ୍ତି ! ଏଥିରୁ ଆମ୍ଭେମାନେ ଯେଉଁମାନେ ଯେତେ ଅଧିକ ପାଇଲେ ସୁଦ୍ଧା ଅସନ୍ତୁଷ୍ଟ, ସେମାନେ କିଛି ଶିଖିବେ କି ?

୫.୯.୧୯୫୮

ସକାଳ ଟ୍ରେନ୍‌ରେ ମୁଁ ବାଲେଶ୍ୱରରୁ କଟକ ଆସି ଉପରଓଳି ୪ଟାରେ ପହଞ୍ଚିଲି । ବୋଉ ତା ୨/୯ରୁ ଏଠାରେ ଅଛନ୍ତି । ରେମୁଣାରେ ଭୂଦେବ ସର୍ବୋଦୟ-ପାତ୍ର ୨ ବା ୩ ମେ, ୧୯୫୮ ଠାରୁ ବସାଇଥିଲା । ତା ୪/୯ ସୁଦ୍ଧା ୫ ସେର ଚାଉଳ ମୁଁ ଆଣି କଟକରେ ବୋଉଙ୍କୁ ଦେଲି ।

ଶ୍ରୀ ବାବୁଲାଲ ମିତ୍ତଲ ଜୀ କଟକ ଆସିଥିଲେ । ସରକାରୀ ଭୂଦାନ ଯଜ୍ଞ ସମିତିରେ ମୁଁ ପୁଣି ରହିବାକୁ (ସରକାର ବଜେଟରେ ଟଙ୍କା ରଖିଲେ) ସେ କହିଲେ । ମୁଁ ମନା କଲି । ଗତ ୫/୬ ଦିନର ବାସରୀ ଓ ହିସାବ ମୁଁ ଲେଖିଲି ।

୬.୯.୧୯୫୮

କଟକରେ । ସକାଳେ ଭୂଦାନ ସମିତିର ରେଜିଷ୍ଟରଗୁଡ଼ାଏ ଝାଡ଼ି ସଫା କରି

ସଜାଇଦେଲି । ଜୟପ୍ରକାଶ ନାରାୟଣଙ୍କର ପୁରୁଣା ବିବୃତି-ଫାଇଲଟି ଖୋଜି ବାହାରକଲି । ଅଗଷ୍ଟ ମାସର ମୋର ସଂକ୍ଷିପ୍ତ ରିପୋର୍ଟ ଲେଖିଲି ଓ ଶ୍ରୀଯୁକ୍ତା ରମା ଦେବୀଙ୍କୁ ତାହା ଦେଲି । ଅଗଷ୍ଟ ମାସରେ ମୁଁ

- ୧୨ ଦିନ ସର୍ବୋଦୟ ପାତ୍ର ସ୍ଥାପନରେ,
- ୩ ଦିନ ସର୍ବୋଦୟ ପାତ୍ର ବିଷୟରେ ଶିକ୍ଷାନୁଷ୍ଠାନରେ ଆଲୋଚନାରେ,
- ୧ ଦିନ ଦୂରସ୍ଥାନକୁ ଯାତ୍ରାରେ (ରେମୁଣା ଯିବାରେ)
- ୧ ଦିନ ବ୍ୟକ୍ତିଗତ କାମରେ (ବନ୍ଦୁର ଜ୍ୱର ହେତୁ)
- ୧୪ ଦିନ ରାମଚନ୍ଦ୍ରପୁର ମୌଳିକ ସ୍କୁଲ କାମରେ କଟାଇଛି ।

ଏ ମାସରେ ପାଦରେ ୬୫ ମାଇଲ ଚାଲିଛି । ଟ୍ରେନ୍‌ରେ ୮୫ ମାଇଲ ଯାଇଛି । ୭ଟି ଗ୍ରାମରେ ବିଚାର ପ୍ରଚାରର ସଭା କରିଅଛି ଏବଂ ପ୍ରାୟ ୩୪୦ ଲୋକ ଏ ସଭାରେ ଉପସ୍ଥିତ ଥିଲେ । ସାହିତ୍ୟ ବିକ୍ରୀ ଟ. ୧୦/- ହୋଇଛି । ଚାରିଗୁଣ୍ଡି ସୂତା କାଟିଛି । ତୂଳା ବଛାରେ ଅନେକ ସମୟ ଦେଇଛି ।

ସନ୍ଧ୍ୟାରେ ଶ୍ରୀ ଲଳିତ ମୋହନ ଘୋଷଙ୍କୁ ଦେଖାକଲି । ଅରବିନ୍ଦଙ୍କ ଆଧ୍ୟାତ୍ମବାଦ କଥା ସେ କହିଲେ । ଗ୍ରାମସେବକ ପ୍ରେସ୍‌ରେ ସଚ୍ଚିବାବୁଙ୍କ ସହ ଦେଖା କଲି ।

୭.୯.୧୯୫୮

ହରିଦାସପୁରରେ ପ୍ରସ୍ତାବିତ ବାଳନିକେତନ ସଂପର୍କରେ ଆଲୋଚନା କରିବାପାଇଁ ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କୁ ଦେଖା କରିବାକୁ ଶ୍ରୀ ଫକୀର ମିଶ୍ରଙ୍କ ସହିତ ମୁଁ ଭୁବନେଶ୍ୱର ଗଲି । ସାଧୁବାବୁ କଲିକତା ଯାଇଥିବାରୁ, ଆମେ ଦେଖା ନ ପାଇ ଦିନ ୧୦ ଟା ବେଳର ଟ୍ରେନ୍‌ରେ କଟକକୁ ଫେରିଆସିଲୁ ।

ଉପରଓଳି ମୋର ହିସାବଖାତା ତା ୧.୧.୧୯୫୮ ଠାରୁ ଦେଖି, ଅନ୍ୟମାନଙ୍କ ସହିତ ମୋର ଦେଣାପାଉଣା-ତାଲିକା କଲି । କଟକରେ ଥିବା ଆମର ସର୍ବୋଦୟ-ଶିକ୍ଷାର୍ଥୀମାନେ "ଝଙ୍କାର'' ମାସିକ ପତ୍ରିକାରୁ ସମାଜବାଦ ଓ ସାମ୍ୟବାଦ ଶୀର୍ଷକ ଗୋଟିଏ ଲେଖା ପଢ଼ିଲେ । ତାହା ବୁଝିବାରେ ମୁଁ ସେମାନଙ୍କୁ କିଛି ସାହାଯ୍ୟ କଲି ।

୮.୯.୧୯୫୮

ବରପାଲୀ ପ୍ୟାଟର୍ଣ୍ଣ ପାଇଖାନା ଶିକ୍ଷା-ଶିବିରମାନଙ୍କରେ ନ ହୋଇ, ବାଲଟୀ-ବସା ଉଠା ପାଇଖାନା ଦେବା ଦରକାର । ତାହାହେଲେ, ଶିକ୍ଷାର୍ଥୀମାନେ ଶ୍ରମ-ମହତ୍ତ୍ୱ (ମେହେନ୍ତରର କାମ ପ୍ରତିଦିନ ନିଜ ପାଇଁ ୧୦ ମିନିଟ୍ କରି) ବୁଝିବେ; ମଇଳା ସଙ୍ଗେ ସଙ୍ଗେ ଖତସାର ରୂପେ

ଗଛପତ୍ରରେ ଦିଆଯାଇପାରିବ, ପାଖର ଜଳାଶୟ ଦୂଷିତ ହେବ ନାହିଁ - ବୋଲି ମୁଁ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନ୍ତିଙ୍କୁ (କସ୍ତୁରବା କେନ୍ଦ୍ରର ଅଫିସ ପରିଚାଳକ)ଙ୍କୁ କହିଲି ।

୧୧.୯.୧୯୫୮

ବିନୋବାଜୀଙ୍କର ଜନ୍ମଦିନ ବା "ଭୂମି-ଜୟନ୍ତୀ'' । ସକାଳ ଓଳି ଏବଂ ଉପରଓଳି କଲମୀ ଚାରାଗଛଗୁଡ଼ିକୁ ଝୁଡ଼ିରୁ ବାହାର କରି ତଳେ ବସାଇବାରେ ଓ ଯତ୍ନ କରିବାରେ ଗଲା ।

ଆଜିଠାରୁ ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟରେ "ସମଗ୍ର ରୋଷଡ଼ା'' ଆରମ୍ଭ ହୋଇଛି । ଭୋର ଉପାସନାରେ ମୁଁ ଯୋଗ ଦେଇଥିଲି ଛାତ୍ରମାନଙ୍କର ୭ଟା ବେଳର ପ୍ରାର୍ଥନାରେ ମଧ୍ୟ । ମୁଁ ଠିକ୍ ସମୟରେ ଖାଇବାକୁ ଯାଇ ପାରି ନ ଥିଲି, ମୋଠାକୁ ଖାଦ୍ୟ ପଠାଇ ଦେଇଥିଲେ ।

୧୨.୯.୧୯୫୮

ଖେମେଶ୍ୱରର ଶ୍ରୀମାନ୍ ପାବନ ମଲିକ (ଛାତ୍ର ୮ମ ସୋପାନର) ଆସିଥିଲା - ବହିଖାତା ନାହିଁ । କଅଣ କରିବା ? ଏପରି ଗରୀବ ଛାତ୍ରଙ୍କ ପାଇଁ ? କଲମୀ ଆମ୍ବଗଛର ଯତ୍ନ ନେଲି ।

ଉପରଓଳି ସ୍କୁଲରେ ଛାତ୍ରମାନଙ୍କ ସହ ସୂତ୍ରଯଜ୍ଞ ଓ ଉପାସନାରେ ଯୋଗ ଦେଲି । କଲମୀଗଛ ଗୁଡ଼ିକର ଯତ୍ନ ନେଲି । ସନ୍ଧ୍ୟାପରେ ଡାକ୍ତରବାବୁଙ୍କ ଘରକୁ ଯାଇଥିଲି । ରାତିରେ "ସମଗ୍ର ରଷୋଡ଼ା''ର ମେମ୍ବରମାନେ ଏକାଠି ଆଲୋଚନା କରୁଥିଲେ । ଯଦି ଏପରି ଏକାଠି ରୋଷେଇ ଓ ଖାଇବା ବ୍ୟବସ୍ଥା ଦ୍ୱାରା ସମସ୍ତେ ହଇରାଣ ହେଉଛନ୍ତି, ଖାଇବାରେ କଳବଲ ହେଉଛନ୍ତି ଏବଂ ଅସୁବିଧାଗୁଡ଼ିକ ଦୂର କରିବା ଅସମ୍ଭବ, ତାହାହେଲେ ମୋର ତା ୨୯.୮.୧୯୫୮ର ସୂଚନା ମୁଁ ପ୍ରତ୍ୟାହାର କରି ନେଉଅଛି । ମୁଁ ଜିଦ୍ ଧରି କୌଣସି କାମ କରିବାକୁ ବା କରାଇବାକୁ କହୁନାହିଁ ।

୧୭.୯.୧୯୫୮

ସକାଳେ କାକୁଡ଼ି-କସିଗୁଡ଼ିକରେ ପତ୍ର ଗୁଡ଼ାଇ ବାନ୍ଧିଲି - କାଉ ଖାଇଯାଉଛନ୍ତି । ଉପରଓଳି ଶ୍ରୀଯୁକ୍ତା ରମ୍ଭାଦେବୀ ଦୂତୀୟା (ଜିଜୀ)ଙ୍କୁ ହରିଦାସପୁରରେ ପ୍ରସ୍ତାବିତ "ବାଳ-ନିକେତନ''ର ସେ ଟ୍ରଷ୍ଟୀ ରହିବା କଥା କହିଲି । ସେଠାରେ ସେ ମଧ୍ୟ ନିଜର କଳ୍ପନା ଅନୁସାରେ ଗୋଟିଏ ମାତୃମଙ୍ଗଳ କେନ୍ଦ୍ର କରିବେ ବୋଲି ଇଚ୍ଛା ପ୍ରକାଶ କଲେ ।

୧୮.୯.୧୯୫୮

ସକାଳେ ବାକୀ କଲମୀ ଗଛଗୁଡ଼ିକ ଗୋଟି ଗୋଟି ଦେଖି, ମୃତ ଓ ଅର୍ଦ୍ଧମୃତ ଗଛର

ତାଲିକା କଲି ଏବଂ ନେବାକୁ ଇଚ୍ଛୁକ ଲୋକଙ୍କର ନାମ କାଗଜରେ ଲେଖି, ପ୍ରତ୍ୟେକ ଗଛରେ ଟଙ୍ଗାଇଦେଲି । ଶ୍ରୀମାନ୍ ପଦ୍ମନାଭ ଜେନା ଏଥିରେ ସାହାଯ୍ୟ କଲେ । ତାଙ୍କ ଜମାରେ ଗଛ ଦେଲି ।

ରାମଚନ୍ଦ୍ରପୁର କେନ୍ଦ୍ରର ଛାତ୍ର, ଶିକ୍ଷାର୍ଥିନୀ, ଗୁରୁଜୀମାନେ ଭୂମି-ଜୟନ୍ତୀ ସପ୍ତାହର ଆଜି ଶେଷ ଦିନରେ ସେ ବିଷୟରେ ସଭା କଲେ । ଆର୍ତ୍ତବନ୍ଧୁ ମହାନ୍ତି (ବରୀର ଗୁରୁଜୀ) ସଭାପତି ହୋଇଥିଲେ । ମୁଁ କିଛି କହିଲି । ଏଠାରୁ ଓ ସେବାଗ୍ରାମର ମୌଳିକ ଶିକ୍ଷାକେନ୍ଦ୍ରରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ସାମାନ୍ୟ ମାସିକ ଟ. ୬୦/- ବା ଟ. ୭୦/- ର ଖଣ୍ଡିଏ ଖଣ୍ଡିଏ କାମ ପାଇଁ ଲାଳାୟିତ ହେଉଛନ୍ତି ଓ ସେମାନଙ୍କର ଅଭିଭାବକମାନେ ସେମାନଙ୍କୁ ଏଥିପାଇଁ ବ୍ୟସ୍ତ କରୁଛନ୍ତି - ମୁଁ କହିଲି ।

ଶ୍ରୀ ରଙ୍ଗାଧର ଦାସ, ଦୋଳଗୋବିନ୍ଦ ରାଜ, ହଳଧର ଓ ମୁଁ ଇନ୍ଦୁପୁର ହାଇସ୍କୁଲକୁ ଗଲୁ । ସହକାରୀ ଶିକ୍ଷକ ଶ୍ରୀ ବୃନ୍ଦାବନ ସାହୁ, ହେଡ୍‌ମାଷ୍ଟର ଶ୍ରୀ ମିଶ୍ରଙ୍କର ଅନୁରୋଧରେ ମୁଁ ପ୍ରାୟ ଘ ୧.୧୦ ମିନିଟ ସର୍ବୋଦୟ ବିଚାରର ୨/୩ଟି ମୂଳ ସିଦ୍ଧାନ୍ତ ବିଷୟରେ ଓ ଶେଷକୁ ସର୍ବୋଦୟ-ପାତ୍ର ସ୍ଥାପନ ପାଇଁ ନିବେଦନ କହିଲି ।

୧୯.୯.୧୯୫୮

ସକାଳେ ଧୂମାତ ମଠର ମହନ୍ତଙ୍କୁ, ଶିକ୍ଷକ ଶ୍ରୀ ପଦ୍ମଚରଣ ମହାନ୍ତିଙ୍କୁ, ଦୋକାନୀ ଘର ବେହେରାଙ୍କୁ, ମୁକୁନ୍ଦ ମଜୁମଦାରଙ୍କୁ, ବଳରାମ ମଜୁମଦାର (ପୂର୍ବେ ମାଝୀ)ଙ୍କୁ, କାଠଗୋଲାରେ ଇନ୍ଦୁପୁରର ଶ୍ରୀଧର ମଲିକ (ହରିଜନ)ଙ୍କୁ, ଢ଼େଙ୍କାନାଳର ମଠକରବଳାବାସୀ କାଠ ବ୍ୟବସାୟୀ ଚକ୍ରଧର ରାଉତ (ବୟସ ୩୦ ବର୍ଷ ହେବ)ଙ୍କୁ, ନିଜ ଘରେ ନଟବର ଜଗଦେବଙ୍କୁ ଆମେ ଭେଟି "ସର୍ବୋଦୟ-ପାତ୍ର'' କଥା କହିଲୁ । ପ୍ରାୟ ୫ ପରିବାରରୁ ସେ ୬ ସେର ମୁଠି-ଚାଉଳ ସଂଗ୍ରହ କଲୁ ।

୨୦.୯.୧୯୫୮

ରାମଚନ୍ଦ୍ରପୁରକୁ ଫେରିଲି । ସକାଳେ ସ୍କୁଲର ଭିତର ରାସ୍ତା, କୂଅମୂଳ ସଫା କଲୁ । ବୋର୍ଡିଂର ଶିକ୍ଷକମାନେ - ଆଜି ଶନିବାର ସକାଳ ସ୍କୁଲ ଥିବା ସତ୍ତ୍ୱେ - ପ୍ରାୟ ୬ଟା ରେ ବିଛଣାରୁ ଉଠିଲେ । ଛାତ୍ର ଓ ଶିକ୍ଷକମାନଙ୍କୁ ମୁଁ ପ୍ରାୟ ୮.୩୦ଟାରୁ ୧୦.୩୦ ଟା ପର୍ଯ୍ୟନ୍ତ କିଛି କହିଲି । ବିଶେଷରେ ଛାତ୍ରମାନଙ୍କୁ ପ୍ରାତଃକାଳରୁ ଶଯ୍ୟାତ୍ୟାଗ, ପ୍ରାତଃଭ୍ରମଣ, ସଫାଇ, ଶରୀର-ଶ୍ରମ, ସଂପତ୍ତିର ମୂଳ ଅର୍ଥ, "ଅଜାରମରବତ୍ ପ୍ରାଜ୍ଞ ବିଦ୍ୟାମର୍ଥଞ୍ଚ ଚିନ୍ତୟେତ୍'', କର୍ମ ଜରିଆରେ ଶିକ୍ଷା ପାଇବା, ନୂଆ ଧାରଣରେ ଏହି ବିଦ୍ୟାଳୟକୁ ଗଢ଼ିବା, ସର୍ବୋଦୟରେ ମାଲିକାନା-ତ୍ୟାଗ, ସର୍ବୋଦୟ-ପାତ୍ର କଥା, ନାନା ଭାଷା ଶିଖିବା ଆଦି ବିଷୟରେ କହିଲି ।

ରାତିରେ ଭୁବନାନନ୍ଦ ସ୍ୱାଇଁ ରାମଚନ୍ଦ୍ରପୁର ସ୍କୁଲରେ ଶିକ୍ଷକ ପାଇଁ ନୂଆ କେତେକ ବ୍ୟକ୍ତିଙ୍କ କଥା କହିଲେ । ତନ୍ତୀ ଭାବରେ ଖାସ୍ ବୁଣିବାପାଇଁ ଜଣେ ଦକ୍ଷ ଲୋକ, ଭଲ ଚାଷ ଜାଣିଥିବା ଜଣେ ଚାଷୀ, ରହିବା ଦରକାର ବୋଲି ମୁଁ କହିଲି ।

୨୫.୯.୧୯୫୮

ଭୋର ମୁଁ ହରିପୁର, ଦୋଳମୁଣ୍ଡାଇ ଓ ଶେଷରେ କାଠଗଡ଼ା ସାହିର କୁମ୍ଭାର ସାହିକୁ ଯାଇ, କୃଷ୍ଣ ସେନାପତିଙ୍କ ଠାରୁ ସାନକୁଣ୍ଡ ଓ ଗୁଡ଼ବଣା ମିଶି ୧୯ଟା ଟ.୨/-ରେ କିଣି ଆଣିଲି । ରିକ୍ସାବାଲା ଗେଡ଼୍ଡ଼ା, ଭଲଲୋକ । ସକାଳ ୧୦ଟା ପର୍ଯ୍ୟନ୍ତ ମୁଁ ଲାଗି ୧୩ଟି ଆମ୍ବଟାକୁଆ ଗଛ ଏହି କୁଣ୍ଡରେ ଉଠାଇ ପକାଇଲି ।

ଆଚାର୍ଯ୍ୟ ବିନୋବା ଭାବେ ତା ୨୨.୯.୧୯୫୮ରେ ଗୁଜରାଟରେ ସୋଙ୍ଗାଧ ଠାରେ ପ୍ରବେଶ କଲେ । ଶ୍ରୀ ଜଗତ୍‌ରାମ ଦରେ ତାଙ୍କୁ ସମ୍ବର୍ଦ୍ଧନା ସଭାରେ ଅଭିନନ୍ଦନ ଜଣାଇଥିଲେ । ଭାରତରୁ ଆଜି ସୁଦ୍ଧା ୪୪ ଲକ୍ଷ ୨୦ ହଜାର ଏକର ଭୂମି ସଂଗ୍ରହ ହୋଇଛି ଓ ୭ ଲକ୍ଷ ୬୦ ହଜାର ଏକର ବିତରଣ ହୋଇଛି । ମୋଟରେ ୪୬୪୦ ଟି ଗ୍ରାମଦାନ ହୋଇଅଛି ।

ଆଚାର୍ଯ୍ୟ ମହାଶୟ ଆଜି କେଉଁଝର ଜିଲ୍ଲାର ଉଗମୁଣ୍ଡାରେ ପଦଯାତ୍ରରେ ପହଞ୍ଚିଥିବେ । ତା ୨.୧୦ରେ ସେ କେଉଁଝରଗଡ଼ରେ ପହଞ୍ଚିବେ ।

ଉପରଓଳି ଭଜନ ମହାନ୍ତିଙ୍କୁ ଭୂଦାନ ଆକ୍ଟ ଅନୁସାରେ ସବୁ ଫର୍ମ ଦେଖାଇ, ରେଭିନ୍ୟୁ ଅଫିସରଙ୍କଠାରେ କଅଣ କଅଣ କରି ଦାଖଲ ହେବ, ବୁଝାଇଦେଲି ।

୨୬.୯.୧୯୫୮

ଆଜିଠାରୁ ଗାନ୍ଧୀ-ଜୟନ୍ତୀ-ସପ୍ତାହ ପାଳନ ଉପଲକ୍ଷେ ପ୍ରଭାତ-ଫେରି, ସର୍ବୋଦୟ ସାହିତ୍ୟ ପାଠ, ସର୍ବୋଦୟ-ପାତ୍ର-ସ୍ଥାପନ ଏବଂ ସନ୍ଧ୍ୟାରେ ଗୋଟିଏ ଗୋଟିଏ ପଡ଼ାରେ ବା ଉଆର୍ଡ଼ରେ ଉପାସନା ଓ ସାଧାରଣ ସଭା (ଗାନ୍ଧୀ ବିଚାର ଚର୍ଚ୍ଚା ପାଇଁ) ହେଉଛି । ପ୍ରଭାତଫେରିରେ ମୁଁ ଯୋଗ ଦେଇ ନ ପାରି, ଭୁବନେଶ୍ୱରକୁ ଏକ୍ସପ୍ରେସ ଟ୍ରେନ୍‌ରେ ଗଲି । ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କୁ ନାଗେଶ୍ୱର-ଟାଙ୍ଗୀରେ ତାଙ୍କ ଘରେ ଦେଖା କଲି । ହରିଦାସପୁରରେ ପ୍ରସ୍ତାବିତ "ବାଳନିକେତନ'' କଥା ଶୁଣି ସେ ଆରମ୍ଭରୁ ପ୍ରତିବାଦ କଲେ ଏବଂ Tribal and Rural Welfare Department (ଆଦିବାସୀ ମଙ୍ଗଳ ବିଭାଗ) ତ ଆଶ୍ରମ ସ୍କୁଲ ଆଦି କରୁଛି, ଆଉ ଗୋଟିଏ ପୁଣି କଅଣ ଦରକାର ? କହିଲେ । ଯେ କୌଣସି ସ୍କୁଲ କରିବେ, ସେ ଧରାବନ୍ଧା ଗତରେ ଓ ତାଙ୍କ ଖିଆଲରେ କରିବେ, ସେ କହିଲେ । ମୁଁ କହିଲି ଯେ ସେଠାରେ "freedom in education'' ବିଚାରରେ କାମ ହେବ । ସେ ତାହା ବୁଝିବା ବା ଗ୍ରହଣ

କରିବାର ଲେଶମାତ୍ର ଆଭାସ ମୁଁ ଦେଖିଲି ନାହିଁ । ତତ୍‌ପରେ ସେ ଟିମବାବୁଙ୍କୁ ଓ ମୋତେ ଭଦ୍ରଭାବରେ ଅଥଚ ଅତି ଦୃଢ଼ ଭାବରେ ସତର୍କ କରିଦେଲେ ଯେ ତାଙ୍କର ବାପାଙ୍କର vertigo (ମୁଣ୍ଡ ବୁଲାଇବା ପରି) ଗତ ୧୦/୧୧ ଦିନ ହେଲା ହେଉଥିବାରୁ, ତାଙ୍କର ମସ୍ତିଷ୍କ ଖଟାଇବା ଭଳି କୌଣସି କଥାବାର୍ତ୍ତା ତାଙ୍କ ସହ କରିବା ବା କାର୍ଯ୍ୟ ଦେବା ମୋର ଉଚିତ ନୁହେଁ ।

"ଗ୍ରାମଗୋଷ୍ଠୀ ଯୋଜନାରେ ବହୁ ଟଙ୍କା ଅପବ୍ୟୟ ହେଉଛି । ତାକୁ ବନ୍ଦ କରିବାର ବାଟ ସେ ଦେଖୁନାହାନ୍ତି । x x x । ଦେଶରେ ନିରପେକ୍ଷ ବୃତ୍ତିରେ କାର୍ଯ୍ୟ କରିବାର, ନିଜର ସ୍ୱାଧୀନ ମତ ଦେବାର, ଅନ୍ୟଦ୍ୱାରା ଅଯଥା ପ୍ରଭାବିତ ନ ହେବାର ଲୋକ ସେ ଦେଖୁନାହାନ୍ତି । ଆମର ଶିକ୍ଷାରେ ଏ ପ୍ରକାରର ମନୋବୃତ୍ତି ଓ ଚରିତ୍ର ଏବଂ integrity ଗଢ଼ି ଉଠୁନାହିଁ । ଆପଣଙ୍କ ପରି ଲୋକ ଶଏରେ ୫ ଜଣ ଥିବେ । x x x ।" ଶ୍ରୀ ଟିମବାବୁ କହିଲେ ସେ ବର୍ତ୍ତମାନ Deputy Community Project Director of Orissa ଅଛନ୍ତି ।

ମଜାର କଥା ଦେଖିଲି । ଶିକ୍ଷାରେ ଯେ ସ୍ୱାଧୀନ ଚିନ୍ତା ଓ ସ୍ୱାଧୀନ ପ୍ରୟୋଗକୁ ନାପସନ୍ଦ କରୁଥିଲେ ଓ ସରକାରଙ୍କ ଦ୍ୱାରା ସବୁ ହେବ, ସେ ତାଙ୍କ ମନକୁ ୧୫/୨୦ ମିନିଟ୍ ପରେ ତାହାର ଆବଶ୍ୟକତା ବୟାନ କଲେ ।

ଶ୍ରୀଯୁକ୍ତ ସାଧୁବାବୁଙ୍କର ଆନ୍ତରିକ ଅନୁରୋଧରେ ମୁଁ ତାଙ୍କ ଘରେ ଜଳଖିଆ କଲି ଏବଂ ଅଳ୍ପ ୨/୪ ପଦ କଥାବାର୍ତ୍ତା କଲି । ହରିଦାସପୁରରେ ସେହି ଅନୁଷ୍ଠାନର ପ୍ରସ୍ତାବକୁ ସେ ସମର୍ଥନ କଲେ ମାତ୍ର ସେ ଟ୍ରଷ୍ଟୀମଣ୍ଡଳରେ ରହିବାକୁ ଅନିଚ୍ଛା ଜଣାଇଲେ ।

ଉପରଓଳି ୩ଟାରୁ ୪ଟା ପର୍ଯ୍ୟନ୍ତ ମହାମାୟା ମିଡ଼ିଲ ସ୍କୁଲରେ ଗାନ୍ଧୀ ସାହିତ୍ୟ ଓ ଗୀତା ପ୍ରବଚନରୁ ଅଳ୍ପ ଅଂଶ ପାଠ କରାଗଲା ଏବଂ ସନ୍ଧ୍ୟାରେ "ବାସ୍ତରୀଠାକୁର" ପ୍ରାଙ୍ଗଣରେ ଗାନ୍ଧୀଜୀଙ୍କ ବିଚାର ଚର୍ଚ୍ଚା ହେଲା । ଡାକ୍ତର ହରିଶଚନ୍ଦ୍ର ରାୟ (କନିକାର) ଯୋଗ ଦେଇଥିଲେ ।

୨୮.୯.୧୯୫୮

ଡାକ୍ତର ହରିଶ୍ଚନ୍ଦ୍ର ରାୟ, ତାଙ୍କର ଆଇରିସ୍ ସହଧର୍ମିଣୀ ଓ ୨ ପୁଅ ଓ ୨ ଝିଅ ଥୋଡ଼ିଆସାହି ଭୂଦାନ ଅଫିକୁ ଆସିଥିଲେ - ମୁଠିଚାଉଳ (ସର୍ବୋଦୟ ପାତ୍ରର ଚାଉଳ) ନିଜେ ଦେଇଗଲେ । କି ଉଚ୍ଚ ଓ ସମ୍ମାନଜନକ ବିଚାର - ସେ ନିଜେ ଚାଉଳ ଆଣି ଦେଇଯିବେ ।।

୨୯.୯.୧୯୫୮

୧୪.୨.୧୯୩୧ ମସିହାରେ ବ୍ୟାସଜୀ ଦିଲ୍ଲୀରେ ଡାକ୍ତର ଆନସାରୀଙ୍କ ଘରେ ଜୀବନରାମ କଲ୍ୟାଣଜୀଙ୍କ ସାଥିରେ ଗାନ୍ଧୀଜୀଙ୍କୁ ପ୍ରଥମେ ଦେଖା କରିଥିଲେ । ଗାନ୍ଧୀ ତାଙ୍କୁ ଦେଖି କହିଥିଲେ "ଆନେ ରାଖୋ, ଯେ କାମ କରସେ" । ସେହି ଦିନଠାରୁ ବ୍ୟାସଜୀ ଓଡ଼ିଶାର ସେବାରେ ଦୀକ୍ଷିତ ହେଲେ । ତାଙ୍କର ସ୍ମୃତି କହିବାରୁ, ମୁଁ ଗୋଟିଏ ଲେଖା ଖବରକାଗଜ ପାଇଁ

ବ୍ୟାସଜୀଙ୍କର ନାମରେ ଲେଖିଦେଲି । ଖରାବେଳେ ବିନୋବା-ପ୍ରବଚନ ତା ୧.୮.୧୯୫୮ରୁ କିଛି ପଢ଼ିଲି । ଠାକୁରମୁଣ୍ଡା (ମୟୂରଭଞ୍ଜ)ର ଶ୍ରୀ ଗୌରାଙ୍ଗଚରଣ ଦାସ ଶ୍ରୀ ମନମୋହନ ଚୌଧୁରୀଙ୍କୁ ଦେଖା କରିବାକୁ ଆସିଥିଲେ । ତାଙ୍କର ସହ କଥାବାର୍ତ୍ତା କଲି ।

ରାତି ୮ଟରୁ ୯.୩୦ ପର୍ଯ୍ୟନ୍ତ ପୀଠାପୁରର ଉକ୍ରଳ କଳା ବିକାଶ କେନ୍ଦ୍ରରେ "ଗାନ୍ଧୀଯୁଗ-ସାହିତ୍ୟରେ'' ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଆଲୋଚନା କଲେ । ଶ୍ରୀମତୀ ନନ୍ଦିନୀ ଶତପଥି, ଦେବେନ୍ଦ୍ର ଶତପଥି, ଇନ୍ଦିରା ମିଶ୍ର, ପାର୍ବତୀ ଗିରି, ନିଶାକର ବାବୁ, ଆଦି ଯୋଗ ଦେଇଥିଲେ ।

୩୦.୯.୧୯୫୮

କଟକରେ । ପ୍ରଭାତ ଫେରୀରେ ଯୋଗ ଦେଇଥିଲି । ଆଚାର୍ଯ୍ୟ କୃପାଳନୀଙ୍କର ...ବହିର ବାକୀ ଅଂଶ ପୃଷ୍ଠା ୫୨-୬୭ ପଢ଼ି ଶେଷ କଲି ।

କେନ୍ଦ୍ରାପଡ଼ାର ଶ୍ରୀ ଦୁର୍ଯ୍ୟୋଧନ ପଣ୍ଡା ( ଯେ ୧୯୪୨ରେ ବ୍ରହ୍ମପୁର ଜେଲରେ ଆମ୍ଭମାନଙ୍କ ସହ ରାଜନୈତିକ ବନ୍ଦୀ ଥିଲେ) ଆଜି ମାନପୁର ପ୍ରଥମ ଗ୍ରାମଦାନ ଗାଁରେ ମାଲିମକଦ୍ଦମା କଥା ଏବଂ ସେ କିପରି ଗ୍ରାମବାସୀମାନଙ୍କୁ ରାଜୀ କରାଇ ମକଦ୍ଦମା ଉଠାଇନେବାକୁ ଯତ୍ନ କରୁଛନ୍ତି, କହିଲେ । ପୂର୍ବର ଭୂଦାନ କର୍ମୀଙ୍କୁ ଆକ୍ଷେପ କରି କହିଲେ । ଶ୍ରୀ ନରୋତ୍ତମ ବେହେରା ଓ ଯୁଧିଷ୍ଠିର ନାମରେ କିଏ ଜଣେ ଭୂଦାନକର୍ମୀ କୁଆଡ଼େ ଲୋକଙ୍କୁ ଡରାଇ ଭୂଦାନ ସଂଗ୍ରହ କରୁଥିଲେ ବୋଲି ସେ କହିଲେ । ମାନପୁରରେ ୩୦ ଘରିଆ ଓ ୯୦ ଘରିଆ ଲୋକମାନେ କୁଆଡ଼େ ମୋଟରେ ଟ. ୨୮୦୦ ଓ ୭୦୦/- ମୋଟରେ ୩,୫୦୦/- ଆଳୀର ପୋଲିସ ସବ୍‌ଇନ୍‌ସ୍‌ପେକ୍ଟରଙ୍କୁ ଓ କେନ୍ଦ୍ରାପଡ଼ାର ପୋଲିସ ଇନ୍‌ସ୍‌ପେକ୍ଟରଙ୍କୁ ଏବଂ ପରେ ଟ. ୫୦୦୦/- ପାଞ୍ଚହଜାର ଟଙ୍କା କେନ୍ଦ୍ରାପଡ଼ାରେ ନଜରବନ୍ଦୀ ଥିବାବେଳେ କୋର୍ଟର ଅମଲାମାନଙ୍କୁ ଲାଞ୍ଚ ଦେଇଛନ୍ତି ବୋଲି ସେ କହିଲେ । ଧନ୍ୟ ମାନପୁର !!

୨.୧୦.୧୯୫୮

କାଲି ପଟାମୁଣ୍ଡାଇ-କେନ୍ଦ୍ରାପଡ଼ା-କେନ୍ଦ୍ରାପଡ଼ା ରୋଡ୍ ବାଟେ ଜିଜୀ ଓ ଡାକ୍ତରବାବୁ ରାମଚନ୍ଦ୍ରପୁରରୁ ଆସି, ରାତିରେ ଷ୍ଟେସନ୍‌ରେ ଥିଲେ । ଆଜି ସକାଳେ ଥୋଡ଼ିଆସାହିକୁ ଆସିଲେ । ଜିଜୀ ହରିଦାସପୁରର ଓ ସଫା ଗାଁ ପାଖର ଜାଗା ନିଜ କେନ୍ଦ୍ରପାଇଁ ଦେଖିବାକୁ ଚାହାଁନ୍ତି । ମୋର ଧାରଣା ଯେ କୌଣସି ଅନୁଷ୍ଠାନ କରିବା ଆଗରୁ ନିମ୍ନଲିଖିତ ବିଷୟଗୁଡ଼ିକ ବିଚାର କରିବା ଦରକାର ।

୧) ସ୍ଥାନୀୟ ଲୋକସାଧାରଣଙ୍କ ସହ ପରିଚିତ ହେବା ଏବଂ କେନ୍ଦ୍ରର ଉଦ୍ଦେଶ୍ୟ, ଆବଶ୍ୟକତା, ମୂଳ ନୀତି, ଇତ୍ୟାଦି ଲୋକଙ୍କୁ ଜଣାଇ ସେମାନଙ୍କର ସେଥିପ୍ରତି ପ୍ରକୃତ ମନୋଭାବ

ଜାଣିବା, ଆଗେ ଲୋକେ କଅଣ ଚାହୁଁଛନ୍ତି, ସ୍ଥାନୀୟ ପ୍ରତିପତ୍ତିଶାଳୀ ଲୋକ ଓ ବିଚାରବାନ୍ ଲୋକଥିଲେ, ସେମାନଙ୍କର ମତିଗତି ଜାଣିବା ।

୨) ମୂଳ ଉଦ୍ଦେଶ୍ୟକୁ ଲକ୍ଷ୍ୟ ରଖି, କେନ୍ଦ୍ରକୁ ଯାତାୟତର ସୁବିଧା ।

(୩) ଲୋକାଳୟଠାରୁ କେନ୍ଦ୍ର ଦୂରତା, .. ଅବସ୍ଥିତି

(୪) ପାନୀୟ ଜଳ କିପିର ଭଲ ମିଳୁଛି । ବାଡ଼ିବଗିଚା ପାଇଁ ଜଳସେଚନ, ମୃତ୍ତିକା, ବାଡ଼, ଆଦି

(୫) ସାଧାରଣ ଜଳବାୟୁ ଓ ଖାସ୍ ରୋଗ ଆଦି

(୬) ଭବିଷ୍ୟତ ସଂପ୍ରସାରଣ ପାଇଁ ସ୍ଥାନ

(୭) ପୂର୍ବେ ସେ ଅଞ୍ଚଳରେ କୌଣସି ସେବାକାର୍ଯ୍ୟ ହୋଇଥିଲା କି, ତାହାର ପରିଣତି

(୮) ଘରତିଆରି ପାଇଁ ଉପାଦାନ ଓ ଶ୍ରମିକ

(୯) ବର୍ଷର ବିଭିନ୍ନ ଋତୁରେ ଖାସ୍ ସେ ଜାଗାରେ ପାଣି,ପବନ, ଆଦିର କିଛି ପ୍ରତିକୂଳ ଅବସ୍ଥା ଦେଖାଯାଏ କି ?

(୧୦) ସାଧାରଣ ହାଟବଜାର, ଚିକିତ୍ସାଳୟ, ଡାକଘର, ବିଦ୍ୟାଳୟ ଆଦି ।

(୧୧) ସରକାରଙ୍କର ବା ଅନ୍ୟ ବ୍ୟକ୍ତିଙ୍କର କିଛି ପ୍ରତିଯୋଗିତାମୂଳକ କାର୍ଯ୍ୟ ସେଠାରେ ଅଛି କି, ବା ହେବାର ସମ୍ଭାବନା ଅଛି କି ?

(୧୨) ସହକର୍ମୀ, ସହଯୋଗୀ କିଏ ?

୩.୧୦.୧୯୫୮

ଉପରଓଳି ଥୋଡ଼ିଆସାହିରେ ଶିକ୍ଷାର୍ଥୀମାନଙ୍କ ସହ "ସର୍ବୋଦୟ'' ବହି ପଢ଼ିଲି । ବିନୋଦ କାନୁନ୍‌ଗୋଙ୍କ ଠାରେ The Encyclopedia Americana (International Reference Work) complete 30 volumes ଦେଖିଲି ।

୫ - ୬.୧୦.୧୯୫୮

ଦିନ ଟ୍ରେନ୍‌ରେ ଜିଜୀ, ମାସୀ ଓ ଫକୀର ମିଶ୍ର ହରିଦାସପୁରକୁ ଆସିଲେ । ଶ୍ରୀମତୀ ପାର୍ବତୀ ଗିରି ଓ ମୁଁ ରାମଚନ୍ଦ୍ରପୁରକୁ ଯିବାକୁ ଆସିଲୁ, ସେମାନଙ୍କ ସହିତ । ଆମ୍ଭେମାନେ ଅଧିକାରୀ ଶ୍ରୀଯୁକ୍ତ ଚକ୍ରଧର ଦାସ, ଶ୍ରୀ ହରିଚରଣ ରାଉତ, ମଠର ପଡ଼ୋଶୀ ଭୂତିଆ, ତାହାର ସାନ ଭାଇ, କୁସୁଳିଆ ଗ୍ରାମର କେତେକ ଲୋକଙ୍କ ସହ ଜିଜୀଙ୍କର ପ୍ରସ୍ତାବିତ ମାତୃମଙ୍ଗଳ କେନ୍ଦ୍ର + ବାଳିକା ବିଦ୍ୟାଳୟ ଏବଂ ଫକୀର ବାବୁଙ୍କର ଆଗରୁ ପ୍ରସ୍ତାବିତ "ବାଳ-ନିକେତନ'' ପାଇଁ ଜାଗା ଦେଖିଲୁ । ସେମାନେ ଏ ଜାଗାକୁ ମନୋନୀତ କଲେ ।

ମୁଁ ସାମାନ୍ୟ ସୂତା କାଟିଲି । Human Value and Technological Change by Prof. Raja Krishnan ପଢ଼ିଲି ।

୧୨.୧୦.୧୯୫୮

ସକାଳେ କଦଳାମଠରେ ନେଉଳପୁର ମୌଜାର ନକ୍ସା (୧ମ ନମ୍ବର ସୀଟ୍) ଶ୍ରୀ ...trace କରିଦେଲେ । ମଠରେ ପଖାଳ ଖାଇ, ଦିନ ୧୦ଟାରେ ମୁଁ ସେଠାରୁ ଚାଲିକରି ବାହାରି, ଶଗଡ଼ିଆ ନାଳ, ପାଟପୁର, ମିର୍ଜାପୁର, ରାଆପଡ଼ା, ବନ୍ଧଡ଼ିହ, ବାଲିଆ ବାଟେ ଉପରଓଳି ୪ଟା ୧୦ ମିନିଟ୍‌ରେ ରାମଚନ୍ଦ୍ରପୁରରେ ପହଞ୍ଚିଲି । ବାଟରେ ମୁଁ କେଉଁଠି ବସିନାହିଁ କିମ୍ବା କିଛି ଖାଇନାହିଁ । ବନ୍ଧଡିହ ହାଟରେ ନଳକୂଅରୁ ପାଣି ଅଧ ଗିଲାସେ ମାତ୍ର ପିଇଥିଲି ।

୧୩.୧୦.୧୯୫୮

ସକାଳେ ମୋର ଏଠା ଜିନିଷପତ୍ର ସଜାଡ଼ିଲି ଏବଂ ଗତ ୭ ଦିନର ହିସାବ ଲେଖିଲି ।

ଉପରଓଳି ଶ୍ରୀ ବୁଲୁବାବୁ ବିନୋବାଙ୍କ ସହ ତାଙ୍କର କଥାବାର୍ତ୍ତାର ସାରାଂଶ ଏ ଅଞ୍ଚଳର ସର୍ବୋଦୟ କର୍ମୀ, ଆଗ୍ରହୀ ବ୍ୟକ୍ତି, ଗୁରୁଜୀମାନଙ୍କୁ କହିଲେ । ସନ୍ଧ୍ୟା ୮ଟାରେ ଏ ଆଲୋଚନା ସରିଲା । ଆଚାର୍ଯ୍ୟ ମହାଶୟଙ୍କର ଏଠାରୁ ତା ୩୧.୧୦ରେ ପଦଯାତ୍ରା ଏବଂ ଆଉ ବ୍ୟାପକ ସର୍ବୋଦୟ ପାତ୍ର ବସାଇବା, କଥା ଚର୍ଚ୍ଚା ହେଲା ।

୧୪.୧୦.୧୯୫୮

ବରୀ ଅଞ୍ଚଳରେ ତଳଲିଖିତ ଗ୍ରାମମାନଙ୍କରେ "ସର୍ବୋଦୟ-ପାତ୍ର'' ସ୍ଥାପିତ ହୋଇଛି :-୧) ରାମପୁର ୪୭ ଘର, ଦୁଧେଇ, ରମ୍ଭା : ୨୪ ବାଗବାରେ ୧୯ ଜଣ, ଅରଂଗାବାଦ, ଦୁବେଇସାହି, କଣ୍ଡପୋଇ : ୫୦, ରତଙ୍ଗ : ୭୮, ବାଇଁଶିରିଆ ୧୬୯, ଚନ୍ଦନପୁରରେ ୯୧ ଘର, କୃଷ୍ଣନଗର : ୧୨୮, ଅନ୍ୟାସୀପୁର : ୨୩, ମେଦୁଆକୂଳ: ୫୦, ଇନ୍ଦୁପର : ୨୭, ଧୁମାତ୍ : ୨୫, ଆନନ୍ଦପୁର : ୨୫, ବରୀ ୧୭, ହାଟସାହି: ୨୦, ପଟଣା: ୯୧, ଅଣିକଣା: ୮୩, ବେଙ୍କରାପୁର : ୪୩, ମନ୍ଦାରୀ: ୫୭, ବରହମପୁର : ୩୩ ଘର ।

ସକାଳେ ଦୋଳଗୋବିନ୍ଦ ରାଜ ରାମଚନ୍ଦ୍ରପୁରରୁ ବୈତରଣୀ-ରୋଡ଼ ବାହାରିଲେ - ଆଚାର୍ଯ୍ୟ ମହାଶୟଙ୍କର ପଦଯାତ୍ରାର ବ୍ୟବସ୍ଥା କରିବାକୁ ।

ବରୀ ମି.ଇ. ସ୍କୁଲର ହିସାବପତ୍ର ଗୋଳମାଳ ନେଇ କଅଣ ପବ୍ଲିକ୍ ଅସନ୍ତୋଷ ଗତ ୮/୧୦ ଦିନ ହେଲା ଘଟିଛି । ଆଜି ବରୀର ଶ୍ରୀ ପୁରୁଷୋତ୍ତମ ଖୁଣ୍ଟିଆ, ବାଗଦାର ଶ୍ରୀ ସୁଭାଷଚନ୍ଦ୍ର ଦାସ, ଆଦି ମୋଠାକୁ ଆସିଥିଲେ । ମୁଁ ସେମାନଙ୍କୁ କହିଲି ଯେ ଆଜିକାଲି ଅଧିକାଂଶ ଲୋକ - ଆମ୍ଭେମାନେ ନିଜେ ସଚ୍ଚୋଟ ନ ଥିବାରୁ, ଏପରି ଗଣ୍ଡଗୋଳ ହେଉଛି । ବନାରସ

ବିଶ୍ୱବିଦ୍ୟାଳୟରେ ମଧ୍ୟ ଏପରି ବିରାଟ ଗୋଳମାଳ ହୋଇଛି । ଆମେ ଆଗେ ପ୍ରତ୍ୟେକେ ନିଜ ଭିତରୁ ମନ୍ଦ ଭାବନା, ଅନୀତି ଦୂର କରୁ । ଏହା କେବଳ ବରୀ ମି.ଇ. ସ୍କୁଲକୁ ସଜାଡ଼ିବାରେ ନାହିଁ । ସମସ୍ତେ ବସି ଶୀଘ୍ର ସେହି ସ୍କୁଲର ଗୋଳମାଳ ତୁଟାଇ ଦିଅନ୍ତୁ ଏବଂ ପିଲାମାନଙ୍କର ପଢ଼ାପଢ଼ି ଓ ଆଚରଣରେ ଆଉ କ୍ଷତି ନ ଘଟୁ ।

୧୫.୧୦.୧୯୫୮

ଗୋପାଳବାଡ଼ି (ପୋ. କୁମୁତୁଲୁପେଟା, ଜିଲ୍ଲା: କୋରାପୁଟ) ଶିବିରକୁ ମୁଁ ଯାଇପାରିବି ନାହିଁ ବୋଲି ରାଧାରତନ ଦାସଙ୍କୁ ଚିଠି ଲେଖିଲି । ରାୟଗଡ଼ାରେ ଥିବା ଛାତ୍ର ଅଚ୍ୟୁତାନନ୍ଦ ପରିଡ଼ାକୁ ତାହାର ଚିଠିର ଉତ୍ତର ଦେଲି । ଉପରଓଳି ଅନ୍ୟମାନଙ୍କ ସହ ମୋର ଧାରର ଲେଜର ତା ୧.୧.୧୯୫୮ ରୁ ୧୫.୧୦.୧୯୫୮ ପର୍ଯ୍ୟନ୍ତ ବାହାର କଲି । ବାଲିବିଲର ସଂସ୍କୃତ ପଣ୍ଡିତ ଶ୍ରୀ ଜଗବନ୍ଧୁ ପତି ଆସିଥିଲେ, ଟିକିଏ କଥାବାର୍ତ୍ତା କଲି + ଆଚାର୍ଯ୍ୟ ମହାଶୟଙ୍କ ପଦଯାତ୍ରା ବିଷୟରେ ।

ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନଙ୍କୁ ସନ୍ଧ୍ୟା ପରେ ଛାତ୍ରମାନଙ୍କର ପରୀକ୍ଷା ସମ୍ବନ୍ଧରେ ମୁଁ, ଶ୍ରୀ ଭୁବନାନନ୍ଦ ସ୍ୱାଇଁଙ୍କର ଅନୁରୋଧ କ୍ରମେ ଘଣ୍ଟାଏ କହିଲି ।

୧୬.୧୦.୧୯୫୮

ସକାଳେ ଜଳଖିଆ କରିବାବେଳେ ଜିଜୀ ତାଙ୍କର ଅନୁଷ୍ଠାନକୁ କସ୍ତୁରବା ବା ସରକାରଙ୍କର ଅଧୀନତାରେ ରଖିବେ ନାହିଁ ଏବଂ ଏକ ଟ୍ରଷ୍ଟ କରି ସର୍ବସାଧାରଣଙ୍କର ଓ ଅନ୍ୟ ସଂସ୍ଥା ଏବଂ ସରକାରଙ୍କର ସାହାଯ୍ୟ ଓ ଗ୍ରାଣ୍ଟ ନେଇ, ଚଳାଇବେ ବୋଲି କହିଲେ ।

ମୋର ବହିପତ୍ର, ବିନୋବା-ପ୍ରବଚନ ୧୯୫୫, ୫୬ ଓ ୫୭ର ତାରିଖବାରୀ ସଜାଡ଼ିଲି । ପ୍ରାୟ ୪ ଘଣ୍ଟା ଲାଗିଲା । ଗମ୍ଭୁ ଜମିର ଗଣ୍ଡଗୋଳ ଭୁବନାନନ୍ଦ ବାବୁ କହିଲେ । ୧୪୪ ଧାରା ଜାରୀ ହୋଇଛି ।

୨୦.୧୦.୧୯୫୮

କାଲି ଉପରଓଳି ଭଲ ଅସରାଏ ବର୍ଷା ହୋଇଥିଲା । ଆଜି ଭୋର ସାମାନ୍ୟ ୨ ଟୋପା ପକାଇଲା । ମୁଁ କେତୋଟି ଗେଣ୍ଡୁଗଛ ତଳି ଲଗାଇଲି । ଶ୍ରୀ ବେଣୁଧର ବେଉରା, ଭୁବନାନନ୍ଦ ସ୍ୱାଇଁ, କୈଳାଶଚନ୍ଦ୍ର ନାଥ, ଡ଼େଲିଭରି ଏଜେଣ୍ଟ ଭଜ ଓ ଗୋବିନ୍ଦ ସାମଲ ଏବଂ ପୋଷ୍ଟମାଷ୍ଟର ରସିଦ ମିଆଁ ଥାଇ, ଶ୍ରୀ ଚନ୍ଦ୍ରମଣି ବେଉରାଙ୍କ ବିରୋଧରେ ପୋଷ୍ଟମାଷ୍ଟରଙ୍କର ଅଭିଯୋଗ କଥା ପଡ଼ିଲା । ସଂପୃକ୍ତ ଦୁଇ ପକ୍ଷର ଲୋକେ ଅଭିଯୋଗକୁ ଲାଘବ କରି ଥୋଇଲେ ଏବଂ ମିଳାମିଶା ହୋଇଗଲେ । ଅନ୍ୟାୟ ଅନୁରୋଧ କରିବା ଓ ଅନ୍ୟାୟକୁ ପ୍ରଶ୍ରୟ ଦେବା ଅନୁଚିତ ବୋଲି ଭୁବନାନନ୍ଦ ବାବୁ ଓ ମୁଁ ଶେଷରେ ମତ ବ୍ୟକ୍ତ କଲୁ ।

ସନ୍ଧ୍ୟା ପର୍ଯ୍ୟନ୍ତ ମୋଟରେ ପ୍ରାୟ ୭ ଘଣ୍ଟା ମୁଁ ଜିଜୀଙ୍କର ମାତୃମଙ୍ଗଳ କେନ୍ଦ୍ରର ନକ୍ସା ଅଙ୍କନରେ ଦେଲି । କାଇପଡ଼ାର ଶ୍ରୀ ରସାନନ୍ଦ ଶର୍ମା ଆସି ଦେଖାକଲେ, ଏକ ନିଦର୍ଶନ-ପତ୍ର ନେବାକୁ । ସନ୍ଧ୍ୟାପରେ ବାବୁଲି ମୋଠାରେ ଇଂରାଜୀ ପଢ଼ିଲା ।

୨୨.୧୦.୧୯୫୮

ଆଜି ସକାଳେ ବିନୋବା-ପ୍ରବଚନ ୬ଟି (ଜାନୁଆରୀ ୫୬ର ) ପଢ଼ିଲି ଓ topical note କଲି ।

ବୈରାଗୀକୁ ବୁଝାଇ କହିଲି ଯେ ସେ ଅନ୍ୟର ନିନ୍ଦା ମୋ ଆଗରେ ନ କରି, ଅନ୍ୟର ପ୍ରଶଂସା ଓ ଭଲ କାର୍ଯ୍ୟ କରିଥିବା କଥା କହିବ । ଆମ୍ଭେମାନେ ଅନ୍ୟମାନଙ୍କର ନିନ୍ଦା ଶୁଣିବା ଓ କରିବା ଅନୁଚିତ ।

୨୫.୧୦.୧୯୫୮

ସକାଳେ ହରିଚରଣ ଜେନାଙ୍କ ଘରେ ଜଳଖିଆ ଖାଇଲୁ । ଶ୍ରୀ ମଧୁ ଜେନାଙ୍କ ପୁଅ ରାମ ଜେନା ୧୯୪୨ରେ ଗୁଳିମାଡ଼ ଆଘାତ ହାତରେ ପାଇଥିଲେ । ତାଙ୍କୁ କାହିଁକି ରାଜନୈତିକ ପେନ୍‌ସନ୍ ମିଳିଲା ନାହିଁ, ତାହା ଅଭିଯୋଗ କରି, ସେ "ସର୍ବୋଦୟ-ପାତ୍ର'' ବସାଇବାରେ ତାଙ୍କ ଘରେ ଓ ପଡ଼ିଶା ଘରେ ବାଧା ଦେଇଛନ୍ତି !

ମୋର ଉପରପାଟିର ସମାନା ଦାନ୍ତ ଏକଦମ୍ ହଲୁଛି ଏବଂ ତାହା ମୂଳରେ ବଥା ହୋଇ ଧକ୍ ଧକ୍ ହେଉଛି ।

ବିନୋବା ଲେଖିଛନ୍ତି : "ମୋର ଆଶା ଥିଲା ଯେ ଦେଶର ସମସ୍ତ ରଚନାତ୍ମକ ଓ ଭୂଦାନକର୍ମୀ ବିନା ଦ୍ୱିଧାରେ ଶାନ୍ତିସେନାରେ ନାମ ଦେବେ । ମାତ୍ର ଏପର୍ଯ୍ୟନ୍ତ ଖୁବ୍ କମ୍ କର୍ମୀ ଏଥିରେ ନାମ ଦେଇଛନ୍ତି । ମୋଟରେ ଅଢ଼େଇ ଶହ ହେବେ । XXX । ଯଦି ସେବକମାନେ ନିଜଠାରେ ଭରସା ବା ରାମ-ଭରସା ପାଉନାହାନ୍ତି, ତେବେ ସେମାନେ ବରଂ ସାଧାରଣ କ୍ଷେତ୍ରରୁ ଅବସର ନେଇ ଅନ୍ୟ କାମରେ ଲାଗିବା ଭଲ । ସର୍ବୋଦୟ କାମ କରୁଛୁ ବୋଲି କହି, କ୍ଷେତ୍ରରେ ଉପରେ ରହିବା ଅଥଚ ଶାନ୍ତିସେନା ନ ହେବା ଦ୍ୱାରା ଦେଶର ବରଂ କ୍ଷତି ହେବ ।'' (ପୃ ୨୭୧, ୩୦ଶ ସଂଖ୍ୟା, ତା ୨୧.୧୦.୧୯୫୮ ଗ୍ରାମସେବକ ପତ୍ରିକାରୁ) । ଏହା ଗଭୀର ଭାବରେ ମୋର ଚିନ୍ତା କରିବାର କଥା ।

୩୦.୧୦.୧୯୫୮

ଶ୍ରୀଯୁକ୍ତ ନବବାବୁ କେତେବେଳେ ରାମଚନ୍ଦ୍ରପୁର ଗୁରୁଜୀମାନଙ୍କ ଏବଂ

ଛାତ୍ରାଭିଭାବକମାନଙ୍କ ସହ ମୌଳିକ ଶିକ୍ଷା ବିଷୟରେ ଆଲୋଚନା କରିବେ, ସେଥିର ସମୟ ପୂର୍ବରୁ ଠିକ୍ ହୋଇ ନଥିବାରୁ, ଭୁବନାନନ୍ଦ ବାବୁ ଓ ବୋଉ ବ୍ୟସ୍ତ ହେଲେ ।

ବୁଲୁବାବୁ, ଦାଦା, ଫକୀରବାବୁ ଓ ମୁଁ ରାମଚନ୍ଦ୍ରପୁରକୁ ଆସି, ସ୍କୁଲର ଗୁରୁଜୀମାନଙ୍କ ସହ ସ୍କୁଲ ସଂପର୍କରେ ଆଲୋଚନା କଲୁ । ଏହି ଆଲୋଚନାରେ କେତେକ ଅଭିଭାବକ ମଧ୍ୟ ଯୋଗ ଦେଇଥିଲେ । ମୁଁ ବୋଉ, ଚୁନୀ ଦେବୀ, ଜିଜୀ ମଧ୍ୟ ଉପସ୍ଥିତ ଥିଲେ । ବରୀରେ ଶ୍ରୀ ବାଙ୍କବିହାରୀ ଦାସ, ଏମ୍.ଏଲ୍.ଏଙ୍କ ସଭାପତିତ୍ୱରେ ଆଜି ଆଚାର୍ଯ୍ୟ ମହାଶୟଙ୍କର ପଦଯାତ୍ରା-ରହଣିର ସଭା ହେଲା । ଶ୍ରୀଯୁକ୍ତ ନବବାବୁ ଭାଷଣ ଦେଇଥିଲେ । ପ୍ରାୟ ୪୫୦ ଲୋକ ହୋଇଥିଲେ ।

୩୧.୧୦.୧୯୫୮

ଆଚାର୍ଯ୍ୟ ମହାଶୟ ରାମଚନ୍ଦ୍ରପୁରରେ । ବାବୁଲି (ଜ୍ଞାନଦେବ)ର ଜନ୍ମଦିବସ । ୧୩ ବର୍ଷ ପୂର୍ଣ୍ଣ ହେଲା ।

ଭୋର ଉପାସନା ପରେ ଶ୍ରୀଯୁକ୍ତ ନବବାବୁ, ଫକୀର ମିଶ୍ର, ବୋଉ (ରମାଦେବୀ), ଜିଜୀ, ଗୁରୁଜୀମାନେ ଏହି ସ୍କୁଲର କାର୍ଯ୍ୟ ବିଷୟରେ ଚର୍ଚ୍ଚା କଲେ । କର୍ମୀ (ଶିକ୍ଷକ) ମାନଙ୍କର ପରସ୍ପର ମଧ୍ୟରେ ଭାବ (ସ୍ନେହ, ଆଦର, ସହୃଦୟତା) ପୂରା ନାହିଁ ଏବଂ କିପରି ରହିବ, ପ୍ରଧାନ ଚର୍ଚ୍ଚା ଥିଲା ।

ଆଚାର୍ଯ୍ୟ ମହାଶୟ, ବୁଲୁବାବୁ ଆଦି ବରୀରୁ ଆସି ରାମଚନ୍ଦ୍ରପୁର ପୂର୍ବମୌଳିକ ଘରେ ଗ୍ରାମବାସୀମାନଙ୍କର ଅତିଥି ହୋଇ ସକାଳ ୭.୩୦ରେ ପହଞ୍ଚିଲେ । ଏ ଅଞ୍ଚଳର "ସର୍ବୋଦୟ ପାତ୍ର''ର କର୍ମୀମାନେ ଏବଂ ଗ୍ରାମଗୁଡ଼ିକର ସହଯୋଗୀମାନେ ଆସି ନ ଥିବାରୁ, ଏକ ସମ୍ମିଳନୀର ଆକାର ଶ୍ରୀ ବୁଲୁବାବୁ ନ ଦେଖି, ସକାଳୁ ଭାରୀ ଖପ୍ପା ହେଲେ ଏବଂ ଚିଡ଼ିମିଡ଼ି କହିଲେ । ଏପରି ଚିଡ଼ିବାଦ୍ୱାରା ସହକର୍ମୀମାନେ ଓ ପାଖକୁ ଆସିଥିବା (କେତେକ ମାତ୍ର)ଗ୍ରାମବାସୀମାନେ ମନରେ ଉତ୍ସାହ ପରିବର୍ତ୍ତରେ ନୈରାଶ୍ୟ, ବିରକ୍ତି ଅନୁଭବ କରୁଛନ୍ତି ଏବଂ ବରଂ ଦୂରେଇ ଯିବେ । ଶ୍ରୀ ରଙ୍ଗାଧର ଦାସଙ୍କୁ ବିରକ୍ତ ହୋଇ, ବୁଲୁବାବୁ କହିବାକୁ ଆରମ୍ଭ କରିବାରୁ, ମୁଁ ଚୁପ୍ କରି ସେଠାରୁ ଉଠିଆସିଲି ।

ଉପରଓଳି ରାମଚନ୍ଦ୍ରପୁର ଗ୍ରାମଭିତରେ ସ୍ତ୍ରୀଲୋକମାନଙ୍କର ଏକ ବୈଠକ ହେଲା । ଆଚାର୍ଯ୍ୟ ମହାଶୟଙ୍କ ଠାରୁ ସେମାନେ ସର୍ବୋଦୟ ବିଷୟରେ ଶୁଣିଲେ । ସେହି ସମୟରେ (ଉପରଓଳି ୨.୩୦ ରୁ ୫ଟା ପର୍ଯ୍ୟନ୍ତ) ସ୍କୁଲରେ ଆମ୍ଭେମାନେ ମୌଳିକ ଶିକ୍ଷା, ବିଶେଷରେ ଏହି ସ୍କୁଲର ପାଠପଢ଼ା ଓ ଧନ୍ଦା କାର୍ଯ୍ୟରେ ଅବହେଳା, ପାସ୍ କରିଯାଇଥିବା ଛାତ୍ରମାନଙ୍କର ମନରେ ଲଘୁତା-ଗ୍ରନ୍ଥି((inferior complex), ସେବାଗ୍ରାମରେ ମଧ୍ୟ ଛାତ୍ରମାନଙ୍କର ପାଠ-

ଜ୍ଞାନ ହେଲା ନାହିଁ - ବିଷୟରେ ଆଲୋଚନା କଲୁ । ପୂର୍ବ ଛାତ୍ର ଗିରିଶ ଚନ୍ଦ୍ର ରାୟ ମଧ୍ୟ ଉପସ୍ଥିତ ଥିଲା ।

ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପଟ୍ଟନାୟକ (କଲ୍ୟାଣପୁରବାସୀ)ଙ୍କ ସଭାପତିତ୍ୱରେ ରାମଚନ୍ଦ୍ରପୁର ବାଲିକାଣ୍ଟିଆରେ (ଯେଉଁଠି ୧୯୫୫ରେ ଆଚାର୍ଯ୍ୟ ବିନୋବା ଭାବେ ଏବଂ ୨୩.୪.୧୯୫୭ରେ ଜୟପ୍ରକାଶ ନାରାୟଣ ଭୂଦାନ ଗସ୍ତରେ ଭାଷଣ ଦେଇଥିଲେ ) ଆଚାର୍ଯ୍ୟ ମହାଶୟଙ୍କର ପଦଯାତ୍ରା ରହଣିର ସଭା ହେଲା । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଭାଷଣ ଦେଇ ବୁଝାଇଲେ କିପରି ଫସଲ ଉତ୍ପାଦନ କରୁଥିବା ଚାଷୀ ଭୂମିହୀନ ମୂଲିଆଙ୍କର ମଜୁରିବୃଦ୍ଧି (କିଣିଖିଆ ଯୋଗୁଁ ) ଏବଂ ସହରବାସୀଙ୍କର ଚାପରେ (ଦୁଇ ଚକିପଟ ତଳେ) ଚାପି ହୋଇ ଯାଉଛନ୍ତି ଏବଂ (ଗ୍ରାମଦାନ) ଗ୍ରାମ-ଏକତା, ସମୂହଭାବନା ଏବଂ ଗ୍ରାମବାସୀମାନଙ୍କର ନିଜର ପ୍ଲାନିଂରେ କାମ ହେଉ ନ ଥିବାରୁ, କେନ୍ଦ୍ର ଓ ପ୍ରାଦେଶିକ ସରକାରମାନଙ୍କ ଦ୍ୱାରା ଏବଂ ତ୍ୟାଗୀ, ବିଚକ୍ଷଣ ନେତାମାନଙ୍କ ଦ୍ୱାରା, ସରକାରୀ କର୍ମଚାରୀମାନଙ୍କ ଦ୍ୱାରା କୌଣସି ଯୋଜନା ଫଳପ୍ରସୂ ହୋଇ ପାରୁନାହିଁ । ଶ୍ରୀ ବୁଲୁବାବୁ ନିଜର ମନର ବିରକ୍ତିରେ ଆଜି ଉପରଓଳିର ଓ ସନ୍ଧ୍ୟାର କୌଣସି ସଭାରେ ଯୋଗ ଦେଇ ନ ଥିଲେ ।

୧.୧୧.୧୯୫୮

ଆଚାର୍ଯ୍ୟ ମହାଶୟ ଭୋର ବାଲିବିଲ ଗ୍ରାମକୁ ଯାଇ ବୁଲିଆସିଲେ । ରାମଚନ୍ଦ୍ରପୁର ସ୍କୁଲର ଅଫିସ ଘରେ ରହିଲେ । ରାମଚନ୍ଦ୍ରପୁର ମୌଳିକ ଶିକ୍ଷା ପରିଷଦର ବୈଠକ ସକାଳ ୮.୩୦ ଟାରୁ ୧୨ଟା ପର୍ଯ୍ୟନ୍ତ ଏବଂ ଉପରଓଳି ୨.୩୦ ରୁ ୫.୩୦ ଟା ପର୍ଯ୍ୟନ୍ତ ହେଲା । ମୁଁ ୧୯୪୮ ଠାରୁ ପରିଷଦର ସଦସ୍ୟ ନାହିଁ ମାତ୍ର ବିଶେଷ ନିମନ୍ତ୍ରଣରେ ଏ ବୈଠକରେ ଯୋଗ ଦେଇଥିଲି । ଶ୍ରୀ ବୁଲୁବାବୁ ମନ ଖରାପ ଥିବାରୁ ଯୋଗ ଦେଇ ନଥିଲେ ।

ଯାହାହେଉ, ସେ, ରଙ୍ଗାଧରବାବୁ, ପଦ୍ମନାଭରାୟ ବାବୁ, ଦୋଳଗୋବିନ୍ଦ ରାଜ, ବୈଷ୍ଣବ ସାମଲ, ରାଜୀବ ସାମଲ, ଗଣେଶ ବାବୁ, କଣ୍ଟୁରି ଶାନ୍ତି, ଗୋବିନ୍ଦ ସାମଲ, ଆଦି ଏ ଅଞ୍ଚଳରେ ସର୍ବୋଦୟ ପାତ୍ର ସ୍ଥାପନ କଥା ଉପରଓଳି ୨ ଘଣ୍ଟା ଚର୍ଚ୍ଚା କରିଥିଲେ । ମୁଁ ନ ଥିଲି । ପରେ ଶୁଣିଲି ଯେ ଗଣେଶ ବାବୁ ବାଲିଆପାଳ, ବରୀ ଅଞ୍ଚଳରେ, ଦୋଳଗୋବିନ୍ଦ ବାବୁ ରାମଚନ୍ଦ୍ରପୁର-କାଇପଡ଼ା କୃଷ୍ଣନଗର ଅଞ୍ଚଳରେ, ଶ୍ରୀ ରଙ୍ଗାଧର ଦାସ ଚନ୍ଦ୍ରଶେଖରପୁର, ରାମପୁର, ଚନ୍ଦନପୁର, ହଳଦୀବସନ୍ତ, ଧାରପୁର, ଅଲିଆବାଦ, ଆଦି ଅଞ୍ଚଳର ଭାର ନେଲେ । ସନ୍ଧ୍ୟାରେ ଘଣ୍ଟାଏ ଉତ୍ତରମୌଳିକର ଛାତ୍ରମାନେ ଓ ପଣ୍ଡିତ ଜଗବନ୍ଧୁ ପତି ସଂସ୍କୃତ ଭାଷାରେ ଅମ୍ବରୀଶ ନାଟକ ଅଭିନୟ କଲେ । ଆଚାର୍ଯ୍ୟ ମହାଶୟ, ନବବାବୁ, ଆମ୍ଭେମାନେ ତାହା ଦେଖିଲୁ ।

୨.୧୧.୧୯୫୮

ଆଚାର୍ଯ୍ୟ ହରିହର ଦାସ, ଶ୍ରୀ ମନମୋହନ ଚୌଧୁରୀ, ପଦ୍ମନାଭ ରାୟ, ଆଦି ସର୍ବୋଦୟ ପଦଯାତ୍ରାରେ ରାମଚନ୍ଦ୍ରପୁରରୁ କୃଷ୍ଣନଗର ଗଲେ। ଦାଦା (ନବବାବୁ) ଓ ବେଙ୍ଗ ଅପା କଟକ ଅଭିମୁଖେ ଗଲେ - ଇନ୍ଦୁପୁର, ଚଉଦକୁଲାଟ ବାଟେ।

ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନଙ୍କର ବୈଠକରେ ରମାଦେବୀ, ଫକୀର ମିଶ୍ର, ବାସୁଦେବ ମହାନ୍ତି, ରମ୍ଭା ଦେବୀ, ମୁଁ ଯୋଗ ଦେଲୁ। ଉପରଓଳି ଫକୀର ମିଶ୍ର, ବାସୁବାବୁ ଓ ମୁଁ କୃଷ୍ଣନଗର ଯାଇ, ଆଚାର୍ଯ୍ୟ ମହାଶୟଙ୍କର ସନ୍ଧ୍ୟା ଉପାସନା ଓ ସଭାରେ ଯୋଗ ଦେଇ, ରାତି ୯ଟାରେ ରାମଚନ୍ଦ୍ରପୁରକୁ ଫେରିଲୁ।

୩.୧୧.୧୯୫୮

ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନଙ୍କର ବୈଠକରେ ସକାଳ ୯ରୁ ଗୋଟାକ ପର୍ଯ୍ୟନ୍ତ ଆମ୍ଭେମାନେ ପୂର୍ବଦିନ ପରି ଯୋଗ ଦେଲୁ। ସେଥିରେ ମୁଁ ଖୁବ୍ ଦୃଢ଼ତା ସହକାରେ କହିଲି ଯେ ଏଠାରେ ସରକାରଙ୍କୁ challenge କରି ୧୯୪୧ ଠାରୁ ଲୋକେ ଓ ଶିକ୍ଷକମାନେ ମୌଳିକ ଶିକ୍ଷାକାର୍ଯ୍ୟ କରି ଆସିଛନ୍ତି (୧୯୪୨ ରୁ ୧୯୪୪ ପର୍ଯ୍ୟନ୍ତ ଜେଲରେ ଅବଶ୍ୟ ଅଧିକାଂଶ କର୍ମୀ-ଶିକ୍ଷକ ଥିଲେ।)

ବର୍ତ୍ତମାନ ମଧ୍ୟ ସେହି challenge ରହିଛି ତାହାକୁ ମନେ କରି, ଗାନ୍ଧୀଜୀଙ୍କର ୧୯୪୧ର ଆଶୀର୍ବାଦ-ପତ୍ରକୁ ଭାବି, ସମସ୍ତେ କାର୍ଯ୍ୟ କରନ୍ତୁ। ତାହାହେଲେ ମୁଁ ସଙ୍ଗରେ ଥିବି। (ମୁଁ ତା ୩୧.୧୦.୫୮ର ଭୋର ମଧ୍ୟ କହୁଥିଲି ଯେ ପୂରା experimmentalist ର ମନୋଭାବରେ ମୁଁ ଏହି ଶିକ୍ଷାକାର୍ଯ୍ୟରେ ୧୯୩୯ ଠାରୁ ଏ ପର୍ଯ୍ୟନ୍ତ ସଂପୃକ୍ତ ଅଛି।) ଓଡ଼ିଶାର ଶିକ୍ଷାମନ୍ତ୍ରୀ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଅଳ୍ପଦିନ ପୂର୍ବେ ମୌଳିକ ଶିକ୍ଷାର ଯେଉଁ ଦୁରାବସ୍ଥା ଦେଖି ତାହାକୁ ଅନାସ୍ଥାସୂଚକ ଭାବରେ ଲେଖିଛନ୍ତି, ସେଥିପ୍ରତି ଆମର ତୀକ୍ଷ୍ଣ ଦୃଷ୍ଟି ରଖି, କାର୍ଯ୍ୟ ଠିକ୍ କରି ଜବାବ୍ ଦେବା ଉଚିତ। ସେ educator ବା educationist ସୁଦ୍ଧା ନୁହନ୍ତି, ମୋର ଧାରଣା, ଅତଏବ, ତାଙ୍କର ସମାଲୋଚନା ଭୁଲ।

ଫକୀର ମିଶ୍ର ଓ ବାସୁବାବୁ ଯାଜପୁର ଗଲେ।

୪.୧୧.୫୮

ଉପରଓଳି ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନଙ୍କର ବୈଠକରେ ବୋଉ ଓ ମୁଁ ଯୋଗ ଦେଲୁ। ଉତ୍ତର ମୌଳିକ ବିଭାଗ ଓ ୮ମ ସୋପାନ ପର୍ଯ୍ୟନ୍ତ ମୌଳିକ ବିଭାଗର ଜଣେ ମାତ୍ର ପ୍ରଧାନ ଗୁରୁଜୀ ରହିବା ଉଚିତ ବୋଲି ମୁଁ ମତ ଦେଲି ଏବଂ ଏହା ସମସ୍ତେ ଗ୍ରହଣ

କଲେ । ଆଶ୍ଚର୍ଯ୍ୟ କଥା ଯେ ଏହାର ଗୋଶାଳାରେ ବଳଦ ୨ଟିର ତତ୍ତ୍ୱ ଉତ୍ତର ମୌଳିକ ବିଭାଗ ଏବଂ ଗାଈବାଛୁରୀଙ୍କର ତତ୍ତ୍ୱ ମୌଳିକ ବିଭାଗ ବୁଝୁଥିଲେ । ଅମରବାବୁ ଏ ପୃଥକ୍‌ଭାବ ସବୁ ଚାହୁଁଥିଲେ ବୋଲି ଅନ୍ୟ ଗୁରୁଜୀମାନେ କହିଲେ । ସେ ଆଜି ଉପସ୍ଥିତ ନ ଥିଲେ ।

ଆଚାର୍ଯ୍ୟ ହରିହର ଦାସଙ୍କ ପଦଯାତ୍ରା ପ୍ରୋଗ୍ରାମ୍ :୧.୧୧.୫୮ : ରାମଚନ୍ଦ୍ରପୁରରେ, ତା ୨ - କୃଷ୍ଣନଗର, ତା ୩ରେ ଇନ୍ଦୁପୁର, ତା ୪ରେ ନହଙ୍ଗ (ଛୋଟିବାଟେ), ତା ୫ରେ କେନ୍ଦ୍ରାପଡ଼ା, ତା ୬ରେ ମଧୁସାଗର, ତା ୭ରେ ମାର୍ଶାଘାଇ, ତା ୮ରେ କଳପଡ଼ା, ତା ୯ରେ କରିଲୋପାଟଣା, ତା ୧୦ରେ କୋରୁଆ, ତା ୧୧ରେ ତେଣ୍ଡାକୁଡ଼ା, ତା ୧୨ରେ ଗନେଇଲୋ, ତା ୧୩ରେ ସଅଁରା, ତା ୧୪ରେ ବନ୍ଧାଳନ, ତା ୧୫ରେ ବାହାରଣା, ତା ୧୬ରେ ବାଲିକୁଦା, ତା ୧୭ରେ ଡିହସାହି, ତା ୧୮ରେ ଜଗତ୍‌ସିଂହପୁର, ତା ୧୯ରେ ତରୀକୁନ୍ଦ, ତା ୨୦ରେ ବାଗଲପୁର, ତା ୨୧ରେ ବିରିଡ଼ିହାଟ, ତା ୨୨ରେ ସିଦ୍ଧେଶ୍ୱରପୁର, ତା ୨୩ରେ ନିମେଇଶପୁର, ତା ୨୪ରେ ନୂଆବଜାର, ତା ୨୫ରୁ କଟକ ସହର, ୩୦ ନଭେମ୍ବର ଏବଂ ୧ ଡିସେମ୍ବର । ତା ୨ ରୁ ୬ ଡିସେମ୍ବାର ଆଠଗଡ଼ ଓ ଚୌଦ୍ୱାର ଅଞ୍ଚଳ, ଡିସେମ୍ବର ୬ ରୁ ତା ୯ ଜାନୁଆରୀ, ୧୯୫୯ ପର୍ଯ୍ୟନ୍ତ ଢ଼େଙ୍କାନାଳ ଜିଲ୍ଲାରେ ।

୬.୧୧.୧୯୫୮

ମୁଁ ଭୋର ନାଗେଶ୍ୱରପୁର ମୌଳିକ ବିଦ୍ୟାଳୟରେ ନିତ୍ୟକର୍ମ ସାରି ଭାତ ଖାଇ ପ୍ରାୟ ଘ ୬.୩୦ରେ କେନ୍ଦ୍ରପଡ଼ା ସହରରେ ପହଞ୍ଚିଲି । ସେଠାରୁ ଆଚାର୍ଯ୍ୟ ମହାଶୟଙ୍କ ସହ ପଦଯାତ୍ରାରେ ଇଚ୍ଛାପୁର, ମଧ୍ୟଖଣ୍ଡି, ବୀରସ୍ୱତୀ, ନୋଳିଆ, ନରଣପୁର, କୁହୁଡ଼ି, ଅରଖିଆ, କରିପଡ଼ା, ବାଟେ ମଧୁସାଗର ବିଦ୍ୟାପୀଠରେ ପହଞ୍ଚିଲୁ । ସର୍ବଶ୍ରୀ ରଙ୍ଗାଧର ଦାସ, ପଦ୍ମନାଭ ରାୟ, ମନମୋହନ ଚୌଧୁରୀ, ନୂଆ ଯୁବକ ଅତୁଲ୍ୟଚନ୍ଦ୍ର ଜେନା, ପ୍ରଭାକର ଜେନା ଆଦି ସହଯାତ୍ରୀ ଥିଲେ । ମଧୁସାଗରରରେ ଶ୍ରୀ ଚିନ୍ତାମଣି ସ୍ୱାଇଁ, ସୁରେନ୍ଦ୍ରଚନ୍ଦ୍ର ସ୍ୱାଇଁ, ଦିବାକର ପରିଡ଼ା, ଅକ୍ଷୟକୁମାର ଦାସ ଗୁରୁଜୀ ଅଛନ୍ତି । ଶ୍ରୀମତୀ ଫୁଲ ଦେବୀ ଓ ଚିନ୍ତାମଣି ବାବୁଙ୍କ ମାତା ଆଚାର୍ଯ୍ୟ ମହାଶୟଙ୍କୁ ଅଭ୍ୟର୍ଥନା କରିଥିଲେ ।

୰ଗୋପବାବୁଙ୍କର ନାମରେ "ଗୋପଭବନମ୍" ବୋଲି ଏକ ନୂଆ ଘରର ଉଦ୍‌ଘାଟନ ଆଜି ଆଚାର୍ଯ୍ୟ ମହାଶୟଙ୍କ ହାତରେ ଏହି ଅନୁଷ୍ଠାନର ବ୍ୟକ୍ତିମାନେ କରାଇଲେ । ସନ୍ଧ୍ୟାରେ ଏହି ଘରଡିହରେ ସର୍ବୋଦୟ ସଭା ହେଲା । ଶ୍ରୀ କ୍ଷେତ୍ରବାସୀ ଦାସ (ଘର ନେମ୍ବରା) ସଭାପତି ହୋଇଥିଲେ ।

୭.୧୧.୧୯୫୮

ସକାଳେ ବର୍ଷା ହେଉଥାଏ । ଆମ୍ଭେମାନେ ବାଲିସାହି ଦେଇ ମାର୍ଶାଘାଇକୁ ଆସିଲୁ । (ବୁଲୁବାବୁ କେନ୍ଦ୍ରାପଡ଼ାରୁ କଟକ ଗଲେ - ମେଦିନୀପୁର ଯିବେ ବୋଲି)

ଏଠାର ଏମ୍.ଏଲ୍.ଏ., ଶ୍ରୀ ପ୍ରହ୍ଲାଦ ମଲ୍ଲିକ, ସାର୍ବଜନୀନ କର୍ମୀ ଶ୍ରୀ ବୃନ୍ଦାବନ ଲେଙ୍କା, ସରପଞ୍ଚ ରଘୁନାଥ ରଥ, ହାଇସ୍କୁଲର ହେଡ୍‌ମାଷ୍ଟର ମହେଶ୍ୱର ମହାପାତ୍ର, ଶ୍ରୀମତୀ ବିମଳା ଦେବୀ, ଶ୍ରୀମତୀ ଶାନ୍ତିଦେବୀ ଆଦି ଯୋଗ ଦେଇଥିଲେ । ହାଇସ୍କୁଲରେ ଛାତ୍ରମାନଙ୍କୁ ମୁଁ ସର୍ବୋଦୟ ମୂଳସିଦ୍ଧାନ୍ତ ଓ ଆଚାର୍ଯ୍ୟ ମହାଶୟଙ୍କର ଜୀବନୀରୁ କେତେକ ଶିକ୍ଷଣୀୟ ଓ ଆଚରଣୀୟ ବିଷୟରେ କହିଲି ।

ସନ୍ଧ୍ୟାରେ ସାଧାରଣ ସଭାରେ ପ୍ରାୟ ହଜାରେ ଲୋକ ହୋଇଥିଲେ । ଶ୍ରୀ ମହେଶ୍ୱର ମହାପାତ୍ର ସଭାପତି ହୋଇଥିଲେ । ମୁଁ ସର୍ବୋଦୟ ବିଚାର ବିଷୟରେ ଓ ଆଚାର୍ଯ୍ୟ ମହାଶୟ ସର୍ବୋଦୟ ପାତ୍ର ସ୍ଥାପନ ବିଷୟରେ କହିଥିଲେ । ଶ୍ରୀ ପଦ୍ମନାଭ ରାୟ ମଧ୍ୟ କହିଥିଲେ । ଆମ୍ଭେମାନେ ଉ.ପ୍ରା. ସ୍କୁଲ ଘରେ ଥିଲୁ ଓ ସୂତାକଟା କେନ୍ଦ୍ରରେ ଖାଇଲୁ ।

୧୦.୧୧.୧୯୫୮

ସକାଳେ ଆମ୍ଭେମାନେ ୭.୩୦ରେ କରିଲୋପାଟଣାରୁ ବାହାରି ଚମପୁର (ମାହାଳହାଟ) ଭଗବାନପୁର, ସାନଅଢ଼ଙ୍ଗ ଦେଇ, ଦଶଟାରେ କୋରୁଆ ହାଇସ୍କୁଲରେ ପହଞ୍ଚିଲୁ । ପଦ୍ମନାଭ ରାୟ କରିଲୋ -ପାଟଣାରୁ ଫେରିଗଲେ । କୋରୁଆ ହାଇସ୍କୁଲର ହେଡ୍‌ମାଷ୍ଟର ଶ୍ରୀ ଅନ୍ନଦାପ୍ରସାଦ ବେହେରା, ଲୋକନାଥ ମିଶ୍ରଙ୍କର ଭାଇ ଦୁଃଖୀବାନ୍ଧବ ମିଶ୍ର, ସହକାରୀ ଶିକ୍ଷକ ରାଜକିଶୋର ନାୟକ, ଦୟାନିଧି ମହାନ୍ତି, ଆମର ସହକର୍ମୀ ରାଧାନାଥ ମହାନ୍ତିଙ୍କର ବାପା (ଘର ଧସନାପାରି), କଂଗ୍ରେସକର୍ମୀ ଗୋପୀନାଥ ମହାନ୍ତି, ଆଦି ଏବଂ ୪ ଘନଶ୍ୟାମ ମିଶ୍ର କଂଗ୍ରେସକର୍ମୀଙ୍କର ଝିଅ କୁମାରୀ ରେବତୀ ମିଶ୍ର, ଦୁଃଖୀବାନ୍ଧବ ମିଶ୍ରଙ୍କର ବିବାହିତା ଝିଅ ସୁଧାଂଶୁବାଳା ରଥ (ଧାରପୁରରେ ଶାଶୁଘର), ଆଦି ଆଚାର୍ଯ୍ୟ ମହାଶୟଙ୍କୁ ଅଭ୍ୟର୍ଥନା ଜଣାଇଥିଲେ ।

ଛାତ୍ରସଭାରେ ଘ ୧୧ ରୁ ଘଣ୍ଟାଏ କାଳ ମୁଁ ଛାତ୍ରମାନଙ୍କୁ କେତେକ ପରାମର୍ଶ ଦେଲି - ଖୁବ୍ ଭଲ କରି ପଢ଼ନ୍ତୁ, ଜ୍ଞାନ ଅର୍ଜନ କରନ୍ତୁ ଏବଂ ସେଥି ସଙ୍ଗେ ଦେଶକୁ ଗଢ଼ିବାର କାମ, ଏହି ସର୍ବୋଦୟ ବିଚାର ପ୍ରଚାର ଓ ରଚନାତ୍ମକ କାର୍ଯ୍ୟ ମଧ୍ୟ କରନ୍ତୁ । ଛାତ୍ରସଂଖ୍ୟା ୪୫୦ । ଉପରଓଳି ୫ଟାରୁ ସାଧାରଣସଭା ହେଲା । ମେଘୁଆ ପାଗ ଓ ପରେ ଝିପରି ଝିପରି ବର୍ଷା ସତ୍ତ୍ୱେ ପ୍ରାୟ ୭୦୦ ଲୋକ ଆସିଥିଲେ, ମାତ୍ର ଆଜି ଦୀପାବଳି ଅମାବାସ୍ୟା ପର୍ବ ଓ ବର୍ଷା ଯୋଗୁଁ ଘଣ୍ଟାକ ପରେ ଅଧିକାଂଶ ଲୋକ ସଭାରୁ ଚାଲିଗଲେ । ମୁଁ ଗ୍ରାମଦାନର ତାତ୍ପର୍ଯ୍ୟ. ସର୍ବୋଦୟର କେତେକ ମୂଳ ସିଦ୍ଧାନ୍ତ ବୁଝାଇବାକୁ ଚେଷ୍ଟା କରିଥିଲି ।

ଆମ୍ଭେମାନେ ଛାତ୍ରମାନଙ୍କର ଆତିଥ୍ୟରେ ଏଠାରେ ରହିଲୁ ଓ ଖାଇଲୁ । ସେମାନେ ମୁଠିଏ ମୁଠିଏ ଚାଉଳ ଓ ପରିବା ଘରୁ ଆଣିଥିଲେ । ପ୍ରାୟ ୬୦/୭୦ ସେର ଚାଉଳ ହୋଇଥିଲା । ସ୍କୁଲ ପାଖରେ ମାର୍କଣ୍ଡ ମଠ ଅଛି ।

୧୩.୧୧.୧୯୫୮

ସକାଳ ୭ଟାରେ ଗନେଇଲୋରୁ ଆମ୍ଭେମାନେ ବାହାରି ହସୁଁଆ ନଦୀର ବାମ କୂଳର ବନ୍ଧରେ ଆସି, ବ୍ରାହ୍ମଣବାଡ଼ି ଗ୍ରାମରେ ପୂର୍ବେ ମୌଳିକ ଶିକ୍ଷାର ଗୁରୁଜୀ ମଧୁସୂଦନ ମିଶ୍ରଙ୍କ ଘରେ ପ୍ରାୟ ଅଧଘଣ୍ଟାଏ ବସିଲୁ । ଟିକିଏ ପଇଡ଼ପାଣି ପଇଲୁ । ସେଠାରୁ ସଡ଼କରେ ପୂର୍ବର ମିଲିଟାରୀ କ୍ୟାମ୍ପ ଓ ପୂର୍ବବଙ୍ଗରୁ ଆସିଥିବା ପୂର୍ବର ଶରଣାର୍ଥୀ ଶିବିର ଏରଙ୍ଗୋ ପ୍ରସ୍ତାବିତ ହାଇସ୍କୁଲ ବାଟେ ସଅଁରା ମଧ ଇଂରାଜୀ ସ୍କୁଲରେ ପ୍ରାୟ ୯ଟାରେ ପହଞ୍ଚିଲୁ । ଏରତଙ୍ଗାରେ ଶ୍ରୀ ସୋମନାଥ ବିଶ୍ୱାଳ (ଭୁବନାନନ୍ଦ ସ୍ୱାଇଁଙ୍କର ଶାଳକ) ହେଡ଼୍‌ମାଷ୍ଟର ଆମ ସହ ଥିଲେ । ସଅଁରା ମି.ଇ. ସ୍କୁଲର ହେଡ଼୍‌ମାଷ୍ଟର ଶ୍ରୀ ଅନାମଚରଣ ଦାସ, ଶ୍ରୀ ଦୈତାରି ମିଶ୍ର, ପୂର୍ବର କଂଗ୍ରେସକର୍ମୀ ଶ୍ରୀ ପ୍ରାଣକୃଷ୍ଣ ରଥ, ଏ ଅଞ୍ଚଳର ଏମ୍.ଏଲ୍.ଏ. ଶ୍ରୀ ନିଶାମଣି ଖୁଣ୍ଟିଆ, ଶ୍ରୀଯୁକ୍ତ ହରେକୃଷ୍ଣ ବିଶ୍ୱାଳ ଆଦି ଆମ ସହ ଥିଲେ । ସନ୍ଧ୍ୟାରେ ସାଧାରଣ ସଭାରେ ନିଶାମଣି ବାବୁ କହିଲେ ରାଜନୈତିକ ଦଳରେ ସେ ଅଛନ୍ତି ମାତ୍ର ବର୍ତ୍ତମାନର ଦଳଗତ ଶାସନ ଦ୍ୱାରା କିଛି ବଡ଼ କାମ ହେବ ବୋଲି ଆଶା ନାହିଁ, ଅନ୍ଧକାର ଦେଖାଯାଉଛି । ଭୂଦାନ ଯଜ୍ଞ ଠାରୁ ଆଶା ମିଳୁଥିଲା ମାତ୍ର ଯେପରି ମାନ୍ଦା ଓ ଝିମା ଧରିଲାଣି, କେବେ କଅଣ ହେବ, ଭାବିପାରୁନାହିଁ ।

ଲୋକ ସାଧାରଣ ବାହାରିଲେ ସର୍ବୋଦୟ କାର୍ଯ୍ୟ ସଫଳ ହେବ ବୋଲି ମୁଁ ସାଧାରଣ ସଭାରେ କହିଥିଲି ।

୧୪.୧୧.୧୯୫୮

ସକାଳ ଘ. ୭.୩୦ ରୁ ଆମ୍ଭେମାନେ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗରେ ସଅଁରାରୁ ବାହାରି ସାଆଁପୁର, ଡ଼େଙ୍ଗା-ପିତେଇପୁର, ମହୀଲୋ ମଧ୍ୟ ଇଂରାଜୀ ସ୍କୁଲ ପାଖ ଦେଇ କେନାଲ କୂଳେ କୂଳେ ଆସି ନନ୍ଦନ ମଠ ବାଟେ ବନ୍ଦାଳୋ ଗ୍ରାମରେ ଘ ୯.୩୦ଟାରେ ପହଞ୍ଚିଲୁ । ଶ୍ରୀମତୀ ଶୈଳର ପିଇସା ଶ୍ରୀ ପ୍ରିୟନାଥ ମହାନ୍ତିଙ୍କ ଘରେ ରହିଲୁ । ମାଗୁଣି ଚରଣ କାନୁନ୍‌ଗୋ (ମାଗୁ ପିଇସା)ଙ୍କ ଭାଇ ଧୂଳିବାବୁ ଘରେ ଥିଲେ । ପ୍ରିୟନାଥବାବୁଙ୍କର ସମ୍ବନ୍ଧୀ ଶ୍ରୀ ଚୌଧୁରୀ ଶ୍ୟାମସୁନ୍ଦର ଦାସ ଆମର ଚର୍ଚ୍ଚା କରିଥିଲେ ।

ସନ୍ଧ୍ୟାରେ କଟରା ହାଟପଡ଼ିଆରେ ସଭା ହେଲା । ପ୍ରାୟ ୧୫୦ ମାତ୍ର ଲୋକ ଥିଲେ । ଶ୍ୟାମସୁନ୍ଦର ଦାସ ସଭାପତି ହେଲେ । ଶ୍ରୀ ନିଶାମଣି ଖୁଣ୍ଟିଆ (ତିର୍ତ୍ତୋଳର ଏମ୍.ଏଲ୍.ଏ) ଥିଲେ । ମାତ୍ର ସଭାରେ ସେ କହିବାକୁ ସଭାପତି ତାଙ୍କୁ ଅନୁରୋଧ କରି ନ ଥିଲେ, ମୁଁ ସୂଚାଇବା ସତ୍ତ୍ୱେ । ମୁଁ ସଂକ୍ଷେପରେ କିଛି କହିଲି - ଲୋକେ ପୁଣି କଷ୍ଟ ନ କଲେ, ଦେଶର ଅବସ୍ଥା ବଦଳିବ ନାହିଁ । ଆଚାର୍ଯ୍ୟ ମହାଶୟ ସର୍ବୋଦୟ-ପାତ୍ର ସ୍ଥାପନ ପାଇଁ ନିବେଦନ କଲେ ।

୧୫.୧୧.୧୯୫୮

ସକାଳେ ଘ ୭.୧୫ ମିନିଟରେ ଆଚାର୍ଯ୍ୟ ମହାଶୟଙ୍କ ସହ ପଦଯାତ୍ରାରେ ଆମ୍ଭେମାନେ

ବନ୍ଦାଳୋରୁ ବାହାରି, ମୂଳୁଗାଁ ଗ୍ରାମରେ ଆଚାର୍ଯ୍ୟ ମହାଶୟ ସ୍ତ୍ରୀଲୋକମାନଙ୍କୁ ସର୍ବୋଦୟପାତ୍ର କଥା ବୁଝାଇବା ପରେ, ସାରଣା ଗ୍ରାମରେ ୧୫ ମିନିଟ ବସି, ବାହାରଣାରେ ପ୍ରାୟ ୯ରେ ପହଞ୍ଚିଲୁ । ଉ.ପ୍ରା. ସ୍କୁଲଘରେ ରହିଲୁ । ଶ୍ରୀ ଦାମୋଦର ମହାପାତ୍ର, ବ୍ରହ୍ମାନନ୍ଦ ସ୍ୱାଇଁ ବହୁଦିନୁ ଭୂଦାନ କାମ କରନ୍ତି । ସେମାନଙ୍କର ଯତ୍ନରେ ରହିଲୁ । ସାରଣାରୁ ପ୍ରଜା-ସୋସାଲିଷ୍ଟ ଦଳର ଯୁବକ ଶ୍ରୀ ବ୍ରହ୍ମାନନ୍ଦ ବାବୁ ଆମକୁ ବାଟ ଦେଖାଇ ଏଠାକୁ ଆସିଥିଲେ । ମଧ୍ୟାହ୍ନଭୋଜନ ପରେ ସେ ଓ ନିଶାମଣି ବାବୁ ଅନ୍ୟତ୍ର ଚାଲିଗଲେ ।

ସନ୍ଧ୍ୟାରେ ପୋଷ୍ଟ ଅଫିସ ଆଗ ପଡ଼ିଆରେ ସାଧାରଣ ସଭା ହେଲା । ହିଂସାନୀତିରେ ଭୂସମସ୍ୟା ସମାଧାନ କରିବା ଓ ଦେଶର ଉନ୍ନୟନ କାର୍ଯ୍ୟ କରିବା କେଡ଼େ କଠିନ ଓ ବିପଜ୍ଜନକ, ତାହା ମୋ କ୍ଷୁଦ୍ର ବିଚାରରେ ମୁଁ ବୁଝାଇଲି । ୟେଲ୍‌ବାଲ୍ ଗ୍ରାମଦାନ ସମ୍ମିଳନୀ କଥା କହିଲି, ଏବଂ ଗ୍ରାମଦାନ କରି ଗ୍ରାମସ୍ୱରାଜ୍ୟ ସ୍ଥାପନର ଉପାଦେୟତା ସଂକ୍ଷେପରେ ଦର୍ଶାଇଲି । ସଭାରେ ପ୍ରାୟ ୨୦୦ ଲୋକ ହୋଇଥିଲେ ।

ଆଚାର୍ଯ୍ୟ ମହାଶୟ ଅପରାହ୍ନରେ ନାରୀମାନଙ୍କର ଏକ ଖାସ୍ ସଭାରେ କହିଥିଲେ । ପ୍ରାୟ ୬୦ ଜଣ ସ୍ତ୍ରୀ ଲୋକ ଆସିଥିଲେ ।

୧୬.୧୧.୧୯୫୮

ବାହାରଣାରୁ ଆମ୍ଭେମାନେ ଚାଲିକରି, ଅଳାବୋଲା ମାଇନର ସ୍କୁଲରେ ୧୫ ମିନିଟ ରହି, ଘ ୯.୩୦ରେ ନାଗପୁର ଗ୍ରାମରେ ହରେକୃଷ୍ଣ ବାବୁଙ୍କ ଘରେ ପହଞ୍ଚିଲୁ । ତାଙ୍କର ପୁତୁରା କ୍ଷେତ୍ରମୋହନ ବାବୁ, ବିକ୍ରମ ତଳେ ତାଙ୍କର ପୁଅ ବିଜୟ, ଶାନ୍ତି ତଳେ ଝିଅ ସାବିତ୍ରୀ, ପୂର୍ବର କଂଗ୍ରେସକର୍ମୀ ଗୋବିନ୍ଦଚନ୍ଦ୍ର ଦାସ (ଯେ ପୁରୀ ସର୍ବୋଦୟ ସମ୍ମିଳନୀରେ ୧୯୫୫ ମସିହାରେ ଜିନିଷପତ୍ର ଯୋଗାଡ଼ କରିବା ଦାୟିତ୍ୱରେ ଥିଲେ), ବାଲିକୁଦା ହାଇସ୍କୁଲର ହେଡ୍‌ମାଷ୍ଟର ଶ୍ରୀ ପରଶୁରାମ ଦାସ; ସହକାରୀ ଶିକ୍ଷକ ଶ୍ରୀ ପରଶୁରାମ ମହାନ୍ତି; ବିପିନ ବାବୁ, ... ଆଦି ଆସି ହରିବାବୁଙ୍କ ଘରେ ଆମକୁ ସ୍ୱାଗତ କରିଥିଲେ । ବାଲିକୁଦାର ଏମ୍.ଏଲ୍.ଏ. ଶ୍ରୀ ବୈକୁଣ୍ଠନାଥ ମହାନ୍ତି ମଧ୍ୟ ପହଞ୍ଚିଥିଲେ । ଏହି ଶିକ୍ଷକମାନଙ୍କ ସହ ପ୍ରଥମେ ଆଲୋଚନା ହେଲା ଓ ଗ୍ରାମସେବକ ପତ୍ରିକାରୁ କିଛି ପଢ଼ା ହେଲା ।

ସନ୍ଧ୍ୟାରେ ଜାଗୁଲାଇ ଠାକୁରାଣୀଙ୍କ ଠାରେ ସାଧାରଣ ସଭା ହେଲା । ହାଇସ୍କୁଲର ହେଡ୍‌ମାଷ୍ଟର ପରଶୁରାମବାବୁ ସଭାପତି ହୋଇଥିଲେ । ଆମ ଦେଶରେ କଳ୍ପନାଶକ୍ତି ଲୋପ ହୋଇଯାଇଛି, " experiment is greater than science", ଗ୍ରାମଦାନକୁ ଅନ୍ତତଃ ଏକ "experiment ", ଭାବରେ ଲୋକେ ଦେଖନ୍ତୁ ଓ ପ୍ରୟୋଗ କରନ୍ତୁ, ଦେଶର ଜଡ଼ତା

ଦୂର ହେବା ବିଷୟରେ ଘଣ୍ଟାଏ କହିଲି । ଦିଲ୍ଲୀରେ health visitors'course ପଢୁଥିବା ଏଠାର ଝିଅ ରଜନୀଗନ୍ଧା, ଚୌଧୁରୀ ପରିବାରର ଦେଶସେବା ଓ ଏହା ବ୍ୟର୍ଥ ହେବ ନାହିଁ - ବଡ଼ ସରଳ ଭାବରେ ଦୁଇପଦ କହିଲେ ।

ଯେଲବାଲ ସମ୍ମିଳନୀରେ ସବୁ ପ୍ରଧାନ ରାଜନୈତିକ ଦଳର ମୁଖ୍ୟ ବ୍ୟକ୍ତିମାନେ ଓ ସରକାର ଚଳାଉଥିବା ନେତାମାନେ ଗ୍ରାମଦାନକୁ ମାନି ନେଇଥିଲେ ହେଁ, କୌଣସି ସକ୍ରୀୟ ଯତ୍ନ କରୁନାହାନ୍ତି ଏବଂ ଠାଏ ଠାଏ ସରକାରୀ କର୍ମଚାରୀମାନେ ଗ୍ରାମଦାନ ପରବର୍ତ୍ତୀ କାର୍ଯ୍ୟରେ ସହଯୋଗ କରୁନାହାନ୍ତି ବୋଲି ମୁଁ ପରିଷ୍କାର ଆକ୍ଷେପ ପ୍ରକାଶ କରିଥିଲି ।

ଆଚାର୍ଯ୍ୟ ମହାଶୟ ସର୍ବୋଦୟ ପାତ୍ର ସ୍ଥାପନ ପାଇଁ କେବଳ ନିବେଦନ କରିଥିଲେ ।

କାଲି ବାହାରଣାରେ ସାଧାରଣ ସଭାରେ ଆଚାର୍ଯ୍ୟ ମହାଶୟ "ଗୋପବାବୁଙ୍କର ସ୍ମୃତି ଚିହ୍ନ ସ୍ୱରୂପ ସର୍ବୋଦୟ ପାତ୍ର ମଧ୍ୟ ସ୍ଥାପନ କରାଯାଉ'' ବୋଲି ନିବେଦନ କରିବା ବେଳେ ଏବଂ ଗୋପବାବୁ ତାଙ୍କୁ ୪ ଖଣ୍ଡ ଲୁଗା ନିଜର ହାତକଟା ସୂତାରେ ବୁଣାଇ ଦେଇଥିଲେ କହୁ କହୁ କାନ୍ଦ କାନ୍ଦ ହୋଇ ଯାଇଥିଲେ ଏବଂ ଧପ୍ କରି ବସି ପଡ଼ିଥିଲେ । ସେ ଏକାଦିକ୍ରମେ ୯ ମାଇଲ ବାଟ ଚାଲିଲେ ହେଁ ଅବସନ୍ନ ବୋଧ କରୁନାହାନ୍ତି ।

୧୭.୧୧.୧୯୫୮

ନାଗପୁରରୁ ବାଲିକୁଦା ବାଟେ ସଡ଼କରେ ଆମ୍ଭେମାନେ ଘ ୯ଟାରେ ଗାନ୍ଧୀବ୍ରହ୍ମ ବିଦ୍ୟାପୀଠ (ହାଇସ୍କୁଲ)ରେ ପହଞ୍ଚିଲୁ । ହେଡ୍‌ମାଷ୍ଟର ଶ୍ରୀ ଜନାର୍ଦ୍ଦନ ଆଚାର୍ଯ୍ୟ (ଘର ଭାତପୁରାରେ), ଶ୍ରୀ ମାୟାଧର ଦାସ, ଶ୍ରୀ ବୀଣାକର ତ୍ରିପାଠୀ, ଓ ଛାତ୍ରମାନେ ଆଚାର୍ଯ୍ୟ ମହାଶୟଙ୍କୁ ପାଛୋଟି ନେଇଥିଲେ । ମାୟାଧରବାବୁଙ୍କ ସ୍ତ୍ରୀ, ପାଳିତ କନ୍ୟା, ପୁଅ ଭଗବାନ, ଝିଅ ଲକ୍ଷ୍ମୀ, ଆଦି ରାତିଯାକ ଆମ୍ଭମାନଙ୍କ ପାଇଁ ପିଠା ତିଆରି କରିଥିଲେ । ଏହା ମୋ ମତରେ ଆବଶ୍ୟକ ନ ଥିଲା ଓ ଉଚିତ ହେଲା ନାହିଁ । ତାଙ୍କର ଏକ ଆଠ ବର୍ଷର ପୁଅ ଭାରୀ ସାହସୀ, ସେ ନିଜର ହାତକୁ ଚୁଲିରେ ପୋଡ଼ି ଦେଇ, ଅନ୍ୟମାନଙ୍କୁ ଦେଖାଉଥାଏ ।

ଆଜି ଏଠାରେ ହାଟ ଥିବାରୁ, ସାଧାରଣ ସଭା ହୋଇପାରିଲା ନାହିଁ । ସ୍କୁଲରେ ପ୍ରାୟ ୪୫୦ ଛାତ୍ରଛାତ୍ରୀଙ୍କୁ ଆଚାର୍ଯ୍ୟ ମହାଶୟ ଓ ମୁଁ ସର୍ବୋଦୟ-ପାତ୍ର ଓ ବିଚାର ବିଷୟରେ କହିଲୁ । ଛାତ୍ରମାନେ ଆଗରୁ ସର୍ବୋଦୟ-ପାତ୍ର ବସାଇ, ସେ ୧୬ ଟଙ୍କାର ଚାଉଳ ଓ ୨ ଟଙ୍କା ସଂଗ୍ରହ କରିଥିଲେ । ଆଚାର୍ଯ୍ୟ ମହାଶୟଙ୍କୁ ଅର୍ପଣ କଲେ ।

୧୯.୧୧.୧୯୫୮

ଜଗତ୍‌ସିଂହପୁରରୁ ସକାଳ ୬ଟାରେ ଆଚାର୍ଯ୍ୟ ମହାଶୟଙ୍କ ସହ ଆମେ ୮ ଜଣ ଚାଲି 'ଗୋପାଳ ସାଗର' ପୋଖରୀ ପାଖ ଦେଇ, ଚାରିପୋଲିଆ, ବଡ଼ବାଗ, ପୁନଙ୍ଗ ପାଖ ଦେଇ

୮ଟା ବେଳେ ତରୀକୁନ୍ଦରେ ପହଞ୍ଚିଲୁ । ଏଠାରେ ପୂର୍ବେ ଶ୍ରୀଯୁକ୍ତ ନବବାବୁ, ଗୋପବାବୁଙ୍କ ଜମି ଥିଲା । ସେ ସବୁ ଆକବର ଖାଁ ବହୁ ବର୍ଷ ପୂର୍ବେ କିଣି ନେଇଛନ୍ତି । ନବବାବୁଙ୍କର ଦତ୍ତ ୨ ଏକର ଜମି ଉପରେ ଏଠାରେ ୩ ବର୍ଷ ହେଲା ଏକ ହାଇସ୍କୁଲ ହୋଇଛି ।

ଆଚାର୍ଯ୍ୟ ହରିହର ଦାସ ତା ୧୫.୮.୧୯୫୮ରୁ ବାଲେଶ୍ୱର ଜିଲ୍ଲାର ନାମ୍ପୋଠାରୁ ପଦଯାତ୍ରା କରି, ଉତ୍ତର ବାଲେଶ୍ୱରର ଜଳେଶ୍ୱର, ମୟୂରଭଞ୍ଜର ମୋରଡ଼ା, ବୈଶିଙ୍ଗା ଥାନା ଭିତର ଦେଇ, ନୀଳଗିରିର ଅଯୋଧ୍ୟା, ମିତ୍ରପୁର; ରେମୁଣା, ବାଲେଶ୍ୱର ସହର, ଇଞ୍ଚୁଡ଼ି, ଗୋପାଳପୁର, ବାହାନଗା, ସୋର, ଖଇରା, ଅଗରପଡ଼ା; କେଉଁଝର ଜିଲ୍ଲାର ସୋସୋ, ଆନନ୍ଦପୁର, ଦେଓଗାଁ, ବରୀପାଳ, ଶଗଡ଼ପଟା, ଭଗାମୁଣ୍ଡା, ହରିଚନ୍ଦନପୁର, ପିଟାପଟି, ବେତବନ୍ଧ, ପଣ୍ଡାପଡ଼ା, ବସନ୍ତପୁର, ନରଣପୁର, ତା ୨.୧୦.୧୯୫୮ରେ କେଉଁଝରଗଡ଼, ବେଲଦା, କଣ୍ଡିଆପଡ଼ା, ମାନପୁର, ମଇଦାନକେଲ, ବଡ଼ପଶି, ପିପଳିଆ, ଢ଼େଙ୍କିକୋଟ,ତରା, ବାଲିଯୋଡ଼ି, ଦରଖୋଳା, ଧକୋଟା, ଗୋବିନ୍ଦପୁର, ଘସିପୁରା, ବେଲବାହାଳୀ, ପଣ୍ଡୁଆ, ଗଡ଼ବାନ୍ଦନେଡ଼ା, ଅଳତୀ । ତା ୨୦.୧୦.୫୮ ରେ ପଛିକୋଟ, କଟକ ଜିଲ୍ଲାର ବଗୁଣ୍ଡେଇ, ମୂଳାପାଳ, ଯାଜପୁର ଟାଉନ, ବିନ୍ଧାଚାନ୍ଦପୁର, ଛତ୍ରପଡ଼ା, ପ୍ରୀତିପୁର, କଲ୍ୟାଣପୁର, ରତଳାଂ ତା ୩୦.୧୦.୧୯୫୮ରେ ବରୀ, ତା ୩୧ରେ ଓ ତା ୧.୧୧ରେ ରାମଚନ୍ଦ୍ରପୁର, କୃଷ୍ଣନଗର, ଇନ୍ଦୁପୁର, ନହଙ୍ଗ, କେନ୍ଦ୍ରାପଡ଼ା ଟାଉନ, ମଧୁସାଗର ବିଦ୍ୟାପୀଠ, ମାର୍ଶାଘାଇ, ..କରିଲୋପାଟଣା, କୋରୁଆ, ବେଣ୍ଡାକୁଡ଼ା, ଗନେଇଲୋ, ସଅଁରା, ବନ୍ଦାଳୋ, ବାହାରଣା, ନାଗପୁର, ତିହସାହି, ଜଗତସିଂହପୁର ଦେଇ ତା ୧୯.୧୧.୫୮ରେ ତରୀକୁଳରେ ପହଞ୍ଚିଲେ । ମୋଟ ୯୨ଟ ରହଣିରେ ପ୍ରାୟ ୫୭୯ ମାଇଲ ସେ ଚାଲିଲେଣି ।

ରାମଚନ୍ଦ୍ରପୁରରେ ରହଣି ନମ୍ବର ୭୭ ତା ୩୧.୧୦.୫୮ରେ ପଡ଼ିଥିଲା । ସେତେବେଳକୁ ସେ ପ୍ରାୟ ୪୬୦ ମାଇଲି ଚାଲିଥିଲେ ।

ସର୍ବୋଦୟ ବିଚାରର କେତୋଟି ମୂଳ ସିଦ୍ଧାନ୍ତ (ବିନୋବା-ପ୍ରବଚନଗୁଡ଼ିକରୁ ସଂଗୃହୀତ)

୧) ଆତ୍ମ-ବିଶ୍ୱାସ (ତଥା ଈଶ୍ୱର-ବିଶ୍ୱାସ), ୨) ଅଭେଦ ୩) ଟ୍ରଷ୍ଟୀ ଭାବରେ ଚଳିବା, ୪) ମୂଳ ସାଧନ ସାମଗ୍ରୀ ସମସ୍ତ ଉତ୍ପାଦନକାରୀଙ୍କୁ ମିଳିବ । ୫) ବୌଦ୍ଧିକ ଓ ଶାରୀରିକ ଶ୍ରମର ମୂଲ୍ୟ ସମାନ ହେବ । ୬)ସାଧନ ଓ ସାଧ୍ୟରେ ସମାନତା ୮) ସର୍ବୋଦୟ ଆଦେଶ ଦିଏ ନାହିଁ ୯) ସ୍ୱଦେଶୀଭାବନା (ଗ୍ରାମୋଦ୍ୟୋଗ) ୧୦) ଶାସନର ବିକେନ୍ଦ୍ରୀକରଣ ୧୧) ଆଗେ ଅନ୍ତ୍ୟୋଦୟ ହେବ ୧୨) ସମସ୍ତଙ୍କର, ୧୦୦% ଙ୍କର ସମ୍ମତି, ସହଯୋଗ ୧୩) ବ୍ୟକ୍ତିର ହିତ ଓ ସମାଜର ହିତ ସମାନ ୧୪) ଜୟ ଜଗତ୍ ଭାବନା ।

୨୧.୧୧.୧୯୫୮

ବାଗଲପୁରରୁ ଅଳକା ହାଇସ୍କୁଲ ପାଖ ଦେଇ ଗୋପୀନାଥପୁର, ବାଳିଆଶାସନ, ସଦେଇଶାସନ, ଗ୍ରାମ ଭିତର ଦେଇ ୨୦ ମାଇଲ ଠାରେ ସଡ଼କରେ ପହଞ୍ଚିଲୁ । ଅନନ୍ତ-ବ୍ରହ୍ମପୁର ଉ.ପ୍ରା.ସ୍କୁଲ ଆଗରେ ସ୍କୁଲର ଛାତ୍ରଛାତ୍ରୀମାନେ ଏବଂ ବାସୁଦେବ ପାଠାଗାରର କର୍ମକର୍ତ୍ତାମାନେ, ପାଣ୍ଡିଆ ଗ୍ରାମ ଭିତରେ ପାଠାଗାର ପକ୍ଷରୁ, ଗାଁର "ସର୍ବୋଦୟ ପାଠାଗାର" ପକ୍ଷରୁ ଏବଂ ବିରଡ଼ିହାଟଠାରେ ପାଠାଗାର ପକ୍ଷରୁ ଆଚାର୍ଯ୍ୟ ମହାଶୟଙ୍କୁ ଅଭିନନ୍ଦନ ଜ୍ଞାପିତ ହୋଇଥିଲା । ହାଟ ନିକଟ ନି.ପ୍ରା. ସ୍କୁଲଘରେ ଆମ୍ଭେମାନେ ରହିଲୁ । ସର୍ବଶ୍ରୀ ଗୌରାଙ୍ଗଚରଣ ମହାନ୍ତି (ପ୍ରଜା-ସୋସାଲିଷ୍ଟ ପାର୍ଟି), ବୃଦ୍ଧ ଶ୍ରୀ କୃଷ୍ଣଚରଣ ମହାନ୍ତି ଆଦି ଆତିଥ୍ୟର ଓ ସଭାର ଆୟୋଜନ କରିଥିଲେ ।

ସନ୍ଧ୍ୟାରେ ଉପାସନା ପରେ ଶ୍ରୀ... କରଙ୍କର ସଭାପତିତ୍ୱରେ ସାଧାରଣ-ସଭା ହେଲା । ଭାରତବର୍ଷର ଭୂମିସମସ୍ୟା; ଭୂଦାନ ଯଜ୍ଞ, ଗ୍ରାମଦାନ କିପରି ଲୋକଙ୍କ ଆତ୍ମ ସ୍ୱେଚ୍ଛାରେ ଆରମ୍ଭ ହୋଇଛି, ସରକାରଙ୍କର ବଡ଼ ବଡ଼ ଶିଳ୍ପ-ଯୋଜନା ଓ କୃଷି-ଉତ୍ପାଦନ-ବୃଦ୍ଧି କାହିଁକି ଅଟକୁଛି, ୟେଲ୍‌ବାଲ୍ ସମ୍ମିଳନୀ, ଗ୍ରାମଦାନ ପରେ କିପରି ବିକାଶମୂଳକ କାର୍ଯ୍ୟମାନ ସହଜ ହେବ, ଆଦି ବୁଝାଇଲି । ଆଚାର୍ଯ୍ୟ ମହାଶୟ ସର୍ବୋଦୟ-ପାତ୍ର-ସ୍ଥାପନ ପାଇଁ ନିବେଦନ କଲେ ।

୨୪.୧୧.୧୯୫୮

କଟକ ସହରର ଗୁଣାଦୋଳ ଠାରେ । ଆଚାର୍ଯ୍ୟ ମହାଶୟଙ୍କ ସହ ଆମେ ଚାରିଜଣ ମାତ୍ର ସକାଳ ୬ଟାରେ ନିମେଇସାପୁରରୁ ବାହାରି, ବୀରବାଟି, ଗତିରାଉତପଟଣା, ବିଦ୍ୟାଧରପୁର Central Rice Research Station ବାଟ ଦେଇ ପ୍ରାୟ ୮ଟା ବେଳେ ନୂଆବଜାର ପ୍ରସ୍ତାବିତ ହାଇସ୍କୁଲରେ ପହଞ୍ଚିଲୁ ।

ଶ୍ରୀଯୁକ୍ତ ଈଶ୍ୱରଲାଲ ବ୍ୟାସ, ଗୁଣନିଧି ମହାନ୍ତି, ମଙ୍ଗଳା ଦେବୀ, ପାର୍ବତୀ ଗିରି, ଆଦି ମଧ୍ୟ ଏପର୍ଯ୍ୟନ୍ତ ଆସିଥିଲେ । ଡାକ୍ତର ରବି ଘୋଷ, ସମାଜର ଉଦୟନାଥ ଷଡ଼ଙ୍ଗୀ, ଶ୍ରୀହର୍ଷ ମିଶ୍ର, ଯୁଗଳ ପାଣିଗ୍ରାହୀ ମଧ୍ୟ । ଚାଉଳିଆଗଞ୍ଜ ଗାଁ ଠାରୁ ଶ୍ରୀଯୁକ୍ତ ରମା ଦେବୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଚୁନୀ ଦେବୀ, ସୁରେନ୍ଦ୍ର ମହାନ୍ତି, ବୁଲୁବାବୁ, ଫକୀର ମିଶ୍ର, ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ, ମିତ୍ତଲଜୀ, ବିଶ୍ୱନାଥ ପଟ୍ଟନାୟକ, ଜର୍ମାନୀଦେଶର ଯବୁତୀ ଉର୍ସୁଲା ବହନ୍, ସୁଧାଂଶୁଶେଖର ଦାସ, ରଜନୀକାନ୍ତ ନନ୍ଦୀ, କସ୍ତୁରିଚରଣ ନାୟକ, ଇନ୍ଦିରା ମିଶ୍ର, ଝରଣା ନାମ୍ନୀ ଝିଅ (ନୂଆ ଶିକ୍ଷାର୍ଥିନୀ) ଆଦି ଏବଂ ଚାଉଳିଆଗଞ୍ଜର ଲୋକେ ବହୁ ସଂଖ୍ୟାରେ ପଟୁଆରରେ ଆଚାର୍ଯ୍ୟ ମହାଶୟଙ୍କୁ ଗୁଣାଦୋଳ ଉ.ପ୍ରା. ସ୍କୁଲଠାକୁ ପାଛୋଟି ନେଇଥିଲେ ।

ପ୍ରଜା-ସୋସାଲିଷ୍ଟ ପାର୍ଟିର ଶ୍ରୀ ବିଶ୍ୱନାଥ ପଣ୍ଡିତ ଓ ନିଶାମଣି ଖୁଣ୍ଟିଆ ମଧ୍ୟ ଥିଲେ । ଶ୍ରୀଯୁକ୍ତ ରାଧାନାଥ ରଥ (ସମାଜର ପୂର୍ବ ସଂପାଦକ ଏବଂ ଏବେ ଓଡ଼ିଶାର ବିକାଶ ବିଭାଗ ମନ୍ତ୍ରୀ) ମଧ୍ୟ ଥିଲେ ।

ପୁରୁଷ ଓ ନାରୀ କର୍ମୀମାନେ ଏ ଅଞ୍ଚଳରେ ଘରେ ଘରେ ବୁଲି ସର୍ବୋଦୟ ବିଚାର ବୁଝାଇଥିଲେ, ସାହିତ୍ୟ ବିକ୍ରୟ କରିଥିଲେ ଏବଂ ସର୍ବୋଦୟ ପାତ୍ର ବସାଇବାକୁ ଲୋକଙ୍କୁ କହିଥିଲେ ।

ମିଲ୍ ହତା ମଧ୍ୟରେ କୋରାପୁଟ କର୍ମୀମାନଙ୍କର ବୈଠକ ଅର୍ଣ୍ଣାସାହେବ, ନବବାବୁ, ମାଳତୀ ଦେବୀ, ରମା ଦେବୀ, ଆଦିଙ୍କର ଉପସ୍ଥିତିରେ ବସିଥିଲା । ମୁଁ ମଧ୍ୟ ଉପସ୍ଥିତ ଥିଲି । କୋରାପୁଟ ଜିଲ୍ଲାର ପ୍ରାୟ ୧୪୫୦ ଗ୍ରାମ "ଗ୍ରାମଦାନ'' ହୋଇଥିଲା ମାତ୍ର ଓଡ଼ିଶା ସରକାରଙ୍କର ସଂଜ୍ଞା ଅନୁସାରେ ଓ ଅର୍ଣ୍ଣାସାହେବ ଆଦିଙ୍କର ମତରେ ସେଗୁଡ଼ିକର ଗୋଟିଏ ସୁଦ୍ଧା ଗ୍ରାମ ଗ୍ରାମଦାନ ନୁହେଁ, କିମ୍ବା ସେ ଗ୍ରାମର ବାସିନ୍ଦାମାନେ (ଜମିମାଲିକମାନେ) ଜମିର ସମ-ବଣ୍ଟନ ଚାହାଁନ୍ତି ନାହିଁ । ସେଠାର "ବିଚାର-ପ୍ରଚାର'' କର୍ମୀମାନଙ୍କର ଏବଂ "ନିର୍ମାଣ-କର୍ମୀ'' ମାନଙ୍କର ମଧ୍ୟରେ ଘୋର ମତନୈକ୍ୟ ଅଛି । ଏଥିରେ କାହାର କ'ଣ କରିବାକୁ ଅଛି ଓ କି ପ୍ରତୀକାର କରାଯିବ ବୋଲି ପଚାରିବାରୁ, ମୁଁ କହିଲି ଯେ "ବିନୋବାଜୀ ଓଡ଼ିଶାରେ ଥିବାବେଳେ ଆମ୍ଭେମାନେ ତାଙ୍କୁ ଓ ସମଗ୍ର ପୃଥିବୀ ଆଗରେ ଏତେ ଗ୍ରାମଦାନ ହୋଇଛି କହିଥିଲୁ, ଏତେ ପ୍ରଶଂସା ଓ ବାହାଦୂରୀ ନେଇଥିଲୁ । ମାତ୍ର ଏବେ ସବୁ ଭୁଲ ହୋଇଗଲା ବୋଲି କହି, ଆମେ ହଟିଯିବା ଅନୁଚିତ । Chellenge ଗ୍ରହଣ କରିବାକୁ ପଡ଼ିଲେ, ମୁଁ take up କରିବାକୁ ମୋର କ୍ଷୁଦ୍ର ଶକ୍ତିରେ ଓ ବିନା ଅହଙ୍କାରରେ ମୁଁ ପ୍ରସ୍ତୁତ ଅଛି ।'' ପରେ ମୁଁ ବୁଝାଇ କହିଥିଲି ଯେ ମୁଁ କୋରାପୁଟ ଜିଲ୍ଲାକୁ ଯାଇ, ଗ୍ରାମଦାନ, ସର୍ବୋଦୟ, ସର୍ବୋଦୟ ପାତ୍ର ସ୍ଥାପନର ବିଚାର, ଗାଁ ଗାଁରେ ବୁଲି ବୁଝାଇବାରେ ସାହାଯ୍ୟ କରିବାକୁ ରାଜୀ ଅଛି । ଶ୍ରୀଯୁକ୍ତ ଅର୍ଣ୍ଣାସାହେବଙ୍କର ୫ ଦିନ ଉପବାସ କଥା ଶୁଣି, ମୁଁ ଭାବିଲି ଯେ ମୋର କିଛି କରିବାକୁ ଅଛି ।

୨୬.୧୧.୧୯୫୮

ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗରେ ଆମ୍ଭେମାନେ ବକ୍ସିବଜାରରେ "ସମାଜ'' ଅଫିସକୁ ଆସିଲୁ । ଶ୍ରୀଯୁକ୍ତ ରାଧାନାଥ ରଥ, ଶ୍ରୀହର୍ଷ ମିଶ୍ର, ଉଦୟନାଥ ଷଡ଼ଙ୍ଗୀ, ଫକୀରଚରଣ ଦାସ, ଆଦି ପାଛୋଟି ନେଇଥିଲେ । ରାଷ୍ଟ୍ରଭାଷା ପ୍ରଚାରକ ଶ୍ରୀ ଅନସୂୟାପ୍ରସାଦ ପାଠକ ଏଠାକୁ ଆସିଥିଲେ । ତାଙ୍କର କର୍ମଚାରୀମାନଙ୍କୁ ଶ୍ରୀ ବୁଲୁବାବୁ ସର୍ବୋଦୟ ପାତ୍ର ସ୍ଥାପନ କରିବାକୁ ବୁଝାଇଥିଲେ ।

ଶ୍ରୀ ଶଶୀଭୂଷଣ ମିଶ୍ର, ଶ୍ରୀ ସୁଧାଂଶୁ ଶେଖର ମୁଖାର୍ଜୀ ( ଯେ ହରିଶପୁରର ମ୍ୟାନେଜର ଥିଲେ ଏବଂ ପରେ ଢେଙ୍କାନାଳ ଜିଲ୍ଲାର ମ୍ୟାଜିଷ୍ଟ୍ରେଟ ହୋଇଥିଲେ), ଶ୍ରୀଯୁକ୍ତ ବାଳକୃଷ୍ଣ ପଟ୍ଟନାୟକ

(ଉତ୍କଳ ସମ୍ମିଳନୀ ସମୟରୁ କର୍ମୀ), ଶ୍ରୀପତି ନନ୍ଦ, ପ୍ରଭୃତିଙ୍କ ସହ ସନ୍ଧ୍ୟାପୂର୍ବରୁ ସର୍ବୋଦୟ ପାତ୍ର ଓ ଶାନ୍ତିସେନା ବିଷୟରେ ଆଲୋଚନା ହେଲା । ଶ୍ରୀଯୁକ୍ତ ସୁଧାଂଶୁବାବୁ ବଡ଼ ନିଦା ଓ ସୁନ୍ଦର ସୂଚନାମାନ ଦେଲେ ।

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ୨ ଘଣ୍ଟା ଭାଷଣ ଦେଲେ । କେବଳ ଆଧାତ୍ମିକ ଦୃଷ୍ଟିରୁ ନୁହେଁ, ବ୍ୟବହାରିକ ଦୃଷ୍ଟିରୁ, ନିଛକ ବର୍ତ୍ତମାନ ଅଧ୍ୟତନ / ଅଦ୍ୟନେ ଅର୍ଥନୀତି ଦୃଷ୍ଟିରୁ ସର୍ବୋଦୟ ବାଟ ଛଡ଼ା ଅନ୍ୟ ବାଟ ଆଉ ପୃଥିବୀ ଆଗରେ ନାହିଁ ବୋଲି ସେ ବୁଝାଇଥିଲେ । ବର୍ତ୍ତମାନର democracy (ଲୋକତନ୍ତ୍ର) କିପରି ଫମ୍ପା, a house of cards, ତାହା ସେ ବୁଝାଇଥିଲେ । ବିନୋବାଙ୍କର ଲୋକନୀତିରେ, ସର୍ବୋଦୟ ବିଚାରରେ ଲୋକତନ୍ତ୍ର ପ୍ରକୃତରେ ତିଷ୍ଠିବ ବୋଲି ସେ ବୁଝାଇଥିଲେ । ଶେଷରେ ସେ ବର୍ତ୍ତମାନର ଶାସନନୀତିକୁ ଓ ସରକାରୀ କଳର ଚାଳକମାନଙ୍କୁ Challenge କରିବା ଭଳି ପଦେ ୨ ପଦ କହିଥିଲେ ।

୨୭.୧୧.୧୯୫୮

ଆଚାର୍ଯ୍ୟ ମହାଶୟଙ୍କ ସହ ଆମ୍ଭେମାନେ "ସମାଜ'' ପ୍ରେସ୍‌ରୁ "ରାଜବଗିଚା ହାଇସ୍କୁଲ'' ରହଣିକୁ ଗଲୁ । ପଟିଆବାସୀ ଶ୍ରୀଯୁକ୍ତ ବ୍ରଜବନ୍ଧୁ ଦାସ, ତାଙ୍କର ଭାଇ, ହାଇସ୍କୁଲର ହେଡ୍‌ମାଷ୍ଟର ଶ୍ରୀ ବୈଷ୍ଣବଚରଣ ମହାପାତ୍ର, ଏଠା ମି.ଇ. ସ୍କୁଲର ହେଡ୍‌ମାଷ୍ଟର ଶ୍ରୀ ହରିହର ରଥ, ଶ୍ରୀମତୀ ନିଶାମଣି ମହାନ୍ତି ଆଦି ଅଭିନନ୍ଦନ ଜଣାଇଥିଲେ ।

ଆଚାର୍ଯ୍ୟ ମହାଶୟଙ୍କର ଏ ବୟସରେ ପଦଯାତ୍ରାର ସାମର୍ଥ୍ୟ, ତାଙ୍କ ଜୀବନରୁ ଆମର ଶିକ୍ଷା, ସର୍ବୋଦୟର ଅର୍ଥ, ଛାତ୍ରମାନଙ୍କର ଏ କାର୍ଯ୍ୟରେ ସାହାଯ୍ୟ କରିବାର ଉପାୟ ସମ୍ବନ୍ଧରେ ମୁଁ କହିଲି ।

ଗ୍ରାମସେବକ ପ୍ରକାଶନ ଲିମିଟେଡ୍‌ର ବୈଠକ ଗ୍ରାମସେବକ ପ୍ରେସରେ ହୋଇଥିଲା । ମୁଁ ମେମ୍ବର ନୁହେଁ ଏବଂ ମୁଁ ଯାଇ ନ ଥିଲି ।

୨୮.୧୧.୧୯୫୮

ରାଜାବଗିଚାରୁ ଆଚାର୍ଯ୍ୟ ମହାଶୟଙ୍କ ସହ ପଦଯାତ୍ରାରେ ଆମ୍ଭେମାନେ ସୟଦ୍ ସେମିନ୍ୟାରୀକୁ (ହାଇସ୍କୁଲକୁ) ଗଲୁ । ଶ୍ରୀ କେୟାଂଯତ୍ ହୋସେନ୍, ଅମୀନ୍ ସାହେବ, ମିର୍ଜା ହୁମାୟୁନ୍ କାଦେର ବେଗ୍ (ଯେ ଭୂଦାନକୁ ପ୍ରାୟ ୯୦୦ ଏକର ଜମି ଦାନ କରିଥିଲେ ଓ ସର୍ବଦା ସହଯୋଗ କରନ୍ତି) ପ୍ରଭୃତି ଅଭ୍ୟର୍ଥନା କରି ନେଇଯାଇଥିଲେ ।

ଆଚାର୍ଯ୍ୟ ମହାଶୟଙ୍କ ସହ ଓ ପଣ୍ଡିତ କୃପାସିନ୍ଧୁ ହୋତା, ଗୁଣନିଧି ବାବୁଙ୍କ ସହ ଧର୍ମ ସମ୍ବନ୍ଧରେ ଚର୍ଚ୍ଚା କରିଥିଲେ । ମାର୍ଜାରୀ ସାଇକ୍‌ସ ସନ୍ଧ୍ୟାରେ ଶାନ୍ତିସେନା କଥା କହିଥିଲେ ।

ମାୟାଧର ମାନସିଂହ ଆଦି ସଭାକୁ ଆସିଥିଲେ । ନନ୍ଦବାବୁ (ସୋରବାସୀ) ମଧ୍ୟ ଆସିଥିଲେ । ଶ୍ରୀ ବୁଲୁବାବୁ ତତ୍‌ପରେ ଗ୍ରାମସ୍ୱରାଜ ଓ ସହରରେ କାମ ବିଷୟରେ କହିଥିଲେ ।

୨୯.୧୧.୧୯୫୮

ସୟଦ୍ ସେମିନାରୀରୁ ଆଚାର୍ଯ୍ୟ ମହାଶୟଙ୍କ ସହ ଆମ୍ଭେମାନେ "ମାରବାଡ଼ି ହାଇସ୍କୁଲ''କୁ (ବାଙ୍କାବଜାର ଓ "ବିନୋଦବିହାରୀ''ଙ୍କ ପାଖରେ ଅବସ୍ଥିତ) ଆସିଲୁ । ମୁଁ ଏଠାର ଛାତ୍ର ଓ ବାଳିକା ମାଇନର ସ୍କୁଲର ଛାତ୍ରୀମାନଙ୍କୁ ଆଚାର୍ଯ୍ୟ ମହାଶୟଙ୍କର ଜୀବନରୁ ଶିକ୍ଷଣୀୟ କେତୋଟି କଥା ଓ ସର୍ବୋଦୟର ୨/୩ ଟି ମୂଳ ସିଦ୍ଧାନ୍ତ କହିଲି ।

ମାର୍ଜାରୀ ସାଇକ୍ସଙ୍କୁ ଗୁଣନିଧିବାବୁ ଏଠାକୁ ଡାକି ଆଣିଲେ । ସେ ଛାତ୍ରଛାତ୍ରୀମାନଙ୍କୁ କହୁଁ କହୁଁ, ପେଟମରା ରୋଗ ବାହାରିବାରୁ, ବିରକ୍ତ ହୋଇ ଚାଲିଗଲେ । ଅପରାହ୍ନରେ ମହିଳାମାନଙ୍କର ସଭାରେ ସେ ଭାଷଣ ଇଂରାଜୀରେ ଦେଲେ ଏବଂ ନନ୍ଦିନୀ ଶତପଥୀ ଓଡ଼ିଆରେ ଅନୁବାଦ କରିଦେଲେ ।

ସନ୍ଧ୍ୟାରେ ଶ୍ରୀରାମଚନ୍ଦ୍ର ଭବନରେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର ସଭାପତିତ୍ୱରେ ମାର୍ଜାରୀ ସାଇକ୍ସ ଶାନ୍ତିସେନା, ସର୍ବୋଦୟ ଓ ଶିକ୍ଷ, ବିଜ୍ଞାନ ବିଷୟରେ ୨ ଘଣ୍ଟା ବକ୍ତୃତା ଦେଲେ । ହରମୋହନ ପଟ୍ଟନାୟକ, ଡକ୍ଟର ଦୟାନିଧି ପଟ୍ଟନାୟକ, ଡାକ୍ତର ହରିଶ ରାୟ ଆଦି ଯାଇଥିଲେ । ବୁଲୁବାବୁ ମାରୁଆଡ଼ି ହାଇସ୍କୁଲରେ ସାଧାରଣ ସଭାରେ ଗ୍ରାମଦାନ, ସହରରେ କାମ କଥା ବୁଝାଇଥିଲେ ।

୩୦.୧୧.୧୯୫୮

ମାରୁଆଡ଼ି ହାଇସ୍କୁଲରୁ ଆଚାର୍ଯ୍ୟ ମହାଶୟଙ୍କ ସହ ଆମ୍ଭେମାନେ "ଭକ୍ତ ମଧୁ ବିଦ୍ୟାପୀଢ଼'' (ପୂର୍ବେ ଭିକ୍ଟୋରିଆ ହାଇସ୍କୁଲ ନାମ ଥିଲା)କୁ ଗଲୁ । ହେଡ୍‌ମାଷ୍ଟର ଲଳିତମୋହନ ଘୋଷ, ମୋର ସହପାଠୀ ରଘୁନାଥ ମହାନ୍ତି, ଏମ୍.ଏ., ତାଙ୍କର ପତ୍ନୀ ଶ୍ରୀମତୀ କ୍ଷେତ୍ରମଣି, ପୋଲିସ ଏସ୍.ପି. ଅବସରପ୍ରାପ୍ତ ଶ୍ରୀପତି ନନ୍ଦ ଆଦି ଏବଂ ଛାତ୍ରଛାତ୍ରୀମାନେ ଅଭ୍ୟର୍ଥନା କରିଥିଲେ ।

ବୁଲୁବାବୁ ଛାତ୍ରମାନଙ୍କୁ କିଛି ବୁଝାଇଲେ ... "ବାନରସେନା ହୁପ୍ ହୁପ୍''। ଖରାବେଳେ ମହିଳା ସଭାରେ ଚୁନୀ ଦେବୀ, ମଦନମୋହନ ସାହୁ ଓ ଆଚାର୍ଯ୍ୟ ମହାଶୟ ବୁଝାଇଲେ । ମାର୍ଜାରୀ ସାଇକ୍ସ ମାସୀଙ୍କ ସହ ଭୁବନେଶ୍ୱରରେ ସଭା କରିଥିଲେ ।

ସନ୍ଧ୍ୟାରେ କବି ଶ୍ରୀ ବୀରକିଶୋର ଦାସଙ୍କର ସଭାପତିତ୍ୱରେ ପ୍ରାର୍ଥନା-ସଭା ହେଲା । ସେ ଆଚାର୍ଯ୍ୟ ମହାଶୟଙ୍କର ଛାତ୍ର ଥିଲେ । ବୁଲୁବାବୁ ଭାଷଣ ଦେଇଥିଲେ । ଆଚାର୍ଯ୍ୟ ମହାଶୟ ସର୍ବୋଦୟ ପାତ୍ର ବସାଇବାକୁ ନିବେଦନ କରିଥିଲେ । ରାଧାରତନ ଦାସ, ଶ୍ୟାମସୁନ୍ଦର ଦାସ,

ବୁଲୁବାବୁ, ମଦନମୋହନ ସାହୁ ଓ ମୁଁ କୋରାପୁଟ ଜିଲ୍ଲାର ଗ୍ରାମକର୍ମୀମାନଙ୍କ ପାଇଁ ସିଲାବସ୍ ଡ୍ରାଫ୍ଟ କଲୁ । ଶ୍ରୀଯୁକ୍ତ ବିଭୂତିଭୂଷଣ ବାନାର୍ଜୀ ଆସିଥିଲେ ।

୧.୧୨.୧୯୫୮

ଆଚାର୍ଯ୍ୟ ମହାଶୟ ଡଗରପଡ଼ା ଉ.ପ୍ରା. ସ୍କୁଲକୁ ଆସିଲେ । ହେଡ୍‌ପଣ୍ଡିତ ଲୋକନାଥ ନନ୍ଦ (ପ୍ରାଥମିକ ଶିକ୍ଷକ ଫେଡ଼ରେଶନ୍‌ର ସଂପାଦକ) । ଶ୍ରୀ ମଧୁସୂଦନ ନାୟକ ସହକାରୀ । ମାର୍ଜୋରୀ ସାଇକ୍ସ ନାରୀସେବା ସଦନରେ, ରାଧାନାଥ ଟ୍ରେନିଂ କଲେଜରେ ଓ ରେଭେନ୍ସା କଲେଜରେ ଶାନ୍ତିସେନା କଥା ବୁଝାଇଲେ । ମୁଁ ଯାଇ ନ ଥିଲି ।

ସନ୍ଧ୍ୟାରେ ଡଗରପଡ଼ାରେ ସାଧାରଣ ସଭା ହେଲା । ସଭାପତି ବିଶ୍ୱନାଥ ପଣ୍ଡିତ । ବୁଲୁବାବୁ ଭାଷଣ ଦେଇଥିଲେ । ମନମୋହନ ସାହୁ, ହରିହର ମର୍ଦ୍ଦରାଜ, ମଧୁରୀ ସାହୁ ଆଦି ଥିଲେ । ବୋଉ ଉପରଓଳି ଡ଼ଗରପଡ଼ା ଆସିଥିଲେ ।

୨.୧୨.୧୯୫୮

ଆଚାର୍ଯ୍ୟ ମହାଶୟଙ୍କ ସହ ଆମ୍ଭେମାନେ ଥୋଡ଼ିଆସାହିକୁ ଆସିଲୁ । ସେଠାରୁ ସେ ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ରଙ୍କ ବସାକୁ ଯାଇ, ଆଖି ପରୀକ୍ଷା କରାଇଲେ । ଜୋବ୍ରାଠାରେ ମ୍ୟୁନିସ୍‌ପାଲିଟିର ଚେୟାରମ୍ୟାନ୍ ଶ୍ରୀ ମନମୋହନ ମିଶ୍ର, ଆଚାର୍ଯ୍ୟ ମହାଶୟଙ୍କ ଛାତ୍ର ଶ୍ରୀ ହରିହର ମର୍ଦ୍ଦରାଜ, ଡାକ୍ତର ରବିଘୋଷ, ଅଧିକାରୀ ଚକ୍ରଧର ଦାସ ଆଦି ବିଦାୟ ଦେବାକୁ ଆସିଥିଲେ । ଚୁନୀଦେବୀ, ଶୈଳ ସାମନ୍ତସିଂହାର, ମାସୀ, ଫକୀର ମିଶ୍ର, ବ୍ୟାସଜୀ, ଆଦି ୨୦ ଜଣ ଆମେ ଚୌଦ୍ୱାରକୁ ଆଚାର୍ଯ୍ୟ ମହାଶୟଙ୍କ ସହ ଆସି ମାଇନର ସ୍କୁଲରେ ରହିଲୁ ।

୩.୧୨.୧୯୫୮

ଶ୍ରୀ ସାଧୁଚରଣ ନାୟକ ଓ ହେଡ୍‌ପଣ୍ଡିତ ଶ୍ରୀ ଭୋଳାନାଥ ଦାସ ଆମ ପାଇଁ ସାଇକେଲ ବନ୍ଦୋବସ୍ତ କରିଦେଲେ । ଆମର ଜିନିଷପତ୍ର ସେଥିଉପରେ ଲଦି ଓ ନିଜେ ନିଜେ କିଛି ଧରି, ସକାଳ ୭ଟାରେ ଚଉଦ୍ୱାର ମି.ଇ. ସ୍କୁଲରୁ ଚାଲି ସିଧା ନୂଆ ସଡ଼କରେ ପୁଷ୍ପାଙ୍ଗୀ ଗ୍ରାମ ପାଖ ଦେଇ ଆସିଲୁ । ସେଠାରେ ବାଲି ଚାତୁରୀ ଜୋରରେ ବହୁତ ରକ୍ତକଇଁ ଫୁଟିଥିବା ଦେଖିଲୁ - ବଡ଼ ମନୋହର ଦୃଶ୍ୟ । କଟକରୁ ଏହା ୧୭ ମାଇଲ ୨ ଫର୍ଲଙ୍ଗ ଅଟେ । ଆଚାର୍ଯ୍ୟ ମହାଶୟ କେଉଁଠି ୫ ମିନିଟ ସୁଦ୍ଧା ନ ବସି (ସଡ଼କର ଉତ୍ତରରେ ବଡଳ ଓ ବାଲୀ ଗ୍ରାମକୁ ରଖି) ଓରନ୍ଦା ଠାରେ ସଡ଼କରୁ ଉତ୍ତରକୁ ୨ ମାଇଲ ଆସି, ଘ ୧୧.୧୫ ମିନିଟରେ ଗୁରୁଡ଼ିଝାଡ଼ିଆ ମିଡ଼ିଲ୍ ସ୍କୁଲରେ ପହଞ୍ଚିଲେ । ମୋଟରେ ପ୍ରାୟ ୧୪ ମାଇଲ ବାଟ ହେବ । ଶ୍ରୀଯୁକ୍ତ ବାଳକୃଷ୍ଣ ପଟ୍ଟନାୟକ ( ଯେ ଉତ୍କଳ ସମ୍ମିଳନୀ ସମୟରୁ ଓଡ଼ିଶାରେ ପରିଚିତ, ବୟସ ବର୍ତ୍ତମାନ ୮୫ ବର୍ଷ) ଓ ଆମର ସହକର୍ମୀ ଶ୍ରୀଯୁକ୍ତ ହରେକୃଷ୍ଣ ବିଶ୍ୱାଳ କଟକରୁ ଆସି ଏଠାରେ ପହଞ୍ଚିଥିଲେ ।

ଗ୍ରାମର କୋଠଘରେ ମହିଳାମାନଙ୍କର ସଭା ହେଲା । ସନ୍ଧ୍ୟାରେ ପ୍ରାର୍ଥନାପରେ ବାଳକୃଷ୍ଣବାବୁଙ୍କର ସଭାପତିତ୍ୱରେ ସାଧାରଣ ସଭା ହେଲା । ଆଚାର୍ଯ୍ୟ ମହାଶୟ ଆଗେ ସର୍ବୋଦୟ ପାତ୍ର କଥା ବୁଝାଇଲେ । ଉପାସନାର "ଅହିଂସାସତ୍ୟ, ଅଧ୍ୟାୟରୁ ମୁଁ ସର୍ବୋଦୟ ବିଚାର ବୁଝାଇଲି । Family planning by contraceptives and american milk (powdered) କୁ ମୁଁ ନିନ୍ଦା କଲି ।

୫.୧୨.୧୯୫୮

ସକାଳ ଘ ୭.୨୫ମି.ରେ ଆଚାର୍ଯ୍ୟ ମହାଶୟଙ୍କ ସହ ଆମ୍ଭେମାନେ ଖୁଣ୍ଟୁଣୀରୁ ପଦଯାତ୍ରା କରି, ଭୋଗରା ଓ ତୋଟାପଡ଼ା ଗ୍ରାମ ପାଖଦେଇ ନରସିଂହପୁର ସଡ଼କରେ ଯାଇ ୪ ମାଇଲ ଦୂର କୁଲାଇଲୋ ଉ.ପ୍ରା. ସ୍କୁଲରେ ଘ ୯.୧୦ ମିନିଟରେ ପହଞ୍ଚିଲୁ । ଏଠାରେ ଆଚାର୍ଯ୍ୟ ମହାଶୟଙ୍କ ସହିତ ଦେଖା କରିବାକୁ ଆସିଥିଲେ - ମନ୍ତ୍ରୀ ରାଧାନାଥ ରଥ, ଆଠଗଡ଼ରୁ କୃଷ୍ଣବାବୁ (ମନ୍ତ୍ରୀ ରାଧାନାଥ ରଥଙ୍କର ଭାଇ), ବିଶ୍ୱନାଥ ଦାସ ଓ ବିଶ୍ୱନାଥ ମିଶ୍ର, ଦୀନବନ୍ଧୁ ରଥ, ଅଚ୍ୟୁତାନନ୍ଦ ଦାସ । ଏଠାର ସରପଞ୍ଚ ଅନନ୍ତ ବେହେରା - ମନୁଷ୍ୟର ଓ ଗୋରୁଗାଈର ହାଡ଼ଭଙ୍ଗାକୁ ଭଲ କରିଦିଅନ୍ତି । ସ୍କୁଲଘରେ ରାତିରେ ସଭା ହେଲା । ଜୋରନ୍ଦା-ଆଠଗଡ଼ର ସରପଞ୍ଚ ଶ୍ରୀ ପ୍ରଭାକର ମହାନ୍ତି ସଭାପତି ହେଲେ । ଏଠାରେ ଗରୀବ ଭୂମିହୀନ ଲୋକଙ୍କୁ ଦବାଇ ରଖାଯାଇଛି । ସନ୍ଧ୍ୟାପରେ ଖୁଡ଼ୀ(ମାଳତୀ ଦେବୀ), ହୃଷୀକେଶ ତ୍ରିପାଠୀ ଆଦି ଏଠାକୁ ଆସିଥିଲେ - ତା ୬ରେ ଆଚାର୍ଯ୍ୟ ମହାଶୟ ଢେଙ୍କାନାଳ ଜିଲ୍ଲାରେ ପ୍ରବେଶ କରିବେ ।

୬.୧୨.୧୯୫୮

ଆଚାର୍ଯ୍ୟ ମହାଶୟ ଓ ଆମେ ସକାଳ ଘ ୭.୩୦ରେ ଆଠଗଡ଼ରେ ପହଞ୍ଚିଥିଲୁ । ସେଠାରୁ ଶଙ୍କରପୁରକୁ ଆମ ସହ ଶ୍ରୀ ପରମାନନ୍ଦ ଜେନା, କାଶୀନାଥ ମିଶ୍ର ଓ କୃଷ୍ଣଚନ୍ଦ୍ର ରଥ ଶଙ୍କରପୁରକୁ ଆସିଲେ । ଦିନ ୧୨ଟା ବେଳେ ମୁଁ ଓ ଆଚାର୍ଯ୍ୟ ମହାଶୟ ଛାତ୍ରମାନଙ୍କୁ ଦୁଇ ପଦ ଲେଖାଁଏ କହିଲୁ । ଦିନ ୩ଟାରୁ ୫ଟା ପର୍ଯ୍ୟନ୍ତ ସାଧାରଣସଭା ହେଲା । ସରପଞ୍ଚ ସଭାପତି ହୋଇଥିଲେ । ଆଚାର୍ଯ୍ୟ ମହାଶୟ ସର୍ବୋଦୟ ବିଚାର ଓ ସର୍ବୋଦୟ ପାତ୍ର ସ୍ଥାପନ କରିବାକୁ ବୁଝାଇଲେ । ମୁଁ ସର୍ବୋଦୟ ସିଦ୍ଧାନ୍ତର ୪/୫ଟି ମୂଳକଥା ବୁଝାଇଲି । ସରକାରଙ୍କର ନିଶା ନିବାରଣରେ ହେଳା, ଭୂସଂସ୍କାରରେ ବିଳମ୍ବକୁ ସମାଲୋଚନା କଲି । ଆମେ ନିର୍ଦ୍ଦଳୀୟ ଲୋକ ଏବଂ କିଏ କ୍ଷମତାରେ ରହିଲେ, ଆମେ ଚିନ୍ତିତ ନୋହୁଁ । ଭାଗଚାଷ ଆଇନ ତାହାର କାର୍ଯ୍ୟକାରକମାନଙ୍କ ଦ୍ୱାରା ପଣ୍ଡ ହେଲା । ଏ ସବୁ ସମାଲୋଚନାକୁ କାଶୀନାଥ ମିଶ୍ର ଜଟିଳ ଓ ସରକାରର ବିରୋଧୀ କହିଲେ ।

ସନ୍ଧ୍ୟାପରେ ଆଠଗଡ଼ ହାଇସ୍କୁଲ ହତାରେ ସାଧାରଣ ସଭା ହେଲା । ପ୍ରାର୍ଥନା ପରେ, ମୁଁ ସର୍ବୋଦୟ ଭାରତୀୟ ଦର୍ଶନର ଆରମ୍ଭରୁ ଅଛି, ତାହାର କ୍ରମବିକାଶ, ବିନୋବାଜୀଙ୍କର ଭୂଦାନଯଜ୍ଞ କିପରି ଲୋକଙ୍କର ସ୍ୱେଚ୍ଛାକୃତ ଆଚରଣ, ଗ୍ରାମଦାନ, ସରକାରଙ୍କର ଯୋଜନା କିପରି ଗ୍ରାମଦାନ ପରେ ପ୍ରକୃତରେ ଫଳପ୍ରସୂ ହେବ, ସର୍ବୋଦୟ ସାମ୍ୟଯୋଗ ଅଟେ ସାମ୍ୟବାଦ ନୁହେଁ, ଇତ୍ୟାଦ ବିଷୟରେ ପ୍ରଥମେ ୧ ଘଣ୍ଟା କହିଲି । ଶେଷରେ ଆଚାର୍ଯ୍ୟ ମହାଶୟ ସର୍ବୋଦୟ ପାତ୍ର ସ୍ଥାପନ ପାଇଁ ନିବେଦନ କଲେ । ଶ୍ରୀ ଦୀନବନ୍ଧୁ ରଥ ସଭାପତି ହୋଇଥିଲେ ।

୭.୧୨.୧୯୫୮

ଆଠଗଡ଼ରୁ ଘ ୭.୩୦ମି.ରେ ବାହାରି ବଡ଼ଗିଲା ଭାୟା ଦୋରଡ଼, ବେପଡ଼ା, ମାଣିପୁର, ପାତ୍ରଭାଗ ହରିଜନସାହି, ପାତ୍ରଭାଗ ସେବାଶ୍ରମ, ସଦେଇବେରେଣୀ ଦେଇ ବଡ଼ଗିଲା ପ୍ରାଥମିକ ସ୍କୁଲରେ ପହଞ୍ଚିଲୁ ।

ଦିନ ୧୦ଟାରେ ସଦେଇବେରେଣୀ ଗ୍ରାମର ଦୁଇ ଅଶୋକ ଗଛ ଓ ବଉଳ ଗଛ ଥିବା ମଣ୍ଡପଠାରେ ପ୍ରାଇମେରୀ ସ୍କୁଲର ଛାତ୍ରମାନଙ୍କର ସଭାରେ ପ୍ରଫୁଲ୍ଲବାବୁ ଓ ଆଚାର୍ଯ୍ୟ ମହାଶୟ କିଛି କହିଲେ । ଉପରଓଳି ୩ଟା ଠାରୁ ରାତି ୭ ଟା ପର୍ଯ୍ୟନ୍ତ ସାଧାରଣ ସଭା ହେଲା । ଶ୍ରୀଧର ମଙ୍ଗରାଜ ସଭାପତି ହୋଇଥିଲେ । ଶରତ୍ ମହାରଣା ଗ୍ରାମଦାନ କଥା କହିଲେ । ହରେକୃଷ୍ଣ ବିଶ୍ୱାଳ ଗ୍ରାମରାଜ, ମାଳତୀ ଚୌଧୁରୀ ସଂବିଧାନ ଗଢ଼ା, ଭୋଟର ଅସାରତା, ଦେଶର ଦାରିଦ୍ର୍ୟ ଯୋଗୁଁ ଲୋକଙ୍କ ମଧ୍ୟରେ ଅସନ୍ତୋଷ । ଆଚାର୍ଯ୍ୟ ମହାଶୟ ସର୍ବୋଦୟପାତ୍ର ପାଇଁ ନିବେଦନ କଲେ । ସର୍ବୋଦୟ ମିତ୍ର ମଣ୍ଡଳୀ ଗଢ଼ା ହେଲା ।

୮.୧୨.୧୯୫୮

ସକାଳ ଘ ୭.୪୫ ମି.ରେ ବଡ଼ଗିଲା ଠାରୁ ବାହାରିଲୁ । ଗ୍ରାମପାଖ ଦେଇ ମହିଷାପାଟ ହରିଜନ ସାହିରେ ଆଚାର୍ଯ୍ୟ ମହାଶୟ ଅଭ୍ୟର୍ଥନା ପାଇ Basic Agricultural School, Mahishapatରେ ଛାତ୍ରମାନଙ୍କୁ କିଛି କହି ଢ଼େଙ୍କାନାଳ ସହରକୁ ଆସିଲେ । ଢ଼େଙ୍କାନାଳ ହାଇସ୍କୁଲରେ ପ୍ରାୟ ୧୨ଟା ୫ ମି ଠାରୁ ୧୨.୫୫ ମି. ପର୍ଯ୍ୟନ୍ତ ରହିଲେ । ସେ ଛାତ୍ରମାନଙ୍କୁ ସର୍ବୋଦୟ ପାତ୍ର କଥା କହିଲେ । ପରୀକ୍ଷା ଓ ସର୍ବୋଦୟ ବିଷୟରେ ଉକ୍ତ ସ୍କୁଲରେ ମୁଁ ମଧ୍ୟ ୫୦ ମିନିଟ୍ କହିଲି ।

୯.୧୨.୧୯୫୮

ଆଚାର୍ଯ୍ୟ ମହାଶୟଙ୍କ ସହ ଆମ୍ଭେମାନେ ଢ଼େଙ୍କାନାଳଗଡ଼ରୁ କାଇମାଟି ବାଟେ ୮ ମାଇଲ ଦୂର ବେଲଟିକିରିକୁ ଆସିଲୁ । ଉ.ପ୍ରା. ସ୍କୁଲରେ ରହିଲୁ । ହେଡ୍ ପଣ୍ଡିତ ଚନ୍ଦ୍ରଶେଖର

ମହାପାତ୍ରଙ୍କ ଘର ଲତାଦେଇପୁର, ବିଦ୍ୟାଧର ପଟ୍ଟନାୟକ (ନାଏବ ସରପଞ୍ଚ), ଗୋବିନ୍ଦ ମହାନ୍ତି (ମେମ୍ବର), ସାରଙ୍ଗଧର ଦାସଙ୍କର ପ୍ରିୟ ଲୋକ ହରମୋହନ ପଟ୍ଟନାୟକ (ଘର ବେଲଟିକିରି) ଆଦି ଅଭ୍ୟର୍ଥନା କରିଥିଲେ । ଉପରଓଳି ୪ ଟା ଠାରୁ ସନ୍ଧ୍ୟା ୮ଟା ପର୍ଯ୍ୟନ୍ତ ଗାଁ ଛକରେ ପ୍ରାର୍ଥନା ଓ ସାଧାରଣ ସଭା ହେଲା । ସ୍ତ୍ରୀଲୋକମାନେ ମଧ୍ୟ ଯୋଗ ଦେଇଥିଲେ । ବିଦ୍ୟାଧର ପଟ୍ଟନାୟକ ସଭାପତି ହୋଇଥିଲେ । ହରିବାବୁ, ଶରତ ମହାରଣା, ମାଳତୀ ଦେବୀ ଏବଂ ଆଚାର୍ଯ୍ୟ ମହାଶୟ ଭାଷଣ ଦେଇଥିଲେ ।

୧୦.୧୨.୧୯୫୮

ବେଲଟିକିରିରୁ ବନ୍ଧ-ନୂଆଗାଁ ବାଟେ ଜୋରନ୍ଦା ମହିମାଗାଦୀର ଅତିଥିଶାଳାକୁ ଗଲୁ । ହାଇସ୍କୁଲ ଓ ମିଡ଼ିଲ ସ୍କୁଲର ଛାତ୍ରମାନେ, ମହୀନ୍ଦ୍ରବାବା, ପ୍ରଭୃତି ଆଚାର୍ଯ୍ୟ ମହାଶୟଙ୍କୁ ପାଛୋଟି ନେଇଥିଲେ । ମହୀନ୍ଦ୍ରବାବା, ଶରତ ମହାରଣା ଓ ଆଚାର୍ଯ୍ୟ ମହାଶୟ ହାଇ ଓ ମିଡ଼ିଲ ସ୍କୁଲର ଛାତ୍ରମାନଙ୍କୁ ସର୍ବୋଦୟ ବିଷୟରେ ଘଣ୍ଟାଏ କହିଲେ ।

ମହୀନ୍ଦ୍ର ବାବାଙ୍କର ଆଶ୍ରମରେ ଆମ୍ଭେମାନେ ମଧ୍ୟାହ୍ନଭୋଜନ କଲୁ । ତତ୍‌ପରେ ଅଲେଖ ଧର୍ମର ମୂଳ ପ୍ରତିଷ୍ଠାତା ଯୋଗେଶ୍ୱର ମହିମା ଗୋସାଇଁଙ୍କର ସମାଧି ମନ୍ଦିର ବୁଲି ଆମ୍ଭେମାନେ ଦେଖିଲୁ । ମଧ୍ୟାହ୍ନଭୋଜନ ମହୀନ୍ଦ୍ରବାବାଙ୍କର ଆଶ୍ରମରେ ଏବଂ ରାତ୍ରିଭୋଜନ ବିଶ୍ୱନାଥ ବାବାଙ୍କର ଆଶ୍ରମରେ ଆମ୍ଭେମାନେ କରିଥିଲୁ । ସନ୍ଧ୍ୟାବେଳେ ମହିମାଗାଦୀର ଅତିଥିଶାଳାରେ ପ୍ରାର୍ଥନା ଓ ସାଧାରଣ ସଭା ହେଲା । ପ୍ରଫୁଲ୍ଲ ସାହୁ ଓ ଶରତ ମହାରଣା କହିଲେ । ଶ୍ରୀଯୁକ୍ତ ନବବାବୁ ସେତିକିବେଳେ ଆସି ପହଞ୍ଚିଲେ । ଗାଁ ଲୋକଙ୍କୁ ପୂରା ବିଶ୍ୱାସ କରାଯାଉ ଏବଂ ସେମାନେ ଗାଁକୁ ଗଢ଼ନ୍ତୁ ବୋଲି ସେ ସଂକ୍ଷେପରେ ଭାଷଣ ଦେଲେ । ମହିମାଧର୍ମର ମୂଳପୀଠରେ ଏଠାରେ ସନ୍ନ୍ୟାସୀମାନେ ୨ ଦଳରେ ବିଭକ୍ତ ହୋଇ ମାଲିମକଦ୍ଦମାରେ ଲାଗିଥିବା କଥାକୁ ସେ ଦୁଃଖ ସହକାରେ refer କରିଥିଲେ । ଆଚାର୍ଯ୍ୟ ମହାଶୟ ସର୍ବୋଦୟ ପାତ୍ର ସ୍ଥାପନ ପାଇଁ ନିବେଦନ କଲେ । ମହୀନ୍ଦ୍ର ବାବା ସଭାପତି ହୋଇଥିଲେ । ଦିନ ୨ଟା ବେଳେ ବିଶ୍ୱନାଥ ବାବା ଆଚାର୍ଯ୍ୟ ମହାଶୟଙ୍କୁ ଡକାଇ ପଠାଇଥିଲେ । ଆଚାର୍ଯ୍ୟ ମହାଶୟ ତାଙ୍କଠାକୁ ଯାଇଥିଲେ । ଆଚାର୍ଯ୍ୟ ମହାଶୟ, ବିଶ୍ୱନାଥ ବାବା, ମହେନ୍ଦ୍ର ବାବା ଓ ଉଭୟ ପନ୍ଥୀର କେତେକ ବାବାଜୀ ଏବଂ ଆମ୍ଭମାନଙ୍କର ଏକତ୍ର ଫଟୋ ଉଠିଲା ।

୧୧.୧୨.୧୯୫୮

ସକାଳେ ୭.୩୦ ମିନିଟରେ ଆଚାର୍ଯ୍ୟ ମହାଶୟ ଜୋରନ୍ଦା ମହିମାଗାଦୀରେ ଅତିଥିଶାଳାରୁ ପଦଯାତ୍ରାରେ ବାହାରିଲେ । ହରେକୃଷ୍ଣ ବିଶ୍ୱାଳ, ସୁରେନ୍ଦ୍ରନାଥ ମହାନ୍ତି, ପ୍ରଭାକର ଜେନା ଓ ମୁଁ ତାଙ୍କୁ ପାଖରେ ଥିବା ନାଳ ଓ ୫/୭ କିଆରି ବିଲର ହିଡ଼ବାଟ ପାରି କରି ଦେଇ ଆସିଲୁ । ଆମ୍ଭମାନଙ୍କୁ ସେ ସଙ୍ଗରୁ ଛାଡ଼ିବାକୁ ଅନିଚ୍ଛୁକ ଥିଲେ, ଏବଂ ବିଦାୟବେଳେ କହିଲେ

"ହଁ, ଆସିଛି ଏକା ଯିବି ଏକା ।'' ତାଙ୍କ ସହିତ ବହୁତ ଲୋକ ଏବଂ ନିଜର ଘନିଷ୍ଠ ପରିଚିତ ଲୋକ ସର୍ବଦା ରହନ୍ତୁ - ଏହା ତାଙ୍କର ଇଚ୍ଛା ବୋଲି ମୁଁ ଗତ ସପ୍ତାହ ତାଙ୍କ ସହ ପଦଯାତ୍ରାରେ ଲକ୍ଷ୍ୟ କଲିଣି । ମାତ୍ର ବରୀ ଅଞ୍ଚଳରେ ସର୍ବୋଦୟପାତ୍ର କାର୍ଯ୍ୟ, ହରିଦାସପୁରରେ ପ୍ରସ୍ତାବିତ ମାତୃମଙ୍ଗଳ କେନ୍ଦ୍ର ସ୍ଥାପନ, ଆଦି ଭାବି ମୁଁ ଆଚାର୍ଯ୍ୟ ମହାଶୟଙ୍କର ଓ ପ୍ରଫୁଲ୍ଲଚନ୍ଦ୍ର ସାହୁଙ୍କର ଅନୁରୋଧ (ପଦଯାତ୍ରାରେ ଅନ୍ତତଃ ତାରିଣୀପଶି ପର୍ଯ୍ୟନ୍ତ ଯାଏଁ) ରକ୍ଷା ନ କରି ଚାଲିଆସିଲି ।

ମହେନ୍ଦ୍ରବାବା (କୌପୁନଧାରୀ ଅଲେଖବାବା), ଆଚାର୍ଯ୍ୟ ମହାଶୟ ପ୍ରଭୃତିଙ୍କୁ ଜଳଖିଆ ଖୁଆଇ, ଗ୍ରାମମଧ୍ୟରେ ସଙ୍ଗରେ ଯାଇ, ନାଳ ପର୍ଯ୍ୟନ୍ତ ବାଟେଇ ଦେଇ ଆସିଲେ । କି ନମ୍ରତା ଓ ଭଦ୍ର ବ୍ୟବହାର ଏବଂ ସୌଜନ୍ୟ !

୧୨.୧୨.୧୯୫୮

ସକାଳେ ଜିଜୀ ଓ ଫକୀର ବାବୁ ହରିଦାସପୁରଠାରେ ଅନୁଷ୍ଠାନ ବିଷୟରେ କଥାବାର୍ତ୍ତା କଲେ । ଚୁନୀ ଦେବୀଙ୍କୁ ମୁଁ କହିଲି ଯେ ଜିଜୀଙ୍କର ଅନୁଷ୍ଠାନ ଗଢ଼ିବାରେ ମଧ୍ୟ ମୋର ମମତା ନାହିଁ । ତେବେ ଯାହାଙ୍କୁ ଯାହା କହିବା, ସେ ଦିଗରେ କିଛି ତାଙ୍କୁ ସାହାଯ୍ୟ ପ୍ରକୃତରେ କରିବା ଉଚିତ । ଏହି ବିଚାରରେ ଆମ୍ଭେମାନେ କାର୍ଯ୍ୟ କରୁଅଛୁ ।

୧୩.୧୨.୧୯୫୮

ସକାଳେ ଶ୍ରୀଯୁକ୍ତ ଗୁଣନିଧିବାବୁ ଓ ଜିଜୀ ଶ୍ରୀ ଅଶୋକ ଦାସ (ପଣ୍ଡିତ ନୀଳକଣ୍ଠ ଦାସଙ୍କର ବଡ଼ ପୁଅ)ଙ୍କୁ ଦେଖା କରି ଟ୍ରଷ୍ଟ ଦଲିଲ ଚିଠା କରିବାକୁ କହିଲେ । ମୁଁ ପରେ ଯାଇ ପହଞ୍ଚିଲି, ଏବଂ ଅଶୋକବାବୁଙ୍କୁ ଦେଖା ନ କରି, ବାହାରୁ ଚାଲିଆସିଲି । ଗ୍ରାମସେବକ ପ୍ରେସ୍‌ରେ ସଚ୍ଚିବାବୁଙ୍କ ସହିତ ମାମୁଲି କଥାବାର୍ତ୍ତା କରିଆସିଲି ।

ଆଜି ଉତ୍କଳ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବ । ଶ୍ରୀ ଚିନ୍ତାମଣି ଦେଶମୁଖ ( ଯେ ପୂର୍ବେ ଭାରତ ଇଉନିୟନର ଅର୍ଥମନ୍ତ୍ରୀ ଥିଲେ ଏବଂ ଏବେ University Grant Commission ର Chairman ଅଛନ୍ତି) ପ୍ରଧାନ ଅତିଥି ହୋଇ ଆସିଛନ୍ତି । ତାଙ୍କର ସହଧର୍ମିଣୀ ଶ୍ରୀମତୀ ଦୂର୍ଗାବାଈ ମଧ୍ୟ ଆସିଛନ୍ତି । ଦୁର୍ଗାବାଈ ବୋଉଙ୍କ ସହ ଦେଖା କରିବାକୁ ସନ୍ଧ୍ୟାବେଳେ ଥୋଡ଼ିଆସାହି ଭୂଦାନ ଅଫିସକୁ ଆସିଥିଲେ । ଚୁନୀ, ମାସୀ, ଜିଜୀ, ଇନ୍ଦିରା ଦେବୀ ଆଦି ତାଙ୍କ ସହ ଦେଖାକଲେ ଓ କଥାବାର୍ତ୍ତା ଶୁଣିଲେ । ମୁଁ ଇଚ୍ଛା କରି ସେଠାକୁ ଗଲି ନାହିଁ । ତାଙ୍କ ସହ ମୋର ପରିଚୟ ନାହିଁ, ଏମିତି ଖାଲି ଦେଖିବାର କି ପ୍ରୟୋଜନ ଅଛି ? ଗ୍ରାମଦାନ ଗାଁ ମାନଙ୍କରେ ସମାଜ କଲ୍ୟାଣ ବୋର୍ଡ଼ ତରଫରୁ ସେବାକାର୍ଯ୍ୟ କରିବାକୁ ବହୁତ ଟଙ୍କା ସରକାର ରଖିଛନ୍ତି ମାତ୍ର ଯୋଜନା ଏବଂ ଏଷ୍ଟିମେଟ୍ କର୍ମୀମାନେ ଦେଇନଥିବାରୁ, ଟଙ୍କା ଖର୍ଚ୍ଚ ହୋଇପାରୁନାହିଁ ବୋଲି ସେ (କେନ୍ଦ୍ର ସମାଜ କଲ୍ୟାଣବୋର୍ଡ଼ର ଚେୟାରମାନ୍ ଭାବରେ ଦୁର୍ଗାବାଈ) କହିଲେ ।

୧୪.୧୨.୧୯୫୮

ମାସୀ ଓ ରମ୍ଭା ଦେବୀଙ୍କ ସହ ମୁଁ ଡାକ୍ତର ଶରତ୍‌ଚନ୍ଦ୍ର ମିଶ୍ର ଓ ଓକିଲ ଶ୍ରୀ ଅଶୋକ ଦାସଙ୍କର ନିକଟକୁ ଗଲି । ସେମାନେ "ସେବା-ନିକେତନ'' (ରମ୍ଭାଦେବୀ ଯେଉଁ ଅନୁଷ୍ଠାନ କରିବାକୁ ଯାଉଅଛନ୍ତି)ର ପରାମର୍ଶଦାତା କମିଟିରେ ମେମ୍ବର ରହିବାକୁ ସମ୍ମତି ଦେଲେ । ଏହି ଅନୁଷ୍ଠାନ ପାଇଁ ଚାନ୍ଦା ସଂଗ୍ରହର ରସିଦ ଛାପିବାକୁ ଅର୍ଡ଼ର, ରମ୍ଭାଦେବୀଙ୍କର ବରାତ ଅନୁସାରେ, ମୁଁ ଗ୍ରାମସେବକ ପ୍ରେସ୍‌ରେ ଦେଇ ଆସିଲି ।

ଦିନ ଟ୍ରେନ୍‌ରେ ହରିଦାସପୁରକୁ ଆସିଲି । କଦଳାମଠରେ ରାତିରେ ରହିଲି । ଅଧିକାରୀ ମହାଶୟ ମୋତେ ଟ୍ରଷ୍ଟି ହେବାକୁ ଅନୁରୋଧ କଲେ – ପ୍ରସ୍ତାବିତ ଅନୁଷ୍ଠାନକୁ ବାବୁଲି ଓ ବନ୍ଦୁ ସହ ସମାନ ଦୃଷ୍ଟିରେ ଦେଖିବାକୁ କହି । ମୁଁ କହିଲି ଯେ ଅନୁଷ୍ଠାନ ପାଇଁ ଯେତେ ପରିଶ୍ରମ କରିବା ଓ ଯେତେ ପରାମର୍ଶ ଦେବା ସମ୍ଭବ, ମୁଁ ତାହା କରିବି ମାତ୍ର ଟ୍ରଷ୍ଟି ହେବା ମୋର ଇଚ୍ଛା ନୁହେଁ ।

ମୋର ସାଇକେଲ ବିଲାତରୁ ଆଣିଦେବାକୁ ହରିସାହୁ ନେଉଳପୁରର ହାଫିଜୁଦ୍ଦିନ୍ ମିଆଁଙ୍କୁ ଟ. ୨୦୦/- ଦେଇଛନ୍ତି ।

୧୫.୧୨.୧୯୫୮

ସକାଳେ କଦଳାମଠରେ ନିତ୍ୟକର୍ମ ସାରି, ପଖାଳ ଖାଇ, ଘ ୯.୩୫ ମିନିଟ୍‌ରେ ଚାଲି କରି ଶଗଡ଼ିଆ ନାଳ, ପାଟପୁର, ମୁଣ୍ଡମାଳ, ରାଆପଡ଼ା, ବନ୍ଧଡ଼ିହ, ବାଲିଆ ବାଟେ ମୁଁ ରାମଚନ୍ଦ୍ରପୁରରେ ଉପରଓଳି ଘ ୩.୫୦ ମିନିଟ୍‌ରେ ପହଞ୍ଚିଲି ।

ଶ୍ରୀ ବୁଲୁବାବୁ ମଧ୍ୟ କଟକରୁ ଅନ୍ୟ ବାଟରେ ଆସି ସନ୍ଧ୍ୟାରେ ରାମଚନ୍ଦ୍ରପୁରରେ ପହଞ୍ଚିଲେ । ଥକା ଲାଗିବାରୁ (ମୁଁ କସ୍ତୁରବା କେନ୍ଦ୍ରରେ ଭାତ ଖାଇବା ପରେ ପରେ ) ସନ୍ଧ୍ୟାବେଳୁ ଶୋଇପଡ଼ିଲି ।

୧୭.୧୨.୧୯୫୮

ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁ ଆଜି ଅହମଦାବାଦଠାରେ ଆଚାର୍ଯ୍ୟ ବିନୋବା ଭାବେଙ୍କୁ ଦେଖା କରିଥିବେ । ସକାଳେ ହରିଦାସପୁରରେ ହୋମିଓପାଥି ଚିକିତ୍ସକ ଶ୍ରୀ ଗୋଲକ ଷଡ଼ଙ୍ଗୀ କଦଳାମଠକୁ ଆସିଲେ । ଅଧିକାରୀ ମହାଶୟଙ୍କ ଉପସ୍ଥିତିରେ ସେ (ଷଡ଼ଙ୍ଗୀ ମହାଶୟ) ମୋତେ ଟ୍ରଷ୍ଟି ରହିବାକୁ ମଧ୍ୟ ଅନୁରୋଧ କଲେ । ମୋର ଅନିଚ୍ଛା ମୁଁ ବୁଝାଇ କହିଲି । ମୁଁ (ତଥା ଅନ୍ୟ କେତେ ଜଣ ଜଣାଶୁଣା ଲୋକ ବାହାରୁ) ଟ୍ରଷ୍ଟି ରହିଲେ ବା ପରାମର୍ଶଦାତା ରହିଲେ, କାର୍ଯ୍ୟ ପୂରା ହୋଇଯିବ ନାହିଁ । ସ୍ଥାନୀୟ ଲୋକେ ଏବଂ ଆଖପାଖର

୧୪/୧୫ ଖଣ୍ଡ ଗ୍ରାମର ଗ୍ରାମବାସୀମାନେ ଅନୁଷ୍ଠାନକୁ ନିଜର ଭାବିବା ଓ ଯଥାଶକ୍ତି ସାହାଯ୍ୟ କରିବା ଉଚିତ । ଲୋକଶକ୍ତିରେ ଏହାକୁ ଗଢ଼ିବାପାଇଁ ଆରମ୍ଭରୁ ଯତ୍ନ ହେବା ଉଚିତ ।

ପରେ, ସର୍ବସେବା ସଂଘର ଚାଳିସଗାଁଓ-ସମ୍ମେଳନ, ଅଗଷ୍ଟ ୧୯୫୮ର ରିପୋର୍ଟ ପଢ଼ିବାବେଳେ, ମୋର ମନକୁ ଆସିଲା ଯେ ଫକୀର ବାବୁ ଓ ରମ୍ଭାଦେବୀଙ୍କର ପ୍ରସ୍ତାବିତ ଅନୁଷ୍ଠାନ ଏ ଅଞ୍ଚଳରେ ଏକ ସର୍ବସେବା ଅନୁଷ୍ଠାନ - ସବୁ ରଚନାତ୍ମକ କାର୍ଯ୍ୟର ସମନ୍ୱୟ । ସର୍ବୋଦୟର ବିଭିନ୍ନ ପ୍ରବୃତ୍ତି (କାର୍ଯ୍ୟଗୁଡ଼ିକ)ର କେନ୍ଦ୍ର - ହେବା ଦରକାର ନୁହେଁ କି ? ଏ ଅଞ୍ଚଳରେ ତ ଆଗରୁ କୌଣସି ରଚନାତ୍ମକ କାମ ହୋଇନାହିଁ; ଗ୍ରାମଦାନ ହୋଇନାହିଁ । ଏ ଅବସ୍ଥାରେ ଅନୁଷ୍ଠାନର ମୂଳ ଲକ୍ଷ୍ୟ (ଲୋକେ ସ୍ୱାଶ୍ରୟୀ, ସ୍ୱୟଂପୂର୍ଣ୍ଣ ଗ୍ରାମ କରିବେ....) କିପରି ଲୋକଙ୍କୁ ବୁଝାଇବାକୁ ହେବ । ଆରମ୍ଭରୁ ସେଥିପ୍ରତି ଲୋକଙ୍କର ଧ୍ୟାନ ଆକର୍ଷଣ କରିବାକୁ ହେବ ।

୧୮.୧୨.୧୯୫୮

ସନ୍ଧ୍ୟାପରେ କଦଳାମଠକୁ ଲକ୍ଷ୍ମୀଧର ମାଷ୍ଟରଙ୍କ ପୁଅ ଦାମୋଦର ସାମଲ ଆସିଲେ । ଅଧିକାରୀ ମହାଶୟଙ୍କ ସାମନାରେ ସେ ମଧ୍ୟ ମୋତେ ଅନୁରୋଧ କଲେ ଯେ ଏଠା ପ୍ରସ୍ତାବିତ ସେବା-ନିକେତନର ଟ୍ରଷ୍ଟୀମଣ୍ଡଳରେ ରହେ । ମୋର ଅନିଚ୍ଛା ଓ କାରଣ କହିଲି । ସେ ଆଉ ବଳାଇ ମୋତେ କହିଲେ ନାହିଁ । ଶୁଭ ଦେବାର ତାରିଖ ୧୬.୧.୧୯୫୯ ମକର ୩ଦିନ ଶୁକ୍ରବାରକୁ ସ୍ଥିର ହେଲା । ଏ ଅନୁଷ୍ଠାନକୁ ୰ଗୋପବନ୍ଧୁ ଚୌଧୁରୀଙ୍କର ସ୍ମୃତି ସହ ଯୋଡ଼ିବାକୁ ଅଧିକାରୀ ମହାଶୟ ଆଜି ହଠାତ୍ କଥାପ୍ରସଙ୍ଗରେ କହିଲେ । ଏ ବିଷୟରେ ଅନ୍ୟ ସଂପୃକ୍ତ ବ୍ୟକ୍ତିମାନଙ୍କର ମତ ନିଅନ୍ତୁ ବୋଲି ମୁଁ କହିଲି । ଅଧିକାରୀ ମହାଶୟ କହିଲେ ଯେ ତାଙ୍କର ଓ ମୋର ସ୍ନେହ-ସଂପର୍କ ଛିନ୍ନ ହୋଇପାରେ ନା ।''

କ୍ରାନ୍ତିର ସ୍ୱରୂପ : (୧) ଜୀବନର, ସମାଜର ସବୁଦିଗକୁ ଏହା ସ୍ପର୍ଶ କରେ ଓ ବଦଳାଇଦିଏ । (୨) ଏଥିରେ (କ୍ରାନ୍ତିରେ)ମାରକାଟ ଥାଏ । ଏହାର ଅର୍ଥ ତରବାରୀ ଦ୍ୱାରା ହଣାକଟା ହୁଏ, ତାହା ନୁହେଁ ମାତ୍ର ମନ୍ଦ କାର୍ଯ୍ୟ, ମନ୍ଦ ଅଭ୍ୟାସକୁ ଲୋପ କରାଯାଏ ।

ସର୍ବସେବା ସଂଘର ଉଦ୍ଦେଶ୍ୟ ସମାଜର ମୂଳଭିତ୍ତି ବଦଳାଇଦେବା । କେବଳ ସେବା କରିବା ବା ଲୋକଙ୍କୁ ରିଲିଫ୍ ଦେବା ଏହାର ଲକ୍ଷ୍ୟ ନୁହେଁ । "We want revolution in property relations, economic order and human relations" "ଅତଏବ ସେବା ଓ କଲ୍ୟାଣ କରୁଥିବା ସଂସ୍ଥାଗୁଡ଼ିକର ସହଯୋଗ ସର୍ବସେବା ସଂଘ ପାଇପାରେ, ମାତ୍ର ଏଗୁଡ଼ିକ ସଂଘର ସଦସ୍ୟ ହୋଇପାରିବେ ନାହିଁ ।"

ଦେଶରେ ସେବା କରିବାର, ସମାଜର କଲ୍ୟାଣକର କାର୍ଯ୍ୟ କରିବାର ଭାବ ତ

ଅତି ଅଳ୍ପ ଲୋକଙ୍କ ମଧ୍ୟରେ ଦେଖାଯାଉଛି । କେହି ତ ନିଜ ଇଚ୍ଛାରେ ପଇସାଏ କମ୍ ବେତନ ବା ଭତ୍ତା ନେଇ କାର୍ଯ୍ୟ କରିବାକୁ କ୍ୱଚିତ୍ ଦେଖାଯାଉଛନ୍ତି । Revolution ଭାବ ତ ଦୂରର କଥା !!

୧୯.୧୨.୧୯୫୮

ବିନୋବାଙ୍କର ଗୀତା-ପ୍ରବଚନ ପଢ଼ିଲି । କାଲି ମଧ୍ୟ ସକାଳେ ଘଣ୍ଟାଏ ପଢ଼ିଥିଲି । ୧୩ଶ ଓ ୧୪ଶ ଅଧ୍ୟାୟ ଶେଷ । ଦିନ ଟ୍ରେନ୍‌ରେ ଶ୍ରୀମତୀ ରମ୍ଭାଦେବୀ(ଜିଜୀ) ଓ ଶ୍ରୀମତୀ ଶଶିରେଖା ଦେବୀ କଟକରୁ ହରିଦାସପୁରକୁ ଆସିଲେ । କଦଳାମଠରେ ଅଧିକାରୀ ମହାଶୟ ଦର୍ପଣୀର ତହସିଲଦାର ଶ୍ରୀ ଫକୀର ଚରଣ ଜେନାଙ୍କ ସହ ଆମର ପରିଚୟ କରାଇ ଦେଲେ । ମାତୃମଙ୍ଗଳ କେନ୍ଦ୍ରକୁ ସାହାଯ୍ୟ ସହଯୋଗ କରିବାକୁ ମୁଁ କହିଲି । ଅପରାହ୍ନରେ ଅଧିକାରୀ ମହାଶୟ ଜିଜୀଙ୍କୁ ଓ ମୋତେ ଘରତିଆରିର ଜାଗା ଦେଖାଇଲେ । ତା ୧୬.୧.୧୯୫୯ ଶୁକ୍ରବାରରେ ଏଠାରେ ମାତୃମଙ୍ଗଳ କେନ୍ଦ୍ରରେ ଶୁଭ ଦେବା କଥା ସ୍ଥିର ହେଲା । ଜିଜୀ ପରିଷ୍କାରରୂପେ ଅଧିକାରୀ ମହାଶୟଙ୍କୁ କହିଲେ ଯେ ତାଙ୍କ ଠାରେ ତାଙ୍କର ନିଜର କୌଣସି ଟଙ୍କା ନାହିଁ; ସେ କେବଳ ନିଜର ସେବା ସମାଜକୁ ଅର୍ପଣ କରିପାରନ୍ତି । ସେ ନିଜର ନାମ ଏହି ପ୍ରସ୍ତାବିତ ଅନୁଷ୍ଠାନ ସହ ଯୋଗ କରିବାକୁ ଆଗରୁ (ନିଜର ଟଙ୍କାପଇସା ଖର୍ଚ୍ଚ କରିବାକୁ କଳ୍ପନା ଥିବାବେଳେ) କିମ୍ବା ଏବେ (ନିଜର କିଛି ନ ଥିବା ଅବସ୍ଥାରେ) ଚାହାନ୍ତି ନାହିଁ । ତାଙ୍କର ସ୍ୱାମୀ ଗୋବର୍ଦ୍ଧନ ପ୍ରସାଦ ଦୁତିୟା ମଧ୍ୟ ସର୍ବଦା କହୁଥିଲେ ଯେ କାମ କରିଯାଅ, ନାମ ଚାହଁ ନାହିଁ । ଜିଜୀ ତାଙ୍କୁ ଗୁରୁ କରି ମାନୁଥିଲେ । ସେହି ଗୁରୁଙ୍କର କଥା ସେ ମନେ କରି ଚାଲିଛନ୍ତି । ଦୁତିୟାଜୀ ...(ଜିଜୀଙ୍କୁ ନଗଦ ଅଶୀ ହଜାର ଟଙ୍କା ଦେବା ଓ ଏକ ଲକ୍ଷ ଟଙ୍କାର ଏକ ଟ୍ରଷ୍ଟ କରିଦେବା) କାର୍ଯ୍ୟକାରୀ ହେବାର ଆଦୌ ଆଶା ନାହିଁ । ଏହି ବିଫଳତା ମଧ୍ୟ ଈଶ୍ୱରଙ୍କର ଏକ ଆଶୀର୍ବାଦ ବୋଲି ଜିଜୀ କହିଲେ । କାରଣ ଏହାଦ୍ୱାରା ସେ ଲୋକସାଧାରଣଙ୍କ ଦାନ ଉପରେ ମୂଳରୁ ନିର୍ଭର କରି କାର୍ଯ୍ୟ କରିବେ । ତାଙ୍କର କାର୍ଯ୍ୟ ଠିକ୍ ହେଲେ, ଈଶ୍ୱର ସହାୟ ହେବେ, ସେ କହିଲେ । ମୁଁ ଦେଖୁଛି ଯେ ଜିଜୀଙ୍କର ବିଚାର ମୂଳରୁ ସଫା ଅଛି ଏବଂ ତାଙ୍କର ଖୁବ୍ ସହିଷ୍ଣୁତା, ଓ ଅବସ୍ଥା ସହ ନିଜକୁ ମିଳାଇନେବାର ମନ ଅଛି । ସେ ଓ ଅଧିକାରୀ ମହାଶୟ ମୋତେ ଟ୍ରଷ୍ଟୀ ରହିବାକୁ ବହୁତ କହିଲେ । ମୁଁ ସଫା କହିଲି ଯେ ଓଡ଼ିଶାରେ ଅନେକ ଗଠନମୂଳକ କାର୍ଯ୍ୟସଂସ୍ଥାରେ ବିଶିଷ୍ଟ ଲୋକେ ( ବୁଲୁବାବୁ, ମାଳତୀଦେବୀ, ରମାଦେବୀ.....) ପରିଚାଳକ ବା ସଂପାଦକ ପରି ଥିବାରୁ, ତାଙ୍କର ସହକର୍ମୀମାନେ ବା ତଳର ଲୋକେ ନିଜ ନିଜର ଦାୟିତ୍ୱ ଉପଲବ୍ଧି କରୁନାହାନ୍ତି, ସବୁ କଥାରେ ଏହି କର୍ମୀମାନେ ଶେଷରେ କହନ୍ତି ଯେ ସେହି ବଡ଼ବଡ଼ିଆଙ୍କ କଥାରେ ସବୁ କାମ ହେବ, ଆମର ସେଥିରେ କଅଣ ଭାବିବାକୁ ଅଛି ? ବଡ଼ବଡ଼ଙ୍କର ମଧ୍ୟ

ସେହି ଅନୁଷ୍ଠାନମାନଙ୍କରେ ବଡ଼ ଆସକ୍ତି ଅଛି । ଏଣୁ ସେଗୁଡ଼ିକ ସେମିତି ଅଧିକ ଉଧଉନାହିଁ । ଏଥିରୁ ମୋର ସୂଚନା ଯେ ସାଧାରଣ ଲୋକଙ୍କ ଉପରେ ଏ ପ୍ରସ୍ତାବିତ ଅନୁଷ୍ଠାନର ଭାର ଦିଆଯାଉ ଏବଂ ମୂଳରୁ ସେମାନଙ୍କୁ ସଂପୃକ୍ତ କରାଯାଉ । ମୁଁ ଏଥିରେ ସଦସ୍ୟ ହେବାକୁ ସେଥିପାଇଁ ଚାହେଁ ନାହିଁ ।

୨୧.୧୨.୧୯୫୮

ସକାଳ ୧୦ଟାଠାରୁ ୧୨ଟା ପର୍ଯ୍ୟନ୍ତ ଏବଂ ଉପରଓଳି ୩ଟା ଠାରୁ ସନ୍ଧ୍ୟା ୭ଟା ପର୍ଯ୍ୟନ୍ତ ରାମଚନ୍ଦ୍ରପୁରରେ ଏ ଅଞ୍ଚଳର ସର୍ବୋଦୟ ସେବକ ଓ ସମର୍ଥକମାନଙ୍କର - ମୋଟରେ ପ୍ରାୟ ୩୩ ଜଣଙ୍କର - ଏକ ଆଲୋଚନା ସଭା ଶ୍ରୀ ମନମୋହନ ଚୌଧୁରୀଙ୍କର ଅଧ୍ୟକ୍ଷତାରେ ହେଲା । ମୁଁ ଯୋଗ ଦେଲି । ଏ ଅଞ୍ଚଳରେ ସର୍ବୋଦୟ ମିତ୍ର-ମଣ୍ଡଳୀ, ସହଯୋଗୀମଣ୍ଡଳୀ ଗଢ଼ାହେବା, ୫ ଜଣ ସେବକ ୫ଟି ବିଭିନ୍ନ ଅଞ୍ଚଳରେ ସ୍ଥାୟୀ ଭାବରେ କାର୍ଯ୍ୟ କରିବା ଏବଂ ମାସିକ ଆଲୋଚନା ସଭା ହେବା ଓ ଦୋଳଗୋବିନ୍ଦ ରାଜ ଆବାହକ ଓ ସର୍ବୋଦୟ ପାତ୍ରରୁ ସଂଗ୍ରହର ହିସାବ-ରକ୍ଷକ ରହିବା ଠିକ୍ ହେଲା ।

୨୨.୧୨.୧୯୫୮

ଉତ୍ତରପ୍ରଦେଶର ଗୋରଖପୁରରେ ସର୍ବସେବା ସଂଘର ପ୍ରବନ୍ଧ ସମିତିର ବୈଠକରେ ଯୋଗ ଦେବାକୁ ଆଜି ସକାଳେ ବୁଲୁବାବୁ କଟକ ଗଲେ । ୧୯୫୮ ମସିହାରେ ମୁଁ ଉତ୍କଳ ଖଦୀମଣ୍ଡଳରୁ କେତେ ବହି ବିକ୍ରି କରିବାକୁ ନେଇଅଛି ଓ ଅନ୍ୟମାନଙ୍କ ସହ ମୋର ସାମାନ୍ୟ ଦେଣା-ପାଉଣା ମୋର ହିସାବଖାତା ଦେଖି, ଟିପିଲି ।

ମୁଁ ଅଣିକଣାରେ ୩ଟା ବେଳେ ପହଞ୍ଚିଲି । ଅମ୍ବରଚରଖା କେନ୍ଦ୍ରରେ ସେହି ଗ୍ରାମର ମନୋମାଳିନ୍ୟ-ନିଷ୍ପତ୍ତିର ବୈଠକ ରାତିରେ ହେଲା । ପ୍ରାଣକୃଷ୍ଣ ପଟ୍ଟନାୟକ, ରଙ୍ଗାଧର ଦାସ ମଧ୍ୟସ୍ଥ ଭାବରେ ସବୁ ଆଲୋଚନା କଲେ । ଏଠାର ୨ ଜଣ ମୁଖ୍ୟ ଲୋକ - ବାଳାମଣି ଜେନା ଓ ରାମଚନ୍ଦ୍ର ମହାପାତ୍ର ସାଧାରଣ ଗ୍ରାମବାସୀଙ୍କୁ ୨ ଦଳରେ ବିଭକ୍ତ କରି, ଅନେକ ଅନର୍ଥ ସୃଷ୍ଟି କରିଛନ୍ତି । ଆଜି ମୁଖ୍ୟତଃ କାର୍ତ୍ତିକ ବେହେରା (କେଉଟ) ଏବେ କରିଥିବା ମକଦ୍ଦମା ବିଷୟରେ ଚର୍ଚ୍ଚା ହେଲା । ଶ୍ରୀ କୁଶ ପଇଡ଼ା ଠିକ୍ ସତ କଥା କହିବା ପରି ଆମକୁ ଜଣାଗଲା । କେତେବର୍ଷ ପୂର୍ବେ ଏଠାର ଜଣେ ଖଣ୍ଡାୟତ (ଏମାନଙ୍କର ସ୍ୱଜାତି) ବିଧବା ବିବାହ ବାଳାମଣି ଜେନା, ଆଦିଙ୍କର ପୂର୍ବ ସମର୍ଥନରେ କରିଥିଲେ । ମାତ୍ର ପଛେ ବାଳାମଣି ଜେନା ତାଙ୍କୁ ସାମାଜିକ ବାସନ୍ଦ କରି ଅନେକ ବର୍ଷ ହଇରାଣ କରିଥିବାର ପ୍ରମାଣ ମିଳିଲା । ଏହାକୁ ମୂଳ କରି, ଗାଁରେ ଦଳାଦଳି ସୃଷ୍ଟି କରି, ସାଧାରଣ ଅଶିକ୍ଷିତ ଓ ନିର୍ବୁଦ୍ଧିଆ ଲୋକଙ୍କୁ ମୁଖ୍ୟ ଲୋକେ ହଟହଟା କରୁଅଛନ୍ତି ।

ରାଜନୈତିକ ସ୍ୱାଧୀନତା ସଙ୍ଗେ ସଙ୍ଗେ ଅର୍ଥନୈତିକ ଓ ସାମାଜିକ ସମତା ଆଣିବାକୁ - ଅନ୍ତତଃ ଲୋକସାଧାରଣଙ୍କ ମନରେ ଏହି ସମାନ ଅଧିକାର ଦିଗରେ କର୍ତ୍ତବ୍ୟ ଓ ଜାଗରଣ ଅଣାଇବାକୁ ଗାଁଗହଳରେ କିଛି ହୋଇ ନ ଥିବାରୁ, ଏ ସବୁ ଅତ୍ୟାଚାର ଚାଲିଛି । ଅକାରଣରେ କେତେ ଲୋକଶକ୍ତି, ସମୟ ଓ ପଇସା ଏହି କଳିଗୋଳରେ ଓ ମକଦ୍ଦମାରେ ନଷ୍ଟ ହେଉଛି !! ରାତିରେ ଅମ୍ବରଚରଖା ଘରେ ରହିଲୁ ।

୨୫.୧୨.୧୯୫୮

ସକାଳେ ଫକୀର ମିଶ୍ରଙ୍କୁ ଅଧା ଚିଠି ଲେଖିଲି । ଖଦୀମଣ୍ଡଳର ବହି ହିସାବ (ମୋ ସହିତ ଥିବା) ପୂରା କରିଦେଲି । ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନଙ୍କର ବୈଠକରେ ଯୋଗ ଦେଲି - ଷାଣ୍ମାସିକ ପରୀକ୍ଷା କିପରି ହେବ, ତାହା ଆଲୋଚିତ ହେଲା । ୯ ଟାରୁ ୧୧ ଟା ପର୍ଯ୍ୟନ୍ତ । ବଡ଼ଦିନ ଯୋଗୁଁ କସ୍ତୁରବା ମହିଳା କେନ୍ଦ୍ରରେ ପିଠା ଓ କ୍ଷୀରି ହୋଇଥିଲା । ତାହା ଖାଇ, ଅଧଘଣ୍ଟାଏ ବିଶ୍ରାମ କଲି ।

"ବାଣୀ-ଶ୍ରୀ'' (ରାମଚନ୍ଦ୍ରପୁର ମୌଳିକ ଶିକ୍ଷାକେନ୍ଦ୍ର)ର ଛାତ୍ର-ଛାତ୍ରୀ, ଗୁରୁଜୀମାନେ ଓ କସ୍ତୁରବା ଟ୍ରେନିଂକେନ୍ଦ୍ରର ଶିକ୍ଷାର୍ଥିନୀମାନେ ଆଜି ଯୀଶୁଖ୍ରୀଷ୍ଟଙ୍କର ଆଦର୍ଶ, ଅଦ୍ଭୁତ କାର୍ଯ୍ୟ ଓ ଜୀବନୀ ବିଷୟରେ ଏକ ସଭା କରିଥିଲେ । ଅନେକ ଛାତ୍ର, ଛାତ୍ରୀ ଓ ଶିକ୍ଷାର୍ଥିନୀ କିଛି କିଛି କହିଥିଲେ । ମୁଁ ମଧ୍ୟ ଉପସ୍ଥିତ ଥିଲି ଓ ଦୁଇ ଚାରିପଦ କହିଲି । ରାତି ୮ ଟାରୁ ୧୦ଟା ପର୍ଯ୍ୟନ୍ତ ହାଟସାହିରେ ଗୋବିନ୍ଦ ସାମଲ, ବୈଷ୍ଣବ ସାମଲ ଓ ମୁଁ ଗ୍ରାମବାସୀମାନଙ୍କର ଗୋଟିଏ ଲେଖା ପଢ଼ି ଶୁଣିଲୁ ଏବଂ ମୁଁ ତାହା ବୁଝାଇଲି । ତତ୍‌ପରେ ଏକ ନିଷାପ (ନିଷତ୍ତି) କଥା ହରିଚରଣ ଜେନା ପକାଇଲେ । (ସେଠାର ମୂଷାଇ ବେହେରା ଚମାର ହରିଚରଣ ଜେନାଙ୍କ ଘରର ଗୋଟିଏ ଛେଳିକୁ ଲୁଚାଇ ମାରିଥିଲା ଏବଂ ତାହା ତା ୨୨ରେ ରାମପୁର ଗ୍ରାମରେ ଗୋବିନ୍ଦ ସାମଲ,ଆଦି ଆପୋଷରେ ନିଷତ୍ତି କରି ଦେଇଥିଲେ । ତାହାର ଶାଖାରୂପେ ଧନିଆ ବେହେରା କଅଣ ଧମକାଇ କହିଥିବା ବିଷୟ ଆଜି ଏ ସଭାରେ ପଡ଼ିଲା ।) ଅନ୍ୟମାନେ ଏହା ସରଳଭାବରେ ତୁଟାଇଦେଲେ । ଶେଷରେ, ମୁଁ ସମସ୍ତଙ୍କୁ ନିବେଦନ କଲି ଯେ ସବୁଠାରେ ସମସ୍ତେ ସହି ସମ୍ଭାଳି ଚଳନ୍ତୁ, ମନ୍ଦ କାର୍ଯ୍ୟ କରନ୍ତୁ ନାହିଁ, ଦୈବାତ୍ ସାମାନ୍ୟ ଭୁଲଭଟକା ହୋଇଗଲେ ଗାଁରେ ସମସ୍ତେ ତାହା ଶାନ୍ତିରେ ସମାଧାନ କରନ୍ତୁ । ପ୍ରତିଦିନ ଭାଗବତ, ଅନ୍ୟ ଶାସ୍ତ୍ରପୁରାଣ ଓ ବିନୋବାଙ୍କର ଲେଖା ପଢ଼ନ୍ତୁ ।

ମୁଁ ଶୁଣୁଛି ଓ ଲକ୍ଷ୍ୟ କରୁଛି ଅଧିକାଂଶ ଗ୍ରାମରେ କଳି, ମାଡ଼ଗୋଳ ଆଗ ଅପେକ୍ଷା ଅଧିକ ଘଟୁଛି । ଏ ସବୁଥିରେ ଆମ୍ଭେମାନେ (ସାଧାରଣ କାର୍ଯ୍ୟ, ଭୂଦାନ କଥା ବୁଝାଉଥିବା ଲୋକେ) କି ପ୍ରତିକାର କରିବା, କିଛି ମୋତେ ସଫା ଦିଶୁନାହିଁ । ବିନୋବାଜୀଙ୍କର ଶାନ୍ତିସେନା

ଏ ସବୁ ସ୍ଥାନରେ ଦରକାର । ମାତ୍ର ଲୋକେ କଅଣ ସେ କଥା ଶୁଣୁଛନ୍ତି କିମ୍ବା ସର୍ବୋଦୟ-ପାତ୍ର ବସାଇବା ଓ ମୁଠାଏ ଲେଖାଁଏ ଚାଉଳ ପକାଇବା ଏବଂ ତହିଁର ମୂଳ ବିଚାରକୁ ନିଜେ ପାଳିବା ପାଇଁ ଆଗ୍ରହୀ ? ମୁଁ ତ ଏ ଅଞ୍ଚଳରେ ସେମିତି କିଛି ଆଶା ଦେଖୁନାହିଁ । ଏହା ଅତି ଚିନ୍ତାର କଥା ।

ଭୂଦାନ-ଗ୍ରାମଦାନ ମୂଲ୍ୟାଙ୍କନ କମିଟିରେ ମୋତେ ମେମ୍ବର କରି, ଅଖିଳ ଭାରତ ସର୍ବସେବା ସଂଘ ଏକ ପତ୍ର ପଠାଇଛନ୍ତି । ମୁଁ ତ ଗୋଟିଏ ସୁଦ୍ଧା ଗ୍ରାମଦାନ ସଂଗ୍ରହ କରି ନାହିଁ, ସର୍ବସେବା ସଂଘ ମୋତେ ସଂଘର ମେମ୍ବର ବାଛିଥିଲେ ହେଁ ମୁଁ ମେମ୍ବର ହେବାକୁ ଅନିଚ୍ଛୁକ ବୋଲି ଆଗରୁ ଜଣାଇ ଦେଇଅଛି । ଏପରି ଅବସ୍ଥାରେ ମୁଁ ଏହି କମିଟିରେ ମଧ୍ୟ ରହିବାକୁ ଅଯୋଗ୍ୟ ଭାବୁଛି ।

୨୬.୧୨.୧୯୫୮

ସକାଳେ ବନୁ (କର୍ମଦେବ) ମୋଠାରେ ବସି ତାହାର ଚତୁର୍ଥ ସୋପାନର ଗଣିତ (ମେଟ୍ରିକ ପଦ୍ଧତିରେ ମାପ ସମ୍ବନ୍ଧୀୟ) କଷିଲା । ଲେଖିବାର ଧାରା ମୁଁ ବତାଇଦେଲି । ତାହାର ଗୁରୁଜୀ ଶ୍ରୀମାନ୍ କୈଳାଶ - ଡାକ ନାମ ଟିକା, ଗଣେଶଚନ୍ଦ୍ର ମହାନ୍ତିଙ୍କର ପୁଅ - ଲେଖିବାର ଧାରା ଜାଣେ ନାହିଁ; directed numbers ବିଷୟରେ ଅଳ୍ପଜ୍ଞାନ ଥିବା ଶିକ୍ଷକମାନଙ୍କ ଦ୍ୱାରା କାର୍ଯ୍ୟ ଚଲାଇବାକୁ ପଡୁଛି ।

ସନ୍ଧ୍ୟା ପରେ ଭୁବନାନନ୍ଦ ସ୍ୱାଇଁ, ସୁମିତ୍ରା ଦେବୀ, ଆଦିଙ୍କ ସହ ଉତ୍ତର ମୌଳିକର ସିଲାବସ୍ ତିଆରି କରିବା କଥା ୨ ଘଣ୍ଟା ଆଲୋଚନା କଲି । ସିଲାବସ୍ ସହଜ ହେଉ, ଉପଯୁକ୍ତ କର୍ମୀ ରହି କାର୍ଯ୍ୟ ଓ ପଢ଼ା ପୂରା ହେଉ - ମୋର ମତ । ସେହିପରି, ଆମେ ବେଶୀ ନୀତି, ତତ୍ତ୍ୱ ବୟାନ କରି, କମ୍ ନିଜେ ଆଚରଣ କରିବା ଅପେକ୍ଷା ଅଳ୍ପ କହି ଅଧିକ ଆଚରଣ କରିବାକୁ ମୁଁ ପସନ୍ଦ କରେ ।

୩୧.୧୨.୧୯୫୮

ସକାଳ ୭ଟାରେ ସାଇକେଲରେ ଢେଙ୍କାନାଳରୁ ବାହାରି ସମ୍ବଲପୁରକୁ ପଡ଼ିଥିବା ପକ୍କା ସଡ଼କରେ ଆସି, ପ୍ରାୟ ୧ଟା ବେଳେ ମୁଁ ବାଜୀରାଉତ ଛାତ୍ରାବାସରେ ପହଞ୍ଚିଲି ।

ଆଚାର୍ଯ୍ୟ ମହାଶୟ ପଦଯାତ୍ରା କରି ଅନୁଗୁଳ ବେସିକ୍ ଟ୍ରେନିଂ କଲେଜରେ ଆଜି ସକାଳେ ପହଞ୍ଚିଥିଲେ । ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ରାଧାରତନ, ଶ୍ୟାମସୁନ୍ଦର ଦାସ, ମାଳତୀ ବିଶ୍ୱାଳ(କୋରାପୁଟ), ଫକୀର ମିଶ୍ର, ବୁଲୁବାବୁ ଓ ହରେକୃଷ୍ଣ ବିଶ୍ୱାଳ କଟକରୁ, ଈଶ୍ୱରଲାଲ ବ୍ୟାସ ଓ ସୁଧାଂଶୁଶେଖର ଦାସ ବାଲେଶ୍ୱରରୁ, ମଦନମୋହନ ସାହୁ ସମ୍ବଲପୁରରୁ, କୁଞ୍ଜବିହାରୀ

ଦାସ ବଲାଙ୍ଗୀରରୁ , ପଣ୍ଡିତ କୃପାସିନ୍ଧୁ ହୋତା ପୁରୀରୁ,... ଆଦି ଉତ୍କଳ ସର୍ବୋଦୟ ମଣ୍ଡଳର ବୈଠକରେ ଏବଂ ନବଜୀବନ ମଣ୍ଡଳର ବୈଠକରେ ଯୋଗ ଦେବାକୁ ଆସିଥିଲେ । ନବବାବୁ, ମାଳତୀ ଚୌଧୁରୀ (ଦାଦା ଓ ଖୁଡ଼ୀ) ତ ଏଠାରେ ଥିଲେ । ଜୟକୃଷ୍ଣ ମହାନ୍ତି (ପୁରୀ) ନବଜୀବନ ମଣ୍ଡଳର ସଂପାଦକ ଅଛନ୍ତି । ମୁଁ କେଉଁଥିରେ ମେମ୍ବର (ସଦସ୍ୟ) ନ ଥିଲେ ହେଁ, ବିଶେଷ ନିମନ୍ତ୍ରଣରେ ଏହି ବୈଠକ ଦ୍ୱୟରେ ଉପସ୍ଥିତ ଥିଲି ।

ଅପରାହ୍ଣରେ ଅନୁଗୁଳ ଟାଉନ ଭିତରେ ଦଶହରା ପଡ଼ିଆରେ ସର୍ବୋଦୟ ସଭା ପ୍ରଫେସର ରାଜକିଶୋର ମିଶ୍ରଙ୍କର ସଭାପତିତ୍ୱରେ ହେଲା । ମୁଁ ସାମାନ୍ୟ କିଛି କହିଥିଲି - ଦେଶବାସୀଙ୍କର (ଆମ୍ଭମାନଙ୍କର) ଏଥିରେ କର୍ତ୍ତବ୍ୟ ସୂଚାଇଲି ।

ଆଜି ସୁଦ୍ଧା ଆଚାର୍ଯ୍ୟ ମହାଶୟ ସର୍ବୋଦୟ ପଦଯାତ୍ରାରେ ମୋଟରେ ୧୩୮ ଦିନରେ ୧୩୬ ଜାଗାରେ ରହି ୮୬୨ ମାଇଲ ଚାଲିଛନ୍ତି । ୧୩୫ ସାଧାରଣ ସଭା ହୋଇଛି, ଶ୍ରୋତା ଆନୁମାନିକ ୫୧,୭୫୦ । ଏହା ଉପରନ୍ତୁ ୩୪ ଗୋଟି ମିଡ଼ିଲ, ହାଇସ୍କୁଲରେ ଆନୁମାନିକ ୧୫୭୫୦ ଛାତ୍ରଛାତ୍ରୀଙ୍କୁ ସେ ଉପଦେଶ ଦେଇଛନ୍ତି । ଦୁଇଗୋଟି କଲେଜରେ ଓ ୩ ଗୋଟି ଟ୍ରେନିଂ ଶିକ୍ଷାନୁଷ୍ଠାନରେ ଛାତ୍ରମାନଙ୍କୁ ମଧ୍ୟ ସେ ଭାଷଣ ଦେଇଛନ୍ତି । ଏ ୩ ଅନୁଷ୍ଠାନର ଛାତ୍ରସଂଖ୍ୟା ୧୫୭୫୦ ମଧ୍ୟରେ ଅନ୍ତର୍ଭୁକ୍ତ ଅଟେ । ମନ୍ତ୍ରୀମାନଙ୍କ ମଧ୍ୟରୁ ଶ୍ରୀ ରାଧାନାଥ ରଥ ୩ ଥର ଦେଖା କରିଥିଲେ । ଶ୍ରୀ ନନ୍ଦକିଶୋର ଦାସ ୩ ଥର, ଶ୍ରୀ ଯଦୁମଣି ମଙ୍ଗରାଜ ଥରେ, ୮ ଜଣ ଏମ୍.ଏଲ୍.ଏ, ଚାରିଗୋଟି ମୁନିସପାଲିଟିର ଚେୟାରମ୍ୟାନ୍‌ମାନେ, “ସମାଜ”ର ଓ “ରାଷ୍ଟ୍ରଭାଷା”ର କର୍ମୀମାନେ, ଶ୍ରୀ ଭାଗୀରଥି ମହାପାତ୍ର ଆଚାର୍ଯ୍ୟ ମହାଶୟଙ୍କୁ ଭେଟିଥିଲେ । ତୁଡ଼ିଗଡ଼ିଆ, ରାମଚନ୍ଦ୍ରପୁର ଓ ଅନୁଗୁଳ ବେସରକାରୀ ମୌଳିକ ଶିକ୍ଷାକେନ୍ଦ୍ରଗୁଡ଼ିକରେ ଓ ଶେଷୋକ୍ତ ଦୁଇ ମହିଳା ଟ୍ରେନିଂ କେନ୍ଦ୍ରରେ ଆଚାର୍ଯ୍ୟ ମହାଶୟ ଥିଲେ । କେତେକ ଗ୍ରାମସେବକ, ପାଠାଗାରର ଉଦ୍ୟୋକ୍ତାମାନେ, ବାଲେଶ୍ୱରର ହସପିଟାଲର ଡାକ୍ତର ଓ ନର୍ସମାନେ ଏବଂ କେତେକ ଅମ୍ବର ଚରଖାର କର୍ମୀମାନେ ଓ ମହିଳାସମିତିର ମେମ୍ବରମାନେ ମଧ୍ୟ ଭେଟିଥିଲେ । ଡିସେମ୍ବର ମାସରେ ମୁଁ ୧୩ ଦିନ ବିଚାର-ପ୍ରଚାରରେ, ୮ ଦିନ ଦୂରସ୍ଥାନକୁ ଯାତ୍ରାରେ, ୫ ଦିନ ଗଠନମୂଳକ କାମରେ, ୨ ଦିନ ଅନୁଷ୍ଠାନ ପାଇଁ ଓ ୩ ଦିନ ପାଠପଢ଼ାରେ ଦେଇଛି । ପାଦରେ ୧୨୩ ମାଇଲ, ସାଇକେଲରେ ୧୫୦ ମାଇଲ, ବସ୍‌ରେ ୧୬ ମାଇଲି, ଟ୍ରେନ୍‌ରେ ୭୫ ମାଇଲି ଓ ଲଞ୍ଚରେ ୩ ମାଇଲି ମୋଟ ୩୬୭ ମାଇଲ ଗସ୍ତ କରିଅଛି ।

୧.୧.୧୯୫୯

ଧନୁ (ପୌଷ ୧୮ ଦିନ, ୧୩୬୬ ସାଲ ) ନବବର୍ଷ ଦିନ ଆଚାର୍ଯ୍ୟ ମହାଶୟ ଅନୁଗୁଳର ସୁଖୁଡ଼ା ଗ୍ରାମରେ ଅବସ୍ଥିତ ବାଜୀରାଉତ ଛାତ୍ରାବାସରେ କଟାଇଲେ । ଉତ୍କଳ

ସର୍ବୋଦୟ ମଣ୍ଡଳର ବୈଠକ ଆଜି ମଧ୍ୟ ହେଲା । ଗାଁ ଭିତରେ ସାଧାରଣ ସଭା ହେଲା । ମୁଁ ସାମାନ୍ୟ କିଛି – ସର୍ବୋଦୟ ସମାଜ ସ୍ଥାପନ ଦିଗରେ ଆମ୍ଭମାନଙ୍କର (ଦେଶବାସୀମାନଙ୍କର ) କର୍ତ୍ତବ୍ୟ ବିଷୟରେ କହିଲି । ସନ୍ଧ୍ୟାପରେ ଛାତ୍ରାବାସର ପିଲାମାନେ ଅଭିନୟ ଦେଖାଇଲେ । ସାଧାରଣ ସଭାରେ ପ୍ରାୟ ୨୦୦ ଲୋକ । ପଦଯାତ୍ରା ୨ ମାଇଲ ।

୨.୧.୧୯୫୯

ପଦଯାତ୍ରା ୮ ମାଇଲ । ସାଧାରଣ ସଭାରେ ୨୦୦ ଲୋକ ଥିଲେ । ଆଚାର୍ଯ୍ୟ ମହାଶୟ ପଦଯାତ୍ରା କରି ସକାଳେ କୁମରସିଂହା ଗଲେ । ଆମ୍ଭେମାନେ ସର୍ବୋଦୟ ମଣ୍ଡଳର ବୈଠକ କଲୁ । କୋରାପୁଟରେ ଗ୍ରାମଦାନର ଖାଲି ସଂଖ୍ୟା ଆବୃତ୍ତି ନ କରି, ସେଗୁଡ଼ିକୁ ନିଦା, ପକ୍କା କରାଇବା ଏବଂ ଉତ୍ତମ "ନିର୍ମାଣକାର୍ଯ୍ୟ'' ଲୋକଶକ୍ତିରେ କରାଇ ଦେଖାଇବା ପାଇଁ ଶ୍ରୀଯୁକ୍ତ ମାଳତୀ ଦେବୀ ଜୋର ଦେଇ କହିଲେ । ଓଡ଼ିଶା ବାହାରେ ଅନେକ ବଡ଼ ବଡ଼ ସର୍ବୋଦୟ ନେତା ମଧ୍ୟ ଓଡ଼ିଶାର ଗ୍ରାମଦାନକୁ ତୁଚ୍ଛ କରୁଥିବା ଓ ମାଳତୀ ଦେବୀଙ୍କର ଉପରୋକ୍ତ ଚେତାବନୀକୁ ଶ୍ରୀ ବୁଲୁବାବୁ ଭୁଲ ବୁଝି, ବଡ଼ ରାଗି ଗଲେ । ଉଭୟଙ୍କର ଯୁକ୍ତିତର୍କ ଅଧଘଣ୍ଟା ହେଲା ଏବଂ ନିଜେ ନିଜେ ଶେଷରେ ଶାନ୍ତ ହେଲେ । ସନ୍ଧ୍ୟାରେ ସାଧାରଣ ସଭାରେ ମୁଁ ଗ୍ରାମ-ସ୍ୱରାଜ୍ୟ କଥା ସଂକ୍ଷେପରେ କହିଲି ।

୫.୧.୧୯୫୯

ତୁବେର ଜରପଡ଼ା ହାଇସ୍କୁଲକୁ ପଦଯାତ୍ରାରେ ଆସିଲୁ । ୧୦ ମାଇଲ ଦୂର, ବାଟରେ ସାନ୍ତରାପୁର, ବିମଳବେଡ଼ା, ତୁକୁଡ଼ା ଗ୍ରାମମାନ ପଡ଼ିଲା । ମୋଟ ୧୦ ମାଇଲ । ହାଇସ୍କୁଲ ଓ ପ୍ରାଇମେରୀ ସ୍କୁଲର ୬୦/୭୦ ଜଣ ଛାତ୍ରଙ୍କୁ ମୁଁ ସାମାନ୍ୟ ୭/୮ ମିନିଟ୍ ଆଚାର୍ଯ୍ୟ ମହାଶୟଙ୍କର ଈଶ୍ୱର-ନିଶ୍ୱାସ ଓ ସଂଯତ ଜୀବନ ବିଷୟରେ କହିଲି । ସାଧାରଣ ସଭା ଗାଁ ଭିତରେ ସନ୍ଧ୍ୟାରେ ହେଲା । ସର୍ବୋଦୟ ଦ୍ୱାରା ବିଶ୍ୱଶାନ୍ତି କିପରି ପ୍ରତିଷ୍ଠା ହୋଇପାରେ ଏକ ପ୍ରଶ୍ନର ଉତ୍ତରରେ ମୁଁ ପ୍ରାୟ ୪୦ ମିନିଟ କହିଲି । ଖୁଡ଼ୀ ମାଳତୀ ଦେବୀ, ସୁଧାଂଶୁଶେଖର ଦାସ ମଧ୍ୟ ଭାଷଣ ଦେଲେ ।

୭.୧.୧୯୫୯

ଭୋର ୬ଟାରେ ଆଚାର୍ଯ୍ୟ ମହାଶୟ ଓ ଆମ୍ଭେମାନେ ପଦଯାତ୍ରାରେ ଭଗୀରୁ ବାହାରି ୫ ମାଇଲ ଦୂର ଅନ୍ତୁଳାଇ ଫରେଷ୍ଟ ବଙ୍ଗଳାରେ ୮ଟାରେ ପହଞ୍ଚିଲୁ । ମୁଁ ଧୂଆଚୂଡ଼ା, ଗୁଡ଼ ଓ ଆମ୍ବୁଲ ୩ ଥର ନେଇ ଖାଇଲି – ଅର୍ଥାତ୍ ପେଟପୂରା କରି । ଆସିବାବେଳେ ତଳିପେଟରେ ଖୁବ୍ ବାୟୁ ଭର୍ତ୍ତି ହୋଇଥିଲା ଏବଂ ପରେ ପରେ ମଧ୍ୟ ସେପରି ହେଲା । ଅନ୍ତୁଳାଇରୁ ପ୍ରାୟ ୬ ମାଇଲ ଦୂର ଟାଇଁସିରେ ପ୍ରାୟ ୧୨ଟାରେ ପହଞ୍ଚିଲୁ । ବାଟରେ ଦଣ୍ଡସିଂହା (ଏଠାରେ ଡାକଘର

ଅଛି) ରେ ଘନଶ୍ୟାମ ପ୍ରଧାନଙ୍କ ଠାରୁ ପମ୍ପ ନେଇ, ମୋର ସାଇକେଲରେ ପମ୍ପ ଦେଲି । ତତ୍‌ପରେ ଭଗତପୁର ଓ ମଙ୍ଗଳପୁର ଗ୍ରାମ ପଡ଼ିଲା । ଟାଇଁସିରେ ୧୯୫୨ ମସିହା ଫେବ୍ରୁଆରୀ ମାସରେ ଗୋପବାବୁ (ଚୌଧୁରୀ) ଓ ରମା ଦେବୀ (ବରାଉ) ପଦଯାତ୍ରାରେ ଆସି ପହଞ୍ଚିଥିଲେ ଏବଂ ଓଡ଼ିଶାର ବାର୍ଷିକ ଶ୍ରମଶିବିର ଏଠାରେ ହୋଇଥିଲା । ମୁଁ ମଧ୍ୟ ଯୋଗ ଦେଇଥିଲି । ଏଠାରେ ଏକ ପୋଖରୀରୁ ଆମ୍ଭେମାନେ ପ୍ରାୟ ୧୫୦ ରଚନାତ୍ମକ କର୍ମୀ ଏବଂ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବବାବୁ ମଧ୍ୟ, ୫ ଦିନ ମାଟି ଉଠାଇଥିଲୁ ।

ଟାଇଁସିର ଉ.ପ୍ରା. ସ୍କୁଲରେ ଆମ୍ଭେମାନେ ଏଥର ରହିଲୁ । (ହେ.ପଣ୍ଡିତ ଶ୍ରୀ...ବୟସ ୨୮ ପ୍ରାୟ, ଉତ୍ସାହୀ । ଏଲିମେଣ୍ଟରୀ ଟ୍ରେନିଂରେ ଥିବାବେଳେ ଅନେକ ମାନଚିତ୍ର, ପ୍ରଦୀପନ ଚାର୍ଟ ଆଙ୍କିଥିଲେ, ସେଥିରେ କାନ୍ଥକୁ ସଜାଇଛନ୍ତି ।) ଅପରାହ୍ନରେ ଗାଁ ଦାଣ୍ଡରେ ସାଧାରଣ ସଭା ହେଲା । ଅନୁଗୁଳର ବିଶିଷ୍ଟ କଂଗ୍ରେସଲୋକ ଓ ପୂର୍ବତନ ଏମ୍.ଏଲ୍.ଏ. ହୃଷୀକେଶ ତ୍ରିପାଠୀ ଏ କେତେଦିନ ହେଲା ପଦଯାତ୍ରା ଦଳରେ ଅଛନ୍ତି । ସେ ପ୍ରାରମ୍ଭିକ କଥା କହିବା ପରେ ମୁଁ ଗାନ୍ଧୀଙ୍କର ମୂଳ ବିଚାର, ଭୂଦାନ ଓ ଗ୍ରାମଦାନର ସଂକ୍ଷିପ୍ତ ଇତିହାସ, ଗ୍ରାମର ସମସ୍ତଙ୍କର ସହଯୋଗରେ ଗ୍ରାମ-ସ୍ୱରାଜ୍ୟ ସ୍ଥାପନ, "ୟେଲ୍‌ବାଲ ସଂହିତା'' କଥା କହିଲି । ଆଚାର୍ଯ୍ୟ ମହାଶୟଙ୍କର ପେଟ ଖରାପ ଥିଲା, ତଥାପି ସେ ସଭାରେ ୧୫/୨୦ ମିନିଟ ସର୍ବୋଦୟ-ପାତ୍ର ବିଷୟରେ କହିଲେ । ଏଠାର ସରପଞ୍ଚ ହାଡ଼ିବନ୍ଧୁ ପ୍ରଧାନ ସଭାପତି ହୋଇଥିଲେ ।

୮.୧.୧୯୫୯

ପଦଯାତ୍ରା ୧୨ ମାଇଲ । ସଭାରେ ୧୦୦ ଲୋକ । ସକାଳେ ଟାଇଁସିରୁ ଆମ୍ଭେମାନେ ବାହାରି, ପ୍ରାୟ ୧ ମାଇଲ (ନୂଆପଡ଼ା ଗ୍ରାମ, ତତ୍‌ପରେ ରିଜର୍ଭ ଘଞ୍ଚ ଜଙ୍ଗଲ ଭିତରେ ) ଆସି, ତରଭା ଗ୍ରାମ ଭିତର ଦେଇ (ସମୁଦ୍ର ଜଳପତ୍ତନରୁ ଏହା ୬୬୬ ଫୁଟ ଉଚ୍ଚ) ବଡ଼କେରା-ପୁରୁଣାକୋଟ-ଟିକରପଡ଼ା ସଡ଼କରେ ଅନୁଗୁଳଠାରୁ ୨୬ ମାଇଲ ଠାରେ ଉଠିଲୁ । ସେଠାରୁ ୪ ମାଇଲ ଆସି ବଡ଼ଖେଦା ଗ୍ରାମରେ ବୃନ୍ଦାବନ ବେହେରା (ଡାକନାମ ନଣ୍ଡା, ସେ ଟାଇଁସିର ବାସିନ୍ଦା ଥିଲେ, ୧୯୩୦ରେ ଜେଲ ଯାଇଥିଲେ, ଲବଣ ସତ୍ୟାଗ୍ରହରେ)ଙ୍କ ଘରେ ରହିଲୁ ଓ ଖାଇଲୁ ।

ଉପରଓଳି ସେଠାରୁ ପୁରୁଣାକୋଟ ଆସି ଉ.ପ୍ରା. ସ୍କୁଲରେ ରହିଲୁ । ସାଧାରଣ ସଭାରେ ମୁଁ ଏପରି ପଶ୍ଚାତ୍‌ପଦ ଅଞ୍ଚଳରେ ସର୍ବୋଦୟ ବିଚାର ଅନୁସାରେ କି ବିକାଶ ହୋଇପାରେ, ତାହାର କ୍ଷୀଣ ଧାରଣା ଦେଲି । ମୋର ବକ୍ତୃତା ଶୁଣି ଖୁଡ଼ୀ ଖୁସୀ ହେଲେ ।

୯.୧.୧୯୫୯

ସକାଳେ ପୁରୁଣାକୋଟରୁ ଆମ୍ଭେମାନେ ୨୭ ଜଣ ଆଚାର୍ଯ୍ୟ ମହାଶୟଙ୍କ ସହ ଚାଲିକରି

୬ ମାଇଲ ଟିକରପଡ଼ାକୁ ଆସିଲୁ । ଜଙ୍ଗଲ ବିଭାଗର ଡାକବଙ୍ଗଳାରେ ରହିଲୁ । ଉପରଓଳି ଗଇନ୍ଦୀ, ଜାମୁସାହି ଗ୍ରାମ ଦେଇ ମଝିପଡ଼ାକୁ ଗଲୁ । ମଝିପଡ଼ାର ଦୃଶ୍ୟ ଅତି ଚମତ୍କାର ବୋଲି ଗୋପବାବୁ ୧୯୫୨ ରେ ଏଠାରୁ ପଦଯାତ୍ରାରେ ଯାଇ କହୁଥିଲେ । ସେ ଏଠାରେ ଏକ କୁଡ଼ିଆ କରାଇ, ବର୍ଷରେ ୧୦/୧୫ ଦିନ ରହିବେ, କହୁଥିଲେ । ମାତ୍ର ତାହା ତାଙ୍କ ଭାଗ୍ୟରେ ଘଟିଲା ନାହିଁ । ମୁଁ ଏ ସ୍ମୃତି-ସ୍ଥାନ ଦେଖିବାକୁ ଆଜି ଆସିଲି ।

୧୦.୧.୧୯୫୯

ଆମ୍ଭେମାନେ ଟିକରପଡ଼ାରୁ ୨ଟା ସାନ ସାପୁଆ ଡ଼ଙ୍ଗାରେ ଦଶପଲ୍ଲାର ଗଣିଆ ଅଭିମୁଖେ ବାହାରିଲୁ । ମହାନଦୀର ସାତକୋଶିଆ ଗଣ୍ଡ ବିନକେଇ ଠାକୁରାଣୀଙ୍କ ଠାରୁ ବଡ଼ମୂଳ ଘାଟି ପର୍ଯ୍ୟନ୍ତ । ଏଥିରେ ମୁଁ ଏହି ସର୍ବପ୍ରଥମ ନୌକାରେ ଯାଉଅଛି । ସଙ୍ଗରେ ଥିଲେ ଆଚାର୍ଯ୍ୟ ହରିହର ଦାସ, ମାଳତୀ ଚୌଧୁରୀ, ପୂଷ୍ଟୁ, ମୁନୁ, ଭଗବାନ ବେହେରା, ଋଷି ବେହେରା, ହୃଷୀକେଶ ତ୍ରିପାଠୀ, ଗୋଲକ ଚନ୍ଦ୍ର ରାୟ, ଅନାଦିଚରଣ ନାୟକ, ସୁଧାଂଶୁଶେଖର ଦାସ .. ନଦୀରେ ଏହା ମୋଟ ୨୪ ମାଇଲ ବାଟ । ସକାଳ ୭ଟାରେ ନୌକାରେ ବସିଲୁ, ବାଟରେ ୧୫/୨୦ ମିନିଟ ବିଶ୍ରାମ ନେଲୁ ଏବଂ ଉପରଓଳି ୩ଟାରେ ଗଣିଆଘାଟରେ ପହଞ୍ଚିଲୁ ।

ଗଣିଆରେ ଆଚାର୍ଯ୍ୟ ମହାଶୟଙ୍କୁ ଅଭ୍ୟର୍ଥନା କରିବାକୁ ଆସିଥିଲେ: ପୁରୀର ଡାକ୍ତର ମହାଦେବ ମିଶ୍ର, ସତ୍ୟବାଦୀ ନନ୍ଦ, ଇଞ୍ଜିନିୟର ଗୋଲକପ୍ରସାଦ ରାଏ, ବିଶ୍ୱନାଥ ପରିଡ଼ା(କଣାସ), ବୃନ୍ଦାବନ ପାତ୍ର (ଭୂଦାନ ସେବକ), ସୁନାମଣି ଦେବୀ.........ଜିଲ୍ଲା ଲୋକସଂପର୍କ ଅଫିସର, ଡ଼େଭେଲପ୍‌ମେଣ୍ଟ ଅଫିସର ଓ ଡ଼େପୁଟି କଲେକ୍ଟର ଆଦି । ମଧ୍ୟ ଇଂରାଜୀ ସ୍କୁଲ ହତାରେ ସନ୍ଧ୍ୟାରେ ପ୍ରାର୍ଥନା ଓ ସାଧାରଣ ସଭା ହେଲା । ପଣ୍ଡିତ କୃପାସିନ୍ଧୁ ହୋତା ସଭାପତି ହୋଇଥିଲେ । ଅନେକ ଲୋକ ସକାଳ ୯/୧୦ଟା ଠାରୁ ଦୂର ଗାଁରୁ ଆସି ଅପେକ୍ଷା କରି ରହିଥିଲେ । ସେମାନେ ଆଉ ବେଶୀ ସମୟ ରହିବା ଅସମ୍ଭବ ହେଲା । ସୁଧାଂଶୁ ବାବୁ ୨ଟା ମାତ୍ର ବାକ୍ୟ କହି, ବକ୍ତବ୍ୟ ଶେଷ କଲେ । ହୋତା ମହାଶୟ ୧୦/୧୨ ମିନିଟ କହିଲେ । ଏହା ସମସ୍ତେ ନୀରବରେ ଶୁଣିଲେ ।

୧୧.୧.୧୯୫୯

ସକାଳ ୬ଟାରେ ଗଣିଆରୁ ଆଚାର୍ଯ୍ୟ ମହାଶୟ ଚାଲିକରି କଚା ସଡ଼କରେ ଆସିଲେ । ବାଟରେ କିଶୋର ପ୍ରାସଦ (ପୂର୍ବନାମ ଲଙ୍ଗଳକଣ୍ଟା), ପତଣ୍ଡା, ଗୋପାଳ ପ୍ରସାଦ, ବଳରାମପ୍ରସାଦ, ହଟିଆପଲ୍ଲୀ, ଘଣାଶାଳିଆ, ରତନପୁର, କୁମୁଣ୍ଡି, ବାଣପୁର ଆଦି ଗ୍ରାମ ମହାନଦୀର କୂଳେ କୂଳେ ପଡ଼ିଲା । ମୋଟ ୧୧ ମାଇଲ ବାଟ ଆସି କଣ୍ଟିଲୋ ଗ୍ରାମ ଭିତରେ ଶୋଭାଯାତ୍ରା, ସଂକୀର୍ତ୍ତନରେ ବୁଲି, ଆଚାର୍ଯ୍ୟ ମହାଶୟ ୧୧ଟାରେ କଣ୍ଟିଲୋ ମଧ୍ୟ ଇଂରାଜୀ ସ୍କୁଲରେ

ପହଞ୍ଚିଲେ । ହେଡ୍‌ମାଷ୍ଟର ରାଧାଚରଣ ସାହୁ । ତାଙ୍କର ଅନୁରୋଧରେ ଛାତ୍ରମାନଙ୍କୁ ମୁଁ ପ୍ରାୟ ଅଧଘଣ୍ଟାଏ କାଳ ଆଚାର୍ଯ୍ୟ ମହାଶୟଙ୍କର କେତୋଟି ଉତ୍ତମ ଅଭ୍ୟାସ ଆମ୍ଭମାନଙ୍କର ଶିକ୍ଷଣୀୟ ବୋଲି ବୁଝାଇଲି ।

ଏଠା ନୂତନ ପ୍ରସ୍ତାବିତ ହାଇସ୍କୁଲର ନୂଆ ଛାତ୍ରାବାସ ଘର ଆଚାର୍ଯ୍ୟ ମହାଶୟ ୪ଟା ବେଳେ ଉଦ୍‌ଘାଟନ କଲେ । ଏଠାରେ ସର୍ବୋଦୟ ପାଠଚକ୍ର ଆରମ୍ଭ କରିବାକୁ ଓ ସର୍ବୋଦୟ-ପାତ୍ର ବସାଇବାକୁ ଆଚାର୍ଯ୍ୟ ମହାଶୟ ଉପଦେଶ ଦେଲେ । ଗଞ୍ଜାମରୁ ଶ୍ରୀ ବୁଲୁବାବୁ ଚାରିଟାବେଳେ ଆସି କଣ୍ଟିଲୋରେ ପହଞ୍ଚିଲେ ।

୧୨.୧.୧୯୫୯

ଆଚାର୍ଯ୍ୟ(ହରିହର ଦାସ) ମହାଶୟ ସକଳା ୬ଟାରେ କଣ୍ଟିଲୋରୁ ବେଣାଗଡ଼ିଆ ଅଭିମୁଖେ ଗଲେ । ମୁଁ କଣ୍ଟିଲୋରୁ ସାଇକେଲରେ ସକାଳ ୭ଟାରେ ବାହାରିଲି । ଏଠାର ଯୁବକ କଂଗ୍ରେସଲୋକ ସହଦେବ ବେହେରା (ଡାକ ନାମ ଗୋରା, ଦେହ ମଧ୍ୟ ଗୋରା) ସାଇକେଲରେ ଖୋର୍ଦ୍ଧା ବାହାରିଥିଲେ । ତାଙ୍କ ସହ କଥାବାର୍ତ୍ତା କରି କରି, ମୁଁ କେନ୍ଦୁପଲୀ, ପଥରଚକଡ଼ା, ମାଧପୁର, ମାରଡ଼ା, ବାଉଁଶବାଟି, ଆଦିପଡ଼ା ଗ୍ରାମମାନ ଦେଇ ବିଜିପୁର ଆସିଲି । ବିଜିପୁର ଠାରୁ ମହାନଦୀର କରବର ଘାଟ ପର୍ଯ୍ୟନ୍ତ ଟିକିରିପଡ଼ା ଗ୍ରାମଦେଇ ପ୍ରାୟ ୨ ମାଇଲ ବାଟ ଆସିଲି । କରବର ଘାଟରେ ନୌକାରେ ମହାନଦୀ ପାରି ହେଲି – ୨୨ ମିନିଟ୍ ଲାଗିଲା । ପାଣିଧାରରୁ ଉତ୍ତର ପଟେ ମହାନଦୀର ବାଲିରେ ମୋର ସାଇକେଲ ଠେଲି ଠେଲି ଅଧାବାଟ ଆସିବାବେଳକୁ ମୁଁ ଭାରୀ ବେଦମ୍ ହୋଇଗଲି । ଆଉ ସାଇକେଲ ଠେଲି ଯିବାକୁ ସାହସ ପାଇଲି ନାହିଁ । ଦିନ ପ୍ରାୟ ୧୦ଟା ୪୦ ମିନିଟ୍ ହେବ । ମୋ ଠାରେ ଅଁଳା (ଧାତ୍ରୀ ଅଁଳା) କଞ୍ଚାକୋଳି ବହୁତ ଥିଲା । ଶୋଷ ମାରିବାକୁ ସେଥିରୁ ୪/୫ଟା ଚୋବାଇଲି । ସାଇକେଲର ଆଗଚକର ପମ୍ପ ଖୋଲି ଅଧା କରିଦେଲି । ଏତଦ୍ୱାରା ଗଡ଼ାଇବାକୁ ସେତେ କଷ୍ଟ ହେଲା ନାହିଁ । ନଦୀର ଉତ୍ତର ଦିଗର ବନ୍ଧରେ ପହଞ୍ଚିବାକୁ ପୂରା ୫୫ ମିନିଟ୍ ଲାଗିଲା । ଏ କୂଳରେ ଶଙ୍କାବେରୀ ଗ୍ରାମର ଶ୍ରୀ ବୁଲା ନାୟକ (କମ୍ପାଉଣ୍ଡର – ଏହାଙ୍କର ହାତଗୋଡ଼ ଅଳ୍ପ ସାମାନ୍ୟ କେମ୍ପା) ବଡ଼ ଆଗ୍ରହରେ ଭୂଦାନ କଥା ଶୁଣିଲେ ଏବଂ ତାଙ୍କର ସାଇକେଲ-ପମ୍ପ ଦ୍ୱାରା ମୁଁ ସାଇକେଲରେ ପମ୍ପ ଦେଲି । ଏଠାରୁ ପ୍ରାୟ ୩ ମାଇଲ ଦୂର ବଡ଼ମ୍ବା ଟାଉନ୍‌କୁ ଗୋପମଥୁରା ଗ୍ରାମ ଦେଇ ମୁଁ ଗଲି । ପୁରୀ ଜିଲ୍ଲାର ଅବସରପ୍ରାପ୍ତ ସ୍କୁଲ ଇନ୍ସପେକ୍ଟର ଶ୍ରୀଯୁକ୍ତ ଲୋକନାଥ ପଟ୍ଟନାୟକଙ୍କ ସହ ଖୁସିରେ ଦେଖା କରିବାକୁ ତାଙ୍କ ଘରକୁ ଗଲି । ମାତ୍ର ସେ କଟକରେ ଅଛନ୍ତି ବୋଲି ତାଙ୍କ ପୁଅ ମହେଶ୍ୱରବାବୁ କହିଲେ । ବଡ଼ମ୍ବାରେ ଦହିବଡ଼ା ଶ୍ରୀ ଚକ୍ରଧର ରଣାଙ୍କଠାରୁ କିଣି ଓ ଖାଇ, ମୁଁ ସାଇକେଲରେ ୧ଟା ୧୦ ମିନିଟରେ ବାହାରିଲି । ବଡ଼ମ୍ବାଗଡ଼ ଢେଙ୍କାନାଳ-କଟକ ସଡ଼କରୁ (ଖୁଣ୍ଟୁଣିର ୧ ମାଇଲ ପଶ୍ଚିମ ଠାରୁ ) ଠିକ୍ ୨୯ ମାଇଲ ।

କଟକ-ଢେଙ୍କାନାଳ ସଡ଼କର ୨୫ ମାଇଲଠାରେ ଖୁଣ୍ଟୁଣି ପଡ଼ିଲା । ଖୁଣ୍ଟୁଣିରୁ କଟକ ଆଡ଼କୁ ପ୍ରାୟ ୧ ମାଇଲ ଓ ସଡ଼କରୁ ଉତ୍ତରକୁ ପ୍ରାୟ ୧ ମାଇଲ ଆସି ମୁଁ ରାଧାକିଶୋରପୁର ଗ୍ରାମରେ ଶ୍ରୀ ରାମଚନ୍ଦ୍ର ସ୍ୱାଇଁଙ୍କ ଘରେ ରାତିରେ ରହିଲି ଓ ଖାଇଲି । ରାମଚନ୍ଦ୍ରପୁରରେ ପ୍ରଥମ ଦଳରେ ୧୯୩୯ ମସିହାରେ ଆମଠାରେ ସରକାରୀ ମୌଳିକ ଶିକ୍ଷାର ଟ୍ରେନିଂ ନେଇଥିବା ଭାଗୀରଥି ସ୍ୱାଇଁଙ୍କର ଏ ପିତା ଅଟନ୍ତି ।

କରବରରେ ଶ୍ରୀ ରଘୁନାଥ ମଲ୍ଲିକ (ହରିଜନ) ଆଠଗଡ଼ରେ ଦଳିତ ଜାତି ସଂଘର କର୍ମୀ ଅଛନ୍ତି । ବୟସ ୨୨ ବର୍ଷ ହେବ । ତାଙ୍କ ସହ କଣ୍ଟିଲୋରେ ଦେଖା ହୋଇଥିଲା । କଣ୍ଟିଲୋର କେଉଟସାହିରେ ନାରାୟଣ ବେହେରା ମହାନଦୀ ଘାଟରେ କଣ୍ଟିଲୋଠାରେ ନାଉରୀ ଅଛନ୍ତି । ସହଦେବା (ଗୋରା)ଙ୍କର ଏ ବଡ଼ ଭାଇ ।

୧୪.୧.୧୯୫୯

ଭୋର ୬ଟାରେ ମୋର ନିତ୍ୟକର୍ମ ଶେଷ କଲି । ଗତ ୨ ଦିନରେ ମୁଁ ୪୯ ମାଇଲ ସାଇକେଲ ଚଢ଼ିବା, ମହାନଦୀ ବାଲିରେ ଏକ ଘଣ୍ଟା ସାଇକେଲ ଠେଲିବା ଏବଂ ସଡ଼କରେ ୯ ମାଇଲ ସାଇକେଲ ଚଢ଼ିଥିଲେ ହେଁ, ଗୋଡ଼ ଆଦୌ ବଥା କରିନାହିଁ ବା ଥକା ଲାଗି ନାହିଁ । କେବଳ ମହାନଦୀ ବାଲିରେ ଯାହା ଥକା ଓ ବେଦମ୍ ଲାଗିଥିଲା ।

ଉପରଓଳି ସର୍ବସେବା ସଂଘକୁ ଉତ୍ତର ଦେଲି – ମୁଁ ଖଦୀଗ୍ରାମୋଦ୍ୟୋଗ ସମିତିରେ (୨) ଭୂଦାନ-ଗ୍ରାମଦାନ ମୂଲ୍ୟାଙ୍କନ ସମିତିରେ (୩) ଆଜମିର ସର୍ବୋଦୟ ପରିସମ୍ବାଦରେ ମେମ୍ବର ହେବି ନାହିଁ । ମାତ୍ର କୋରାପୁଟରେ non-member ଭାବରେ ଗ୍ରାମଦାନ ମୂଲ୍ୟାଙ୍କନ ସମିତିକୁ ତା ୧.୨.୧୯୫୯ ଠାରୁ ସାହାଯ୍ୟ କରିପାରେ ।

୧୫.୧.୧୯୫୯

ସକାଳେ "ନବଶିକ୍ଷା'' ପତ୍ରିକା ପାଇଁ ଗୋଟିଏ ଅତି କ୍ଷୁଦ୍ର ଲେଖା (ଶମ୍ଭୁ ହାତରେ) ଦେଲି । ଅର୍ଥନୀତିର ଅଧ୍ୟାପକ ଶ୍ରୀ ରାମଚନ୍ଦ୍ର ଦାଶଙ୍କର " State of Sarvodaya '' ନାମକ ଗୋଟିଏ ପ୍ରବନ୍ଧ ଫକୀରବାବୁ ପଢ଼ି ଶୁଣାଇଲେ । ବଡ଼ ସୁନ୍ଦର ଲେଖା, ମାତ୍ର ଶେଷରେ ସର୍ବୋଦୟ ନୀତିରେ କିଛି ହୋଇପାରିବ ନାହିଁ ବୋଲି ସେ ଉପସଂହାର କରିଛନ୍ତି ।

ମୁଁ ସାଇକେଲ ପୋଛି ସଫା କଲି । ସେତେବେଳେ ଫକୀର ବାବୁ ମୋତେ ପଚାରିଲେ "ଆପଣ କାହିଁକି ଶାନ୍ତିସେନା ଫର୍ମରେ ସ୍ୱାକ୍ଷର କରି ଦେଉନାହାନ୍ତି ?'' ମୁଁ ତାଙ୍କୁ ସିଧା ଉତ୍ତର ଦେଲି ଯେ ମୁଁ ତାହାର ସର୍ତ୍ତମାନ ପୂରଣ କରିବାକୁ ସାହସ କରି ନ ଥିବାରୁ – ବିଶେଷରେ " to lay down my life '' ପାଇଁ ପ୍ରସ୍ତୁତ ହୋଇ ନ ଥିବାରୁ – ଫର୍ମ ପୂରଣ କରିନାହିଁ । ମୁଁ ବିନୋବାଜୀଙ୍କର ଏ ସମ୍ବନ୍ଧରେ ଲେଖା (ଗ୍ରାମସେବକର ତା ୨୧.୧୦.୫୮ରେ

ତାହା ପ୍ରକାଶ ପାଇଛି) ପଢ଼ିବା ଦିନୁଁ ଗଭୀର ଭାବରେ ଭାବିଛି ମାତ୍ର ସିଦ୍ଧାନ୍ତ କରିନାହିଁ, ଶୀଘ୍ର ସିଦ୍ଧାନ୍ତ କରିବାକୁ ହେବ – ଫର୍ମ ପୂରଣ କରିବି କିମ୍ବା ଗଠନମୂଳକ କାର୍ଯ୍ୟ ସୁଦ୍ଧା ଛାଡ଼ିଦେବି । ଫକୀରବାବୁ ବଡ଼ ନମ୍ରଭାବରେ ଯୁକ୍ତି ଦେଖାଇଲେ ଯେ "ମନରେ ପୂରା ଶକ୍ତି ନ ଥିଲେ ହେଁ ଜଣେ ଲୋକ ଅନ୍ୟମାନଙ୍କର ସଙ୍ଗରେ ଥାଇ ସାହସ କରି ଅନେକ ବଡ଼ କାମ କରିପାରେ । ମୁଁ ସେହିପରି ଅନ୍ୟମାନଙ୍କର ସାହଚର୍ଯ୍ୟରେ ସାହାସରେ ଫର୍ମ ପୂରଣ କରେ । ମାତ୍ର "ମୁଁ ନିଜେ ବିଚାର ନ କରି ହଠାତ୍ କହିବି ନାହିଁ'' ବୋଲି କହିଲି ।

କଟକରୁ ମୁଁ ସାଇକେଲରେ ୧୨ଟା ୩୫ ମିନିଟରେ ବାହାରି, ବେଣୀପୁର ଘାଟରେ (୨୮ ମାଇଲ + ୩ ମାଇଲ) ଆସି ସନ୍ଧ୍ୟା ୫ଟାରେ ପହଞ୍ଚିଲି ଏବଂ ଅଲିଆବାଦରେ ୨୦ ମିନିଟ ରହି, ସାଇକେଲ ପାଟରେ ଗଡ଼ାଇ ଆଣି, ରାତି ପ୍ରାୟ ୮ଟାରେ ରାମଚନ୍ଦ୍ରପୁରରେ ପହଞ୍ଚିଲି ।

୧୯.୧.୧୯୫୯

ଡାକ୍ତରବାବୁ କାଳୀପଦ, ତାଙ୍କ ସ୍ତ୍ରୀ, ଚୁନୀଦେବୀ, ଜୟଦେବ ଓ ମୁଁ ଜାନୁଗଞ୍ଜ ଯାଇ, ଡାକ୍ତରବାବୁଙ୍କର ଜାଗା ଦେଖିଲୁ । ଫେରିବାବେଳେ ନକୁଳଚନ୍ଦ୍ର କମିଳାଙ୍କର ରୁଦ୍ରପୁରରେ ପରିତ୍ୟକ୍ତ ଡିହବାଡ଼ି ଦେଖିଲୁ । ଉପରଓଲି ବଙ୍ଗାଳୀସାହିରେ ଓ ରାଧାନଗର ପାଟଣାରେ ଡାକ୍ତରବାବୁଙ୍କ ପାଇଁ ଭଡ଼ାଘର ଦେଖିଲୁ ।

ମୟୂରଭଞ୍ଜରେ ଘର ବାବାଜୀ ଶ୍ରୀ ବୃନ୍ଦାବନ ଦାସ (ବୟସ ପ୍ରାୟ ୫୮ ବର୍ଷ ହେବ) ଅନେକ ବର୍ଷ ହେଲା କୁଷ୍ଠରୋଗ-ଗ୍ରସ୍ତ ହୋଇପଡ଼ିଛନ୍ତି । ସେ ୮/୧୦ ବର୍ଷ ପୂର୍ବେ ଏଠାରେ ଦେଉଳପୋଖରୀ ବେଢ଼ା ଭିତରେ ଗଛମୂଳରେ ଓ ପୁରୀ ଗୋସ୍ୱାମୀ ମଠ ପାଖରେ ସଡ଼କ କଡ଼ରେ ରହୁଥିଲେ । ସେ ଗୀତା, ସଂସ୍କୃତ ଭାଗବତ, ବହୁ ବୈଷ୍ଣବ ଗ୍ରନ୍ଥ ପାଠ କରିଛନ୍ତି ଏବଂ ଭାଗବତ ଧର୍ମ, ଆଧ୍ୟାତ୍ମିକ ବିଷୟ ଆଲୋଚନା କରନ୍ତି । ମୁଁ ଆସିଥିବା ଶୁଣି ସେ ଆଗ୍ରହରେ ଡାକିବାରୁ, ମୁଁ ଘଣ୍ଟାଏ ତାଙ୍କ ପାଖରେ (ଖାଲି ପିଣ୍ଡାରେ) ବସିଲି । ସେ ଭୂଦାନ ବିଷୟ ଓ ସଂକ୍ଷେପରେ ଆମ ଦେଶର ଓ ବାହାରର ହାଲଚାଲ ପଚାରି ଶୁଣିଲେ । ସର୍ବୋଦୟ ବିଚାରର ସାର କଥା ୨./୪ ପଦ ଶୁଣି, ବଡ଼ ଆନ୍ତରିକତା ସହ ସମର୍ଥନ କଲେ । "ରେମୁଣା ଗୋପୀନାଥ ଦେବତାଙ୍କର ଆବିର୍ଭାବକ୍ଷେତ୍ର ବୋଲି ଭାରତରେ ଏକ ଅତି ପ୍ରଧାନ ତୀର୍ଥସ୍ଥାନ ଏବଂ ଏହାର ମହାତ୍ମ୍ୟ ସମସ୍ତଙ୍କର ଜାଣିବା ଓ ସେହି ମହାତ୍ମ୍ୟକୁ ପ୍ରଚାର କରିବା ଉଚିତ ବୋଲି ନିବେଦନ କଲେ ।'' ସେ କହିଲେ ଯେ "କେବଳ ଈଶ୍ୱରଙ୍କର ଇଚ୍ଛା ପୂର୍ଣ୍ଣ ହୁଏ; ନିତ୍ୟ ଓ ବାଙ୍ମନସଗୋଚର ଶକ୍ତିଠାରେ ସବୁ ଅନିତ୍ୟ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ପରାଜିତ ହୁଏ ବୋଲି କହିଲେ ।'' ସେ ଆହୁରି ମଧ୍ୟ କହିଲେ ଯେ ମନୁଷ୍ୟ ଏପରି କାର୍ଯ୍ୟ କରିବ ଓ ସେଥିପାଇଁ ଦେହ ତ୍ୟାଗ କରିବ, ଯହିଁରୁ ଚିରଦିନ ସୃଷ୍ଟିରେ ମଙ୍ଗଳ ସମ୍ଭୂତ ହେଉଥିବ ।''

ତାଙ୍କର Leprotic nodules ତାଙ୍କର eye-balls ରେ ହୋଇ ଦୃଷ୍ଟିଶକ୍ତିକୁ ନାଶ କରିଦେଲାଣି ଓ ମୁଣ୍ଡରେ ସର୍ବଦା ଅସହ୍ୟ ଯନ୍ତ୍ରଣା ହେଉଛି । ସେଥିପାଇଁ ସେ ଟିକିଏ ଦୁଃଖ ପ୍ରକାଶ କଲେ । ପୂର୍ବ ଜନ୍ମରେ କୌଣସି ଅପକର୍ମ ଯୋଗୁଁ ସେ ଏ ଜନ୍ମରେ ଏ ରୋଗ-ଯନ୍ତ୍ରଣାମାନ ଭୋଗୁଛନ୍ତି କହିଲେ । ଡାକ୍ତରବାବୁ ତାଙ୍କର ଆଖି ଦେଖି, ବିଶେଷଜ୍ଞ ଦ୍ୱାରା eye-ball ବାହାର କରାଇ ଦେବାକୁ ସୂଚନା ଦେଲେ । ବାବାଜୀ ମହାଶୟ କହିଲେ ଯେ, "ଆପଣଙ୍କର ପିତା ଚନ୍ଦ୍ରମୋହନ ମହାରଣା ବାଟ ମଝିରେ ନ ଚାଲି କଡ଼ରେ ବା ଅବାଟରେ ଚାଲୁଥିଲେ, କାରଣ ଭକ୍ତମାନଙ୍କର ପାଦଧୂଳି ସେ ମାଡ଼ୁ ନ ଥିଲେ'' ।

୨୫.୧.୧୯୫୯

ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କର ଅନୁରୋଧକ୍ରମେ ଉତ୍କଳ ନବଜୀବନ ମଣ୍ଡଳର ପ୍ରଥମ ଧାରାବାହିକ ରିପୋର୍ଟ - ତାଙ୍କର ସୂଚନା, ସୁଧାଂଶୁଶେଖର ଦାସଙ୍କର draft report କୁ ଅବଲମ୍ବନ କରି ସନ୍ଧ୍ୟାରେ ମୁଁ ଲେଖିଲି । ଉତ୍କଳ ନବଜୀବନ ମଣ୍ଡଳ ୧୯୪୬ ମସିହାରେ ସାରଙ୍ଗଧର ଦାସଙ୍କ ସଭାପତିତ୍ୱରେ ଓ ଆଚାର୍ଯ୍ୟ ହରିହର ଦାସ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀଙ୍କର ସଦସ୍ୟତାରେ ଆରମ୍ଭ ହୋଇଥିଲା । ପରେ ସାରଙ୍ଗଧର ବାବୁ ଏଥିରୁ ଅବ୍ୟାହତି ନେଲେ ଏବଂ ବିନୋବାଜୀ ୧୯୫୫ ମସିହାରେ କୋରାପୁଟରେ ଭୂଦାନ ପଦଯାତ୍ରା କରୁଥିବାବେଳେ ତାଙ୍କର ପରାମର୍ଶରେ ମଣ୍ଡଳର ଧ୍ୟେୟ ବ୍ୟାପକ ରଖାଗଲା; ଓ ମଣ୍ଡଳ ପୁନର୍ଗଠିତ ହେଲା । ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ସଭାପତି ଓ ଶ୍ରୀମତୀ ମାଳତୀ ଚୌଧୁରୀ ସଂପାଦିକା ରହିଲେ ।

ରାତିରେ ଶ୍ରୀ ରାଧାମୋହନ ଗଡ଼ନାୟକ (କବି) ଓ ଶ୍ରୀ ବିନୋଦ କାନୁନ୍‌ଗୋ ଖୁସିରେ ଥୋଡ଼ିଆସାହିକୁ ଆସିଥିଲେ । ସ୍ୱାଧୀନତା ଆନ୍ଦୋଳନରେ ୧୯୩୦-୩୨ ରେ ଓଡ଼ିଶାର ଶହୀଦ୍ ନିରଞ୍ଜନ ଘୋଷ, ଗଜେନ୍ଦ୍ର ସାହୁ, ଆଦିଙ୍କ କଥା ପଡ଼ିଲା । ଗାଂଧୀବାଣୀ ଓ ଗାଥାକୁ ପଦ୍ୟରେ ଗଡ଼ନାୟକ ମହାଶୟ ଲେଖୁଛନ୍ତି ।

୨୭.୧.୧୯୫୯

ସକାଳେ ତା ୯.୧.୧୯୫୯ ଦୈନିକ ସମାଜରରୁ ୰ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କର ପ୍ରଥମ ବାର୍ଷିକ ଶ୍ରଦ୍ଧା (ତା ୬.୧.୧୯୫୯ରେ ପଡ଼ିଥିଲା) ଅବସରରେ ପ୍ରକାଶିତ ଲେଖାମାନ ପଢ଼ିଲି । ତାଙ୍କର ବହୁ ସଦ୍‌ଗୁଣ ବର୍ଣ୍ଣନା କରି ଡାକ୍ତର ଲକ୍ଷ୍ମୀନାରାୟଣ ସାହୁ, ଅଧ୍ୟାପକ ଚିନ୍ତାମଣି ଦାଶ, ଗୋବିନ୍ଦ ତ୍ରିପାଠୀ, କବିରାଜ ଲୋକନାଥ ମିଶ୍ର, ଆଦି ସ୍ୱତନ୍ତ୍ର ଲେଖାମାନ ଲେଖିଥିଲେ । ପ୍ରକୃତରେ ସେ କେଡ଼େ ପଣ୍ଡିତ, ବିନୟୀ, ନିରହଙ୍କାର, ସ୍ୱାର୍ଥତ୍ୟାଗୀ ଓ ସାହସୀ ବ୍ୟକ୍ତି ଥିଲେ । ମୁଁ ନିଜେ ଏକାଧିକ ଥର ତାଙ୍କର ସଂପର୍କରେ ଆସିଛି ଏବଂ ତାଙ୍କର ଏ ସବୁ ଗୁଣ, ସୌଜନ୍ୟ,

ଆଦି ଦେଖି ମୋହିତ ହୋଇଛି । ଗାନ୍ଧୀଜୀଙ୍କର ହତ୍ୟାର ଦିନକପରେ ମୁଁ ମାନନୀୟ ଲିଙ୍ଗରାଜ ବାବୁଙ୍କ ପାଖକୁ ଯାଇଥିଲି । ଏତେ ବଡ଼ ଦୁଃଖକୁ ସେ ଯେପରି ଧୈର୍ଯ୍ୟ ସହକାରେ ସହିଗଲେ ଏବଂ ଗାନ୍ଧୀଙ୍କର ସେପରି ଦେହତ୍ୟାଗକୁ ସେ ଯେତେ ବଡ଼ ଗୌରବମୟ ବୋଲି ପଦେ କଥାରେ ମୋତେ ଦେଖିବାମାତ୍ରେ ବୁଝାଇଦେଲେ, ମୁଁ ବିସ୍ମିତ ହୋଇଗଲି । ମୁଁ ଆଶ୍ୱାସନା ମଧ୍ୟ ପାଇଲି ।

୨୯.୧.୧୯୫୯

କେନ୍ଦ୍ରମନ୍ତ୍ରୀ ହୁମାୟୁନ୍ କବୀର ତା ୨୯.୧.୧୯୫୯ରେ ସତ୍ୟଭାମାପୁରରେ ୰ମଧୁସୂଦନ ଦାସଙ୍କର ଜନ୍ମସ୍ଥାନ ଓ କସ୍ତୁରବା ମାତୃମଙ୍ଗଳ କେନ୍ଦ୍ର ଦେଖିବେ, ·ରତ୍ନଗିରିରେ ଖୋଳା ହେଉଥିବା ବୌଦ୍ଧ କୀର୍ତ୍ତିମାନ ଦେଖିବେ । ରତ୍ନଗିରିରେ ରାମଚନ୍ଦ୍ରପୁର ମୌଳିକ ଶିକ୍ଷା ପରିଷଦ ପକ୍ଷରୁ ତାଙ୍କୁ ଶିକ୍ଷାକେନ୍ଦ୍ରର ଗୋଟିଏ ରିପୋର୍ଟ ଦେବାପାଇଁ ଶ୍ରୀଯୁକ୍ତା ରମାଦେବୀ ଭୁବନାନନ୍ଦ ସ୍ୱାଇଁଙ୍କୁ କହିଲେ । ମୁଁ ଉକ୍ତ ରିପୋର୍ଟ ଇଂରାଜୀରେ ଆଜି ଲେଖିଦେଲି ।

ଅଧିକାରୀ ଚକ୍ରଧର ଦାସ ମହାଶୟ ଆଜି କଟକ ଆସିଥିଲେ । ତାଙ୍କ ଅନୁରୋଧରେ ବୋଉ ମୋତେ ତାଙ୍କର ଦତ୍ତ ସଂପତ୍ତିର ନ୍ୟାସ-ମଣ୍ଡଳୀରେ ରହିବାକୁ କହିଲେ । ଅଧିକାରୀ ମହାଶୟଙ୍କ ସହ ସନ୍ଧ୍ୟାରେ ଗ୍ରାମସେବକ ପ୍ରେସ୍‌କୁ ଯାଇ, ରାତି ୮ଟାରେ ଫେରିଲି ।

୨୮.୧.୧୯୫୯

"ଉତ୍କଳ ଗୌରବ'' ମଧୁସୂଦନ ଦାସଙ୍କର କେତୋଟି ବକ୍ତୃତା ବହି ଆକାରରେ (୧) ମଧୁବାବୁଙ୍କର ଓଡ଼ିଆ ବକ୍ତୃତା ଓ ଗୀତ (୨) Madhusudan's Immortal Words – ଶ୍ରୀ ନବକିଶୋର ଦାସ ସଂକଳନ କରିଛନ୍ତି – ପଢ଼ିଲି । କି ଚମତ୍କାର ଭାଷା ଓ ମୌଳିକ ଚିନ୍ତା ଓ ଯୁକ୍ତି !

ଲିଙ୍ଗରାଜ ମିଶ୍ର ଅନେକ ସମୟରେ କହୁଥିଲେ – "ସ ଜାତୋ ଯେନ ଜାତେନ ଜାତିବଂଶ ସମୁନ୍ନତିମ୍, ପରିବର୍ତ୍ତିନି ସଂସାରେ ମୃତଃ କୋ ବା ନ ଜାୟତେ ।'' ଏ ବାକ୍ୟ ଲିଙ୍ଗରାଜ ବାବୁ, ମଧୁବାବୁ ଓ ସେହିପରି ପ୍ରତିଭାବାନ୍, ଦେଶ ହୈତୈଷୀ ବ୍ୟକ୍ତିମାନଙ୍କ ଠାରେ ସତ୍ୟ ।

୨୯.୧.୧୯୫୯

ହୁମାୟୁନ୍ କବୀର ଆଜି ସତ୍ୟଭାମାପୁର ଓ ରତ୍ନଗିରି ପରିଦର୍ଶନ କଲେ । ସକାଳେ ୭ଟା ବେଳେ ସରକାରୀ ପ୍ରଚାର ବିଭାଗର ମୋଟର-ଭ୍ୟାନ୍‌ରେ ବନ୍ଦୁ, ବାବୁଲି, ବୁଲୁବାବୁ, ମାସୀ (ମଙ୍ଗଳା ଦେବୀ) କଟକରୁ ରତ୍ନଗିରି ଗଲେ ।

କାଲି ସନ୍ଧ୍ୟାବେଳେ ଚୁନୀ ଦେବୀ ମୋତେ ପଚାରିଲେ ଯେ କଅଣ କରିବା ? ସେ ଖଦୀ ମଣ୍ଡଳରୁ ଆଉ ବେତନ ନେବେ ନାହିଁ, କାରଣ ଗ୍ରାମସେବକ ପତ୍ରିକା ପାଇଁ ଅନୁବାଦ କାମ ସେ ଆଉ କରିବା ଦରକାର ହେବ ନାହିଁ (ତାହା ନନ୍ଦିନୀ ଶତପଥି ଏବେ କରୁଛନ୍ତି)। ତାହାହେଲେ ଚୁନୀଦେବୀ ରାମଚନ୍ଦ୍ରପୁରରେ ରହିବା କଠିନ ହେବ । ବନୁ ଓ ବାବୁଲି ରାମଚନ୍ଦ୍ରପୁରରେ କିପରି ରହିବେ ? ସେମାନଙ୍କର ଖାଇବା, ପିନ୍ଧିବା, ପଢ଼ାପଢ଼ି ଖର୍ଚ୍ଚ କେଉଁଠାରୁ ମିଳିବ ? ରେମୁଣାରେ ଏ ବର୍ଷ ଭାଦ୍ରମାସ ଠାରୁ ଧାନ ସରିଛି, ଭୂଦେବ ଉପରେ ଏମାନଙ୍କର ଖର୍ଚ୍ଚପାଇଁ ଭାର ଦେବା ଅନୁଚିତ । (ଭାଇ ତାଙ୍କ ସ୍ୱେଚ୍ଛାରେ ମଧ୍ୟ କିଛି ସାହାଯ୍ୟ କରୁନାହାନ୍ତି ।) ଶ୍ରୀଯୁକ୍ତ ନବବାବୁ ଗଣେଶଘାଟରେ ତାଙ୍କର କୋଠାର ଭଡ଼ାରୁ ଯେତେବେଳେ ଯାହା ଆବଶ୍ୟକ ତାହା ଚୁନୀ ଦେବୀଙ୍କୁ ଦେବାପାଇଁ ଶ୍ରୀ ପୁରୁଷୋତ୍ତମ ମହାପାତ୍ରଙ୍କୁ କହିଥିଲେ ବୋଲି ଶୁଣିଲୁ । ମାତ୍ର ଘରଭଡ଼ାରୁ ସେ ଯାହା ପାଇବେ, ତାହା ଟ୍ୟାକ୍ସ, ଘର ମରାମତି ଓ ସେମାନଙ୍କର ଅନ୍ୟ ଖର୍ଚ୍ଚକୁ ନିଅଣ୍ଟ । ସେହି ଭଡ଼ା ଉପରେ ଆମେ ନିର୍ଭର କରିବା ଓ ସେଥିକି ଆଶା କରିବା ମୋ ମତରେ ଠିକ୍ ନୁହେଁ । କଅଣ କରିବା ? – ବର୍ତ୍ତମାନ ବଡ଼ ପ୍ରଶ୍ନ ।

୩୦.୧.୧୯୫୯

ଭୋର ଉପାସନା ପରେ ପରେ ଥୋଡ଼ିଆସାହି ଉତ୍କଳ ଖଦୀମଣ୍ଡଳ କାର୍ଯ୍ୟାଳୟରୁ ଆମ୍ଭେମାନେ ୧୧ ଜଣ ପ୍ରଭାତଫେରିରେ ରାମଧୂନ ଗାଇ ଗାଇ ଟାଉନରେ ପ୍ରାୟ ୩ ମାଇଲ ବୁଲି ଆସିଲୁ । "ଭୁଦାନ ଯଜ୍ଞ'' ରୁ ବିନୋବଜୀଙ୍କର, ଧୀରେନ୍ଦ୍ର ମଜୁମଦାରଙ୍କର ଏବଂ ରବିଶଙ୍କର ମହାରାଜଙ୍କର ବିଷୟରେ କେତେକ ଲେଖା ପଢ଼ିଲି । ରବିଶଙ୍କରଙ୍କ ମହାରାଜଙ୍କର ସଂକ୍ଷିପ୍ତ ପରିଚୟ ଓଡ଼ିଶାରେ ଲେଖିବାକୁ ମୋର ଇଚ୍ଛା ହେଲା ।

ଏକ ସମୟରେ ଉଭୟ ସ୍କୁଲରେ ଗାନ୍ଧୀ ସାହିତ୍ୟ ଆଲୋଚନା ଥିବାରୁ, ମୁଁ ରାଣୀହାଟ ହାଇସ୍କୁଲକୁ ଯାଇ ନ ପାରି, ରାଜାବଗିଚା ସିଟି ହାଇସ୍କୁଲକୁ ସୁରେନ୍ଦ୍ର ନାଥ ମହାନ୍ତିଙ୍କ ସହ ଗଲି । ସେଠାର ହେଡ୍‌ମାଷ୍ଟର ଶ୍ରୀ ବୈଷ୍ଣବ ଚରଣ ମହାପାତ୍ର ମୋର ଭାଇ (ଲୋକନାଥ ଭାଇ)ଙ୍କର କଲେଜରେ ସହପାଠୀ ଥିଲେ । ତାଙ୍କର ସହକାରୀ ଶ୍ରୀ ରାମଚନ୍ଦ୍ର ବିଶ୍ୱାଳ ଆମ୍ଭମାନଙ୍କର ଆଲୋଚନାରେ ଖୁବ୍ ଆଗ୍ରହୀ ଲୋକ । ବଡ଼ ପିଲା ପ୍ରାୟ ୮୦ ଜଣକୁ ଆମେ ପ୍ରାୟ ୪୦ ମିନିଟ୍ ଗାନ୍ଧୀଙ୍କର ମୃତ୍ୟୁର କାରଣ, ତାଙ୍କର କ୍ଷମାଗୁଣ, ଆଦି ବିଷୟ କହିଲୁ । ତିନିଜଣ ପିଲା ମଧ୍ୟ କିଛି କହିଲେ । ଅନେକ ଶିକ୍ଷକ ଏ ସଭାକୁ ଆଦୌ ଆସି ନ ଥିଲେ !! ଜଣେ ଶିକ୍ଷକ ହେଡ୍‌ମାଷ୍ଟରଙ୍କୁ କହିଲେ ପାଠ୍ୟ ସରୁନାହିଁ, ଏ ଆଲୋଚନାରେ କାହିଁକି ଗୋଟିଏ ପିରିଅଡ୍ ଦେଲେ ।

ରାମକୃଷ୍ଣ କଟେଜ୍‌କୁ ଆମେ ଗଲୁ । ସେଠାରେ ୧୪ ଜଣ ପିଲା ଓ ଶ୍ରୀ ଦୈତାରି

ମହାନ୍ତିଙ୍କର ସହକାରୀ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ମୁଁ ୨୦/୨୫ ମିନିଟ୍ ଗାନ୍ଧୀଙ୍କ ବିଷୟରେ ଏବଂ ଅନ୍ୟମାନଙ୍କ ପ୍ରତି ଆମର କର୍ତ୍ତବ୍ୟ ବିଷୟରେ କହିଲି ।

ଟାଉନ୍‌ହଲ୍‌ରେ ସାଧାରଣ ପ୍ରାର୍ଥନା ହେଲା । ସ୍ୱାମୀ ବିଚିତ୍ରାନନ୍ଦ ଦାସ (ଡ଼ଗରପଡ଼ା - ଆଡ୍‌ଭୋକେଟ) ସଭାପତି ହୋଇଥିଲେ । ଗାନ୍ଧୀଙ୍କ ସହ ସଂପର୍କରେ ଆସିଥିବା ଲୋକେ ପ୍ରତ୍ୟକ୍ଷ ଘଟନା ଗୋଟିଏ ଲେଖାଏ କହନ୍ତୁ - ସେ ଅନୁରୋଧ କଲେ । ପ୍ରଥମେ ମୋତେ ଡାକିଲେ । ମୁଁ ଗାନ୍ଧୀଙ୍କୁ ୧୯୪୨ ମେ ମାସରେ ସେବାଗ୍ରାମରେ ଗୋପବାବୁଙ୍କର ପତ୍ର ବରୀରୁ ନେଇ ଦେଇଥିଲି । ଗାନ୍ଧୀଜୀଙ୍କ ଠାରୁ ବିଦାୟ ନେବାବେଳେ ସେ କହିଲେ ତୁମ ପାଇଁ ଟାଙ୍ଗା ମଗାଇଛୁ । — ଏହା ମୁଁ କହିଲି । ଶ୍ରୀ ରାଜକୃଷ୍ଣ ବୋଷ କହିଲେ ଗାନ୍ଧୀ କିପରି ପରାସର ଶାସ୍ତ୍ରୀ ( ଯେ ମହାପଣ୍ଡିତ ଥିଲେ ଓ କୁଷ୍ଠରୋଗଗ୍ରସ୍ତ ଥିଲେ) ଙ୍କୁ ନିଜେ ହାତରେ ମାଲିସ କରୁଥିଲେ ଏବଂ ଓଡ଼ିଶାରେ ମଧ୍ୟ କୁଷ୍ଠରୋଗୀଙ୍କୁ ଦେଖିବାକୁ ଓ ଛୁଇଁବାକୁ ହାତ ବଢ଼ାଇଥିଲେ । ସୋସାଲିଷ୍ଟ ଶ୍ରୀ ବିଶ୍ୱନାଥ ପଣ୍ଡିତ ଏବଂ କମ୍ୟୁନିଷ୍ଟ ଶ୍ରୀ ରାମକୃଷ୍ଣ ପତି ସାଧାରଣ ଭାବରେ କିଛି କିଛି କହିଥିଲେ । ବୃଦ୍ଧ ଶ୍ରୀ ବାଳକୃଷ୍ଣ ପଟ୍ଟନାୟକ ତାଙ୍କର ପୁସ୍ତିକାରୁ କିଛି ପ୍ରଥମେ ପଢ଼ି ଶୁଣାଇଥିଲେ । ୧୯୧୮ରେ ମୋର ବାଲ୍ୟ ସହପାଠୀ ଗୋବିନ୍ଦ ଚନ୍ଦ୍ର ନାୟକଙ୍କ ସହ ଆଜି ଦେଖାହେଲା ।

୩୧.୧.୧୯୫୯

ସକାଳେ ସାମାନ୍ୟ ତୂଳା ବାଛି, ଭିଣିଛି ଓ ସୂତା କାଟିଲି । ଶ୍ରୀ ଗୋବିନ୍ଦ ଚନ୍ଦ୍ର ନାୟକ (ଘର ଗୋବିନ୍ଦପୁର, ଝଙ୍କୈାକା ପାହାଡ଼ ପାଖରେ, କଟକ ଜିଲ୍ଲା) ମୋ ପାଖକୁ ଆସିଥିଲେ । ଆମର "ସର୍ବୋଦୟ ଭଣ୍ଡାର'' - ବାଙ୍କାବଜାରକୁ ଗଲି । ୧୯୫୮ ରେ ମୁଁ ବହି ବିକିବାକୁ ଉତ୍କଳ ଖଦୀ ମଣ୍ଡଳରୁ ମୋଟ ଟ. ୧୦୮/-ର ବହି ନେଇଥିଲି ଏବଂ ଟ. ୧୦/- ଦେଇଥିଲି । ବାକୀ ୯୮ ଟଙ୍କା ମଧ୍ୟରୁ ଆଜି ମୁଁ ଟ. ୬୮/- ନଗଦ ଦେଲି । ବିନୋବା ପ୍ରବଚନ, ଆଚାର୍ଯ୍ୟ ମହାଶୟଙ୍କର ସଂକଳିତ ଗୀତା କିଣିଆଣିଲି ।

ଉପରଓଳି ଏଠାର ସୀମାଚଲମ୍ ବାବୁ, ଓ ୱାଇ.ଏଲ୍. ସୀତାରାମିୟା, ଡ୍ରାଫ୍ଟସମ୍ୟାନ, ଡ଼ି.ଇ.ଟି.ଅଫିସ, କଟକ ଖୁସିରେ ପ୍ରଥମେ ଏଠାକୁ ବୁଲି ଆସିଥିଲେ । ସୀତାରାମିୟା ଆନ୍ଧ୍ରରେ ୬ ବର୍ଷ ସାଧାରଣ କାମ କରିଥିଲେ । ସେ ମାଗଣାରେ ପିଲାମାନଙ୍କୁ ଅବସର ସମୟରେ ଏଠାରେ ପଢ଼ାଉଛନ୍ତି ଏବଂ ରବିବାରରେ ମେଡ଼ିକ୍ୟାଲ ହସପିଟାଲରେ ରୋଗୀସେବା କାମ କରିବାକୁ ଚାହାଁନ୍ତି କହିଲେ । କେତେ ଭଲ ବିଚାର ! ମୋତେ ବୋଧହେଲା ଏହାଙ୍କ ଦ୍ୱାରା କିଛି ସେବାକାର୍ଯ୍ୟ ହେଉଛି ଓ ଆହୁରି ହେବ ।

ଖୁଡ଼ୀ ଅନୁଗୁଳରୁ ଆଜି ଆସିଛନ୍ତି । ବଙ୍ଗଳାର ଶ୍ରୀ ଅନ୍ନଦା ଚୌଧୁରୀ ଓ ତାଙ୍କର ସ୍ତ୍ରୀ ଆସି ବୋଉ (ରମାଦେବୀ)ଙ୍କୁ ଏଠାରେ ଦେଖା କରିଗଲେ ।

୧.୨.୧୯୫୯

ସକାଳେ ମୁଁ ଉପାସନା ପାଇଁ ଘଣ୍ଟା ଶୁଣି ପାରି ନଥିଲି । ସମସ୍ତଙ୍କ ସହ ପ୍ରାର୍ଥନାରେ ଯୋଗ ଦେଇ ନାହିଁ ।

ସାମାନ୍ୟ ୨୦୦ ଘେରା ସୂତା ଅରଟରେ କାଟିଲି । ଶ୍ରୀ ପ୍ରାଣକୃଷ୍ଣ ସାମଲ ଜଣେ ଉଦୀୟମାନ ସାହିତ୍ୟିକ ଥିଲେ । ତାଙ୍କର ଜ୍ଞାନ, ସାହିତ୍ୟସାଧନା, ଭଦ୍ରତା, ଆଦି ଗୁଣର ପ୍ରଶଂସା କରି ମାତ୍ର ଆବଶ୍ୟକ ଖାଦ୍ୟ ଓ ଚିକିତ୍ସାର ଅଭାବରୁ ତାଙ୍କର ଅକାଳ ମୃତ୍ୟୁରେ ଦୁଃଖ କରି, ଶ୍ରୀ ମାୟାଧର ମାନସିଂହ "ଦୈନିକ ସମାଜ''ରେ ଲେଖିଛନ୍ତି । ଏହା ବଡ଼ ଚିନ୍ତାର ବିଷୟ ।

୨.୨.୧୯୫୯

ଶ୍ରୀଯୁକ୍ତ ନବବାବୁ ଅନୁଗୁଳରୁ ଆସି ଭୋର କଟକରେ ପହଞ୍ଚିଲେ । ସେ ଏବଂ ଖୁଡ଼ୀ ତାଳଗୁଡ଼ ସମିତିର ବୈଠକ ପାଇଁ ଖରାବେଳେ ପୁରୀ ଗଲେ । ମୁଁ ସକାଳେ ଅରଟରେ ୨୦୦ ଘେରା = ୮୦୦ ଫୁଟ ସୂତା କାଟିଲି । ଗୋଟିଏ ପୁରୁଣା " scout'' ଛୁରୀ କେହି ଫୋପାଡ଼ି ଦେଇଥିଲେ । ମୁଁ ତାହା ନେଇ, ଜଣେ ଶିଙ୍ଗ କାରିଗର ବୈରାଗୀ ପ୍ରଧାନଠାରୁ ଫାଳେ ଶିଙ୍ଗ-ବେଣ୍ଟ ବସି ତିଆରି କରାଇଲି । ଏଥିରେ ପୂରା ୧ ଘଣ୍ଟା ୨୦ ମିନିଟ୍ ସମୟ ଗଲା ।

ଉପରଓଳି ଚୌଧୁରୀବଜାରକୁ ମୋର ସୁଟ୍‌କେଶ୍ ନେଇ ହଜିଥିବା ଚାବିକାଠି ତିଆରି କରାଇ ଆଣିଲି । ଏଥିରେ ପ୍ରାୟ ୨ ଘଣ୍ଟା ଗଲା । ୨୦.୭.୧୯୫୮ରେ ଶ୍ରୀ ପ୍ରାଣନାଥ ମିଶ୍ର (ବୁକ୍ ଏମ୍ପୋରିୟମ୍) ଭୁଲରେ ମୋତେ ଦଶନୂଆ ପଇସା ଅଧିକା ଫେରାଇଥିଲେ । ତାହା ଆଜି ତାଙ୍କ ଦୋକାନରେ ସହକାରୀଙ୍କୁ ଦେଇ ଆସିଲି । ସନ୍ଧ୍ୟାବେଳେ ମୋଠାରେ ଗଚ୍ଛିତ ଥିବା ବିକ୍ରିପାଇଁ ବହିର ତାଲିକା କଲି । ଗତ ବର୍ଷର ମୋଟରେ ମୋଠାରେ ଟ. ୪୫/- ବହି ବଳକା (ବିକ୍ରୟ ନହୋଇ) ଅଛି ।

୩.୨.୧୯୫୯

କଟକ ସହରରେ ଶାନ୍ତିସେନା ଓ ସର୍ବୋଦୟ କାର୍ଯ୍ୟର ଗୋଟିଏ ସଂକ୍ଷିପ୍ତ ରିପୋର୍ଟ ଶ୍ରୀଯୁକ୍ତା ରମାଦେବୀ (ବୋଉ) ମୋତେ ଲେଖିଦେବାକୁ ୩ ଦିନ ହେଲା, କହିଥିଲେ । ଏଠାର କର୍ମୀମାନଙ୍କର ଜାନୁଆରୀ ମାସର ରିପୋର୍ଟମାନ ମୁଁ ପଢ଼ି, ଏବଂ ସଂଗୃହୀତ ସର୍ବୋଦୟ-ପାତ୍ରର ଶସ୍ୟ, ଆଦିର ମୋଟ ହିସାବଫର୍ଦ୍ଦ ଦେଖି,ଆଜି ମୁଁ ଶ୍ରୀମାନ୍ ଜଗବନ୍ଧୁ ପଣ୍ଡାଙ୍କୁ ରିପୋର୍ଟ ଡାକିଦେଲି; ସେ ଲେଖିଲେ ଏବଂ ଶ୍ରୀଯୁକ୍ତା ରମାଦେବୀଙ୍କୁ ଦେଲେ ।

ଉପରଓଳି ୩ଟା ବେଳେ ଶ୍ରୀଯୁକ୍ତ ନବବାବୁ, ଶ୍ରୀଯୁକ୍ତା ମାଳତୀ ଦେବୀ (ଦାଦା ଓ ଖୁଡ଼ୀ)ଙ୍କ ସହ ମୁଁ ଜୀପ୍‌କାରରେ କଟକରୁ ଅନୁଗୁଳର "ବାଜୀରାଉତ'' ଛାତ୍ରାବାସକୁ ଆସିଲି ।

ପ୍ରାୟ ୧୫ ଦିନ ହେଲା ବୁବୁ ଗୁଜରାତରୁ ଏଠାକୁ ଆସି ଅଛି । ଜୟକୃଷ୍ଣ ବାବୁଙ୍କର ବସାରେ ମୁଁ ଖାଇଲି । ରାତିରେ ରସୁଣ ଓ ସୋରିଷ ତେଲ ଗରମ କରି, ପାଦରେ ଘସିଲି ।

ମୁଁ ଅନ୍ୟମାନଙ୍କଠାରୁ କେତେ ଜିନିଷ ଓ ସେବା ପାଉଅଛି !! ମାତ୍ର ମୁଁ କେତେ ଅଳ୍ପ ଅନ୍ୟମାନଙ୍କୁ ଦେଉଅଛି - ଏହା ଭାବିଲେ ମୁଁ ଆଦୌ ସମାଜ-ସେବକର ପଦବାଚ୍ୟ ନୁହେଁ । ଏହା ମୋର ସ୍ପଷ୍ଟ ଧାରଣା ଓ ସ୍ୱୀକାରୋକ୍ତି ।

୫.୨.୧୯୫୯

ସକାଳେ ଜୀପ୍‌କାରରେ ଦାଦା, ଖୁଡ଼ୀ, ବୁବୁ, ପୁଷ୍ପ, ମୁନୁ, ଦିବାକର ପ୍ରଧାନଙ୍କର ଦୁଇ ପିଲାଙ୍କ ସହ ମୁଁ ଚମ୍ପତିମୁଣ୍ଡା ଉତ୍ତର ମୌଳିକ କେନ୍ଦ୍ରକୁ ଗଲି । ସେଠାର ଛାତ୍ରମାନଙ୍କ ସହ ଘଣ୍ଟାଏ ଖଣ୍ଡେ କଥାବାର୍ତ୍ତା କଲୁ । ବାଦଲ (ଅନ୍ୟାସପୁରର ଶ୍ରୀ ଗଦାଧର ପାଲିତଙ୍କ ପୁଅ) ବର୍ତ୍ତମାନ ସରକାରଙ୍କ ଦ୍ୱାରା ପରିଚାଳିତ ମୌଳିକ ଶିକ୍ଷାର tendency, ଆମ୍ଭମାନଙ୍କର ବେସରକାରୀ ମୌଳିକ ଶିକ୍ଷାର ଛାତ୍ରମାନଙ୍କ ମଧ୍ୟରେ ନୈରାଶ୍ୟ, ପରୀକ୍ଷାର ନିକୃଷ୍ଟତା, ଗାନ୍ଧୀଜୀଙ୍କର ମୌଳିକ ଶିକ୍ଷାର ସ୍ୱତନ୍ତ୍ରତା, ଆମ୍ଭମାନଙ୍କୁ କି ସିଦ୍ଧାନ୍ତମାନ ଗ୍ରହଣ କରିବାକୁ ହେବ – ପ୍ରଶ୍ନ ଉଠାଇଲା । ଅତି ଅଳ୍ପସମୟରେ ଏ ସବୁର ସମ୍ୟକ୍ ଆଲୋଚନା ଓ ସିଦ୍ଧାନ୍ତ ତ ଅସମ୍ଭବ । ମୁଁ କହିଲି ଯେ ଆମ୍ଭମାନଙ୍କର ନିଜର ଶକ୍ତି, କାର୍ଯ୍ୟ ଓ ଭଲ ନମୁନା ଦେଖାଇବା ଉପରେ ସବୁ ନିର୍ଭର କରୁଛି; ସରକାରଙ୍କୁ ଅନାଇ ବସିଲେ ବା ଖାଲି ସରକାରଙ୍କୁ ଦୋଷ ଦେଲେ କୌଣସି ସୁଫଳ ହେବ ନାହିଁ । ଧ୍ୟେୟ, ଶିକ୍ଷାଦାନ ପ୍ରଣାଳୀରେ ସିନା ଫରକ୍ ହେବ ମାତ୍ର ଶିକ୍ଷଣୀୟ ବିଷୟରେ ତ ପୁରୁଣା ଶିକ୍ଷା ଓ ନଈ ତାଲୀମରେ ଭେଦ ନାହିଁ । ନୂଆ ଓ ଉତ୍‌କୃଷ୍ଟ ଧରଣର ପରୀକ୍ଷା ଆମ୍ଭେମାନେ ନିଜେ କରାଇ ଦେଖାଇଲେ ସିନା ହେବ ! ସରକାର କ୍ରମେ ତାହା ଗ୍ରହଣ କରିବେ ।

ଶ୍ରୀଯୁକ୍ତ ନବବାବୁ କହିଲେ ଯେ ପାଶ୍ଚାତ୍ୟ ଦେଶରେ ନୂଆ ନୂଆ ପ୍ରୟୋଗ କରି ଶିକ୍ଷାବିତ୍‌ମାନେ, ବେସରକାରୀ ଅନୁଷ୍ଠାନମାନ ଯାହାର ସାରବତ୍ତା ପ୍ରମାଣିତ କରୁଛନ୍ତି, ତାହାର ୨୦ ବା ୧୫ ବର୍ଷ ପରେ ତାହା ଆମ ସରକାର ଗ୍ରହଣ କରୁଛନ୍ତି । ସରକାର ନୂଆ ନୂଆ ଜିନିଷ ହଠାତ୍ ଚଳାଇବା ସମ୍ଭବ ନୁହେଁ । ତେଣୁ କରି ଆମ୍ଭେମାନେ ଏପରି ଶିକ୍ଷାକେନ୍ଦ୍ରରେ କିଛି ଭଲ ଜିନିଷ କରି ଦେଖାଇବା ଦରକାର । ଉଦାହରଣ ସ୍ୱରୂପ ସେ Mony ନାମକ Forest Officer ଖଣ୍ଡାଧାର ଜଳପ୍ରପାତର higher altitude ରେ ଥିବା ଉଦ୍ଭିଦର ଅନୁସନ୍ଧାନ କଥା କହିଥିଲେ । ଏଠାରେ (ଅନୁଗୁଳରେ) କେତେ ସୁବିଧା ଅଛି – ଆମେ ଉଦ୍ଭିଦ ଓ ପ୍ରାଣୀତତ୍ତ୍ୱ study କରିପାରନ୍ତେ ।....ଇତ୍ୟାଦି ।

୭.୨.୧୯୫୯

ସକାଳେ ତୂଳା ବାଛିଲି । ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କ ସହ ନବଜୀବନ ମଣ୍ଡଳର ବିଧାନରେ କେତେକ ସଂଶୋଧନ ଓ ପରିବର୍ଦ୍ଧନ ଲେଖିଲି ।

ଚମ୍ପତିମୁଣ୍ଡା ଉତ୍ତର ମୌଳିକ କେନ୍ଦ୍ରରୁ ଶିକ୍ଷକମାନେ (ଶ୍ରୀମତୀ ଅମିତ ଚାଟର୍ଜୀ, ଅଶୋକ ଚାଟର୍ଜୀ, ସତ୍ୟବାଦୀ ପ୍ରଧାନ, ଜୟନାରାୟଣ ଦାସ) ବାଜୀରାଉତ ଛାତ୍ରାବାସକୁ ଆସିଲେ । ସେହି ଚମ୍ପତିମୁଣ୍ଡା କେନ୍ଦ୍ରରେ ଛାତ୍ରମାନେ ସାଧାରଣ ଦୈନନ୍ଦିନ ରୁଟିନ୍ କାମରେ ଜାଣିଶୁଣି ଏତେ ବିଶୃଙ୍ଖଳା ସୃଷ୍ଟି କରୁଅଛନ୍ତି ଯେ ସେଠାରେ ମାମୁଲି ଶିକ୍ଷାଦାନ କାର୍ଯ୍ୟ ସୁଦ୍ଧା କରିବା କଠିନ । ସେଠା କେନ୍ଦ୍ରର ଉତ୍ତର ମୌଳିକ ଶିକ୍ଷାର ଉଦ୍ଦେଶ୍ୟ କଅଣ ହେବ, ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ପରୀକ୍ଷା ଛାତ୍ରମାନେ ଦେବେ କି ନା, ସଂସ୍ଥାର ନିଜର ପରୀକ୍ଷା ରହିବ କି ନା, ପ୍ରଶ୍ନ ଉଠିଲା । ଶ୍ରୀଯୁକ୍ତା ମାଳତୀ ଦେବୀ ମତ ଦେଲେ ଯେ ଆମର ସ୍ୱାବଲମ୍ବନ ଆଦି ଖାସ୍ ବୈଶିଷ୍ଟ୍ୟ ରହୁ, ଅନୁଷ୍ଠାନର ନିଜର assessment ରହୁ, ଯେଉଁ ଛାତ୍ରର ଇଚ୍ଛା ହେବ, ସେ matriculation ବା school leaving certificate examination ଦେଇପାରେ, post basic ନାମ ରହୁ ଓ ସରକାରଙ୍କଠାରୁ ଛାତ୍ରବୃତ୍ତି ନିଆଯାଉ । ନୋହିଲେ – ଏହା ହାଇସ୍କୁଲ ହେଲେ, post-basic school ବୋଲି ନାମ ଦିଆ ନ ଯାଉ ଏବଂ ସରକାରଙ୍କ ଠାରୁ ଛାତ୍ରବୃତ୍ତି ନିଆ ନ ଯାଉ । ଶ୍ରୀଯୁକ୍ତ ନବବାବୁ କହିଲେ ଯେ post-basic ନାମ ରହୁ, ଛାତ୍ର ବୃତ୍ତି ନିଆଯାଉଥାଉ, ନୂଆ ଧରଣରେ ଉଚ୍ଚ ବିଚାରରେ କାମ କରାଯାଉ, ନିଜର assessment ରଖାଯାଉ ମାତ୍ର ଛାତ୍ରମାନେ ସରକାରୀ ପ୍ରଚଳିତ ପରୀକ୍ଷା ନିଶ୍ଚୟ ଦିଅନ୍ତୁ ।

ଶ୍ରୀମତୀ ଅନିମା ଦେବୀଙ୍କର ଇଚ୍ଛା କିଛି ଖାସ୍ ସ୍ୱତନ୍ତ୍ର ବିଚାରରେ ଏହି କେନ୍ଦ୍ର ଚଳୁ, ନିଦା କାମ ହେଉ । ଶିକ୍ଷକ ଓ ମାର୍ଗଦର୍ଶକମାନେ ଠିକ୍ ଧ୍ୟେୟରେ ନିଜେ କାମ କଲେ, ଛାତ୍ରମାନଙ୍କର ବିଶୃଙ୍ଖଳା ସ୍ୱତଃ ଦୂର ହୋଇଯିବ । ତାଙ୍କର ଏ ସବୁ କଥା ମୋତେ ଭଲ ଲାଗିଲା । ମୁଁ ମଧ୍ୟ ସେହି ମତ ଦେଲି ।

୮.୨.୧୯୫୯

ନବଜୀବନ ମଣ୍ଡଳର ସର୍ବପ୍ରଥମ ବାର୍ଷିକ ସାଧାରଣ ସଭା ଅନୁଗୁଳଠାରେ (ମହିଳାଶ୍ରମ ହତାରେ) ଆରମ୍ଭ ହେଲା । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ (ଜନ୍ମସ୍ଥାନ ବାଲେଶ୍ୱର ଟାଉନ୍), Servants of India ଏବର "ହିନ୍ଦ ସେବକ ସମାଜ"ର ସଭ୍ୟ – ବୟସ ପ୍ରାୟ ୭୧ ବର୍ଷ – ଏହି ବୈଠକରେ ସଭାପତି ହୋଇଥିଲେ । ମୁଁ ଦର୍ଶକ ଭାବରେ ଉପସ୍ଥିତ ଥିଲି । ପ୍ରାରମ୍ଭିକ ଭାଷଣରେ ସେ କହିଥିଲେ "ଆମର ସମାଲୋଚକମାନେ ଆମର ବନ୍ଧୁ, in the words of Emerson "our enemies are our friends", ୪ ଠକ୍କର ବାପାଙ୍କର ସେବା ସ୍ମରଣ

କରାଇଲେ, ତାଙ୍କର ନିଜର କାର୍ଯ୍ୟ ଆଦିବାସୀମାନଙ୍କ ମଧ୍ୟରେ କୋରାପୁଟ ଜିଲ୍ଲାରେ ଯାହା କରିଥିଲେ ତାହା କହିଲେ । ବଙ୍ଗଳାର ଅନ୍ଧ କବି ହେମଚନ୍ଦ୍ରଙ୍କର କବିତା

"ନ ଜାଗିଲେ ଏ ଭାରତ-ଲଲନା,

ଏ ଭାରତ ଆର ଜାଗେ ନା ଜାଗେନା ।''

ନିଶା ନିବାରଣର ଅତ୍ୟାବଶ୍ୟକତା, ଅନ୍ତତଃ distilled liquor ବନ୍ଦ କରିବା, ସରକାର ଏହି ନିଶା ନିବାରଣ କରିବା ଦରକାର; ସେ ନିଜେ ପୂର୍ବେ ଲେଖିଥିବା କବିତା ... ।

This government is selling liquor

In the name of Mahatma Gandhi

ବୈଦିକ, ପ୍ରାଗ୍‌ବୈଦିକ ଯୁଗର ଲେଖା "ସୁରା, ମେରା ମଦ୍ୟୟା ନ ପ୍ରମାଦୟାମି'' Aldous Huxley's "Brave New World" ବହିର କଥା, ଆମ୍ବାନଂ ବିଦ୍ଧି, ଆଦି କହି ଉଦ୍‌ବୋଧନ ଦେଇଥିଲେ । ଶ୍ରୀଯୁକ୍ତ ସାହୁଙ୍କୁ ଶ୍ରୀଯୁକ୍ତ ନବବାବୁ ସ୍ୱାଗତ ଜଣାଇ, ବଡ଼ ସୁନ୍ଦର ଭାବରେ କହିଥିଲେ ।

୯.୨.୧୯୫୯

ନବଜୀବନ ମଣ୍ଡଳର ଆସିଥିବା ପ୍ରାୟ ୬୦ ଜଣ କର୍ମୀ ଓ ସଦସ୍ୟ ୪ଟି ଦଳରେ ବିଭକ୍ତ ହୋଇ, କେତେକ ପ୍ରଧାନ ବିଷୟରେ ଚର୍ଚ୍ଚା କରିଥିଲେ । ମୋତେ ( ମୁଁ କର୍ମୀ ବା ମଣ୍ଡଳର ସଦସ୍ୟ ନ ହେଲେ ହେଁ ) ଗୋଟିଏ ଦଳର ସଂଯୋଜକ ଭାବରେ ଭାର ଦେଇଥିଲେ । ଉପରଓଳି ମଣ୍ଡଳର ସାଧାରଣ ସଭା ହେଲା । ସନ୍ଧ୍ୟା ୬ଟାରୁ ୯ଟା ପର୍ଯ୍ୟନ୍ତ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କ ସହ ଜୟନାରାୟଣ ଦାସ, ମୁଁ, ଶ୍ରୀଯୁକ୍ତ ନବବାବୁ ଅନୁଗୁଳ ବେସିକ୍ ଟ୍ରେନିଂ କଲେଜରେ କବି ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ ଠାରୁ "ଓଡ଼ିଆ ସାହିତ୍ୟରେ କବିତାର ଆଭିମୁଖ୍ୟ'' ବିଷୟରେ ଶୁଣିଲୁ । "ଗଦ୍ୟ-କବିତା'' ହିଁ ଏହି ଆଭିମୁଖ୍ୟ ସେ ପ୍ରମାଣ କରିବାକୁ ଯତ୍ନ କଲେ । ଅବଶ୍ୟ ଅନ୍ୟ ସାହିତ୍ୟରୁ ଅଯଥା ନକଲ କରିବା (ଚୋରି କରିବା)କୁ ସେ ନିନ୍ଦା କଲେ । ମୌଳିକତା ଥାଇ ଗଦ୍ୟକବିତାକୁ ସେ ପୂର୍ଣ୍ଣ ସମର୍ଥନ କଲେ ।

ଶ୍ରୀଯୁକ୍ତ ନବବାବୁ ତାଙ୍କର ନିଜର ସତ୍ୟ ଅନୁଭୂତି ବର୍ଣ୍ଣନା କଲେ (୧) ତାଙ୍କର ବିବାହ ପରେ ପରେ ସେ ମାଳତୀ ଦେବୀଙ୍କର ପିତ୍ରାଳୟରେ କିପରି ସର୍ବପ୍ରଥମେ cheese ଖାଇବାକୁ ଭାରୀ ଘୃଣା ପାଇଲେ ... ଏବଂ ପରେ ଅଭ୍ୟସ୍ତ ହୋଇଗଲେ; ଜବହାରଲାଲ ନେହେରୁଙ୍କର ରହିବା ଘରେ (ଦିଲ୍ଲୀରେ) ନବବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ ବିଶ୍ୱବିଖ୍ୟାତ ଶିଳ୍ପୀ ..ଙ୍କ ହାତରେ ଗଢ଼ା ଜବାହାରଲାଲଙ୍କର ମୂର୍ତ୍ତି ଦେଖି ନବବାବୁ କିପରି ଠିକ୍ ଚିହ୍ନି ପାରି ନ

ଥିଲେ; କବୀନ୍ଦ୍ର ରବୀନ୍ଦ୍ର ଠାକୁର କିପରି ଦିନେ ସଞ୍ଜବେଳେ ଶାନ୍ତିନିକେତନର ଅଧା ଅନ୍ଧାରରେ ତୂଳି ଧରି ଛବି ଆଙ୍କୁଥିଲେ ଓ ସେ ଛବିକୁ ନବବାବୁ ଓ ମଳତୀ ଦେବୀ ଚିହ୍ନି ପାରୁ ନ ଥିଲେ, ମାତ୍ର ଏ ସବୁ ବଡ଼ ଲୋକଙ୍କ କଥାରେ ନିଜର ପସନ୍ଦ ପ୍ରକାଶ କରିବାକୁ ବାଧ ହୋଇଥିଲେ – ଏ ସବୁ ବଡ଼ ହାସ୍ୟ ଉଦ୍ଦୀପକ ଭାବରେ ବର୍ଣ୍ଣନା କଲେ ।

୧୦.୨.୧୯୫୯

ସକାଳେ ବେସିକ୍ ଟ୍ରେନିଂ କଲେଜକୁ ମୁଁ ଯାଇଥିଲି । ପ୍ରିନ୍ସିପାଲ ଶ୍ରୀ ଶତ୍ରୁଘ୍ନ ନାଥ ଓ ଅଧ୍ୟାପକ ଶ୍ରୀ ସର୍ବେଶ୍ୱର ଦାସ ଅନୁରୋଧ କରିଥିଲେ । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ମଧ୍ୟ ଯାଇଥିଲେ । ମାନନୀୟ ଲକ୍ଷ୍ମୀନାରାୟଣ ବାବୁ ସକ୍ରେଟିସ୍‌ଙ୍କର ଜୀବନର ଘଟଣା, ଶିକ୍ଷାପ୍ରଣାଳୀ, ବୁଦ୍ଧଙ୍କର ପ୍ରଧାନ ଶିଷ୍ୟ ଆନନ୍ଦଙ୍କର କଥା, ଶିକ୍ଷାର ଉଦ୍ଦେଶ୍ୟ, ଆତ୍ମ-ଉପଲବ୍ଧି, ଈଶ୍ୱର-ଉପଲବ୍ଧି, ଅନ୍ତର୍ଦୃଷ୍ଟି, ଆଦର୍ଶ ଚରିତ୍ର, ଗୁରୁ ନୀରବ ଥାଇ ତାଙ୍କର କେବଳ ଉପସ୍ଥିତି ଦ୍ୱାରା ଶିଷ୍ୟକୁ ଉଚିତ ଶିକ୍ଷା ଦେଇପାରନ୍ତି, ଇତ୍ୟାଦି କହି ବଡ଼ ସରଳ ଭାଷାରେ ଓ ସୁନ୍ଦରରୂପେ ଶିକ୍ଷାର ଧ୍ୟେୟ ଓ ଶିକ୍ଷକମାନଙ୍କର କାର୍ଯ୍ୟ ବୁଝାଇଥିଲେ ।

ଶତ୍ରୁଘ୍ନ ବାବୁଙ୍କର ଅନୁରୋଧ କ୍ରମେ ମୁଁ ମଧ୍ୟ ଦୁଇପଦ କହିଲି – ସେହି ଅନ୍ତର୍ଦୃଷ୍ଟି, ନିଜର କାର୍ଯ୍ୟକୁ ଅନୁଧ୍ୟାନ କରିବା, ସମସ୍ୟାର ସମାଧାନ ତାହାର ପାଖରେ ଅଛି, ଆମେ ବୈଜ୍ଞାନିକ ଦୃଷ୍ଟିରେ, dispassionately ଦେଖିଲେ ସମାଧାନ ପାଇପାରିବା, ଶିକ୍ଷାରେ ଆମର କାର୍ଯ୍ୟରେ mother spirit, ପ୍ରାଣର ପ୍ରାଚୁର୍ଯ୍ୟ ଆଣିପାରିବା ବିଷୟରେ ।।

ସକାଳ ୧୦ଟାରୁ ୧୨ଟା ନବଜୀବନ ମଣ୍ଡଳର ସାଧାରଣ ସଭା ହେଲା । ଶେଷ ହେଲା । ମାନନୀୟ ଲକ୍ଷ୍ମୀନାରାୟଣ ବାବୁ ପୁରୁଷ କର୍ମୀମାନେ କିପରି ଉଚ୍ଚ ଦୃଷ୍ଟିରେ ନାରୀକର୍ମୀଙ୍କୁ ଦେଖିବେ, ଚରିତ୍ର ଦୃଢ଼ ରଖିବେ, ଇତ୍ୟାଦି ବୁଝାଇ କହିଲେ ।

ଉପରଓଳି ମହିଳାଶ୍ରମର ବାର୍ଷିକ ସମାବର୍ତ୍ତନ ଉତ୍ସବ ହେଲା । ବାର ଜଣ ମହିଳା ଉତ୍ତୀର୍ଣ୍ଣ ହେଲେ । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ସଭାପତି ହୋଇଥିଲେ । ମୋତେ ଅନୁରୋଧ କରିବାରୁ, ମୁଁ ସଭାରେ ଦୁଇପଦ କହିଲି । ନାରୀକର୍ମୀ ଓ ଉତ୍ତୀର୍ଣ୍ଣ ମହିଳାମାନଙ୍କ ରିପୋର୍ଟରୁ (୧) ଆବେଗ (୨) ଆକ୍ଷେପ – ସରକାରୀ କର୍ମଚାରୀ ଓ ସାହୁ ମହାଜନମାନଙ୍କର କୋରାପୁଟ ଆଦି ଜିଲ୍ଲାରେ ଶୋଷଣ ବିରୋଧରେ – (୩) ଆଶାର କଥା ମୁଁ ବୁଝାଇ କହିଥିଲି । ରାତି ୯ଟାରେ ମାସୀ, ଲକ୍ଷ୍ମୀନାରାୟଣ ବାବୁ, ଆଦିଙ୍କ ସହ ମୁଁ ସରକାରଙ୍କର ପ୍ରଚାର ବିଭାଗର ମୋଟରରେ ଅନୁଗୁଳରୁ କଟକକୁ ଆସିଲି । ୧୦ଟା ୪୦ ମିନିଟ୍‌ରେ ପହଞ୍ଚିଲୁ ।

୧୧.୨.୧୯୫୯

ଏକ-ଚତୁର୍ଥାଂଶ ଗୁଣ୍ଡିଏ ସୂତା କାଟିଲି । ଶ୍ରୀଯୁକ୍ତ ଅର୍ଣ୍ଣାସାହେବ ସହସ୍ରବୁଦ୍ଧେ କଟକରେ

ଗୋଟିଏ ସାମ୍ବାଦିକ-ବୈଠକ କରାଇଲେ ଏବଂ ଓଡ଼ିଶା ସରକାର କୋରାପୁଟ ଜିଲ୍ଲାରେ "ନିର୍ମାଣ-କାର୍ଯ୍ୟ"ରେ କିପରି ୧୯୫୫ ଶେଷ ଠାରୁ ଏ ପର୍ଯ୍ୟନ୍ତ ସହଯୋଗ କରୁନାହାନ୍ତି, ତାହାର ଏକ ଲିଖିତ ନୋଟ ସେମାନଙ୍କୁ ଦେଇଥିଲେ ଏବଂ ସାମ୍ବାଦିକମାନଙ୍କର ନାନା ପ୍ରଶ୍ନର ଉତ୍ତର ଦେଇଥିଲେ । ନବକୃଷ୍ଣ ଚୌଧୁରୀ, ଈଶ୍ୱରଲାଲ ବ୍ୟାସ, ନନ୍ଦକିଶୋର ଦାସ, ଗୁଣନିଧି ମହାନ୍ତି, ଫକୀର ମିଶ୍ର, ବୃନ୍ଦାବନ ଚନ୍ଦ୍ର ଜେନା ଆଦି ବସିଥିଲେ । ମୁଁ ମଧ୍ୟ ଶୁଣୁଥିଲି । ଶ୍ରୀ ମନମୋହନ ଚୌଧୁରୀ ବରୀରେ ଥିଲେ ।

୧୩.୨.୧୯୫୯

ଆଚାର୍ଯ୍ୟ ମହାଶୟ ପୁରୀରୁ ମୋଟର-ବସ୍‌ରେ କଟକ ଭୂଦାନ ଅଫିସକୁ ସକାଳ ୧୦ଟାରେ ଆସି ପହଞ୍ଚିଲେ । ସେ ଆଜମୀର ସର୍ବୋଦୟ ସମ୍ମିଳନୀକୁ ଯିବେ ବୋଲି ପଦଯାତ୍ରା ସ୍ଥଗିତ ରଖିଲେ ।

୧୬.୨.୧୯୫୯

ଶ୍ରୀ ଗନ୍ଧର୍ବ ନାୟକ (ଜନ୍ମସ୍ଥାନ ପରମହଂସପୁରରେ) ଏଠାକୁ ଆସି ତାଙ୍କର ଭକ୍ତିଭାବ, ଭଗବାନଙ୍କର ନାମକୀର୍ତ୍ତନରେ ବିଶ୍ୱାସ ଅତି ସଂକୋଚରେ ମୋତେ କହିଲେ । ତାଙ୍କର ସନ୍ତାନ ନାହାନ୍ତି । ସେ, ତାଙ୍କର ସ୍ତ୍ରୀ ଓ ବୃଦ୍ଧା ମାତା ସେମାନଙ୍କର ସଂପତ୍ତିକୁ ରାସବିହାରୀ ମଠ ଓ ..ମଠକୁ ଦାନ କରିଦେବା ସ୍ଥିର କରିସାରିଛନ୍ତି । ମୁଁ ସ୍କୁଲ ସବ୍ ଇନ୍‌ସପେକ୍ଟର ୧୯୩୩-୩୫ରେ ଥିବାବେଳେ, ସେ ପିଲା ଥିଲେ ଓ ତାଙ୍କର ବିଧବା ପ୍ରୌଢ଼ା ମାତା ପରମହଂସ ପ୍ରାଥମିକ ସ୍କୁଲରେ ପିଲାମାନଙ୍କୁ ଘରୁ ଡାକିବା କାମ କରୁଥିଲେ । ସେତେଦିନୁଁ ଏପରି ମମତା ମୋ ପ୍ରତି ଅଛି ।

୧୭.୨.୧୯୫୯

ଶ୍ରୀ ଫକୀର ମିଶ୍ର ମୋତେ ସ୍ୱତଃ କହିଲେ ଯେ ମନରେ ବେଳେ ବେଳେ ଦୁଃଖ ହେଉଛି ଯେ କେତେ ବିଶିଷ୍ଟ ଆମ ଲୋକେ ତାଙ୍କୁ ଦୋଷ ଦେଉଛନ୍ତି ଓ ତାଙ୍କୁ ବୁଝିପାରୁନାହାନ୍ତି । ତାଙ୍କର ଅତୀତରେ ଗଠନମୂଳକ କାମକୁ ପସନ୍ଦ କରୁନାହାନ୍ତି । ଗୋପବାବୁଙ୍କର ଉଦାରତା ସେ ବର୍ଣ୍ଣନା କଲେ - ୧୯୪୯ ରେ ଗୋପବାବୁ ଥରେ ତାଙ୍କୁ ରାମଚନ୍ଦ୍ରପୁରରେ ସଫା ମୌଖିକ କହିଲେ - "ଫକୀର ! ତୁମ ମନରେ କଷ୍ଟ ହେଲା କି ? ମୋତେ କ୍ଷମା କରିବ ।" ଜୁଲାଇ ୧୯୫୫ରେ ମଧ୍ୟ ଫକୀରବାବୁ ଭୂଦାନକାର୍ଯ୍ୟ ଛାଡ଼ି ନିଜ ଘରକୁ ମାସେ ଖଣ୍ଡେ ଚାଲିଯାଇଥିଲେ । ପରେ ମା (ରମା ଦେବୀ) ଟେଲିଗ୍ରାଫ୍ କରିବାରୁ ଫେରିଆସିଲେ । ସେଥର ମଧ୍ୟ ଗୋପବାବୁ ବଡ଼ ସୁନ୍ଦର ଭାବରେ ଫକୀରବାବୁଙ୍କୁ ପୁଣି କଥାପଦକେ ବୁଝାଇଦେଲେ । ଫକୀରବାବୁ କହିଲେ " ଏ ଦେହରେ ମୁଁ ଆବଦ୍ଧ ହୋଇ ରହିଲିଣି, ବଡ଼ ଛଟପଟ ଲାଗୁଛି ।" ସେ କହିଲେ

– "ଆମେ ୧୪୦୦ ଟଙ୍କାର ଗହଣା ବିକି ଖର୍ଚ୍ଚ କଲୁଣି । କୁନୀ, ଜୁନୀ ସେବାଗ୍ରାମରୁ ଚାଲିଆସିବେ, ସେମାନଙ୍କର କଥା ଭାବିବାକୁ ହେବ ।''

ପ୍ରକୃତରେ ସହକର୍ମୀମାନଙ୍କର ଏହିପରି ବହୁ ଚିନ୍ତା ଓ ମନୋବେଦନା ଆସୁଛି । ଏହାର ପ୍ରତିକାର କଅଣ ? ମୁଁ ନିଜେ ଅବା କଅଣ କରିପାରୁଛି !!

୧୮.୨.୧୯୫୯

ସକାଳ ୮ଟାରେ ରାଣୀହାଟରୁ ସରକାରୀ ବସ୍‌ରେ ନେଉଳପୁରକୁ ଆସିଲି । ସେଥିରେ କଣ୍ଟାପାରିର ଜଗନ୍ନାଥ ମଉସା (ଦାସ) ଓ ବରୀ ଅମ୍ବରଚରଖା କେନ୍ଦ୍ରର ଶିକ୍ଷକ ନିତ୍ୟାନନ୍ଦ ବେହେରା ଆସୁଥିଲେ । ମୁଁ କଦଳାମଠରେ ଭୋଜନ କରି, ଉପରଓଳି ୨ଟାରେ ସେଠାରୁ ଚାଲି, ସନ୍ଧ୍ୟା ୭ଟାରେ ରାମଚନ୍ଦ୍ରପୁରରେ ପହଞ୍ଚିଲି । ଏକାକୀ ବାଟ ଚାଲିଥାଏ । ଏ ୫/୬ ବର୍ଷ ହେଲା ମୁଁ ଏକାକୀ ବାଟ ଚାଲିଲେ, ଭଲ ଲାଗୁଛି – ଅନ୍ୟ ସହ ଏଣୁତେଣୁ ଗୁଡ଼ାଏ ଗପ କରିବା ପରିବର୍ତ୍ତରେ ଯଥାସମ୍ଭବ ଅନ୍ତର୍ମୁଖୀ ହୋଇ ଟିକିଏ ଅଧେ ଭାବିବାକୁ ପଡୁଛି । ଭକ୍ତକବି ମଧୁସୂଦନ ରାଓଙ୍କର ଗୋଟିଏ ଅଧେ ପ୍ରାର୍ଥନା ସମୟ ସମୟେ ଏକାକୀ ବାଟଚାଲିବା ବେଳେ ମନେ ପଡ଼େ । ବନୁ ଓ ବାବୁଲି ଶୋଇ ପଡ଼ିଥିଲେ ।

୨୧.୨.୧୯୫୯

କସ୍ତୁରବା କେନ୍ଦ୍ରରେ ଆଜିଠାରୁ ଶିଶୁ ମନୋବିଜ୍ଞାନ ପଢ଼ାଇବା ଆରମ୍ଭ କଲି । ସକାଳେ ୯ ରୁ ୧୧ଟା । ଅନ୍ୟ ସମୟରେ ତୂଳା ବଛା ଆଦି । ରାତିରେ ଗୁରୁଜୀମାନଙ୍କ ସହ ଉତ୍ତର ମୌଳିକ ବିଭାଗର ଛାତ୍ରମାନେ ମ୍ୟାଟ୍ରିକ୍ ପରୀକ୍ଷା ଦେବେ କି ନାହିଁ – ଏ ବିଷୟରେ ଆଲୋଚନା ହେଲା । ମୋର ବିଶ୍ୱାସ ଯେ ଆମେ ନୂଆ ଓ ନିଦା କାର୍ଯ୍ୟ ଦେଖାଇଲେ ସରକାର ଓ ଲୋକେ କ୍ରମେ ପସନ୍ଦ କରିବେ । ଏଥିପାଇଁ ପରିଶ୍ରମୀ ଶିକ୍ଷକ, ଧୈର୍ଯ୍ୟ ଓ ସମ୍ବଳ ଦରକାର ।

୨୪.୨.୧୯୫୯

ଭୋର ୪ଟାରେ ଉଠିଲି । ମାତ୍ର ଅନେକ ସମୟ ନଷ୍ଟ ହୋଇଗଲା । ଡାକ୍ତରବାବୁଙ୍କୁ କଟକ ନେବାକୁ ଚିଠି ଦେଇଆସିଲି । ସକାଳ ୧୦ଟାରୁ ୧୧ଟା ପର୍ଯ୍ୟନ୍ତ କସ୍ତୁରବା କେନ୍ଦ୍ରରେ ଆଜିଠାରୁ ମୁଁ ସର୍ବୋଦୟ ବିଚାରର ମୂଳ ସିଦ୍ଧାନ୍ତମାନ ବୁଝାଇଲି, ଉପରଓଳି ୩ ରୁ ୪ଟା ।

ଅରଟରୁ ସୂତା ୫୦୦ ଘେରା ଉଠାଇଲି । ସନ୍ଧ୍ୟାପରେ ବନୁ ସର୍ବପ୍ରଥମେ ଶ୍ରୀମଦ୍‌ଭାଗବଦ୍ ଗୀତା ନିଜମନକୁ ପଢ଼ିଲା । ମୁଁ ସଂସ୍କୃତ ଶ୍ଳୋକମାନ ପଢ଼ି ଭଲ ଉଚ୍ଚାରଣ କରିବାରେ ଓ ଓଡ଼ିଆର ସ୍ଥୁଳ ଅର୍ଥ କହିଦେବାରେ ସାହାଯ୍ୟ କଲି । ଭେଣ୍ଡିମଞ୍ଜି ୩୩ ମନ୍ଦା ଲଗାଇଲୁ ।

୨୫.୨.୧୯୫୯

ସକାଳେ କୋଦାଳରେ ପ୍ରାୟ ୨୫ ବର୍ଗଫୁଟ ମାଟି ହାଣିଲି । ସକାଳେ କସ୍ତୁରବା କେନ୍ଦ୍ରରେ ଆଲୋଚନା । ଉପରଓଳି ୨ଟା ରୁ ୩ଟା ଉତ୍ତର ମୌଳିକର ୧୦ମ ସୋପାନର ଛାତ୍ରଙ୍କୁ ଇଂରାଜୀ ପଢ଼ାଇଲି । ମୋତେ ଠିକ୍ ସମୟ ଉକ୍ତ ଛାତ୍ରମାନେ ନ ଜଣାଇବାରୁ କସ୍ତୁରବା କେନ୍ଦ୍ରରେ ଉପରଓଳି ପଢ଼ାଇବାକୁ ଠିକ୍ ସମୟରେ ଆସିପାରିଲି ନାହିଁ । ନିଜେ ପ୍ରତ୍ୟେକ କଥାକୁ ଲକ୍ଷ୍ୟ ନ ଦେଲେ, ଠିକ୍ ହେଉନାହିଁ ।

୨୬.୨.୧୯୫୯

ମୌଳିକ ସ୍କୁଲଗୁଡ଼ିକର ୮ମ ସୋପାନ ଶେଷରେ final assessment Board of Basic Education, Orissa କରୁଛନ୍ତି । ଏ ବର୍ଷ ତା ୨୭.୩.୧୯୫୯ରୁ ପରୀକ୍ଷା ହେବ ।

ଖରାବେଳେ ଶ୍ରୀମାନ୍ ପଦ୍ମନାଭ ଜେନା ( ସେ ଏ ବର୍ଷ ଏଠାର ପ୍ରଧାନ ଗୁରୁଜୀ ହୋଇଛନ୍ତି)ଙ୍କ ସହ ଏହି ପରୀକ୍ଷା ବିଷୟରେ କଥାବାର୍ତ୍ତା ହେଲି ।

୩ଟାରୁ ୪ଟା – କସ୍ତୁରବା କେନ୍ଦ୍ରରେ ସର୍ବୋଦୟ ବିଚାର ଆଲୋଚନା । ତତ୍‌ପରେ ମୋର ତୂଳା ବାଛିଲି । ରାତିରେ କିଛି ଖାଇଲି ନାହିଁ । ଲୁଣପାଣି କୁଳୁକୁଳୁ କଲି । ରାତି ୭ଟାରୁ ୯ଟା ପର୍ଯ୍ୟନ୍ତ ଅକ୍ଷୟଙ୍କୁ ମୁଁ କହିଲି ଯେ ଏହି ସ୍କୁଲରେ ସଫାଇ, ପରିପାଟି, କାନ୍ଥରେ ମାନଚିତ୍ର କରିବା, ବାହାରୁ ବିଶିଷ୍ଟ ଲୋକଙ୍କୁ ମଧ୍ୟେ ମଧ୍ୟେ ନିମନ୍ତ୍ରଣ କରିବା, ଗାନ୍ଧୀନିଧିରୁ ସାହାଯ୍ୟ ବନ୍ଦ ହୋଇଯିବ, ସେଥିପାଇଁ କଅଣ କରିବା ଏତେଦିନୁଁ ଭାବିବା, ପାଖରେ ଅମୌଳିକ special school ଖୋଲାଇ ନ ଦେବା; ଏ ସ୍କୁଲ ଭଲ ଚଳାଇ ନ ପାରିଲେ ବରଂ ଏକାବେଳେକେ ବନ୍ଦ କରିଦେବା,.... ।

୨୭.୨.୧୯୫୯

ସର୍ବୋଦୟ ସମ୍ମିଳନୀ (ଏକାଦଶ ବାର୍ଷିକ ସମ୍ମିଳନୀ) ଆଜି ରାଜସ୍ଥାନର ଆଜମିରରରେ ଆରମ୍ଭ ହେଉଥିବ । ଶ୍ରୀଯୁକ୍ତ ରମା ଦେବୀଙ୍କର ୧ ମାସ ପୂର୍ବେ ପ୍ଲୁରେସି ଓ ଜଣ୍ଡିସ୍ ହୋଇ ସେ ଦୁର୍ବଳ ଥିବାରୁ, ଡାକ୍ତରଙ୍କର ବାରଣ ହେତୁ ସମ୍ମିଳନୀକୁ ଏଥର ଗଲେ ନାହିଁ । ଗତ ବର୍ଷ ପଣ୍ଢରପୁର ସର୍ବୋଦୟ ସମ୍ମିଳନୀରେ ସେ ସଭାପତି ହୋଇଥିଲେ । ଏ ବର୍ଷ ଚୁନୀ ଦେବୀ, ଗୁଣନିଧି ବାବୁ (ମହାନ୍ତି), ମୁଁ , ବନୁ ଓ ବାବୁଲି ସମ୍ମିଳନୀକୁ ଗଲୁ ନାହିଁ । ସକାଳେ ସାମାନ୍ୟ ସଫାଇ ଓ ଗାଈ ପାଇଁ ଘାସ କଲି ।

୧.୩.୧୯୫୯

ସକାଳେ ଘଣ୍ଟାଏ ସଫାଇ କଲି । ଆଜି ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟର ଜନ୍ମଦିବସ, ଅର୍ଥାତ୍ ତା ୧.୩.୧୯୪୧ରେ ବେସରକାରୀ ଭାବରେ ଏହା ଆଜି ତାରିଖରେ ଆରମ୍ଭ ହୋଇଥିଲା । ଛାତ୍ରମାନେ ଏହା ଆଜି ପାଳନ କଲେ । ପୂର୍ବେ ଆଜି ମାର୍ଚ୍ଚ ପହିଲା ଦିନଟି ଶହୀଦ୍ ଦିବସ ରୂପେ ମଧ୍ୟ ପାଳିତ ହେଉଥିଲା ।

କୈଳାଶ ନାଥଙ୍କର ଝିଅ ବାସନ୍ତୀ କୋଳି ଗୋଟାଇବାକୁ ଆସିଥିଲା । ମୁଁ ଖୁସିରେ ତାକୁ ଗୋଟିଏ କମଳାଲେମ୍ବୁ ଦେଲି । ସେ ତାହା ନ ଖାଇ, ତାହାର ସାନ ଭଉଣୀ ଓ ଭାଇ - ଶାନ୍ତି, ସୁକାନ୍ତି, ଶ୍ରୀକାନ୍ତ ଓ ସୁପ୍ରଭାତ ପାଇଁ ଘରକୁ ନେଇଗଲା । ମୁଁ ଆଉ ଗୋଟିଏ କମଳାଲେମ୍ବୁ ଦେଲି । ଏତେ ସାନ ପିଲାର (ବୟସ ୭ ବା ୮ ବର୍ଷ ହେବ) କି ସହୃଦୟତା ଓ ନିଜର ଲୋକଙ୍କ ପ୍ରତି ସମବିଚାର !!

୨.୩.୧୯୫୯

କସ୍ତୁରବା କେନ୍ଦ୍ରରେ ଓ ଉତ୍ତର ମୌଳିକ କେନ୍ଦ୍ରରେ ମୁଁ ପଢ଼ାଇନାହିଁ କିମ୍ବା କସ୍ତୁରବା କେନ୍ଦ୍ରରେ ମୁଁ ଦିନଯାକ ଖାଇନାହିଁ । ମୁଁ ଲକ୍ଷ୍ୟ କରୁଛି ଯେ ଧରାବନ୍ଧା ରୁଟିନ ସମୟ ବାହାରେ ଅନ୍ୟମାନେ ଆଉ ଅଧିକା କିଛି କରିବାକୁ ପରାଂମୁଖ ଅଟନ୍ତି । ଏଥିରେ କଅଣ କାର୍ଯ୍ୟ ହେବ ?

୪.୩.୧୯୫୯

ଆଜି ସକାଳେ ୪ଟାରୁ ୬ଟା ପର୍ଯ୍ୟନ୍ତ ବାବୁଲି ମୋ ଠାରେ ସାଧାରଣ ବିଜ୍ଞାନ ଓ ଇଂରାଜୀ ପଢ଼ିଲା । ସେ ବେଶ୍ ଉନ୍ନତି କରିପାରିବ – ଯଦି ତାହାକୁ ଆମେ କେହି ଯତ୍ନରେ ପଢ଼ାଉ ।

ମୁଁ ଅନ୍ୟମାନଙ୍କ ଠାରୁ ବାକୀ ପଇସା ଆଦାୟ କରିବାକୁ ଆଜି ପୁଣି ଗଲି ଏବଂ ପ୍ରାୟ ଅଧିକାଂଶ ଆଦାୟ ପାଇଲି । ଧାରରେ ଜିନିସ ଦେବା ଓ ନଗଦ ଟଙ୍କା ଧାର ଦେବା ବଡ଼ ଖରାପ କଥା; ମୁଁ ୫ ଜଣଙ୍କ ଠାରୁ ସାମାନ୍ୟ ଟ. ୧୬ ବା ୧୭ ଆଦାୟ କରିବାକୁ ଗତ ୫ ମାସ ହେଲା ମଧ୍ୟେ ମଧ୍ୟେ ଯତ୍ନ କରାଇଛି ଏବଂ ଏ ୩ ଦିନ ହେଲା ନିଜେ ସେମାନଙ୍କ ଘରକୁ ଯାଇ, ପ୍ରାୟ ୬ ଘଣ୍ଟା ସମୟ ନଷ୍ଟ କରିଅଛି !! ଏହା ତ ଆମ ଦେଶର ଲୋକଙ୍କର ଜାତୀୟ ଚରିତ୍ର !!

ସନ୍ଧ୍ୟାରେ ଶ୍ରୀ ଗୋରାଚାନ୍ଦ ସାମଲଙ୍କ ଘରକୁ ଖାଇବାକୁ ଗଲି – ସେ ଖୁସିରେ ନିମନ୍ତ୍ରଣ କରିଥିଲେ । ସେଠାରେ ଗ୍ରାମବାସୀଙ୍କର ସମୂହ ଭାବନାରେ କିପରି ଭଲ କାମ ହୋଇପାରେ, ଦୃଷ୍ଟାନ୍ତ ଦେଇ କହିଲି । ୮ମ ସୋପାନର ପିଲାମାନଙ୍କୁ ଅଙ୍କ ବୁଝାଇଦେଲି । ରାତି ୧୦ଟାରେ ଶୋଇଲି ।

୨୩.୩.୧୯୫୯

ସକାଳ ଘ ୬.୨୦ ମିନିଟରେ ମୁଁ ସାଇକେଲରେ କଟକରୁ ବାହାରି, ଘ ୮.୪୦ ମିନିଟରେ ନୂଆ ରାଜଧାନୀ (ଭୁବନେଶ୍ୱର)ର ଅତିଥିଶାଳାରେ ଶ୍ରୀ ସଦାଶିବ ତ୍ରିପାଠୀଙ୍କ ଠାରେ ପହଞ୍ଚିଲି । ସେଠାରେ ତାଙ୍କ ସହ ସରକାରୀ ଭୂଦାନ ଯଜ୍ଞ ସମିତି କଅଣ କାର୍ଯ୍ୟ କରୁଥିଲେ ଏବଂ ବର୍ତ୍ତମାନ ଉକ୍ତ ସମିତିଙ୍କୁ ଓ ସେଥିର ନୂତନ ସଂପାଦକ ( ଶ୍ରୀ ସଦାଶିବ ବାବୁ)ଙ୍କୁ କାଗଜପତ୍ର ପୂରଣ କରାଇବା, ସରକାରୀ ରେଭିନ୍ୟୁ ଅଫିସରମାନଙ୍କଠାରୁ କାର୍ଯ୍ୟ କରାଇନେବା, ଆଦି ଚର୍ଚ୍ଚା ହେଲା । ମୁଁ କହିଲି ଯେ ସର୍ବସାଧାରଣଙ୍କୁ ଏବଂ ଭୂଦାନସେବକମାନଙ୍କୁ ଆଗେ ଭୂଦାନ ସମିତି ନିବେଦନ କରନ୍ତୁ ଯେ ସେମାନଙ୍କର ସାହାଯ୍ୟ ସହଯୋଗ ମିଳୁ । ଜିଲ୍ଲା ଭୂଦାନ-ନିବେଦକମାନଙ୍କର ପରାମର୍ଶ ସାକ୍ଷାତ ଆଲୋଚନାରେ ମଧ୍ୟ ସମିତି ନିଅନ୍ତୁ ।

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ମଧ୍ୟ ଆଜି ଏଠାରେ ଥିଲେ । ମୁଁ ନିମ୍ନଲିଖିତ କାଗଜପତ୍ର ଓ ପଦାର୍ଥ ଶ୍ରୀ ସଦାଶିବ ବାବୁଙ୍କୁ (ନୂତନ ସେକ୍ରେଟାରୀଙ୍କୁ) ଦେଲି : -

୧) ଭୂଦାନ ସମିତିର ବିବରଣୀ ଖାତା - ୧

୨) ଭୂଦାନ ଯଜ୍ଞ ଆକ୍ଟ (୧୯୫୪), ଆମେଣ୍ଡ ଆକ୍ଟ (୧୯୫୬), ରୁଲସ୍, ଓଡ଼ିଶା ଟେନାଣ୍ଟସ୍ ରିଲିଫ୍ ଆକ୍ଟ ଓ ରୁଲସ୍ ବହି ଖଣ୍ଡିଏ ଲେଖାଁଏ ଏକତ୍ର ବନ୍ଧା - ଏକ୍ଟ ସେଟ୍

୩) ରେଭିନ୍ୟୁ ଡ଼ିପାର୍ଟମେଣ୍ଟ, ବୋର୍ଡ଼ ଅଫ ରେଭିନ୍ୟୁ, କେଲକ୍ଟରମାନଙ୍କ ଠାରୁ ପ୍ରାପ୍ତ ପତ୍ର ଓ ସେଥିର ଉତ୍ତରର ନକଲ

୪) ସରକାରୀ ଓଡ଼ିଶା ଭୂଦାନ ଯଜ୍ଞ ସମିତିର ଗଠନ (କ) ବୈଠକର ନୋଟିସ ଆଦି, (ଖ) ଡ଼କ୍ଟର ମହତାବ- ମୁଖ୍ୟମନ୍ତ୍ରୀଙ୍କ ସହ ସମିତିର ଚିଠିପତ୍ର ଆଦି - ୧ ଫାଇଲ୍ ନମ୍ବର ୫ - ଏଫ

୫) ବଜେଟ ଫାଇଲି

୬) ସମିତିର ଡାକଖାନା ନମ୍ବର ୬ - ବେସରକାରୀ ଓ ସରକାରୀ ଉଭୟ ସମିତିର ଏ ଡାକଖାତା ତା ୩୧.୩.୧୯୫୮ ପର୍ଯ୍ୟନ୍ତ ଲେଖାଅଛି ।

୭) କଳାହାଣ୍ଡି ଜିଲ୍ଲାର ପୂରଣ ହୋଇଥିବା ଦାନପତ୍ର ୧୯୩ ଖଣ୍ଡ । ଏଗୁଡ଼ିକ ଶ୍ରୀ ଶକ୍ତିଶେକର ଦାସ ଗତବର୍ଷ ଓଡ଼ିଶା ଭୂଦାନ ସମିତିରେ ଦେଇଯାଇଥିଲେ । ଅନ୍ୟ ଜିଲ୍ଲାଗୁଡ଼ିକର ଦାନପତ୍ର, ଦାତାବାରୀ ତାଲିକା, ଗ୍ରାମବାରୀ ତାଲିକା, ବଣ୍ଟନ ତାଲିକା ଆଦି ସଂପୃକ୍ତ ଜିଲ୍ଲା ଭୂଦାନ ନିବେଦକମାନଙ୍କ ଠାରେ ଅଛି ।

ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀଙ୍କଠାରୁ ମଁ ପ୍ରାପ୍ତିସ୍ୱୀକାର ରସିଦ ଆଣିନାହିଁ । ମାତ୍ର ମୁଁ ଲେଖି ଓ ଦସ୍ତଖତ କରି ଚାର୍ଯ୍ୟ ଦେଲି ବୋଲି - ଏକ କାଗଜ ଆଣିଲି ।

ବରୀର ଶ୍ରୀ ନବକିଶୋର ଦାସ ଶ୍ରୀ ସଦାଶିବ ବାବୁଙ୍କ ଠାକୁ ଯାଇଥିଲେ – "ଶୁଦ୍ଧ ଖାଦ୍ୟ'' ଆନ୍ଦୋଳନ ନବବାବୁ ଆରମ୍ଭ କରିଛନ୍ତି - ସେହି କଥା ଗପିଲେ ।

ଖଣ୍ଡଗିରି ତଳେ ବରମୁଣ୍ଡା ଗାଁ ପାଖରେ "ଆନନ୍ଦ ସ୍ୱରୂପ''ଙ୍କର ଆଶ୍ରମକୁ ଗଲି । ସେ ନ ଥିଲେ । ଶ୍ରୀକୃଷ୍ଣ ଦାସ ବୁଢ଼ାଙ୍କଠାରୁ କାଞ୍ଜିପାଣି ପିଇ କରି ଫେରିଲି । ମୁଁ ନାଗେଶ୍ୱର ଟାଙ୍ଗିରେ ଶ୍ରୀଯୁକ୍ତ ସାଧୁଚରଣ ମହାନ୍ତିଙ୍କୁ ସନ୍ଧ୍ୟା ୫ଟାରେ ଦେଖା କଲି । ସରବତ୍ ପିଇଲି । ଜିଜୀ ହରିଦାସପୁରରେ ଅନୁଷ୍ଠାନ କରନ୍ତୁ - କସ୍ତୁରବା କେନ୍ଦ୍ର ମଧ୍ୟ ସେହି ପାଖରେ ହେଉ - ସାଧୁବାବୁଙ୍କର ଇଚ୍ଛା ନିଜେ ବ୍ୟକ୍ତ କଲେ । ସଦାଶିବ ବାବୁଙ୍କ ଅନୁରୋଧରେ ଗେଷ୍ଟ ହାଉସ୍‌ରେ ମଧ୍ୟାହ୍ନଭୋଜନ କଲି । ଶ୍ରୀଯୁକ୍ତ ସତ୍ୟପ୍ରିୟ ମହାନ୍ତି, ବୀରେନ୍ଦ୍ର ମିତ୍ର, ବିଜୁ ପଟ୍ଟନାୟକ ଏବଂ ନବବାବୁ ମଧ୍ୟ ଏକ ଟେବୁଲ୍‌ରେ ଖାଇଲେ । ସେଠାରୁ ସନ୍ଧ୍ୟା ୬.୪୫ ମିନିଟରେ ବାହାରି ଘ ୭.୩୦ରେ ଫୁଲନଖରା ଓ ଘ ୮.୧୫ରେ କଟକର ଛତରାବଜାର ପୋଲଠାରେ ପହଞ୍ଚିଲି - ସାଇକେଲରେ । ଥୋଡ଼ିଆସାହିକୁ ଏ ୨ ମାଇଲ ଚାଲି ଚାଲି ଆସିଲି ।

୨୭.୩.୧୯୫୯

ରାମଚନ୍ଦ୍ରପୁରରେ । ଆଜି ଭୋର ବାବୁଲି ମୋ ପାଖରେ ଅଧ ଘଣ୍ଟାଏ ତାହାର ଇଂରାଜୀ ବହିରୁ ପଢ଼ିଲା । ଚୁନୀ ଦେବୀଙ୍କର ନାମରେ ଆସୁଥିବା ବିନୋବା ପ୍ରବଚନଗୁଡ଼ିକ ମୁଁ ସଜାଡ଼ିଲି – ସକାଳେ ପ୍ରାୟ ୧ ଘଣ୍ଟା ସମୟ ଲାଗିଲା । ସେଥିରୁ କିଛି ପଢ଼ିଲି । ଅକ୍ଷୟ ୧୧ଟା ବେଳେ ମୋପାଖକୁ ଆସିଲା – ବିନୋବା-ପ୍ରବଚନ ପଢ଼ିବା ବା ସେହିପରି ମୂଳ ଚିନ୍ତାତ୍ମକ ଲେଖା ପଢ଼ିବା ଏଠାରେ ଗୁରୁଜୀମାନଙ୍କର ଉଚିତ ବୋଲି ମୁଁ କହିଲି । ଆଜି ଖରାବେଳେ ୨ଟାରୁ ୪୦ ମିନିଟ ଏହା ପଢ଼ା ହେଲା । ଉପରଓଳି ସଦାଶିବ ବାବୁ(ତ୍ରିପାଠୀ)ଙ୍କୁ ମୁଁ ଚିଠି ଲେଖିଲି ଏବଂ ତା ୩୧.୧୨.୫୬ ସୁଦ୍ଧା ଓଡ଼ିଶାରେ ଭୂଦାନ କାର୍ଯ୍ୟରେ କେତେକ ତଥ୍ୟ ଲେଖିଦେଲି ।

ଅଣିକଣାର ଛାତ୍ର କୁଶଧ୍ୱଜ (ବୟସ ୧୭ ବର୍ଷ) ମୋତେ ଦେଖା କରି, ତାହାର ଆର୍ଥିକ ଦୁରବସ୍ଥା ଯୋଗୁଁ ୯ମ ସୋପାନରୁ ପଢ଼ା ଛାଡ଼ିବା ଏବଂ ଆଉ କିପରି ପଢ଼ିବ ତାହା କହିଲା । ପ୍ରକୃତରେ, ଦେଶର ଏହିପରି କେତେ ପିଲା ପଢ଼ିପାରୁନାହାନ୍ତି ଭାବିଲେ ଦୁଃଖ ହୁଏ । ଆହୁରି ଦୁଃଖର ଓ ଚିନ୍ତାର କଥା ଯେ ଏ ପିଲାମାନେ ଓ ଆମେ ପାଠୁଆ ଲୋକେ ବଞ୍ଚିବା ପାଇଁ ଉତ୍ପାଦକ ଶ୍ରମ କରିବାକୁ ନାରାଜ !!

ସନ୍ଧ୍ୟାପରେ ବାବୁଲି ସାଧାରଣ ବିଜ୍ଞାନ ଓ ହିନ୍ଦୀ ପଢ଼ିଲା । ସେ ମୋଠାରେ ପଢ଼ିବାକୁ କୁଣ୍ଠିତ ବୋଲି ମୁଁ ତାକୁ ସନ୍ଧ୍ୟାରେ ପ୍ରଥମେ ଅଭିମାନ କରି କହିଲି ।

୨୮.୩.୧୯୫୯

ଶ୍ରୀ ବୁଲୁବାବୁ କାଲି ସନ୍ଧ୍ୟାପୂର୍ବରୁ ରାମଚନ୍ଦ୍ରପୁରରେ ପହଞ୍ଚିଲେ । ମୁଁ ଶ୍ରୀଯୁକ୍ତ ରାଧାନାଥ ରଥଙ୍କୁ ଓ ଶ୍ରୀମତୀ ଲକ୍ଷ୍ମୀ ମେନନଙ୍କୁ ମଲିଆଘାଈର ଲୋକଙ୍କ ପକ୍ଷରୁ ପତ୍ର ଲେଖିଦେଲି ।

ଶ୍ରୀ ବେଣୁଧର ବେଉରାଙ୍କ ସହ ଦେଶର ବର୍ତ୍ତମାନ ଅନୀତି କଥା ଅଧଘଣ୍ଟାଏ ପଢ଼ିଲା । ବଡ଼ ବଡ଼ ନେତା ଓ କ୍ଷମତାରେ ଥିବା ଶାସକମାନେ ଏହାକୁ ସଜାଡ଼ି ପାରିବା ଅସମ୍ଭବ ଅଟେ । ଲୋକ ସାଧାରଣ ବାହାରିଲେ ଏହା ସଜଡ଼ା ହୋଇପାରିବ – ମୋର ବିଶ୍ୱାସ ହେଉଛି । ଦଶମ ସୋପାନର ୧୩ ଜଣ ଛାତ୍ରଙ୍କର "ସମାଜ-ବିଜ୍ଞାନ'' ଉତ୍ତରଖାତା ଦେଖିଲି । ଖରାବେଳେ "ବିନୋବା-ପ୍ରବଚନ''ରୁ ଶିକ୍ଷା ସମ୍ବନ୍ଧୀୟ ୨ଟି ଲେଖା ପଢ଼ିଲୁ । ରାତିରେ କିଛି ପଢ଼ିନାହିଁ ବା ସୂତା କାଟିନାହିଁ ।

୨୯.୩.୧୯୫୯

କଟକ ମେଡ଼ିକ୍ୟାଲ କଲେଜ "ଇଣ୍ଟର୍ଣ୍ଣି'' ଓ ଛାତ୍ରମାନଙ୍କର ଓଡ଼ିଶା ସରକାରଙ୍କ ସହ ଟଣାଓଟରା ବୋଉ, ଚୁନୀଦେବୀ, ଜିଜୀ, ପ୍ରଭୃତିଙ୍କର ଯତ୍ନରେ ଶାନ୍ତିରେ ସମାଧାନ ହୋଇଗଲା ।

୩୦.୩.୧୯୫୯

ସକାଳେ ପ୍ରାୟ ଘଣ୍ଟାଏ ସଫାଇ କଲି ଓ ଗଛପତ୍ରରେ ପାଣି ଦେଲି । ଉତ୍କଳ ମୌଳିକ ପରିଷଦର ତା ୧୮.୩.୪୫ ଠାରୁ ବୈଠକର ବିବରଣୀମାନ ନକଲ କରିବାକୁ ଇଚ୍ଛା କରି ପୁରୁଣା (ଅକ୍ଷରମାନ ନିଭିଯାଉଥିବା) ଖାତାରୁ ୩ ପୃଷ୍ଠା ନକଲ କଲି । ଉପରଓଳି ଘଣ୍ଟାଏ ସ୍କୁଲ-ଅଫିସରେ ବିନୋବା ପ୍ରବଚନ ପଢ଼ିଲୁ । ଉତ୍ତର ମୌଳିକ ବିଭାଗର କୌଣସି ଗୁରୁଜୀ ଏ ପଢ଼ାରେ ଯୋଗ ଦେଇନାହାନ୍ତି । ହରିଦାସପୁରରେ କସ୍ତୁରବା ଟ୍ରେନିଂ କେନ୍ଦ୍ର ହେବା ଶ୍ରୀଯୁକ୍ତା ରମାଦେବୀ ଶ୍ରୀ ପୂର୍ଣ୍ଣବାବୁଙ୍କୁ ସୂଚାଇଥିବାରୁ, ପୂର୍ଣ୍ଣ ବାବୁଙ୍କୁ ମୁଁ ସେ ଅଞ୍ଚଳର ନକ୍ସା ନକଲ କରିଦେଲି । ପ୍ରାୟ ୨ ଘଣ୍ଟା ଲାଗିଲା । ରାତିରେ ରାମଚନ୍ଦ୍ରପୁର ମୌଳିକ ସ୍କୁଲର ଗୁରୁଜୀମାନଙ୍କର ବୈଠକରେ ମୁଁ ଉପସ୍ଥିତ ଥିଲି । କାହିଁକି ଧନ୍ଦାରୁ ଆୟ ଅତି କମ୍ ହେଲା, କିଏ ପ୍ରଧାନ ଗୁରୁଜୀ ହେବେ, ଉତ୍ତର ମୌଳିକ ବିଭାଗରେ ଜଣେ ପ୍ରଧାନ ଗୁରୁଜୀ ଓ ୧ମରୁ ୮ମ ସୋପାନର ଆଉ ଜଣେ ପ୍ରଧାନ ଗୁରୁଜୀ ହେଉନ୍ତୁ - ଚର୍ଚ୍ଚା ହେଲା । ସମଗ୍ର ରଷୋଡ଼ା ଭଲ ଚାଲୁନାହିଁ, ଚୂଲିରୁ ପାଉଁଶ ୩ ଦିନେ ଥରେ ସଫା ହେଉନାହିଁ, ଗତ ମାସରେ ୨ ଦିନ ମେସ୍ ବନ୍ଦ ଥିଲା, ଟଙ୍କା

(ବାକୀ ଖର୍ଚ୍ଚ ៖ ଅନେକ ବାକୀ ରଖୁଛନ୍ତି, ଆଦି କଥା ପଡ଼ିଲା । ଶେଷରେ, ମୁଁ କହିଲି ଯେ ଗତ ଅଗଷ୍ଟ ମାସରେ ମୁଁ ସର୍ବାଧିକ ଆଗ୍ରହ ଦେଖାଇବାରୁ ଏ ସମଗ୍ର ରଷୋଡ଼ା ହୋଇଥିଲା । ମାତ୍ର ମୁଁ ୫ ମାସ ହେଲା ସେଠାରେ ଖାଉନାହିଁ ବା କିଛି କରୁନାହିଁ । ଏକାଠି ଖାଇବାରେ ସୁଖ, ଶାନ୍ତି, ପରିବର୍ତ୍ତରେ ସମସ୍ତଙ୍କର ଅସୁବିଧା ହେଉଥିବାରୁ, ମୋର ପରାମର୍ଶ ମୁଁ ପ୍ରତ୍ୟାହାର କରିନେଉଛି ଏବଂ ଏ ମେସ୍ ଭାଙ୍ଗି ଦିଆଯାଉ । ପରେ, ୧୦/୧୫ ମିନିଟ ଗୁରୁଜୀମାନେ କଥାବାର୍ତ୍ତା କରି, ମେସ (ସମଗ୍ର ରଷୋଡ଼ା) ଏ ମାସରେ ଚଳାଇ ଦେଖିବା ଠିକ୍ କଲେ । ଅରଟରେ ମାତ୍ର ୨୦୦ ଘେରା ସୂତା କାଟିଲି ।



# ଆହୁରି ପଢ଼ନ୍ତୁ ......

## କାଶୀପୁର ଡାଏରି (୧୯୮୦-୮୫)

**ଲେଖକ : ଅଚ୍ୟୁତ ଦାସ**




କାଶୀପୁର ଡ଼ାଏରିରେ ଅଚ୍ୟୁତ ବାବୁଙ୍କ ବ୍ୟକ୍ତିସତ୍ତା କାବ୍ୟିକ ଶୈଳୀରେ ପ୍ରତିଫଳିତ । ପାଠକ ତାଙ୍କ ବିଷୟରେ ସାଧାରଣ ଭାବେ ଅଜଣା କଥା ଶୁଣିବାରେ ସୁଯୋଗ ପାଏ । ସମାଜ ସଚେତନ ସମାଜକର୍ମୀ; ଅଗ୍ରଗାମୀର ପ୍ରତିଷ୍ଠାତା, ମାଟିକାଦୁଅର ମଣିଷର ପକ୍ଷଧର ଏ ସବୁର ଅଚ୍ୟୁତ ଦାସ ବେଶ୍ ଜଣାଶୁଣା । ଏ ସବୁକୁ ବାହ୍ୟକର୍ମ, ସାମାଜିକ ଦାୟିତ୍ୱ ସଂପାଦନ ଭାବେ ଗ୍ରହଣ କରାଯାଏ । ସେ ଭିତରେ ରହେ ତିଲୋନିଆ, ଦି ହେଗ୍, ଦେଶ ବିଦେଶ ଯାତ୍ରା । ଅରୁଣା ଓ ବଙ୍କରଙ୍କ ଠାରୁ ଅରବିନ୍ଦ ଓ ସତ୍ୟନଗରର ନାନୀ ଯାଏ । ବହୁ ଅଧ୍ୟୟନର ତାଲିକାଠୁଁ ଆଦିବାସୀଙ୍କ ପାଇଁ ପ୍ରସ୍ତୁତ ଯୋଜନା, ତା'ର ଗୁଣ ଅବିଗୁଣ, ଦୋଷତ୍ରୁଟି ଏବଂ ବିଫଳତାର ଇତିବୃତ୍ତ ଯାଏଁ । ସେ ବିଫଳତାର ନିଦାନ ନିରୂପଣ ଓ ସେଇ ବ୍ୟାଧି ନିରାକରଣର ସୃଜନଶୀଳ ଓ ସକରାତ୍ମକ ଦୃଷ୍ଟିଭଙ୍ଗୀରୁ ସରକାରୀ ସ୍ତରର ଅଧିକାରୀଙ୍କ ସହିତ ପରିଚିତ ଓ ସରକାରୀ ଦପ୍ତରମାନଙ୍କ କାର୍ଯ୍ୟାବଳୀର ଧାରଣା ମଧ୍ୟ ସମ୍ୟକ ଆଲୋଚିତ ।

**ପ୍ରଥମ ସଂସ୍କରଣ : ୨୦୦୮** **ମୂଲ୍ୟ : ଟ ୧୮୦/-**

**ପୃଷ୍ଠା ସଂଖ୍ୟା : ୨୧୪**

## ମନେପଡ଼େ




### ସମ୍ପାଦନା : ସୁମନ୍ୟୁ ଶତପଥୀ

ଆତ୍ମଜୀବନୀ ଆଜି ଓଡିଆ ସାହିତ୍ୟର ଏକ ଆଖିଦୃଶିଆ ଓ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ। ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, କୁଞ୍ଜବିହାରୀ ଦାଶ, ଗୋପୀନାଥମହାନ୍ତି, ଚିତ୍ତରଞ୍ଜନ ଦାସ, ସଚ୍ଚି ରାଉତରାୟ, ସୁରେନ୍ଦ୍ର ମହାନ୍ତିଙ୍କ ପରି ସାହିତ୍ୟିକ; ରମାଦେବୀ, ଅନ୍ନପୂର୍ଣ୍ଣା ମହାରଣାଙ୍କ ପରି ସମାଜସେବୀ; ହରେକୃଷ୍ଣ ମହତାବ, ନୀଳମଣି ରାଉତରାୟଙ୍କ ପରି ରାଜନୀତିଜ୍ଞ ଓ ଏମାନଙ୍କ ବ୍ୟତୀତ ଆହୁରି ଅନେକଙ୍କ ଆତ୍ମଜୀବନୀ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି। ସେଇ ପ୍ରବାହର ଧାରାରେ ବସନ୍ତ ବାବୁଙ୍କ 'ମନେପଡ଼େ' ଆଉ ଏକ ଉଲ୍ଲେଖନୀୟ ସଂଯୋଜନ।

ବସନ୍ତ ବାବୁଙ୍କ ମନସ୍ତତ୍ତ୍ୱ ବେଶୀଭାଗ ଅନ୍ତର୍ମୁଖୀ, ଆବେଗ-ପରିଚାଳିତ ଓ "ଅଙ୍ଗେ ନିଭେଇଥିବା" ଅନୁଭବ ପ୍ରତି ନିଷ୍ଠା। ଯାହା ଯାହା ମନେପଡ଼େ ବହିଟି ତା'ର ଏକ ସ୍ୱଚ୍ଛ, ବ୍ୟକ୍ତିନିଷ୍ଠ, ଅନୁରାଗଭରା ରୂପାୟନ। ପାଠକ ଆଖିକୁ ସ୍ୱତଃ ଦିଶିଯାଏ ସ୍ନେହୀ ମଣିଷଟିଏ, ଯିଏ ଜୀବନରେ ବହୁ ଦୁଃଖର ଝଡ ଝଞ୍ଜା ଭିତରେ ଯାଇଛି କିନ୍ତୁ ଜୀବନବିମୁଖ ହୋଇ ପଡିନି, ଭାଗ୍ୟକୁ ଦୋଷ ଦେଇନି। ଅନ୍ୟପକ୍ଷରେ ଭିତରେ ରହିଛି ଏମିତି କିଛି ଟାଣୁଆପଣ, ଜୀବନ-ଅନୁରକ୍ତି ଯାହା ଦୁଃଖ ସହିବାକୁ ଶିଖାଇଛି, ସ୍ନେହ ବାଣ୍ଟିବାକୁ ଶିଖାଇଛି, ଅନ୍ୟ ସୁଖଦୁଃଖରେ ଭାଗନେବାର ସ୍ୱାଭାବିକ ପ୍ରବୃତ୍ତିକୁ ଜିଆଇ ରଖିଛି।

ପ୍ରଥମ ସଂସ୍କରଣ : ୨୦୦୮ ମୂଲ୍ୟ : ଟ ୨୫୦/-

ପୃଷ୍ଠା ସଂଖ୍ୟା : ୪୨୮

# ମନମୋହନ ଚୌଧୁରୀ ରଚନା ସଂଗ୍ରହ

## ସଂପାଦନା : ଶୈଳଜ ରବି




ସେ ଥିଲେ ସମକାଳୀନ ଭାରତର ଏକ ବିରଳ ବ୍ୟକ୍ତିତ୍ୱ ।

ସେ ଥିଲେ ସ୍ୱାଧୀନତା ସଂଗ୍ରାମୀ ଏବଂ ସମାଜ ସେବକ । ଲେଖକ ଏବଂ ଚିତ୍ରକର । ସାମ୍ବାଦିକ ଏବଂ ସିନେମାଟୋଗ୍ରାଫର । ଏକାଧାରାରେ ଜଣେ କୁଶଳୀ ବଢ଼େଇ, କମାର ଓ ମୋଚି । ଦାର୍ଶନିକ, ବୈଜ୍ଞାନିକ ଏବଂ କଳାକାର । ତାଙ୍କରି ଭାଷାରେ କହିଲେ ସେ ପ୍ରଚଳିତ ବ୍ୟବସ୍ଥାର ସବୁ ହିଡ଼ବାଡ଼ ଭାଙ୍ଗି ବିଭିନ୍ନ 'ହତା' ଭିତରେ ଧସେଇ ପଶିଥିବା ଜଣେ 'ଅନୁପ୍ରବେଶକାରୀ' ।

ମନମୋହନ ବାଙ୍‌ମୟର ବ୍ୟାପ୍ତି ଯେପରି ବିସ୍ମୟକର, ଗଭୀରତା ସେହିପରି ଅକଳନୀୟ । ଏହି ରଚନା ସଂଗ୍ରହ ସେଇଥିପାଇଁ ସମକାଳନୀ ଓଡ଼ିଶାର ରାଜନୀତି, ସମାଜ ତଥା ସଂସ୍କୃତିର ଏକ ମୂଲ୍ୟବାନ ଐତିହାସିକ ଦଲିଲ୍ ସଂଗ୍ରହ କହିଲେ ଅତ୍ୟୁକ୍ତି ହେବ ନାହିଁ ।

— ପ୍ରକାଶକ

ପ୍ରଥମ ସଂସ୍କରଣ : ୨୦୦୮ ମୂଲ୍ୟ : ଟ ୨୫୦/-

ଅନୁଭବମାଳା ତୃତୀୟ ଖଣ୍ଡ ତା.୨୬-୩-୧୯୫୬ ରୁ ତା.୨୬.୨.୧୯୫୯ ପର୍ଯ୍ୟନ୍ତ ସମୟ ସୀମାକୁ ସୂଚିତ କରୁଛି । ଏଇ ଖଣ୍ଡରେ ସର୍ବୋଦୟ ଆନ୍ଦୋଳନକୁ ଲୋକାଭିମୁଖୀ କରିବା ପାଇଁ ସେ ଓଡ଼ିଶାରେ ବିଭିନ୍ନ ଅଞ୍ଚଳ, କର୍ମୀ, ସଂଗଠକ ଇତ୍ୟାଦିଙ୍କ ନିକଟକୁ ଯାଇ ବିପୁଳ ଅନୁଭୂତି ଓ ଅଭିଜ୍ଞତା ହାସଲ କରିବା ସହିତ ସେସବୁ ବିଷୟରେ ଡ଼ାଏରିରେ ଉଲ୍ଲେଖ କରିଛନ୍ତି ।

ଆଇ.ଏସ୍.ବି.ଏନ୍ : ୧୩:୯୭୮-୮୧-୮୭୯୮୨-୪୭-୦
ମୂଲ୍ୟ : ଟ. ୧୪୦/-